# ଗୋବିନ୍ଦ ତ୍ରିପାଠୀ ରଚନାବଳୀ

ପ୍ରଥମ ଖଣ୍ଡ

ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀ



ଓଡ଼ିଶା ସାହିତ୍ୟ ଏକାଡେମୀ

# ଗୋବିନ୍ଦ ତ୍ରିପାଠୀ ରଚନାବଳୀ

ପ୍ରଥମ ଭାଗ

ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର—୭୫୧୦୧୪

ପ୍ରଥମ ପ୍ରକାଶ : ୧୯୯୫

ମୁଦ୍ରଣ :
ସଂସାର ପ୍ରେସ
ତଳତେଲେଙ୍ଗା ବଜାର
କଟକ-୯

ମୂଲ୍ୟ : **ଛପନ ଟଙ୍କା**

**GOVINDA TRIPATHY RACHANAVALI**

*Published by :*
ORISSA SAHITYA AKADEMI
Bhubaneswar—751014

First Published : 1995

*Printed at :*
SANSAR PRESS
Talatelenga Bazar, Cuttack-9

Price : **Rupees Fifty Six Only**

# ଅଗ୍ରଲେଖ

ସ୍ୱର୍ଗତ ଗୋବିନ୍ଦ ତ୍ରିପାଠୀ ଓଡ଼ିଆ ପ୍ରବଂଧ ସାହିତ୍ୟର ଜଣେ ଧୁରୀଣସ୍ରଷ୍ଟା । ଓଡ଼ିଆ ଭାଷା ଓ ସାହିତ୍ୟକୁ ନେଇ ଗର୍ବ ଅନୁଭବ କରୁଥିବା ଜଣେ ଅତ୍ୟନ୍ତ ସ୍ୱାଭିମାନୀ ସାରସ୍ୱତ ସାଧକ ସେ ଥିଲେ । ତାଙ୍କର ବିବିଧ ତର୍କସିଦ୍ଧ ଚିନ୍ତାଶୀଳ ଏବଂ ଗମ୍ଭୀର ଅଧ୍ୟୟନ-ପୁଷ୍ଟ ହସ୍ତଗତ ପ୍ରବନ୍ଧଗୁଡ଼ିକ ଓଡ଼ିଆ ସାହିତ୍ୟର ଅମୂଲ୍ୟନିଧି । ଜଣେ ସୁପଣ୍ଡିତ ଏବଂ ମୌଳିକ ପ୍ରକାଶଶୈଳୀ ତଥା ଅନ୍ତର୍ଦୃଷ୍ଟିସମ୍ପନ୍ନ ସମର୍ଥ ନିବନ୍ଧକାର ଭାବରେ ସେ ଓଡ଼ିଆ-ସାରସ୍ୱତ-ଚିନ୍ତା-ମାନସକୁ ଆଲୋଡ଼ିତ କରିଛନ୍ତି ।

ଓଡ଼ିଆ ସାହିତ୍ୟ ଏକାଡେମୀ ପକ୍ଷରୁ ତାଙ୍କର ରଚନାବଳୀର ପ୍ରଥମ ଖଣ୍ଡ 'ଗୋବିନ୍ଦ ତ୍ରିପାଠୀ ରଚନାବଳୀ' ଭାବରେ ପ୍ରକାଶିତ ହେଉଥିବା ଅତ୍ୟନ୍ତ ଆନନ୍ଦ ଓ ଗୌରବର ବିଷୟ । ଏହି ସଙ୍କଳନରେ ସନ୍ନିବେଶିତ ପ୍ରବନ୍ଧଗୁଡ଼ିକ ଦ୍ୱାରା ଓଡ଼ିଆ ଭାଷା ସାହିତ୍ୟର ଅନୁରାଗୀ ପାଠକ-ପାଠିକା, ବିଦ୍ୱାନ, ଗବେଷକ, ଅଧ୍ୟାପକ, ଛାତ୍ର ତଥା ଲେଖକ ନିବନ୍ଧକାର ଅବଶ୍ୟ ଉପକୃତ ହେବେ ବୋଲି ଆଶା କରୁଛୁ ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ପ୍ରଫେସର ପ୍ରଖ୍ୟାତ ପ୍ରାବନ୍ଧିକ ଡ. ଦାଶରଥି ଦାସ ଏହି ଗ୍ରନ୍ଥର ଭୂମିକା ରଚନା କରିଛନ୍ତି । ତାଙ୍କର ଏହି ମହତ୍ ସହଯୋଗ ନିମନ୍ତେ ସାଧୁବାଦ ଜଣାଉଛୁ ।

ଶ୍ରୀ ରାଜକିଶୋର ମିଶ୍ର
ସଚିବ
ଓଡ଼ିଶା ସାହିତ୍ୟ ଏକାଡେମୀ
ରାଜ୍ୟ ସଂଗ୍ରହାଳୟ ପରିସର, ଭୁବନେଶ୍ୱର

ତା ୧୭ । ୯ । ୧୯୯୫

# ସୂଚୀପତ୍ର

# ଭୂମିକା

## ( ଏକ )

ଶ୍ରୀ ଗୋବିନ୍ଦ ତ୍ରିପାଠୀ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଏକ ଉଲ୍ଲେଖଯୋଗ୍ୟ ବ୍ୟକ୍ତିତ୍ୱ । ତାଙ୍କର ସାହିତ୍ୟିକ ଛଦ୍ମନାମ ବଳୀବର୍ଦ୍ଦ ଶର୍ମା; ତେବେ ସେ ଛଦ୍ମନାମ ଅପେକ୍ଷା ସ୍ୱନାମରେ ହିଁ ସମଧିକ ପରିଚିତ । ସରସ ସାହସିକ ମନୋଭାବ, ପ୍ରଖର ଯୁକ୍ତିନିଷ୍ଠା ଓ ଅପୂର୍ବ ଭାଷାଭଙ୍ଗୀ ତାଙ୍କ ପ୍ରବନ୍ଧାବଳୀକୁ ଗତାନୁଗତିକତା ହାତରୁ ରକ୍ଷା କରିଛି । ସେ ସାମାଜିକ ଓ ଡିଟେକ୍ଟିଭ ଉପନ୍ୟାସ ଲେଖିଛନ୍ତି ଅବଶ୍ୟ । କିନ୍ତୁ ଉପନ୍ୟାସ ଲେଖକ ଅପେକ୍ଷା ସେ ମନସ୍ୱିତାପୂର୍ଣ୍ଣ ସରସ ଶ୍ଳେଷକୌତୁକାତ୍ମକ ପ୍ରବନ୍ଧ ରଚୟିତା ଭାବରେ ସୁପ୍ରତିଷ୍ଠିତ ହୋଇଛନ୍ତି । ତାଙ୍କ ଦୃଷ୍ଟିଭଙ୍ଗୀର ସଂସ୍କାରମୁକ୍ତ ସ୍ୱଚ୍ଛତା, ରଚନାରୀତିର ଅଭିନବ ସ୍ୱାତନ୍ତ୍ର୍ୟ ଓ ସିଦ୍ଧାନ୍ତର ପ୍ରୌଢ଼ ମୌଳିକତା ଅବିସମ୍ବାଦିତ । ଅଥଚ ତାଙ୍କ ପ୍ରବନ୍ଧଗୁଡ଼ିକ ଗ୍ରନ୍ଥାକାରରେ ମୁଦ୍ରିତ ହୋଇପାରିନାହିଁ । କାହିଁକି ? କାରଣ କ'ଣ ? ନିଜ ଲେଖା ସମ୍ବନ୍ଧରେ ଲେଖକଙ୍କ ଉଦାସୀନତା ହୁଏତ ଏହାର ଅନ୍ୟତମ କାରଣ ହୋଇପାରେ । ଲେଖିବାକୁ ସେ ଅବଶ୍ୟ ବ୍ୟାକୁଳ; କିନ୍ତୁ ଲେଖାକୁ ସାଇତିବାକୁ ଅନୁତ୍ସାହୀ । ଲେଖା ସରିଲେ ଯେପରି ତାଙ୍କର କାମ ସରେ । ନିଜର ଆମୋଦ ପାଇଁ ସେ ପ୍ରବନ୍ଧ ଲେଖନ୍ତି, ତୃପ୍ତି ପାଇଁ ପତ୍ରିକାରେ ଛପାନ୍ତି; ନିଜ ଗରଜରେ ଯେ କେହି ତାକୁ ପଢ଼ିପାରନ୍ତି । କିନ୍ତୁ ସେ କାହାକୁ ଡାକି ଯିବେ ନାହିଁ କି କାହା ପାଖରେ ଲେଖାଟିକୁ ପହଞ୍ଚାଇଦେବାକୁ କୌଣସି ପ୍ରକାର ଉଦ୍ୟମ କରିବେ ନାହିଁ । ବଡ଼ ଆତ୍ମାଭିମାନୀ ପୁରୁଷ ସେ । ପ୍ରକାଶକଙ୍କ ଦ୍ୱାରସ୍ଥ ସେ ହୋଇ ନ ପାରନ୍ତି । ଅଧିକନ୍ତୁ ଓଡ଼ିଆମାନେ କ'ଣ ଶ୍ରଦ୍ଧାରେ ଭଲ ପ୍ରବନ୍ଧଟିଏ ପଢ଼ି ଉପକୃତ ହେବାକୁ ଚାହାନ୍ତି ? ଏପରି ଦୁରାଶା ସେ କରିପାରନ୍ତି ନାହିଁ । ତାଙ୍କ 'ପତିତାର ଆତ୍ମକଥା' ଉପନ୍ୟାସର ନାୟକ ମୁହଁରେ ସେ କହିଛନ୍ତି, "ଲୋକେ ଭଲ କିଛି ମନ ଦେଇ ପଢ଼ନ୍ତି ? ସୁନ୍ଦର ଉପନ୍ୟାସଟିଏ, ଭଲ ଗଳ୍ପଟିଏ, ନ ହେଲେ ତାଙ୍କର କୌଣସି ଗୁଣକୁ ପ୍ରଶଂସା କରିବା ଭଳିଆ ପ୍ରବନ୍ଧଟିଏ ହେଲେ ସେମାନେ ପଢ଼ିବେ । ଶିଖିବା ପାଇଁ ନୁହେଁ, ଜାଣିବା ପାଇଁ ନୁହେଁ, ନିଜର କୌଣସି ପ୍ରବୃତ୍ତିର ପ୍ରଶଂସା ସେଥିରେ ଦେଖି ନିଜକୁ ଆଶ୍ୱାସନା ଦେବା ପାଇଁ । ସେମାନଙ୍କ ପାଇଁ ଲେଖିବା ଅର୍ଥ ସେମାନଙ୍କୁ ଖୋସାମତ କରିବା । ସେ ମୋ ଦେଇ ହେବ ନାହିଁ ।" (ଗୋବିନ୍ଦ ତ୍ରିପାଠୀ ଗ୍ରନ୍ଥାବଳୀ, ପୃଷ୍ଠା ୮୬) ଏ ଯେମିତି ଲେଖକଙ୍କର ନିଜର କଥା । ଯେଉଁ ଜାତି ଭଲ ପ୍ରବନ୍ଧଟିଏ ମନଦେଇ ପଢ଼ିବାକୁ ଏତେ ଅନାଗ୍ରହୀ ଓ ଅନୁତ୍ସାହୀ, ତାଙ୍କ ପାଇଁ ଲେଖି ପୁଣି ସାଇତିବା କଥାଟି ଗୋବିନ୍ଦ ତ୍ରିପାଠୀଙ୍କ ଦ୍ୱାରା କେବେ ସମ୍ଭବ ହୋଇନାହିଁ । ସେ ଲେଖିଛନ୍ତି ଅବଶ୍ୟ; ଶିଖାଇବାକୁ

ଲେଖିଛନ୍ତି, ଆନନ୍ଦଦେବାକୁ ଲେଖିଛନ୍ତି ବି, କିନ୍ତୁ ତାଙ୍କର ଅନାଗ୍ରହ ଓ ଉଦାସୀନତାରେ କିଛି କମ୍ କ୍ଷୁଣ୍ଣ ହୋଇନାହାନ୍ତି । ନିଜ ଗରଜରେ ଯେ ତାଙ୍କ ପ୍ରବନ୍ଧ ପଢ଼ିବେ ସେ ନିଶ୍ଚୟ କୃତାର୍ଥ ହେବେ, ମାତ୍ର ତ୍ରିପାଠୀ ମହୋଦୟ କାହାକୁ ଖୋସାମତ କରିପାରିବେ ନାହିଁ । ସେ ଅନେକ ପ୍ରବନ୍ଧ ଲେଖିଛନ୍ତି, କିନ୍ତୁ ସେଗୁଡ଼ିକ ତାଙ୍କର ଅନାଗ୍ରହ ଓ ଉଦାସୀନତାରୁ ତଥା ଲେଖକଙ୍କ ଅବହେଳାବଶତଃ ଇତସ୍ତତଃ ବିକ୍ଷିପ୍ତ ହୋଇପଡ଼ିଛି । ସବୁଗୁଡ଼ିକୁ ଆଜି ଅକ୍ଷୁଣ୍ଣ ଭାବରେ ଉଦ୍ଧାର କରାଯାଇପାରୁନାହିଁ । ବହୁତ ପ୍ରବନ୍ଧ ଅପୂର୍ଣ୍ଣାଙ୍ଗ ଭାବରେ ଏଥିରେ ସନ୍ନିବିଷ୍ଟ ହେଉଛି । ତେବେ ଯେତିକି ଅଖଣ୍ଡିତ ଭାବରେ ସଂଗ୍ରହ କରାଯାଇଛି, ସେଗୁଡ଼ିକ ଗୁଣ ଓ ପରିମାଣ ଦୃଷ୍ଟିରୁ କିଛି କମ୍ ନୁହେଁ । ଅଧିକାଂଶ ପ୍ରବନ୍ଧ ନିକଟରେ ଆବେଦନ ହରାଉନାହାନ୍ତି । ସେଗୁଡ଼ିକର ପ୍ରାସଙ୍ଗିକତା ଓ ପାଠଯୋଗ୍ୟତା କ୍ଷୁଣ୍ଣ ହେଉନାହିଁ । ସେଗୁଡ଼ିକ ଆଜି ବି ପଢ଼ିଲେ ଯେ କେହି ସ୍ୱାଧୀନ ଚିନ୍ତା ଓ ସ୍ୱାଧୀନ ଆତ୍ମପ୍ରକାଶର ସାହସ ତଥା ଉତ୍ସାହ ଲାଭ କରିବେ, ଶିଷ୍ଟ ଓ ସଂସ୍କାରମୁକ୍ତ ହେବେ, ହିନ୍ଦୋଳତ୍ୟାଗିମାନରେ ଦୀକ୍ଷିତ ରହିବେ ଓ ପରିଶୀଳିତ ବିଦ୍ୟାବୁଦ୍ଧିବୈଦଗ୍ଧ୍ୟରେ ଅମୋଦିତ ହେବେ ମଧ୍ୟ ।

## ( ଦୁଇ )

ଶ୍ରୀ ଗୋବିନ୍ଦ ତ୍ରିପାଠୀ ୧୮୯୯ ଖ୍ରୀଷ୍ଟାବ୍ଦ ମେ ୧୩ ତାରିଖ ଦିନ ଭୂମିଷ୍ଠ ହୁଅନ୍ତି । ଜନ୍ମସ୍ଥାନ ପୁରୀ ଜିଲ୍ଲାର ଚଡ଼ାସ ରାମହଂସପୁର ଗ୍ରାମ । ପିତାଙ୍କ ନାମ ବଳଭଦ୍ର ମିଶ୍ର । ମାତା ସାବିତ୍ରୀ ଦେବୀ । ଜନ୍ମସୂତ୍ରରେ ସେ ଥିଲେ ଶ୍ରୀ ଗୋବିନ୍ଦ ଚନ୍ଦ୍ର ମିଶ୍ର; କିନ୍ତୁ ପରିସ୍ଥିତି ବିପାକରୁ ହୋଇଛନ୍ତି ଗୋବିନ୍ଦ ତ୍ରିପାଠୀ—ଆମ ପ୍ରବନ୍ଧ ସାହିତ୍ୟର ପ୍ରବାଦ-ପୁରୁଷ । ପିଲାବେଳେ ସେ ମା'ଙ୍କୁ ହରାନ୍ତି, ଏଣେ ତାଙ୍କ ବଡ଼ଭାଇଙ୍କ ଶ୍ୱଶୁର ଶ୍ରୀରାମଚନ୍ଦ୍ରପୁର ନିବାସୀ ହରିହର ତ୍ରିପାଠୀ ଦତ୍ତକ ସନ୍ତାନ ଆଣନ୍ତି । ଯୋଗସୂତ୍ର ଗଢ଼ିଉଠେ । ସେ ରାମହଂସପୁରରୁ ଶ୍ରୀରାମଚନ୍ଦ୍ରପୁରକୁ ପୁଅ ହୋଇ ଆସନ୍ତି । ମାଆ ମିଳେ, କିନ୍ତୁ ଭାଗ୍ୟ ବିଶେଷ ବଦଳେ ନାହିଁ; ଦୁଃଖ, ଦାରିଦ୍ର୍ୟ ଓ ଦୁର୍ବିପାକ ଭିତରେ ସେ ଲଢ଼ନ୍ତି ତଥା ବଢ଼ନ୍ତି ଓ ଶେଷ ପର୍ଯ୍ୟନ୍ତ ଉଚ୍ଚଶିକ୍ଷା ଲାଭ କରନ୍ତି । ୧୯୨୫ ଖ୍ରୀଷ୍ଟାବ୍ଦରେ ସେ ପାଟନା ବିଶ୍ୱବିଦ୍ୟାଳୟରୁ ଇଂରାଜୀ ଏମ.ଏ. ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖି ପ୍ରଥମ ସ୍ଥାନ ଅଧିକାର କରିଥିଲେ । ମେଧାବୀ ଗ୍ରନ୍ଥକୀଟକୁ ନାନା ପ୍ରତିକୂଳ ପରିସ୍ଥିତି କାହିଁ ପ୍ରତିହତ କରିପାରିନାହିଁ ! ଏଣିକି ଚାକିରି ଜୀବନ । ଡେପୁଟି ମାଜିଷ୍ଟ୍ରେଟ ଭାବରେ ଉଭୟ ବିହାର ଓ ଓଡ଼ିଶାରେ ସେ ଚାକିରିକାଳ କଟାଇଛନ୍ତି । ଦେହାନ୍ତ ହୁଏ ୧୯୬୬ରେ । ଛାତ୍ରାବସ୍ଥାରୁ ଆମରଣ ସେ ଅବିଚ୍ଛିନ୍ନ ଭାବରେ ପ୍ରବନ୍ଧ ଲେଖିଛନ୍ତି । ତାଙ୍କ ସାରସ୍ୱତ ଜୀବନ ପାଇଁ ପ୍ରେରଣା ମିଳିଛି ଦୁଇଟି ଜଗତରୁ : ପ୍ରଥମଟି ସତ୍ୟବାଦୀ ବନବିଦ୍ୟାଳୟ ଓ

ଦ୍ୱିତୀୟଟି ଇଂରାଜୀ ସାହିତ୍ୟ । ୧୯୧୫ ରୁ ୧୯୧୯ ପର୍ଯ୍ୟନ୍ତ ସେ ସତ୍ୟବାଦୀ ବିଦ୍ୟାଳୟର ଛାତ୍ର ଥିଲେ । ସେଠାରେ ସେ ଗୋପବନ୍ଧୁ, ଗୋଦାବରୀଶ ଓ ନୀଳକଣ୍ଠଙ୍କ ସାନ୍ନିଧ୍ୟ ଲାଭ କରନ୍ତି, ନିର୍ଭୀକ ନିଷ୍କଳୁଷ ଜୀବନାଦର୍ଶରେ ଅନୁପ୍ରାଣିତ ହୁଅନ୍ତି ଓ ଦେଶପ୍ରେମ ତଥା ଜାତୀୟତାବୋଧରେ ଦୀକ୍ଷିତ ରହନ୍ତି । ସ୍ୱଜାତ୍ୟାଭିମାନ ତାଙ୍କର ପ୍ରଖର । ଇଂରାଜୀ ଶିକ୍ଷା ତାଙ୍କ ଜାତି ନେଇପାରିନାହିଁ, ତାଙ୍କୁ କେବଳ ସ୍ୱାଧୀନ ମନ ଓ ନୂତନ ସାହିତ୍ୟବୋଧ ଦାନ କରିଛି । ଅଳ୍ପବୟସ ସେ ଇଂରାଜୀ ଶିକ୍ଷିତ ଖାଣ୍ଟି ଓଡ଼ିଆଟିଏ ହୋଇ ବଞ୍ଚିଛନ୍ତି । ଦୂରରୁ ଗୋପବନ୍ଧୁଙ୍କର ବହୁ ସଦ୍‌ଗୁଣ ସେ ଆୟତ୍ତ କରିଥିଲେ । ଥିଲା ତାଙ୍କର ନିର୍ଭୀକତା, ଥିଲା ହୃଦୟବତ୍ତା, ଥିଲା ମାତ୍ରାଜ୍ଞାନ, ଥିଲା ବି ଜାତ୍ୟାଭିମାନ । ଗୋପବନ୍ଧୁଙ୍କ ପରି ସେ ଓଡ଼ିଆ ବୋଲି ଗର୍ବବୋଧ କରି ଶିଖିଥିଲେ । ଅନ୍ୟପକ୍ଷରେ ନ ଥିଲା ଭାବାବରୋଧ—ଯାହାକୁ କହନ୍ତି inhibition, ସେଥିରେ କଥାଏ ରଖି ମୁହଁରେ ଆଉ କଥାଏ କହିବା । ନ ଥିଲା ବି ଖୋସାମତପ୍ରବଣତା କି ଆତ୍ମପ୍ରଚାର ମନୋଭାବ । ତାଙ୍କ ପ୍ରବନ୍ଧରେ ତାଙ୍କର ଆମୂଳାନ୍ତ ଗୋଟିଏ ରୂପ—ସେହି ରୂପଟି ନିରାଭରଣ ଓ ନିରାବରଣ । ବଡ଼ ଅକୃତ୍ରିମ । ଅନ୍ୟ ପକ୍ଷରେ ତାଙ୍କର ଏହି ନିର୍ମଳ ଗୋପବନ୍ଧୁସୁଲଭ ଓଡ଼ିଆ ଚରିତ୍ରକୁ ପାଶ୍ଚାତ୍ୟ ଶିକ୍ଷା, ସାହିତ୍ୟ, ଜ୍ଞାନବିଜ୍ଞାନ ଓ ଦର୍ଶନ ଶାଣିତ କରିଦେଇଥିଲା । ଭାବାକୁଳତା ପରିବର୍ତ୍ତେ ସେ ଆୟତ୍ତ କରିଥିଲେ ଯୁକ୍ତିନିଷ୍ଠତା, ଚିନ୍ତାଶୀଳତା ଓ ମନସ୍ୱିତା । ଅଧିକନ୍ତୁ ଅର୍ଜନ କରିଥିଲେ ବି ସମୁନ୍ନତ ରସବୋଧ ଓ ସାହିତ୍ୟ ଦୃଷ୍ଟି । ଭଲଟେୟାର, ବର୍ଣ୍ଣାର୍ଡ ଶ' ଓ ବର୍ଟ୍ରାଣ୍ଡ ରସେଲଙ୍କ ଭାବଶିଷ୍ୟ ସେ । ତାଙ୍କ ମନଟି ତେଣୁ ଆଦୌ ଗତାନୁଗତିକ ନୁହେଁ । ପ୍ରବନ୍ଧ ରଚନା କରିବାକୁ ଏକପକ୍ଷରେ ଯେପରି ଲୋଡ଼ା ଅସୀମ ସାହସିକତା, କୋମଳ ସହୃଦୟତା ଓ ଅକ୍ଷୁଣ୍ଣ ମାତ୍ରାଜ୍ଞାନ, ଅନ୍ୟପକ୍ଷରେ ସେପରି ପ୍ରୟୋଜନ ଅଖଣ୍ଡ ଯୁକ୍ତିନିଷ୍ଠା, ସୂକ୍ଷ୍ମ ଚିନ୍ତାଶୀଳତା ଓ ମନସ୍ୱିତାପୁଷ୍ଟ ଶାଣିତ ରସଦୃଷ୍ଟି । ପ୍ରାବନ୍ଧିକଟିର ସବୁ ଯୋଗ୍ୟତା ଥିଲା ତ୍ରିପାଠୀଙ୍କର । ବଦରଗ୍‌ଧ ସମ୍ଭ୍ରମବାନ୍ ଖାଣ୍ଟି ଓଡ଼ିଆଟିଏ ପ୍ରବନ୍ଧ ରଚନାରେ ପ୍ରବୃତ୍ତ ହୋଇ ଓଡ଼ିଆ ସାହିତ୍ୟରେ ଏକ ଉତ୍କୃଷ୍ଟ ତଥା ମୌଳିକ ମାନସ-ଭଙ୍ଗୀର ସୂତ୍ରପାତ କରିଛନ୍ତି । ଓଡ଼ିଆଙ୍କ ଚିନ୍ତାଧାରାରେ ଏକ ନୂତନ ଆନ୍ଦୋଳନ ଆଣିବାକୁ ଚାହିଁଛନ୍ତି ।

( ତିନି )

ଓଡ଼ିଆ ପ୍ରବନ୍ଧ ସାମୟିକ ପତ୍ରପତ୍ରିକାର ଅନିବାର୍ଯ୍ୟ ଚାହିଦା ଓ ଉତ୍ସାହରୁ ସୃଷ୍ଟ ଓ ପରିପୁଷ୍ଟ । ପାଶ୍ଚାତ୍ୟ ଜ୍ଞାନବିଜ୍ଞାନର ବ୍ୟାପକ ପ୍ରସାର ଫଳରେ ଆମର ବିଭିନ୍ନ ବିଷୟରେ ଯେଉଁ ଅନୁସନ୍ଧିତ୍ସା ଜାଗ୍ରତ ହୋଇଛି, ତାହା ଏହି ପ୍ରବନ୍ଧ ରଚନା ମାଧ୍ୟମରେ ଯଥାସମ୍ଭବ ଚରିତାର୍ଥ ହୋଇଆସିଛି । ଗୋବିନ୍ଦ ତ୍ରିପାଠୀ ସେହି ପତ୍ରପତ୍ରିକାର ଚାହିଦା

ଓ ଉତ୍ସାହରୁ ପ୍ରବନ୍ଧ ଲେଖିଛନ୍ତି । ତାଙ୍କ ଜୀବଦ୍ଦଶାର ଖ୍ୟାତଅଖ୍ୟାତ ସବୁ ଓଡ଼ିଆ ପତ୍ରିକାରେ ସେ ଲେଖିଛନ୍ତି । ଲେଖିଛନ୍ତି ଉତ୍କଳ ସାହିତ୍ୟ, ସହକାର, ମୁକୁର, ନବ-ଭାରତ, ନବଜୀବନ, ଡଗର ଓ ଝଙ୍କାରରେ, ଲେଖିଛନ୍ତି କ୍ଷଣଜୀବୀ ଯୁଗବାଣୀ, ବାରୁଣୀ, ତରଙ୍ଗ, ଦିଗନ୍ତ ଓ କଳାକାରର ପୃଷ୍ଠାରେ; ଲେଖିଛନ୍ତି ବି ସମ୍ବାଦପତ୍ର 'ସମାଜ'ରେ । ପ୍ରଥମ ପ୍ରବନ୍ଧ 'ସ୍ୱର୍ଣ୍ଣ ଓ ରୌପ୍ୟମୁଦ୍ରା' ପ୍ରକାଶ ପାଏ ୧୯୨୨ରେ 'ସହକାର' ପତ୍ରିକାରେ । ଶେଷ ପ୍ରବନ୍ଧ ୧୯୭୩ରେ 'କଳାକାର'ରେ—'ଆମ ଗୋସେଇଁ' । ଏଇଟି ତାଙ୍କ ମୃତ୍ୟୁପରର ପ୍ରକାଶିତ ପ୍ରବନ୍ଧ । କେତେକ ପ୍ରବନ୍ଧ ଅଦ୍ୟାବଧି ଅପ୍ରକାଶିତ ରହିଛି । ୧୯୨୨ ରୁ ୧୯୭୨—ଅନ୍ୟୂନ ପଚାଶ ବର୍ଷ ଧରି ସେ ନିରବଚ୍ଛିନ୍ନ ପ୍ରବନ୍ଧ ଲେଖିଛନ୍ତି । ସଂଖ୍ୟାରେ ଅନେକ । ବିଷୟ ବୈଚିତ୍ର୍ୟ ପୁଣି ବିସ୍ମୟାବହ । ଅର୍ଥନୀତି, ରାଜନୀତି, ଧର୍ମ, ଦର୍ଶନ, ସାହିତ୍ୟ, ସଂସ୍କୃତି, ସମାଜ, ଶାସନ ଓ ଇତିହାସ ଆଦି ସବୁ ବିଷୟରେ ସେ ସ୍ୱଚ୍ଛନ୍ଦରେ ଲେଖିପାରନ୍ତି । ତେବେ ସାହିତ୍ୟ ଓ ରାଜନୀତି ବିଷୟରେ ତାଙ୍କର ଉତ୍ସାହ ଅଧିକ । ଇଂରାଜୀ ସାହିତ୍ୟର ଭଲ ଛାତ୍ର ଥିଲେ ସେ, ଆଜୀବନ ମଧ୍ୟ ଅଧ୍ୟୟନ ଅବ୍ୟାହତ ରଖିଛନ୍ତି । ପ୍ରବନ୍ଧ ରଚନାରେ ସେହି ଅଧ୍ୟୟନର ବ୍ୟାପ୍ତି ଓ ଗମ୍ଭୀରତା ଦୁର୍ଲକ୍ଷ୍ୟ ରହେ ନାହିଁ । ମାତ୍ର ସେ ସାହିତ୍ୟ ଜଗତରେ ଆବଦ୍ଧ ଆବେଗସମ୍ପନ୍ନ ଲେଖକଟିଏ ମାତ୍ର ନ ଥିଲେ, ଅଧିକନ୍ତୁ ସେ ଥିଲେ ସ୍ୱକାଳ ଓ ସ୍ୱଦେଶ ସଚେତନ ମନସ୍ୱୀ ବ୍ୟକ୍ତିଟିଏ ମଧ୍ୟ । ଯେ ଯେପରି ଅନଗ୍ରସର ଓଡ଼ିଶାରେ ଭୂମିଷ୍ଠ ହୋଇଥିଲେ, ଠିକ୍ ସେପରି ବିଂଶ ଶତାବ୍ଦୀର ପୃଥିବୀର ଅଧିବାସୀ ଥିଲେ । ବିଶ୍ୱ ଇତିହାସ ପ୍ରତି ସେ ଉଦାସୀନ ହୋଇ ନ ପାରନ୍ତି । ତେଣୁ ତାଙ୍କ ପ୍ରବନ୍ଧରେ ସ୍ୱଦେଶପ୍ରେମ ଓ ବିଶ୍ୱଜନପ୍ରୀତି ହାତ ଧରାଧରି ହୋଇ ଚାଲିଛନ୍ତି । ଜୀବନଟି ମଧ୍ୟ ତାଙ୍କର ଥିଲା ବିଚିତ୍ର ଅଭିଜ୍ଞତା ସମୃଦ୍ଧ ଓ ତିକ୍ତମଧୁର ଅନୁଭୂତିସମ୍ପନ୍ନ । ବିଚ୍ଛିନ୍ନ ଓଡ଼ିଶାରେ ସେ ଜନ୍ମ ନେଇଥିଲେ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରେ ପ୍ରଶାସନିକ ଦାୟିତ୍ୱ ତୁଲାଇଛନ୍ତି । ଉଭୟ ପରାଧୀନ ଓ ସ୍ୱାଧୀନ ଭାରତବର୍ଷରେ ସେ ବାସ କରିଛନ୍ତି, ପରାଧୀନତାର ଗ୍ଲାନିପରାଭବ, ସ୍ୱାଧୀନତା ସଂଗ୍ରାମର ଉତ୍ସାହଉଦ୍ଦୀପନା, ପ୍ରାପ୍ତିର ଉଲ୍ଲାସ ଆନନ୍ଦ ଓ ତତ୍‌ପରବର୍ତ୍ତୀ ମୋହଭଙ୍ଗର ଯନ୍ତ୍ରଣା ବେଦନା ସେ ଅଙ୍ଗେ ନିଭେଇଛନ୍ତି । ସ୍ୱାଧୀନତା ପ୍ରତ୍ୟାଶିତ 'ରାମରାଜ୍ୟ'ର ସ୍ୱପ୍ନକୁ ଚରିତାର୍ଥ କରିନାହିଁ । ବରଂ ଭିନ୍ନ ଏକ ଚକ୍ରହାଦର ପରାଧୀନତା ଭୋଗେଇଛି । ନେତା ଓ ତାଙ୍କ ନୀତି ପ୍ରୀତିକର ହୋଇ ଉଠିନାହିଁ । ସବୁଠିଁ ବିଭ୍ରାନ୍ତି ଓ ବ୍ୟାକୁଳତା । ଓଡ଼ିଶାର ଦୁରବସ୍ଥା ଯଥା ପୂର୍ବଂ ତଥା ପରଂ । ବରଂ ଏଠି ବିଭ୍ରାନ୍ତି ଓ ବ୍ୟାକୁଳତା ବେଶି । ଜାତି ଦରିଦ୍ର, ଆଳସ୍ୟ ପରାୟଣ, ଆତ୍ମ ପ୍ରତ୍ୟୟହୀନ ଓ ଯଥାସମ୍ଭବ ସ୍ୱାଭିମାନଶୂନ୍ୟ । ବେଶ୍ ଘୁମନ୍ତ ମଧ୍ୟ । ଉଭୟ ସାହିତ୍ୟ ଓ ରାଜନୀତି କ୍ଷେତ୍ରରେ ବଳିଷ୍ଠ ନେତୃତ୍ୱ ଅନୁପସ୍ଥିତ । ଦେଶ ସ୍ୱାଧୀନ, କିନ୍ତୁ ଓଡ଼ିଆ ଏ ଭୀତସନ୍ତ୍ରସ୍ତ ଓ ବିସ୍ମରବୋଧହୀନ । ଅଧିକନ୍ତୁ ଶାସ୍ତ୍ର ପରତନ୍ତ୍ର ଓ ଅ.ସ୍ମୃରସର୍ବସ୍ୱ । ନେତାଏ ଅହଙ୍କାରୀ, ଆତ୍ମମୁଗ୍ଧ ଓ ଦାୟିତ୍ୱହୀନ; ଯେ କହିପାରନ୍ତି,

'କୁକୁର ଭୁକୁଥାଉ, ବେପାରୀ ଚାଲିଥାଉ' । ଏପରି ଏକ ଦୂରପନେୟ ଦୁଃସ୍ଥିତି ମଧ୍ୟରେ ପ୍ରଖର ସମ୍ବେଦନଶୀଳ ନିର୍ଭୀକ ଗୋବିନ୍ଦ ତ୍ରିପାଠୀ ପ୍ରବନ୍ଧ ଲେଖିଛନ୍ତି, ଆବେଗ ବିଷାଦାକ୍ରାନ୍ତ । ନୈରାଶ୍ୟଗ୍ରସ୍ତ ନ ହେଲେହେଁ ମନଟି ବିଷଣ୍ଣ । ଦୃଷ୍ଟିଭଙ୍ଗୀଟି ତେଣୁ ବିଦ୍ରୂପାତ୍ମକ ନ ହୋଇ ରହିପାରିନାହିଁ । ଦେଶ ଓ ଜାତିର କଲ୍ୟାଣ ଧ୍ୟେୟ । ତେଣୁ ଯେଉଁଠି ଯେତେ ଅନୁଦାର ଅନ୍ତରାୟ, ସେଗୁଡ଼ିକ ତାଙ୍କର ଶତ୍ରୁ ଓ ଅନାତ୍ମୀୟ—କଠିନ ବ୍ୟଙ୍ଗବିଦ୍ରୂପର ଶରବ୍ୟ । ତାଙ୍କର ସମସ୍ତ ପ୍ରବନ୍ଧ ଯେପରି ଏକ ବିରାଟ ପ୍ରବନ୍ଧର ବିଭିନ୍ନ ଅଧ୍ୟାୟ । ତେଣୁ ସେଗୁଡ଼ିକୁ ଧର୍ମ, ଦର୍ଶନ, ସମାଜ, ସାହିତ୍ୟ, ସଂସ୍କୃତି, ରାଜନୀତି, ଅର୍ଥନୀତି ଓ ଶାସନ କି ଇତିହାସ ଭେଦରେ ବିଭକ୍ତ କରି ବିଶ୍ଳେଷଣ କଲେ ଭଲ ବୁଝି-ହେବ ନାହିଁ । ତାଙ୍କ ପ୍ରବନ୍ଧ ଜନ୍ମମୁହୂର୍ତ୍ତରୁ ଅବଶ୍ୟ ସାହିତ୍ୟସାମଗ୍ରୀ ହୋଇ ଉଠି ନାହିଁ । 'ସ୍ୱର୍ଣ୍ଣ ଓ ରୌପ୍ୟମୁଦ୍ରା' ପ୍ରବନ୍ଧକୁ କେହି ସାହିତ୍ୟିକ ମର୍ଯ୍ୟାଦା ଦେବେନାହିଁ । କିନ୍ତୁ ଗୋବିନ୍ଦ ତ୍ରିପାଠୀ କ୍ରମଶଃ ପରିଣତିପଥରେ ଅଗ୍ରସର ହୋଇଛନ୍ତି, ଅତଏବ ନିଜର ବାଟ ନିଜେ ପାଇଛନ୍ତି । ମନ ସଂଯତ ଓ ସମ୍ବେଦନଶୀଳ । ଭାଷା କ୍ରମଶଃ ସରଳ, ସ୍ପଷ୍ଟମୂର୍ତ୍ତି ଓ ଶକ୍ତିଶାଳୀ ହୋଇଉଠିଛି, ହୋଇଛି ବି ସତର୍କ ଓ ସଜାଗ । ଅଧିକନ୍ତୁ ମନନଶୀଳତା ସହିତ ନାନା ଜ୍ଞାନଗୁଣ ସମୃଦ୍ଧ ଏକ ସରସ ଆକର୍ଷଣୀୟ ବ୍ୟକ୍ତିତ୍ୱ ସମନ୍ୱିତ ହୋଇ ତାଙ୍କ ରଚନାକୁ ଏପରି ଏକ ଅନନୁକରଣୀୟ ବୈଶିଷ୍ଟ୍ୟ ପ୍ରଦାନ କରିଛି ଯେ, ଯାହା ଓଡ଼ିଆ ପ୍ରବନ୍ଧ ସାହିତ୍ୟ ଇତିହାସରେ ଆଦୌ ସାଧାରଣ କଥା ନୁହେଁ । ଏଠାରେ ସ୍ମରଣ ରଖିବାକୁ ହୁଏ ଯେ, ଓଡ଼ିଆ ପ୍ରବନ୍ଧ ଜନ୍ମାବଧି ଜ୍ଞାନ ଆହରଣ ଓ ବିତରଣ କରିଆସିଛି, ପ୍ରବନ୍ଧ ମାଧ୍ୟମରେ ପାଶ୍ଚାତ୍ୟ ଜ୍ଞାନବିଜ୍ଞାନ ଓଡ଼ିଶାରେ ପ୍ରବେଶ ପଥ ପାଇଛି । ପାଠକଠାରୁ ଯଥାସମ୍ଭବ ଦୂରତ୍ୱ ରକ୍ଷା କରି ଉଚ୍ଚସ୍ଥାନରୁ ପ୍ରବନ୍ଧ ଗମ୍ଭୀର ମୁଖରେ ଗମ୍ଭୀର କଥା କହିଆସିଛି—ଏପରିକି ବିପିନବିହାରୀ ରାୟ, ରତ୍ନାକର ପତି ଓ ଶଶିଭୂଷଣ ରାୟଙ୍କ କ୍ଷେତ୍ରରେ କଥାଟା ଅନ୍ୟଥା ହୋଇନାହିଁ । ସାହିତ୍ୟକୁ ଏପରି ଗୁରୁଗିରି ବିଶେଷ ଶୋଭା ପାଏନା । ସାହିତ୍ୟ ପାଖକୁ ଆସେ, ମନର କଥା କହେ । ସାହିତ୍ୟିକଙ୍କର ଭୂମିକା ଶିଳ୍ପୀଙ୍କ ଭୂମିକା । ସାହିତ୍ୟର ଦାନ ଆନନ୍ଦଦାନ । ଉପୁରି ଶିକ୍ଷା ମିଳିଲେ ମନ୍ଦ ନୁହେଁ । ଗୋବିନ୍ଦ ତ୍ରିପାଠୀଙ୍କ ପ୍ରବନ୍ଧରେ ପ୍ରାବନ୍ଧିକ ଓ ପାଠକର ସମ୍ପର୍କ 'ମୁଁ-ତୁମେ'ର ସମ୍ପର୍କ—ପାଖକୁ ଚାଲି ଆସିଛନ୍ତି ପ୍ରାବନ୍ଧିକ । କଥା ଅବଶ୍ୟ ଗମ୍ଭୀର, କିନ୍ତୁ ମୁଖ ଗମ୍ଭୀର ନୁହେଁ; ଚିନ୍ତା ଓ ଚେତନାର ପ୍ରାବନ୍ଧିକ ବହୁତ ଉଚ୍ଚରେ ସମାସୀନ ନିଶ୍ଚୟ, କିନ୍ତୁ କଥା କହିଲାବେଳେ ପାଠକ ପାଖକୁ ଓହ୍ଲାଇଆସିବାକୁ ତାଙ୍କର କୁଣ୍ଠା ନାହିଁ । ପ୍ରକୃତରେ ଗୋବିନ୍ଦ ତ୍ରିପାଠୀ ଚିନ୍ତାକଲାବେଳେ ମହତ ଲୋକଙ୍କ ପରି ଚିନ୍ତା କରନ୍ତି, କିନ୍ତୁ ତାହାକୁ ପ୍ରକାଶ କଲାବେଳେ ସାଧାରଣ ଲୋକଙ୍କ ଭାଷା ଓ ବାକ୍ୟରୀତି ବ୍ୟବହାର କରନ୍ତି । ଯାହା ମହାନ୍ ତାହା ସହିତ ସାରଲ୍ୟର ସହଜ ସମ୍ବନ୍ଧ ଥାଏ ବୋଧହୁଏ । ଓଡ଼ିଆ ପ୍ରବନ୍ଧ ଯେଉଁଦିନ ସହଜ ସରଳ ଭାଷାରେ ମନର କଥା କହି ଶିଖିଛି,

ସେଦିନ ତାହା ସାହିତ୍ୟ ସ୍ତରକୁ ଉନ୍ନୀତ ହୋଇଛି, ଏ କ୍ଷେତ୍ରରେ ଗୋବିନ୍ଦ ତ୍ରିପାଠୀଙ୍କ ଯୋଗଦାନ ଅବିସମ୍ବାଦିତ । ତାଙ୍କ ପ୍ରବନ୍ଧର ବିଶ୍ଳେଷଣା ଅଛି, ସଦ୍‌ରୁଚିର ପ୍ରସ୍ତରିଷ୍ଟୁତା ଅଛି, ଜ୍ଞାନ ବିତରଣର ଉଦ୍ଦେଶ୍ୟ ବି ଅଛି, କିନ୍ତୁ ତାଙ୍କ ପ୍ରତିଭାର ଯାଦୁସ୍ପର୍ଶରେ ତାହା ଏପରି ଏକ ନବତର ଜୀବନୀଶକ୍ତି ଲାଭ କରିଛି ଯେ, ଜ୍ଞାନଗର୍ଭ ତଥ୍ୟନିଷ୍ଠ ପ୍ରବନ୍ଧ ବି ଅନେକାଂଶ ଆବେଗସ୍ନିଗ୍ଧ ସାହିତ୍ୟିକ ସ୍ୱାଦରେ ମଣ୍ଡିତ ହୋଇଉଠିଛି । ସେ ଗୁରୁଗିରି କରିନାହାନ୍ତି, ଯଦିଓ ଆନ୍ତରିକ ଭାବରେ ଓଡ଼ିଆଙ୍କ ଚିନ୍ତାଧାରାରେ ଏକ ନୂତନ ଆଲୋଡ଼ନ ଆଣିବାକୁ ଚାହିଁଛନ୍ତି । ନୂଆ ରଚନା ରୀତିଟିଏ ସେ ପ୍ରବର୍ତ୍ତନ କରିଛନ୍ତି ମଧ୍ୟ । ଆମେ ପ୍ରଥମେ ତାଙ୍କ ଚିନ୍ତାରେ ବ୍ୟାପ୍ତି ଓ ବୈଚିତ୍ର୍ୟ ବିଚାର କରିବା ଓ ପରେ ରଚନା ରୀତିର ନୂତନତ୍ୱ କଳିବା ।

**ଚିନ୍ତାଜଗତ :**

ଚିନ୍ତାଶୀଳତା ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀଙ୍କ ପ୍ରବନ୍ଧର ବିଶେଷତ୍ୱ । ତାଙ୍କ ଚିନ୍ତା-ଜଗତ ବିସ୍ତୃତ, ମୌଳିକ ଓ ଅନୈକ୍ସିକ । ବିଷୟ ପୁରୁଣା ହୋଇପାରେ । କିନ୍ତୁ ଚିନ୍ତା ନୂଆ । ମନଟି ତାଙ୍କର ବଡ଼ ଗ୍ରହିଷ୍ଣୁ, କେବଳ ଦେଶର ଓ ସମାଜର ନୁହେଁ, ବିଶ୍ୱର ନାନା ସମସ୍ୟା ବି ତାଙ୍କୁ ଚିନ୍ତାନ୍ୱିତ କରିଛି । ପ୍ରବନ୍ଧାବଳୀରେ ତାଙ୍କ ଚିନ୍ତା ସ୍ୱଜ ରୂପ ପାଇଛି । ତନ୍ମଧ୍ୟରୁ ଆମେ ସ୍ୱଦେଶଚିନ୍ତା, ବିଶ୍ୱଚିନ୍ତା, ସମାଜଚିନ୍ତା, ଜୀବନଚିନ୍ତା ଓ ସାହିତ୍ୟ ଚିନ୍ତାର ସ୍ୱରୂପ ବିଶ୍ଳେଷଣ କରିପାରିବା ଓ ତ୍ରିପାଠୀ ମହୋଦୟଙ୍କ ମୌଳିକତା କଳି ପାରିବା ।

**ସ୍ୱଦେଶ ଚିନ୍ତା :**

ସ୍ୱାତନ୍ତ୍ର୍ୟହୀନ ଓଡ଼ିଶା ଓ ପରାଧୀନ ଭାରତବର୍ଷରେ ଭୂମିଷ୍ଠ ହୋଇଥିଲେ ଗୋବିନ୍ଦ ତ୍ରିପାଠୀ । ତେବେ ଜନ୍ମକାଳ ଥିଲା ତାଙ୍କର ଉଭୟର ଜାଗରଣ ଲଗ୍ନରେ । ସେ ଏକ-ପକ୍ଷରେ ଯେପରି ଆତ୍ମସଚେତନ ଥିଲେ, ସେପରି ବି ଥିଲେ ଦେଶ ଓ ପରିବେଶମନସ୍କ; ଅଧିକନ୍ତୁ ସ୍ୱଦେଶ ପ୍ରେମର ଶିକ୍ଷାଶାଳା ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ର ମଧ୍ୟ । ତାଙ୍କ ପାଇଁ ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତା ଆନ୍ଦୋଳନ ନୂଆ କଥା ନୁହେଁ । ଉଭୟଙ୍କ ଆତ୍ମ ପ୍ରତିଷ୍ଠା ପାଇଁ ଜାତି ସଂଗ୍ରାମରେ ଅବତୀର୍ଣ୍ଣ—ସେ ଉଦାସୀନ ରହି ନ ପାରନ୍ତି । ପ୍ରକୃତରେ ପ୍ରତ୍ୟକ୍ଷ ରାଜନୀତି ସହିତ ମଣିଷ ମନର ଯୋଗାଯୋଗ ଘନିଷ୍ଠ ହୋଇ ନ ଉଠିଲେ ସ୍ୱଦେଶଚିନ୍ତା ସମ୍ଭବପର ନୁହେଁ । ଗୋବିନ୍ଦ ତ୍ରିପାଠୀଙ୍କ ସ୍ୱଦେଶଚିନ୍ତା ବ୍ୟତିକ୍ରମ ନୁହେଁ ସ୍ୱଦେଶ ଚିନ୍ତା ସମୁଦ୍ୟତ ହୋଇ ଉଠିଥିବାରୁ ସେ ନିଜର ସମାଜ, ସାହିତ୍ୟ ଓ ସଂସ୍କୃତି ପ୍ରତି ଦୃଷ୍ଟିପାତ କରିଛନ୍ତି । ତାଙ୍କ ରାଜନୀତି ସଚେତନତା, ସ୍ୱଦେଶ ପ୍ରେମ, ସାହିତ୍ୟ ସଂସ୍କୃତି ଚିନ୍ତା ଓ ସମାଜମନସ୍କତା ଏଣୁ ଅନ୍ୟୋନ୍ୟନିର୍ଭର । କେବଳ

ବିଷୟର ସୌନ୍ଦର୍ଯ୍ୟ ଦୃଷ୍ଟିରୁ ସେଗୁଡ଼ିକୁ ପୃଥକ ପୃଥକ ଭାବରେ ଦେଖିବା । ତାଙ୍କର ସ୍ୱଦେଶପ୍ରୀତି ଅବଶ୍ୟ ପ୍ରତ୍ୟକ୍ଷ ଭାବରେ ଓଡ଼ିଶାପ୍ରୀତିରେ ପର୍ଯ୍ୟବସିତ, କିନ୍ତୁ ସେ ଜାଣିଥିଲେ ଯେ ବୃହତ୍ତର ଭାରତପ୍ରୀତି ଓ ମାନବପ୍ରୀତିକୁ ବାଦ ଦେଇ ଏହି ଓଡ଼ିଶା ପ୍ରୀତିର କିଛି ମାନେ ହୁଏନା । ତେଣୁ ସେ ଓଡ଼ିଶା, ଭାରତବର୍ଷ ଓ ପୃଥିବୀର ସମସାମୟିକ ଅବସ୍ଥାର ଗୁରୁତ୍ୱ ଉପଲବ୍ଧି କରିଛନ୍ତି । ସୁଦୃଢ଼ ଲକ୍ଷ୍ୟ ଓ ପ୍ରେରଣାର ବଶବର୍ତ୍ତୀ ହୋଇ ସାହିତ୍ୟ କର୍ମଟିକୁ ସମ୍ପାଦନ କରି ଚାଲିଛନ୍ତି, ଦେଶ ଓ ଜାତିକୁ ଦିଗ୍‌ଦର୍ଶନ ଦେଇଛନ୍ତି । 'ଭାରତର ବର୍ତ୍ତମାନ ଅବସ୍ଥା ଓ ତାହାର ପ୍ରତିକାର' ଶୀର୍ଷକ ଗୋଟିଏ ଦୀର୍ଘ ପ୍ରବନ୍ଧ ସେ 'ମୁକୁର'ରେ ଲେଖିଥିଲେ ୧୯୧୫-୧୬ ରେ । ଯେତେବେଳେ ଭାରତବର୍ଷର ପ୍ରାୟ ସାତକୋଟି ଲୋକ ସାରାବର୍ଷ ଥରେ ହେଲେ ମୁଠିଏ ପେଟପୂରା ଖାଇବାକୁ ପାଉ ନ ଥିଲେ, ସେତେବେଳେ ଏହି ପ୍ରବନ୍ଧର ଯୁକ୍ତିଯୁକ୍ତ ଆବେଦନ କେତେ ଗଭୀର ଓ ପ୍ରଭାବଶାଳୀ ହୋଇଥିବ ତାହା ହିଁ ଆଜି ବିସ୍ମୟ । ପ୍ରାଥମିକ ସ୍ତରର ଏହି ପ୍ରବନ୍ଧର ସାହିତ୍ୟିକ ମୂଲ୍ୟ ଅବଶ୍ୟ ନାହିଁ, କିନ୍ତୁ ଏହାର ସ୍ୱଦେଶାନୁରାଗ, ବାସ୍ତବକୁ ମୁକାବିଲା କରିବାର ସତ୍‌ସାହସ ତଥା ଦୂରଦୃଷ୍ଟିସମ୍ପନ୍ନ ଭବିଷ୍ୟତ କଳ୍ପନା ପଟାନ୍ତର-ହୀନ । ସେଦିନ ସେ ସମବାୟ ଆନ୍ଦୋଳନ ପ୍ରତି ଭାରତବର୍ଷର ଦୃଷ୍ଟି ଆକର୍ଷଣ କରିଛନ୍ତି । ସମବାୟ ଋଣ ସମିତି ଓ ସମବାୟ ବାଣିଜ୍ୟସମିତି ଗଠନ ମାଧ୍ୟମରେ ହିଁ ଦରିଦ୍ର କୃଷକର ଆତ୍ମୋନ୍ନତି ସମ୍ଭବ ବୋଲି ଘୋଷଣା କରିଛନ୍ତି । ଆଜି ଏ କଥା ପୁରୁଣା ଲାଗିପାରେ, କିନ୍ତୁ ସେଦିନ ପାଇଁ ଏହା ଥିଲା ସଦ୍ୟ ସଚେତନ ଏକ ଅଭିନବ ଦିଗ୍‌ଦର୍ଶନ । ଏହି ସୂତ୍ରରେ ସେ ସେଦିନ ଜାତୀୟସମସ୍ୟାଗୁଡ଼ିକ ଉପରେ ଯୁଗୋପଯୋଗୀ ଆଲୋକପାତ କରିଛନ୍ତି; 'ରେଲବାଇ ଏବଂ ଭାରତ ସରକାର' (ମୁକୁର-୧୯୧୪) ଓ 'ବସ୍ତ୍ର ସମସ୍ୟା' (ମୁକୁର-୧୯୧୪) ଆଦି ପ୍ରବନ୍ଧରେ ନୂଆ ସମାଧାନ ଖୋଜିଛନ୍ତି । ଚିନ୍ତାର ମୌଳିକତା, ବିଚାରର ଯୁକ୍ତିଶୀଳତା ଓ ତଥ୍ୟନିଷ୍ଠତାକୁ ପ୍ରଶଂସା ନ କରି ରହି ହୁଏ ନାହିଁ । 'ବସ୍ତ୍ର ସମସ୍ୟା' ପ୍ରବନ୍ଧରେ ମହାତ୍ମାଗାନ୍ଧୀଙ୍କ ଚରଖାନୀତିକୁ ସେ ସମାଲୋଚନା କରିବାକୁ ପଶ୍ଚାଦ୍‌ପଦ ହୋଇନାହାନ୍ତି । ଚରଖା ଭାରତବର୍ଷର ସୁଦର୍ଶନ ଚକ୍ର ହୋଇ ନ ପାରେ । ହୋଇନାହିଁ ମଧ୍ୟ । ଆଜି ଚରଖା କାହିଁ ? ତାଙ୍କ ସ୍ୱଦେଶ ପ୍ରେମ ବ୍ରିଟିଶ ବିଦ୍ୱେଷପ୍ରସୂତ ନୁହେଁ । ସେ ବ୍ରିଟିଶ ସରକାରଙ୍କ ଦୂରଦୃଷ୍ଟି ଓ ଆନ୍ତରିକ ଭାରତ ହିତୈଷଣାକୁ ପ୍ରଶଂସା କରନ୍ତି, ଯଦିଓ ଜାଣନ୍ତି ଯେ ଏ ଭାରତହିତୈଷଣା ସମ୍ପୂର୍ଣ୍ଣ ସ୍ୱାର୍ଥ ବୁଦ୍ଧି ସମ୍ପର୍କ-ଶୂନ୍ୟ ନୁହେଁ । ଭାରତର କଲ୍ୟାଣରେ ତ୍ରିପାଠୀଙ୍କର ଆନନ୍ଦ । ସେଇଥିପାଇଁ ସେ ସ୍ୱାଧୀନ ଭାରତର କଲ୍ୟାଣ ଓ ଉନ୍ନତି ପ୍ରତି ଉଦାସୀନ ଓ ଅନାଗ୍ରହୀ ହୋଇପାରିନାହାନ୍ତି । କଂଗ୍ରେସର ନେତା ଓ ନୀତିକୁ ସେ କେଉଁଠି ଶ୍ରଦ୍ଧା କରିପାରନ୍ତି ନାହିଁ, ବରଂ ବିଦ୍ରୂପ କରନ୍ତି ବେଶି । କଂଗ୍ରେସ ମଧ୍ୟ କେବେ ଭଲ ଲୋକ ଚାହିଁନ, ଭଲ ମଣିଷ ଚାହିଁନ, ଚାହିଁଛି ବରଂ ଟାଣୁଆ ଲୋକ, ଯାହାଙ୍କ ବ୍ୟକ୍ତିତ୍ୱ ଅନ୍ତରାଳରେ ଦେଶ ସେବା ଅପେକ୍ଷା

ଆତ୍ମସେବା କରିହେବ ଅଧିକ ସ୍ୱଚ୍ଛନ୍ଦରେ । ବିଶେଷତଃ 'ବଦଳି' ପ୍ରବନ୍ଧରେ କଂଗ୍ରେସ ଶାସନ ପ୍ରତି ସେ ବ୍ୟଙ୍ଗର ତର୍ଜ୍ଜମା ନିର୍ଦ୍ଦେଶ କରିଛନ୍ତି । ନେତାଏ ଦେଶର କଲ୍ୟାଣ ପ୍ରତି ଯଥାସମ୍ଭବ ଅନୁତ୍ସାହୀ, କେବଳ ନିଜର ସ୍ଥିତି ଓ ନିରାପତ୍ତା ପାଇଁ ଉଦ୍‌ବିଗ୍ନ । ସବୁଠି କାଳକ୍ଷେପଣ ନୀତି—"ମୋ ସମୟଟା, ମୋ ନୀତିଟା ସୁରୁଖୁରୁରେ ଚାଲିଯାଉ । ତାପରେ ଯାହା ହେବାର ହେବ । ମୁଁ ସାପଦାନ୍ତ ଗଢ଼ି ଯାଏ, ରକ୍ତବୀର୍ଯ୍ୟର ରକ୍ତ ବିଞ୍ଚିଯାଏ । ମୋ ପରେ ଯେବେ ସେ ଦାନ୍ତରୁ ଅଜସ୍ର ସାପ ଜନ୍ମି ସଂସାରକୁ କଲବଲ କରନ୍ତି, ସେ ରକ୍ତବିନ୍ଦୁରୁ ଯେବେ ଅଗଣନ୍ତି ଅସୁର ବାହାରି ମଣିଷ ସମାଜକୁ ପଦା କରି ଦେଇ ଯାଆନ୍ତି, ତାହାହେଲେ ସେ ହେବ ମୋ ଉତ୍ତରାଧିକାରୀଙ୍କ ଅଯୋଗ୍ୟପଣିଆ—ମୋ ବେଳଟା ତ ଶାନ୍ତିରେ ଯାଇଛି ।" ସବୁଠି ଚାଲିଥାଏ ଆପୁଡ଼ା ଆପୁଡ଼ି । କେବଳ କାଶ୍ମୀର ସମସ୍ୟାରେ ନୁହେଁ, ସାଧାରଣ ମଣିଷ ପ୍ରତି ଅନ୍ୟାୟ ଅବିଚାରର କ୍ଷେତ୍ରରେ ମଧ୍ୟ କଦଳୀ ଉପରେ ପଡ଼ି ଶତକଡ଼ା ୭୮ ଭାଗ ପାଣି ! ତେଣୁ ଦେଶ ଓ ଜାତି ଭାଗ୍ୟରେ ଭାସିଯିବାଟା ହିଁ ଅବଧାରିତ । (କଂଗ୍ରେସ ଦଳର ଶାସନକୁ କୁହାଯାଇଛି କଦଳୀ ଶାସନ) ତ୍ରିପାଠୀଙ୍କ ଦୂରଦୃଷ୍ଟି ଅବିସମ୍ବାଦିତ । କେବଳ କାଶ୍ମୀର କି ପଞ୍ଜାବରେ ନୁହେଁ, ସମଗ୍ର ଭାରତବର୍ଷରେ ଦୁରନ୍ତ ସାପ ଦୁର୍ଦ୍ଧର୍ଷ ରକ୍ତବୀର୍ଯ୍ୟ ଅସୁରଙ୍କ ଉପଦ୍ରବ କଥା କ'ଣ କାହାକୁ ଆଉ ବୁଝାଇ କହିବାକୁ ହେବ ? ସରକାରଙ୍କ ଋଣନୀତିକୁ ମଧ୍ୟ ସେ ଇଙ୍ଗିତ କରିଥିଲେ, "ଆନ୍ତର୍ଜାତିକ ଅର୍ଥନୀତିରେ ବଦାନ୍ୟତା ବୋଲି କିଛି ନାହିଁ, ଆମେ ପର ଧନ ଯେତିକି ଆଣି ଅପବ୍ୟୟ କରିବୁ, ଆମର ଅବସ୍ଥା ସେତିକି ସାଂଘାତିକ ହୋଇ ଉଠିବ ।" କିନ୍ତୁ କିଏ ଶୁଣିଛି ବିବେକର ପରାମର୍ଶ ? ଭାରତରେ ଗଣତନ୍ତ୍ରର ବିପର୍ଯ୍ୟୟ ଦେଖି ସେ ବ୍ୟଥିତ ହୋଇଛନ୍ତି, ନେତାଙ୍କ ପ୍ରତିକାରହୀନ ପ୍ରତାରଣା ଓ ପ୍ରବଞ୍ଚନାରେ ଆହତ ବି ହୋଇଛନ୍ତି ଯଥେଷ୍ଟ । ଦେଶ ଓ ଜାତିକୁ ଭଲପାଇଲେ କିଏ ପୁଣି ଭାରତରେ ଆହତ ନ ହେବ ? ହିଟଲରୀ ଜର୍ମାନୀ, ଷ୍ଟାଲିନୀ ରୁଷିଆ ଓ ମୁସୋଲିନୀ ଇଟାଲୀର ଦୁଃସ୍ଥିତିଠାରୁ ସ୍ୱାଧୀନ ଭାରତବର୍ଷର ଅବସ୍ଥା ବିଶେଷ ଭଲ ଥିଲା ବୋଲି ସେ କେବେ ଭାବିପାରିନାହାନ୍ତି । ବରଂ ସମାନ । ଏଠାରେ "ପ୍ରଜାର ଶାସନ ମାନେ ନେତାର ଖିଆଲ ପାଇଁ ପ୍ରଜାର ରୁଚି ବୈଶିଷ୍ଟ୍ୟ ଓ ସ୍ୱାଧୀନତାର ଶ୍ରାଦ୍ଧ, ଶାସନର ଉନ୍ନତି ପାଇଁ ପ୍ରଜାର ହିତ ଓ ମଙ୍ଗଳର ତିଳତର୍ପଣ, ଜଳତର୍ପଣ ଓ ଶେଷରେ ବିସର୍ଜନ । ଏ ତ ଡେମୋକ୍ରେସି ନୁହେଁ, ପ୍ରଜାତନ୍ତ୍ର, ନୁହେଁ, ବରଂ ଡେମନ୍‌କ୍ରାସି-ପ୍ରଜାମାରଣତନ୍ତ୍ର ବା ପ୍ରଜାଭୁଲାଣିଆ ମନ୍ତ୍ର ମାତ୍ର (ବିଟୁଆ) । ପ୍ରତିକାର କାହିଁ ? ଦିନୁଦିନ ଅବ୍ୟବସ୍ଥା ବଢ଼ିଛି, ସାଧାରଣ ଲୋକଙ୍କର ଦୁରବସ୍ଥା ଦେଖି ସେ ଦୁଃଖ ଭୋଗନ୍ତି, ପ୍ରବନ୍ଧରେ ବିକ୍ଷୁବ୍ଧ ଓ ଉତ୍ତେଜିତ ମନର ପରିଚୟ ଦିଅନ୍ତି । ଓଡ଼ିଶା ପ୍ରୀତି ତାଙ୍କର ଭାରତପ୍ରୀତିର ସ୍ଥାନିକ ସଂସ୍କରଣ ମାତ୍ର ନୁହେଁ ଆହୁରି ବେଶି କିଛି । ମହାଭାରତୀୟତା ଅବଶ୍ୟ ତାଙ୍କର ଲକ୍ଷ୍ୟ ଓ ସାଧନା; କିନ୍ତୁ ଓଡ଼ିଆ ଜାତିର ସ୍ୱାତନ୍ତ୍ର୍ୟରେ ମୁଗ୍ଧ ଓ ଆନନ୍ଦ, ଓଡ଼ିଆଙ୍କ ଉନ୍ନତିରେ ଉଲ୍ଲସିତ ଓ

ଉତ୍ତାପ । ଓଡ଼ିଆ ଜାତିର ଆତ୍ମରକ୍ଷା ଓ ସମ୍ମାନରକ୍ଷାରେ ମହାଭାରତୀୟତାର ସାଫଲ୍ୟ ନିହିତ ବୋଲି ସେ ବୁଝନ୍ତି, ସେଥିପାଇଁ ଓଡ଼ିଆଙ୍କୁ ସ୍ୱ ମହିମାରେ ପ୍ରତିଷ୍ଠିତ କରିବାକୁ ଚାହାନ୍ତି । କିନ୍ତୁ କେଉଁ ଓଡ଼ିଆ ସ୍ୱ ମହିମାରେ ପ୍ରତିଷ୍ଠିତ ହେବାକୁ ଚାହେଁ ? ଗୋପବନ୍ଧୁ କାହାନ୍ତି, ଆଦର୍ଶଟିଏ ହୋଇ ଉଭା ହେବେ ? ଆହ୍ୱାନଦେବେ ? ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତା ବି ଓଡ଼ିଆଙ୍କ ଜଡ଼ତା ଓ ଶିଥିଳତା ତଥା ମାନସିକ ଦୈନ୍ୟ ଦୂରକରି ପାରିନାହିଁ । ଆଗରୁ ଲୁହାଯାଇଛି ଓଡ଼ିଆଙ୍କ ଦାରିଦ୍ର୍ୟ, ଆଳସ୍ୟ, ନିଶ୍ଚେଷ୍ଟତା, ଅଜ୍ଞାନତା ଓ ଅସଭ୍ୟତାର କଥା । ପ୍ରକୃତରେ ଓଡ଼ିଆଙ୍କ ଆତ୍ମାବମାନନା ଓ ହୀନମନ୍ୟତା ପ୍ରବାଦ ହୋଇଉଠିଛି । ଅଣଓଡ଼ିଆ ଏ ଓଡ଼ିଶାରେ ହିରୋ, ଓଡ଼ିଆଏ କିନ୍ତୁ ଘରେ ବାହାରେ ସବୁଠି କୁଲି ମଜୁରିଆ ମାତ୍ର ନୁହନ୍ତି, ଅବଜ୍ଞା ଓ ଅବହେଳାର ପାତ୍ର । ଓଡ଼ିଆଙ୍କ ଭାବମୂର୍ତ୍ତି ଦେଖନ୍ତୁ ।

(କ) ଧର ଏ ଯେପରି ମୁଁ ଜଣେ ଓଡ଼ିଆ, ମୋତେ ଜଣେ ବଙ୍ଗାଳୀ ବା ବିହାରୀ ଭାଇ ଆସି ଦି ଜୋତା ମାରଦେଇଗଲା, ତାହାହେଲେ ମୁଁ ମାନିବି କଥା ଯେ ମୁଁ ମାଡ଼ଖାଇଛି ବୋଲି ? କରିଛଟା ଯେତେବେଳେ 'ମୁଁ'ମସ୍ତ ସେତେବେଳେ ମୋତେ ଆଉ କଏ ମାରିପାରେ ? (ଅସ୍ତିନାସ୍ତି)

(ଖ) ଏ ଓଡ଼ିଆ ଭେଡ଼ା କରିବେ କଣ ? ଚୋଟି ଚପିଲେ ଖାଲି ଭେଁ ଭେଁ ହେବା ଛଡ଼ା ସ୍ୱାଙ୍କ ଦ୍ୱାରା ହେବ କ'ଣ ? (ବୋମା-୧)

(ଗ) ଭାରତବର୍ଷ ତମାମ ଜାଣନ୍ତି ଯେ ଆମେ ଅଣଯୋଦ୍ଧା ଜାତି, ଆମେ ଖାଲି ମରି ଜାଣୁ, ଗୋଇଠା ଖାଇ ଜାଣୁ, ଯେ ଟାଣୁଆ ହେଲା ତା ପାଖରେ ପିଠି ଦେଖାଇ ଜାଣୁ । × × × ଆମେ ଖାଲି ଅଣଯୋଦ୍ଧା ନୋହୁଁ, ଆମେ ବିଲକୁଲ ମାଇଗୁଲିଆ ଦୁଃଖେଇ ସାହୁ (ମାଇପ ହାତରୁ କହୁଣି ଖାଉ)— ଆମେ ଦୁଃଖେଇ ସାହୁଠାରୁ ଆହୁରି ହୀନ, କାହିଁକି ନା ଆମେ ପର ମାଇପ ଠାରୁ ଯେଉଁ କହୁଣୀରେ ମାଡ଼ ଖାଉ ସେହି କହୁଣୀକୁ ପୁଣି ଛାତି ଗର୍ବ ଓ ଆନନ୍ଦ ଅନୁଭବ କରୁ । (ବୋମା-୧)

ଓଡ଼ିଆଏ କେବଳ ଏପରି ଅହିଂସ ଓ ସନ୍ତୁଷ୍ଟ ନୁହନ୍ତି, ବଡ଼ ଉଦାର ବି ! ଗୋବିନ୍ଦ ତ୍ରିପାଠୀ 'ଆମ୍ଭ' ପ୍ରବନ୍ଧରେ ଓଡ଼ିଆଙ୍କ ସ୍ୱାର୍ଥହୀନ ଉଦାରତାର ଚମତ୍କାର ଚିତ୍ର ଆଙ୍କିଛନ୍ତି, "ଏ ଓଡ଼ିଶାକୁ ଯେ ଆସିଲା, ଓଡ଼ିଆ ତାକୁ ଡାକଆଣି ନିଜ ଘରେ ବସେଇଲା । ସାପ ହେଲେ ଅଣ୍ଟିଜ ଆସ, ନେଉଳ ହେଲେ ମଧ୍ୟ ଅଣ୍ଟିକ ଆସ । ତା ଅଣ୍ଟିରେ ସାପନେଉଳ ଏକାଠି ବସିଗଲେ ତାଙ୍କ ଜନ୍ମଗତ ଶତ୍ରୁତା ଭୁଲିଯାଉଛନ୍ତି । ସାପ କାମୁଡ଼ୁଛି ଓଡ଼ିଆକୁ—ନେଉଳ ମଧ୍ୟ କାମୁଡ଼ୁଛି ସେଇ ଓଡ଼ିଆକୁ । ସମସ୍ତେ ତାକୁ ମାରୁଛନ୍ତି କାମୁଡ଼ୁଛନ୍ତି, ତଥାପି ସେ କହୁଛି ଆମର ।" ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଡ଼ୁଛନ୍ତି ତ୍ରିପାଠୀ ମହୋଦୟ : ଅଦ୍ଭୁତ ଏ ଓଡ଼ିଆଙ୍କ ଶିଥିଳ ମନୋଗତି ! ବିଚିତ୍ର ଏ ନପୁଂସକ

ସହିଷ୍ଣୁତା ଓ ଅନୁଚିତ ଉଦାରତା ! ଓଡ଼ିଆଏ ମିଛକୁ ବିଶ୍ୱମୈତ୍ରୀରେ ଘାରି ହୁଅନ୍ତି; ତାଙ୍କ ଭାରତବ୍ୟାପୀ ବାହାଦୁରିକୁ ସେ ପ୍ରଶଂସା ନକରି ରହିପାରି ନାହାନ୍ତି ! ଓଡ଼ିଆଙ୍କର ବିଶ୍ୱାସ, "ବିଶ୍ୱସଂସାର ଗୋଟାଏ, ଆମେ ସମସ୍ତେ ବିଶ୍ୱବାସୀ । ଆମର ପ୍ରଥମ କର୍ତ୍ତବ୍ୟ ବିଶ୍ୱଲାଗି, ଭାରତ ଲାଗି ନୁହେଁ । ଚୀନ୍ ଯେବେ ଭାରତରୁ ଖଣ୍ଡେ ନିଏ, ତାହେଲେ ଆମେ ତା ଲାଗି ଲଢିବାକୁ ଯିବୁ, ଚୀନର ସପକ୍ଷରେ ଓ ଭାରତର ବିପକ୍ଷରେ, ପାକିସ୍ଥାନ ଯେବେ ଲଦାଖ୍ ଅଞ୍ଚଳଟା ଚାହେଁ, ତାହାହେଲେ ଆମେ ନେହେରୁଙ୍କ ସଙ୍ଗେ କଳି କରିଯିବୁ ପାକିସ୍ଥାନ ସପକ୍ଷରେ । କାରଣ ଓଡ଼ିଆଙ୍କର ଏହି ଅମର ଗୁଣଟା ଭାରତ ବ୍ୟାପି ଗଲାଣି । ଓଡ଼ିଆର ଏଇତ ବାହାଦୁରି (ଅମ୍ଭ ! ବିଶ୍ୱବାସୀ ଓଡ଼ିଆଙ୍କ ଜଗନ୍ନାଥୀ ମୈତ୍ରୀଯୋଗୁ ଓଡ଼ିଶାରୁ ସିଂହଭୂମି ଗଲା, ଷଢ଼େଇକଳା ଓ ଖରସୁଆଁ ଗଲା । ମୟୂରଭଞ୍ଜ ମଧ୍ୟ ସେଦିନ ଓଡ଼ିଶାକୁ ଆସି ନ ଥାନ୍ତା । ତ୍ରିପାଠୀଏ ତାଙ୍କର ଏକ ପ୍ରବନ୍ଧ 'ଗଡ଼ଜାତ ମିଶ୍ରଣ'ରେ ଏଥିପାଇଁ ଆମ କର୍ତ୍ତୃତ୍ୱହୀନ ନେତାଙ୍କ ଅପ୍ରସ୍ତୁତତାକୁ ଆଘାତ କରିଛନ୍ତି । ପ୍ରକୃତରେ ଗଡ଼ଜାତ ମିଶ୍ରଣ କେନ୍ଦ୍ର ସରକାରଙ୍କ ମହାଭାରତୀୟ ଏକ ନୀତିର ଫଳ । ଆମ ମନ୍ତ୍ରୀମଣ୍ଡଳ ବରଂ ପ୍ରସ୍ତୁତ ନ ଥିଲେ । ସେଥିପାଇଁ ଶେଷ ମୁହୂର୍ତ୍ତରେ କିଛି ଉଦ୍ୟମ କରି ଅବଧାରିତ ଭାବରେ ବ୍ୟର୍ଥ ହେଲେ । ଓଡ଼ିଶା ବହୁ ଅଂଶ ହରାଇଲା, ଅଥଚ ମନ୍ତ୍ରୀମଣ୍ଡଳ ମିଛକୁ ବାହାଦୁରି ନେଲେ । କଂଗ୍ରେସବାଲା ନିଜ ଡେଙ୍ଗୁରା ନିଜେ ବାଡ଼େଇଲେ । ଡଃ ହରେକୃଷ୍ଣ ମହତାବଙ୍କୁ ସେଥିପାଇଁ ହୁଏତ ଗୋବିନ୍ଦ ତ୍ରିପାଠୀ ଶ୍ରଦ୍ଧା କରିପାରନ୍ତି ନାହିଁ । 'ଉତ୍କଳ ଗର୍ଦ୍ଦଭ' ଶୀର୍ଷକ ରଚନାରେ ବିଦ୍ରୂପ କେଉଁଆଡ଼କୁ ସମୁଦ୍ୟତ ଅଛି, ତାହା କ'ଣ କାହାକୁ ବୁଝାଇ କହିବାକୁ ହେବ ? ଅନ୍ୟତ୍ର 'ତ୍ୱୟା ହରେକୃଷ୍ଣ ହୃଦିସ୍ଥିତେନ' ଆଉ ଲାଳକାଟିଏ ବି ଅଛି (ଧରମ ଧରମ) । ଓଡ଼ିଆଏ—ନେତା ଓ ଜନତା ସବୁ କଥାରେ ଏମିତି ଅପ୍ରସ୍ତୁତ । ଅଧିକନ୍ତୁ ତାଙ୍କର ଉତ୍କଟ ରାଜାନୁଗତ୍ୟ, ଆତ୍ମାଭିମାନଶୂନ୍ୟ ଉଦାରତା ଓ ଚିନ୍ତାହୀନ ପରଚୋପଡ଼ାଣିଆ ମନୋବିନ୍ୟାସ ତ୍ରିପାଠୀଙ୍କର ସବୁ ଚିନ୍ତାର କାରଣ । ଓଡ଼ିଆଏ କ'ଣ ଓଡ଼ିଆ ହେବେ ନାହିଁ ? ନିଜକୁ ଚିହ୍ନିବେ ନାହିଁ ? ଇତିହାସର ଆଲୋକରେ ଆତ୍ମଦର୍ଶନ କରିବେ ନାହିଁ ? ଉଚିତ ଅଭିମାନବଶତଃ ଭାରତବର୍ଷରେ ନିଜକୁ ଜାହିର୍ କରିପାରିବେ ନାହିଁ ? ବହୁତ ଆଶା ତ୍ରିପାଠୀଙ୍କର । କିନ୍ତୁ ଅଚରିତାର୍ଥତା ହିଁ ନିଯୁତି । ଏବେ ବି ବଞ୍ଚିଥିଲେ ସେ କ୍ଷୁବ୍ଧ ନ ହୋଇ ରହିପାରନ୍ତେ ନାହିଁ । ପରିସ୍ଥିତି କିଛି ବଦଳି ନାହିଁ । ଅଣଓଡ଼ିଆଏ ଓଡ଼ିଆ ଜାତି ଓ ଓଡ଼ିଆ ଭାଷାକୁ ଅବଜ୍ଞା କରି ଏବେ ବି ବଡ଼ ସ୍ୱଚ୍ଛନ୍ଦରେ ଅଛନ୍ତି, ଆଉ ଓଡ଼ିଆଏ ତାଙ୍କୁ ସ୍ତୁତି କରି କୃତାର୍ଥ ହେଉଛନ୍ତି । ଓଡ଼ିଶା ଓ ଓଡ଼ିଆ ଜାତି ସମ୍ବନ୍ଧରେ ସେ ଯେଉଁସବୁ ପ୍ରବନ୍ଧ ଲେଖିଛନ୍ତି, ସେଥିରେ କେବଳ ତାଙ୍କ ଲେଖନୀସୁଲଭ ଯୁକ୍ତି ଓ ତର୍କ ନାହିଁ, ଅଧିକନ୍ତୁ ଅଛି ମଧ୍ୟ ଦୃଢ଼ ନିବିଡ଼ ସ୍ୱଦେଶିକତା ଓ ଜୀବନ୍ତ ଜାତୀୟତାବୋଧ । 'ବଢ଼ୁଆ' ପ୍ରବନ୍ଧଟି ସ୍ମର୍ତ୍ତବ୍ୟ । ଏଥିରେ ସେ ଓଡ଼ିଆଙ୍କୁ କିଛି କମ୍ ଧାଳିଦେଇ ନାହାନ୍ତି । ଓଡ଼ିଆଙ୍କ ଆଖି—ଖୋଲ ବୁଝେଇବାର ଆଖି,

ବୁଦ୍ଧି—ଜାତିର ମସ୍ତ ଭୁଲ ବୁଦ୍ଧି ଓ ଶିକ୍ଷା—ପୋଷାଣୁଆର ଶିକ୍ଷା । ଆଜି ବଡ଼ଲୋକ—ପର ଲାଙ୍ଗୁଡ଼ଧରା ବଡ଼ଲୋକ । ସ୍ୱାଧୀନ ଚିନ୍ତା କି ମୌଳିକ ସୃଜନା କ'ଣ ତାହା ଓଡ଼ିଆଏ ଜାଣନ୍ତି ନାହିଁ । ଅଣପୁରୁଷିଆ ଓଡ଼ିଆଏ ମରଗତିଆଁ ଓ ଆଗଡ଼ିଆଁ—ତାଙ୍କ ଆଖିକୁ କାନକୁ ମୁଣ୍ଡକୁ ଓ ଅଣ୍ଟାକୁ ବିଚ୍ଛୁଆ ଅଳଡ଼ିଆ—ଖାଣ୍ଟି ଓଡ଼ିଆମି ଅପ୍ରୀତିକର ଓ ଯନ୍ତ୍ରଣା-ଦାୟକ । ତେଣୁ ପରିତ୍ୟାଜ୍ୟ । ଖାଣ୍ଟି ଓଡ଼ିଆମି ପ୍ରତି ଅଯତ୍ନଦୃଷ୍ଟି ଏହି ସବୁ ଓଡ଼ିଆଙ୍କୁ ପରମ ଶ୍ରଦ୍ଧାରେ ତ୍ରିପାଠୀ ମହୋଦୟ ବଙ୍ଗୋଡ଼ିଆ, ବିହାରୋଡ଼ିଆ ଓ ତେଲଙ୍ଗୋଡ଼ିଆ ବୋଲି ଅଭିହିତ କରିଛନ୍ତି—ବର୍ଣ୍ଣଶଙ୍କରବାବୁ ସେମାନେ । —ଏ ଗାଳି କିନ୍ତୁ ବିଦ୍ୱେଷ-ପ୍ରସୂତ ନୁହେଁ, ଗଭୀର ସ୍ନେହ ଓ ସହାନୁଭୂତିସଂଜାତ । ଏସବୁ ପ୍ରବନ୍ଧରେ ତାଙ୍କ ବିକ୍ଷୁବ୍ଧ ଓ ଉତ୍ତେଜିତ ମନର ପରିଚୟ ମିଳେ ଅବଶ୍ୟ, ତେବେ ତାଙ୍କର ଆଶାବିଶ୍ୱାସ କିଛି କମ୍ ନୁହେଁ । ଓଡ଼ିଆଏ କ'ଣ ନିଜକୁ ନିଜେ ଶ୍ରଦ୍ଧା କରି ପାରିବେ ନାହିଁ ? ଆତ୍ମବିଶ୍ୱାସ ଓ ଆତ୍ମସମ୍ମାନବୋଧ ଯୋଗେ ନିଜ ବାଟରେ ନିଜେ ଚାଲିପାରିବେ ନାହିଁ ? ଆତ୍ମଗ୍ଲାନି ଓ ହୀନମନ୍ୟତା ପରିହାରପୂର୍ବକ ନିଜ ଆତ୍ମପରିଚୟରେ ନିଜେ ସ୍ଫୀତ ହୋଇ ଉଠି ପାରିବେ ନାହିଁ ? ନିଜ ବାଟରେ ନିଜ ବିଚ୍ଛୁଆଟି ଧରି ନିଜ ଗୋଡ଼ରେ ଅଗ୍ରସର ହୋଇ ପାରିବେ ନାହିଁ ? ଆମ୍ଭେମାନେ ଯେବେ ନିଜ ବାଟରେ ନିଜ ଗୋଡ଼ରେ ଚାଲି ଲକ୍ଷ୍ୟ ସ୍ଥାନରେ ନ ପହଞ୍ଚି ପାରିଲେ ବି ଜାତିର ଗୌରବ ଓ ଦେଶର ଉନ୍ନତି । ଓଡ଼ିଆଏ ତାହା ବୁଝିବାକୁ ଅକ୍ଷମ ହୋଇଥିବାରୁ ତାଙ୍କର ଅନେକ କ୍ଷୋଭ ଓ ଆକ୍ଷେପ । ଠାଏ ସେ ଡାକି କହିଛନ୍ତି, "ଆତ୍ମସମ୍ମାନ ନ ଆସିଲେ ଜାତି ବା ବ୍ୟକ୍ତି ଗଢ଼ି ଉଠିପାରେ ନାହିଁ, ପର ଉପରେ ନିର୍ଭର କରି ଯେ ଚଳେ ତାର ଆତ୍ମସମ୍ମାନ ଆସିପାରେ ନାହିଁ, ସେ ପରପାଖରେ ସବୁବେଳେ ନିଜକୁ ଶ୍ରେଷ୍ଠ ବୋଲି ମନେକରିବେ, ପରେ ଯେତେ ଗାଲୁ ଭୁରୁଡ଼ି ମାରୁ ପଛେ" (ମଣିଷ ଦେବତା) । ଓଡ଼ିଆ ଜାତିକୁ ସ୍ୱମହିମାରେ ପ୍ରତିଷ୍ଠିତ କରିବା ତାଙ୍କର ଉଦ୍ଦେଶ୍ୟ । ଘୁମନ୍ତ ଓ ବିଭ୍ରାନ୍ତ ଜାତିକୁ ସେ ଜାଗ୍ରତ କରିବାକୁ ଆଘାତ କରନ୍ତି, ନିଜେ ମଧ୍ୟ ଆହତ ହୁଅନ୍ତି । ଶେଷ ପର୍ଯ୍ୟନ୍ତ ଅବଶ୍ୟ ସେ ବିଶ୍ୱାସ ହରାଇନାହାନ୍ତି, ଓଡ଼ିଆ ଜାତି ବଞ୍ଚିବ, ସ୍ୱମହିମାରେ ବଞ୍ଚିବ—"ଏ ଜାତି ଦୁର୍ବଳ ନୁହେଁ । ଆଜି ଏ ଦୁର୍ଦ୍ଦିନରେ ପଡ଼ିଛି । କିନ୍ତୁ ବଡ଼ ମାଛର କଣ୍ଟା ସାର । ସାର ଏଇ ଖଣ୍ଡିଆଦଣ୍ଡିଆ କଣ୍ଟା କଙ୍କାଳରେ ବର୍ତ୍ତମାନ ମଧ୍ୟ ଏତେ ସାର ଅଛି ଯେ ଲେଖି ପଡ଼ିଶାଙ୍କର ଓ ଘରର କୁହୁକଭିଗ କେତେ ଲୋକଙ୍କର ହଜାର ଚେଷ୍ଟା ଏ ସାରକୁ ଅସାର କରିପାରିବ ନାହିଁ" (ହେନାଗୁଡ଼ି) । ବାହାର ମାଡ଼ ଓ ଘରମାଡ଼ ଖାଇ ବିଚ୍ଛୁଆ ବଙ୍ଗୋପସାଗରରେ ବୁଡ଼ି ମରିବ ନାହିଁ । ପୂର୍ବ ଦିଗ୍‌ବଳୟପଟକୁ ଗର୍ବ ଗୌରବରେ ରାଗରଞ୍ଜିତ କରି ଯଥାଶୀଘ୍ର ଉଇଁବ ହିଁ ଉଇଁବ । ଓଡ଼ିଆ ବୋଲି ଓଡ଼ିଆଏ ଅବଶ୍ୟ ଗର୍ବବୋଧ କରିବେ । ସୁଦିନ ଅବଶ୍ୟ ପ୍ରସ୍ତୁତ ।

**ବିଶ୍ୱଚିନ୍ତା :**

ଗୋବିନ୍ଦ ତ୍ରିପାଠୀ କେବଳ ଓଡ଼ିଶାର କି ଭାରତରେ ନାଗରିକ ନ ଥିଲେ, ସେ ମଧ୍ୟ ବିଂଶ ଶତାବ୍ଦୀର ବିଶ୍ୱର ଅଧିବାସୀ ଥିଲେ । ଅଧିକନ୍ତୁ, ସେ କେବଳ ବିଶ୍ୱର ଇତିହାସ, ପୁରାଣ କି ସାହିତ୍ୟ ସମ୍ପର୍କରେ ସଚେତନ ନ ଥିଲେ, ସେ ମଧ୍ୟ ସମକାଳୀନ ବିଶ୍ୱ ରାଜନୀତି ପ୍ରେକ୍ଷ ବେଶ୍ ଚିନ୍ତିତ ଥିଲେ । ସାମ୍ୟବାଦ, ଗଣତାନ୍ତ୍ରିକ ସମାଜବାଦ, ସାଧାରଣ ତନ୍ତ୍ର, ଗଣତନ୍ତ୍ର ଏବଂ ଏକଛତ୍ର ରାଜୁତିଠାରୁ ଆରମ୍ଭ କରି ଅଖଣ୍ଡ ରାଜୁତି ଓ ସୀମାବଦ୍ଧ ରାଜୁତି ପର୍ଯ୍ୟନ୍ତ ସବୁ ପ୍ରକାର ଶାସନ ପଦ୍ଧତିକୁ ସେ ଲକ୍ଷ୍ୟ କରିଛନ୍ତି । ସବୁଠି ଅତ୍ୟାଚାର, ଅନାଚାର ଓ ଅରାଜକତା ବଳବତ୍ତର । ସେ ଅବଶ୍ୟ ଅନେକଙ୍କ ମୁସୋଲିନ୍, ହିଟଲର ଓ ଷ୍ଟାଲିନ୍‌ଙ୍କ ଶାସନକୁ କୁତ୍ସା କରିଛନ୍ତି, ଏମାନେ ଜାତି ନାମରେ ଓ ରାଜ୍ୟ ନାମରେ ବ୍ୟକ୍ତିଗତ ସ୍ୱାଧୀନତାକୁ ସିଧା ଗିଳି ପକାଇଛନ୍ତି । ତେବେ ଆମେରିକା, ଇଂଲଣ୍ଡ ଓ ଭାରତର ଗଣତନ୍ତ୍ରରେ କ'ଣ ବ୍ୟକ୍ତିଗତ ସ୍ୱାଧୀନତା ସୁରକ୍ଷିତ ଅଛି ? ସେ ସ୍ପଷ୍ଟ କହିଛନ୍ତି ପ୍ରଚଳିତ ଶାସନ ମାତ୍ରକେ ଖରାପ । "ରାଜ୍ୟ ନାଁରେ ବ୍ୟକ୍ତିର ସ୍ୱାଚ୍ଛନ୍ଦ୍ୟରେ ହାତ ଦେବା, ଅଥବା ବ୍ୟକ୍ତିବିଶେଷର ଖୁସି ଅନୁସାରେ ରାଜ୍ୟ ଚଳେଇବା—ଉଭୟ ଏକା କଥା" (ଆକାଶ କହିଁଆ) । ଗଣତନ୍ତ୍ର ଦଳ ବଳରେ ବ୍ୟକ୍ତିବିଶେଷକୁ ଏକଛତ୍ରବାଦୀ କରିଦିଏ । ପୁଣ୍ଡି ସ୍ୱାଧୀନ ଇଂଲଣ୍ଡର ଚର୍ଚ୍ଚିଲ, ଆମେରିକାର ରୁଜଭେଲଟ୍, ଆୟାରଲଣ୍ଡର ଡି. ଭାଲେର କି ଅର୍ଦ୍ଧସ୍ୱାଧୀନ ଭାରତର ନେହେରୁ—କେହି ଏହି ଅପବାଦରୁ ମୁକ୍ତ ନୁହନ୍ତି । ପ୍ରତିକାର କ'ଣ ? ପ୍ରକୃତରେ ସବୁ ପ୍ରକାର ଶାସନରେ ପରାଧୀନତାର ଗନ୍ଧ ଅଛି; ଶାରୀରିକ ହେଉ ମାନସିକ ହେଉ କି ନୈତିକ ହେଉ କୌଣସି ନା କୌଣସି ସ୍ତରରେ ଅବଶ୍ୟ ଚାପଣି ଓ ଦବାଣି ଅଛି । ତେବେ ଅରାଜକତା ନିଃଶ୍ରେୟସ ନୁହେଁ; ବରଂ ଅରାଜକତାର ଏକମାତ୍ର ପରିଣତି ହେଉଛି ଏକଛତ୍ର ରାଜୁତି । ଶ୍ରୀ ତ୍ରିପାଠୀଙ୍କ ମତରେ "ପ୍ରକୃତ ରାଷ୍ଟ୍ରବାଦ ସେହି, ଯେଉଁଥିରେ ମୋର ବ୍ୟକ୍ତିଗତ ସ୍ୱାଧୀନତା ବଜାୟ ରହିବ, ଅଥଚ ମୁଁ ସମାଜ ବା ଜାତିର ଜଣେ ହୋଇ ରହିବି" (ଆକାଶ କହିଁଆ) । କିପରି ଏ ରାଷ୍ଟ୍ରବାଦ ସମ୍ଭବପର ହେବ ? ସେ ପରାମର୍ଶ ଦେଇଛନ୍ତି, "ପୃଥିବୀରେ ବ୍ୟକ୍ତିଗତ ସ୍ୱାଧୀନତା ଓ ଗୁରୁତ୍ୱ ଆଣିବାର ଏକମାତ୍ର ପନ୍ଥା—ଏଇ ଦଶ ଜଣଙ୍କ ହାତରୁ—ସେ ସାମ୍ୟବାଦୀ ଦଶ ହୁଅନ୍ତୁ ଅଥବା ରାଷ୍ଟ୍ରବାଦୀ ଦଶ ହୁଅନ୍ତୁ—ଅଧିକାର କାଢ଼ି ନେଇ ପ୍ରତ୍ୟେକ ମଫସଲ ଗାଁ ଓ ସହରର ଲୋକଙ୍କ ହାତରେ ଦେଇ ଦେବା—ଆଉ ତାର ଉପାସ୍ୟ ସହର ରାଜୁତି ଭାଙ୍ଗିବା ।" ଶାସନର କ୍ଷମତା ଯେତିକି ଲୋକମାନଙ୍କ ଭିତରେ ସାରା ଦେଶରେ ବାଣ୍ଟି ହୋଇଯିବ, ଲୋକଙ୍କର ସ୍ୱାଧୀନତା ସେତିକି ବଢ଼ିବ । ଗ୍ରାମ ପଞ୍ଚାୟତର ଶାସନ ଆରମ୍ଭ ହେବ, ବିଶ୍ୱପଞ୍ଚାୟତ ସଭାରେ ତାହା ପୂର୍ଣ୍ଣତା ପାଇବ । ବିଶ୍ୱପଞ୍ଚାୟତ ସଭା ସେଦିନର ନପୁଂସକ League of Nations ପରି ଯେପରି ନ ହୁଏ, ସେଥିପ୍ରତି ଦୃଷ୍ଟି ରଖିବାକୁ ହେବ । ପୃଥିବୀର ସୈନ୍ୟ-

ଶକ୍ତିର ସ୍ୱର ଏବଂ ଜାତିସଂଘ ସଭା (U.N.O.) ଉପରେ ରହିବ, କୌଣସି ଜାତି ଏଇ ସୈନ୍ୟ ଛଡ଼ା ଅନ୍ୟ ସୈନ୍ୟ ରଖିପାରିବେ ନାହିଁ । ଇତ୍ୟାଦି ଇତ୍ୟାଦି । ବ୍ୟକ୍ତି ନିଜର ଗୁରୁତ୍ୱ ଓ ବ୍ୟକ୍ତିତ୍ୱ ଅନୁଭବ କରିବ, ଯୁଦ୍ଧର ଅବସାନ ଘଟିବ । ଅର୍ଥତନ୍ତ୍ର ଜାତିଅଭିମାନ ଓ ଈର୍ଷା କି ନେତାଙ୍କ ଅହଙ୍କାର ବା ଆତ୍ମବଡ଼ିମା ଯୋଗୁ ହିଁ ଯୁଦ୍ଧ ହୁଏ । ଯୁଦ୍ଧ ତ ଏକଛତ୍ରବାଦର ବସ୍ତୁବା କୌଶଳ । ନେତାଏ କ'ଣ ଯୁଦ୍ଧର ଅବସାନ ଘଟାଇବାକୁ ଚାହିଁବେ ? ନେତାଙ୍କ ମନ, ଆଖି ଓ ହୃଦୟର ସ୍ୱାସ୍ଥ୍ୟରକ୍ଷା କରିବାକୁ ସେ ପ୍ରସ୍ତାବ ବାଢ଼ିଛନ୍ତି, ( କଂସାରୀ ଘରର ପାରା ପ୍ରବନ୍ଧ ଦ୍ରଷ୍ଟବ୍ୟ ) । ନଚେତ ସେମାନେ ଉପରେ ଶାନ୍ତିର କଥା କହୁଥିବେ ଓ ମନରେ ମାରଣମନ୍ତ୍ର ଘୋଷୁଥିବେ । ଏପରି ପରିକଳ୍ପନା କ୍ଷେତ୍ରରେ ତ୍ରିପାଠୀ ମହୋଦୟ ବର୍ଟ୍ରାଣ୍ଡ ରସେଲଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଛନ୍ତି । ରସେଲ ବିଶ୍ୱତନ୍ତ୍ର ଓ ବ୍ୟକ୍ତି ସ୍ୱାଧୀନତା ଯେଉଁ ଅନୁଭବରେ ହୋଇଥାନ୍ତି, ସମଷ୍ଟିର ନାମରେ ବ୍ୟକ୍ତିର ମର୍ଯ୍ୟାଦାକୁ ଅବମାନିତ କରିବା କି ଅଗ୍ରାହ୍ୟ କରିବାଟାକୁ ଏକଚଛତ୍ରବାଦ ନାମ ଦେଇଥାନ୍ତି । ତୃତୀୟ ବ୍ୟକ୍ତିର ମହତ୍ତ୍ୱରେ ବିଶ୍ୱାସୀ । କୌଣସି ଜାତି ବ୍ୟକ୍ତିର ମହତ୍ତ୍ୱକୁ ଦଳି ଉଠିପାରିନାହିଁ, ପାରିବ ନାହିଁ । ସୋଭିଏଟ୍ ରୁଷିଆ ସମ୍ବନ୍ଧରେ ସେମାନଙ୍କ ଭବିଷ୍ୟତବାଣୀ ଏବେ ଫଳିଛି ।

**ସମାଜତନ୍ତ୍ର :**

ଶାସ୍ତ୍ରଶାସିତ ପ୍ରଚଳିତ ସମାଜ ବ୍ୟବସ୍ଥାକୁ ଶ୍ରୀ ତ୍ରିପାଠୀ ଶ୍ରଦ୍ଧା କରିପାରନ୍ତି ନାହିଁ, ଯାହା ନାହିଁ ତାହାକୁ ଶାସ୍ତ୍ର ଦ୍ୱାହି ଦେଇ ଅଛି ବୋଲି ଭାବନ୍ତି ନାହିଁ । ପୁତ୍ରକନ୍ୟାଙ୍କର ପିତାମାତାଙ୍କୁ ଦେବତାଜ୍ଞାନ କରିବା ଉଚିତ, ପିତୃଦେବ ହେବା କି ମାତୃଦେବ ହେବା ବିଧେୟ । ପିତରଃ ପ୍ରୀତିମାପନ୍ନେ ପ୍ରିୟନ୍ତେ ସର୍ବଦେବତା—ତ୍ରିପାଠୀଙ୍କର ଏପରି ଶାସ୍ତ୍ର ନିର୍ଦ୍ଦେଶ ପ୍ରତି କୌଣସି ସମ୍ମାନବୋଧ ନାହିଁ । ବାପ ମା କାହିଁକି ପୁଅଝିଅଙ୍କର ଦେବତା ବନିଯିବେ ? ବାପା ମାଙ୍କ ପ୍ରତି ସେମାନେ କୃତଜ୍ଞ ରହିବେ ? କେହି ଜନ୍ମ ହେବାକୁ ତାଙ୍କୁ ଅନୁରୋଧ କରିଥିଲା କି ? ବଡ଼ ଅସ୍ୱାଭାବିକ ପ୍ରଶ୍ନ ଅଥଚ ବଡ଼ ଯୁକ୍ତିସଙ୍ଗତ । ଯାହା ଯୁକ୍ତିନିଷ୍ଠ ତାହା ହିଁ ସତ୍ୟ । ସେ ତାଙ୍କ 'ଟୋକା ଓ ବୁଢ଼ା' ପ୍ରବନ୍ଧରେ ଆମର ଏହି ଯେତେନ୍ତ ଧ୍ୟାନଧାରଣାକୁ ମୌଳିକ ପ୍ରଶ୍ନ କେତୋଟି ଉତ୍ଥାପନ କରି ସମ୍ପୂର୍ଣ୍ଣ ଧୂଳିସାତ୍ କରି ଦେଇଛନ୍ତି । ଶାସ୍ତ୍ରର ଦେବତାଗୁଡ଼ିକ ବାସ୍ତବରେ ଗୋଟିଏ ଗୋଟିଏ ଗୋବର କଣ୍ଢେଇ —ତାଚ୍ଛଲ୍ୟ ଓ ଅନାଦରର ପାତ୍ର ମାତ୍ର । ତେଣୁ ଯେବେ ବାପମାଆମାନେ ପିଲାମାନଙ୍କ ଭକ୍ତି ଓ ଶ୍ରଦ୍ଧା ପ୍ରତ୍ୟାଶା କରନ୍ତି ତେବେ ସେମାନଙ୍କୁ କାର୍ଯ୍ୟ, ଚରିତ୍ର, ବ୍ୟବହାର ଓ ତ୍ୟାଗ ଦ୍ୱାରା ତାଙ୍କ ମନରେ ନିଜର ଅନ୍ତର୍ନିହିତ ଦେବତ୍ୱ ସମ୍ପର୍କରେ ସ୍ପଷ୍ଟ ପ୍ରମାଣ ପକାନ୍ତୁ । ସେମାନେ ଯେବେ ପିଲାମାନଙ୍କ ସହଯୋଗ ଓ ସହାନୁଭୂତି ଚାହାନ୍ତି, ତେବେ ଶାସ୍ତ୍ରର ଲେଖାକଥାଗୁଡ଼ିକୁ ଭୁଲି ଦେବତ୍ୱର ଛଳନା ଛାଡ଼ନ୍ତୁ । ରକ୍ତମାଂସର ମଣିଷ

ବୋଲି ସଚେତନ ରହନ୍ତୁ, ନିସ୍ୱାର୍ଥ ତ୍ୟାଗ ଓ ସଦସ୍ତ୍ୱର ନିୟମ ମାନନ୍ତୁ । ଏହି ଦୃଷ୍ଟିରୁ ସେ ଶ୍ରୀରାମଙ୍କ ପିତୃଭକ୍ତିକୁ ଘୃଣା କରନ୍ତି, ତାଙ୍କର ପିତୃସତ୍ୟପାଳନ ଗୋଟାଏ ଛଳନା ମାତ୍ର । ଦଶରଥ ଜ'ଣ ଦେବତାଟିଏ ? ସମାଜର ବନ୍ଧନ ଓ କୁଟୁମ୍ବର କର୍ତ୍ତାଙ୍କୁ ମାନିବା ଉଚିତ ନିଶ୍ଚୟ, କିନ୍ତୁ ଗୋଟାଏ ଧରାବନ୍ଧା ନିୟମର ବଶବର୍ତ୍ତୀ ହୋଇ ଏହା କରିବା ଅବିଧେୟ । ବୃଦ୍ଧ ଓ ଯୁବକର ସହଯୋଗ ଓ ସମ୍ମେଳନ ଶାସ୍ତ୍ର କଥାରେ ଆଉ ସମ୍ଭବପର ନୁହେଁ । ଶାସ୍ତ୍ରକାର ରାଜାଙ୍କ ଦଲାଲ, କୁଟୁମ୍ବର ଜରାଜୀର୍ଣ୍ଣ କର୍ତ୍ତାଙ୍କର ଓକିଲ । ଅଧିକାଂଶ ଶାସ୍ତ୍ରକାର ବି ବୁଢ଼ା । ଯୁକ୍ତ କରାଯାଏ ଅଭିଜ୍ଞତା ଅନୁଭୂତିସମ୍ପନ୍ନ ବୁଢ଼ାଙ୍କ ଦ୍ୱାରା ସମାଜ ଓ ଶାସନଚାଳିତ ହେବା ସମୀଚୀନ—କିନ୍ତୁ ତ୍ରିପାଠୀଏ କହନ୍ତି ସମାଜ ଓ ଶାସନରେ ପଚାଶ ବର୍ଷରୁ ଊର୍ଦ୍ଧ୍ୱ ବୟସ୍କା ବୁଢ଼ାଙ୍କୁ ରଖିବା ଉଚିତ ନୁହେଁ; ବୁଦ୍ଧି ଓ ଶରୀର ତାଙ୍କର କେବଳ ସ୍ଥିତିସ୍ଥାପକତା ହରାଏ ନାହିଁ, ଅଧିକନ୍ତୁ ଟାଣ ଓ ପଥୁରିଆ ହୋଇଯାଇଥାଏ । ବୁଢ଼ାମାନଙ୍କ ଶାସନରେ ତୀବ୍ର ବିଷ ସବୁଠିଁ; ଯେ ବେଶିଦିନ ବଞ୍ଚେ, ସେ ସେତେ ରୁଚିଅରୁଚି, ଇଚ୍ଛାଅନିଚ୍ଛା, ସ୍ନେହ ଶତ୍ରୁତାର ଜାଲରେ ବାନ୍ଧି ହୋଇଯାଏ । ତାର ମିତ୍ର ଅନେକ, ଶତ୍ରୁ ବି ଅନେକ । ସେ ସତ୍ୟରୁ ସତ୍ୟ ବୋଲି ଦେଖିବ କପରି ? ଯୁବକର ବୁଦ୍ଧି ଓ ଶରୀର ଅପରିପକ୍ୱ ହୋଇପାରେ, କିନ୍ତୁ ସଦ୍ୟ ଓ ସତେଜ ଥାଏ । ତାହା ଏକ ପକ୍ଷରେ ଯେପରି ଇସ୍ପାତ୍ ପରି କଠିନ, ଅନ୍ୟପକ୍ଷରେ ସେପରି ଲହୁଣି ପରି କୋମଳ ହୋଇପାରେ । ଏହି ସ୍ଥିତିସ୍ଥାପକତା ଶାସନ ପରିଚାଳନା ଲାଗି ଅପରିହାର୍ଯ୍ୟ । ଶାସ୍ତ୍ରକୁ ଜୀବନରେ ଏତେ ଗୁରୁତ୍ୱ ଦେଉଥିବା ବୁଢ଼ାମାନେ ଶାସ୍ତ୍ରର ବାନପ୍ରସ୍ଥ ଓ ଯତିବ୍ରତ କଥାକୁ ଭୁଲିବା ଉଚିତ ନୁହେଁ । ପଚାଶରୁ ଊର୍ଦ୍ଧ୍ୱ ବୟସର ଲୋକଙ୍କ ପାଇଁ ବାନପ୍ରସ୍ଥ ଓ ଯତିବ୍ରତ ପ୍ରଶସ୍ତ । ଖାଲି ଅଧିକାର ଲୋଭରେ ସେମାନେ ଏ ସଂସାରର ଜଞ୍ଜାଳରେ ଜଳିପୋଡ଼ି ନ ମରନ୍ତୁ କି ଅନ୍ୟକୁ ଜଳାଇ ପୋଡ଼ାଇ ମାରନ୍ତୁ ନାହିଁ । ସବୁ ଅପକର୍ମ ବୁଢ଼ାଙ୍କର । ସେଥିପାଇଁ ପ୍ରାଚୀନ ସ୍ପାର୍ଟାରେ ସେମାନଙ୍କୁ ମାରି-ଦେବାର ବ୍ୟବସ୍ଥା ଥିଲା । ତେବେ ସେମାନେ ବଞ୍ଚି ରହିପାରନ୍ତି; ହୁକୁମଦାତା ଭାବରେ ନୁହେଁ, କେବଳ ପରାମର୍ଶଦାତା ଭାବରେ । ପରାମର୍ଶ ମାନିବା ନମାନିବା ଅଧିକାର କିନ୍ତୁ ଯୁବକର । ଆଜି ତ ସବୁଠିଁ ବୁଢ଼ାଙ୍କର ପ୍ରତିପତ୍ତି, ଏଥିରେ ସୁଶାସନ କି ସୁବ୍ୟବସ୍ଥା ପ୍ରତ୍ୟାଶା ବିଡ଼ମ୍ବିତ ହେବ ହିଁ ହେବ । 'ଟୋକା ଓ ବୁଢ଼ା' ପ୍ରବନ୍ଧ ଅପେକ୍ଷା 'କାନୁନ୍ନି ବେଶ୍ୟା' ପ୍ରବନ୍ଧରେ ତ୍ରିପାଠୀ ମହୋଦୟ ଏକ ପକ୍ଷରେ ଯେପରି ଆହୁରି ବେଶି ପରିହାସ-ପଟୁ, ଅନ୍ୟ ପକ୍ଷରେ ସେପରି ଆହୁରି ବେଶି କଠୋର ଓ ନିର୍ମମ ସମ୍ପାର୍କ୍ତା । ଏଥିରେ ସେ ନାଟ୍ୟକାର ବର୍ଣ୍ଣାର୍ଡ ଶ'ଙ୍କର ଗୋଟିଏ ଉକ୍ତିର ବ୍ୟାଖ୍ୟା ପ୍ରସ୍ତୁତ କରିଛନ୍ତି । ଉକ୍ତିଟି ହେଉଛି, "Marriage is legalised prostitution." —ବିବାହ କାନୁନ୍ନି ବେଶ୍ୟାବୃତ୍ତି ଭିନ୍ନ ଅନ୍ୟ କିଛି ଉଚ୍ଚସ୍ତରର ଜିନିଷ ନୁହେଁ । ବୁଦ୍ଧି, ବିବେକ ଓ ଜ୍ଞାନ ଆଦର ବେଶ୍ୟାବୃତ୍ତି ନ ହୁଏ ନୁହେଁ, ହୁଏ । ତେବେ ଏହି ପ୍ରବନ୍ଧରେ ସେ ମୁଖ୍ୟତଃ

ବିବାହର ବେଶ୍ୟାବୃତ୍ତିଟିକୁ ଚମତ୍କାର ପରିହାସର ମଧୁ ମିଶାଇ ସମାଲୋଚନା କରିଛନ୍ତି । ପ୍ରବନ୍ଧଟି ବେଶ୍ ସାହିତ୍ୟିକ ମର୍ଯ୍ୟାଦାସମ୍ପନ୍ନ ପ୍ରବନ୍ଧ—ଶ୍ଳେଷ କ୍ଷୁର ଧାର । ଘରେ ଘରେ ଅବାରିତ ବେଶ୍ୟାବୃତ୍ତି । ପାରିବାରିକ ଜୀବନରେ ସବୁଠି ସ୍ନେହପ୍ରେମ ଅନୁପସ୍ଥିତ, ଅଥଚ ସ୍ୱାମୀ ସ୍ତ୍ରୀଙ୍କର ଦେହ ଦିଆନିଆ ଅକ୍ଷୁର୍ଣ୍ଣ ଓ ଅବ୍ୟାହତ । ଉଭୟ ସ୍ତ୍ରୀ ଓ ପୁରୁଷ ବେଶ୍ୟାବୃତ୍ତି ଅବଲମ୍ବନ କରି ସ୍ୱଚ୍ଛନ୍ଦରେ ମଧ୍ୟ ଚଳନ୍ତି । ଯାହା ନ କରିବା କଥା, ନିଜର ନିର୍ଲଜ ସ୍ୱାର୍ଥସିଦ୍ଧି ନିମନ୍ତେ ତାହା ଯେବେ କରିଯାଏ—ତାହାକୁ ବେଶ୍ୟାବୃତ୍ତି ଭିନ୍ନ ଆଉ କ'ଣ କୁହାଯାଇପାରେ ? ପ୍ରତ୍ୟକ୍ଷତଃ ସ୍ୱାମୀମାନେ ସ୍ତ୍ରୀଙ୍କୁ କିଛି କମ୍ ସ୍ୱାନଷ୍ଟ କରନ୍ତି ନାହିଁ । ସେ ରାନ୍ଧିବାଢ଼ି ଦିଏ, ସେବା କରେ, ସଂସାର ସମ୍ଭାଳେ, ଇନ୍ଦ୍ରିୟକୁ ପରିତୃପ୍ତ କରେ ଓ ବଂଶରକ୍ଷା କରିଥାଏ—ପୁରୁଷର ଏସବୁ ସ୍ୱାର୍ଥସିଦ୍ଧି ଲାଗି ବିବାହ ଅଭିପ୍ରେତ । ପ୍ରେମ କାହିଁ ? ପ୍ରେମପାଇଁ କି ଅବକାଶ କାହିଁ ? ପ୍ରେମ କରି ଯେଉଁମାନେ ବିବାହ କରନ୍ତି, ସେଠାରେ କ'ଣ ପ୍ରେମ ଥାଏ ? ତ୍ରିପାଠୀଙ୍କ ଉତ୍ତର ନଙ୍ଗର୍ଥକ । ସେ କହନ୍ତି, "ଯୁବକ ଯୁବତୀର ଚଞ୍ଚଳ ମନରେ ହୃଦୟର ମିଳନ ଭଳି ଗୋଟାଏ ଗହିରିଆ କଥାର ସମାଧାନ ହେବା କଷ୍ଟକର । ଅସହିଷ୍ଣୁ ଯୌବନ ନିଜର ଭୋକ ମେଣ୍ଟାଇବାରେ ବ୍ୟସ୍ତ ହୋଇପଡ଼େ, ଯୌବନର ଭୋକକୁ ହୃଦୟର ମିଳନ ବୋଲି ଭାବେ, ଫଳ ହୁଏ ବିବାହର ପ୍ରଥମ ଜନ୍ମଦିନ ଯାଇଁ ନ ଯାଉଣୁ ମତାନ୍ତର, ମନାନ୍ତର ଓ ହୃଦୟାନ୍ତର । ତାପରେ ସମାଜର ଛି ଛି ଭୟରେ, ଉପାୟାନ୍ତର ଅଭାବରେ । ପଇସା କଉଡ଼ିର ଡରରେ ଏଇ ଫଟାଯୋଡ଼ା ପ୍ରେମର ଅଦ୍ଭୁତ ଗୋଟାଏ ମସ୍ତବଡ଼ ଛଳନା କରି ଏକାଠି ପଡ଼ି ରହନ୍ତି··· ·ସେଥିରେ ପ୍ରେମର ଆଗ୍ରହ ଥାଏନି ମୋଟେ । ଏ ବେଶ୍ୟାବୃତ୍ତି ତାଙ୍କର ଘନେଇଯାଏ ।" ଆମ ଦେଶର ଅପଣା ଇଚ୍ଛା ପ୍ରେମର ବିବାହରେ ବ୍ୟତିକ୍ରମ ଆଣି କରିବା ଠିକ୍ ନୁହେଁ । ପ୍ରେମ ଥିଲେ ବରଂ ଯୁବକ ଯୁବତୀ ବିବାହ କରି ପରସ୍ପରର ଅମଙ୍ଗଳକୁ ଡାକି ଆଣନ୍ତେ ନାହିଁ । ପାରିବାରିକ ଜୀବନରେ ପ୍ରେମ ଚାହାନ୍ତି ତ୍ରିପାଠୀଏ । "ସ୍ୱାର୍ଥବଳି ଉପରେ ପ୍ରେମର ଦେଉଳ ଗଢ଼ା, ଯୁଠି କୌଣସି ସ୍ତ୍ରୀର ସୁଖଲାଗି ମୁଁ ମୋର ସମସ୍ତ ସ୍ୱାର୍ଥ ବଳି ଦେଇପାରେ ଓ ସେ ସ୍ତ୍ରୀ ମଧ୍ୟ ମୋର ସୁଖ ଲାଗି ତାର ସବୁ ସ୍ୱାର୍ଥ ବଳି ଦେଇପାରେ, ସେହିଠାରେ ହିଁ ସଚ୍ଚା ପ୍ରେମ । ଆଉ ସଚ୍ଚା ପ୍ରେମ ଯେଉଁଠି ବୈକୁଣ୍ଠଧାମ ସେଇଠି ।" ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଯେଉଁଦିନ ଏପରି ପ୍ରେମ ସମ୍ଭବ ହେବ, ସେହିଦିନ ବେଶ୍ୟାବୃତ୍ତିର ଉଚ୍ଛେଦ ଘଟିବ, ଘରଗୁଡ଼ିକ ବେଶ୍ୟାଳୟ ନହୋଇ ବୈକୁଣ୍ଠଧାମରେ ପରିଣତ ହେବ; ସ୍ତ୍ରୀ ଆଉ ଭୋଗ୍ୟବସ୍ତୁଟିଏ ହୋଇ ରହିବ ନାହିଁ । ହେବ ପୁରୁଷର ସହକର୍ମୀ ଓ ସହମର୍ମୀ ସଙ୍ଗିନୀଟିଏ—ସ୍ୱତନ୍ତ୍ର ଓ ସମ୍ମାନାସ୍ପଦ । ପାରିବାରିକ ଜୀବନ ସ୍ୱଚ୍ଛନ୍ଦ ଓ ପ୍ରେମାନନ୍ଦମୟ ହୋଇ ଉଠିଲେ ସମାଜଜୀବନ ସୁସ୍ଥ ଓ ବ୍ୟବସ୍ଥିତ ହୋଇ ପାରିବ ।

ଶାସ୍ତ୍ରର ବିଧିନିଷେଧ, ପରକାଳର ଭୟଭ୍ରାନ୍ତି କି ଦୃଢ଼ ଶାସନବ୍ୟବସ୍ଥା ଓ ଭବ୍ୟ ଶିକ୍ଷାସଂସ୍କୃତିର ପ୍ରସାର କେବେ ମଣିଷକୁ ଭଦ୍ର ସାମାଜିକ ମଣିଷରେ ପରିଣତ କରି ନ ପାରେ । ନିଜେ ନ ବୁଝିଲେ ମଣିଷକୁ କିଏ ଭଲ କରିପାରେ ? ସବୁଠି ସବୁକାଳେ ବରଂ ଏ ସମସ୍ତଙ୍କର ମଣିଷ ବିରୋଧରେ ନାନା ଆକ୍ଷେପ ଓ ଅଭିଯୋଗ । ଏଇ ସେଦିନ ବରେଣ୍ୟ ଶିକ୍ଷାବିତ୍ ପରିଜା ସାହେବ ଅଭିଯୋଗ କରିଛନ୍ତି—କଲେଜ ପିଲାମାନେ ନାସ୍ତିକ ହୋଇ ଉଠୁଛନ୍ତି, ତାଙ୍କର ସ୍ୱାର୍ଥପରତା ବଢ଼ିଯାଉଛି । ତ୍ରିପାଠୀ ମହୋଦୟ କଥାଟାକୁ ବିସ୍ତରକୁ ନେଇଛନ୍ତି । ଅବଶ୍ୟ ତ୍ରିପାଠୀଙ୍କ ପାଇଁ ଯେବେ ଭଗବାନ ଥାଆନ୍ତି ତେବେ ସେ ତାଙ୍କୁ ଅନିଷ୍ଟକାରୀ ବାଦରଟିଏ କି ସର୍କସ୍‌ର ସୁଦକ୍ଷ ଜୋକର୍‌ଟିଏ ଠାରୁ ବେଶି ଗୁରୁତ୍ୱ ଦେବାକୁ ପ୍ରସ୍ତୁତ ନୁହନ୍ତି । ତେଣୁ ସେ କହନ୍ତି, ଛାତ୍ରମାନେ ଯେବେ ପରିଶୀଳିତ ବିଦ୍ୟାବୁଦ୍ଧି ନେଇ ଭଗବାନଙ୍କ ଅସ୍ତିତ୍ୱରେ ଅବିଶ୍ୱାସ ପୋଷଣ କରି ନିଜର ଆତ୍ମଶକ୍ତିରେ ପ୍ରତ୍ୟୟ ରଖୁଥାନ୍ତି, ତେବେ ତାହା ନିଶ୍ଚୟ ସ୍ୱାଗତଯୋଗ୍ୟ । ଏ ନାସ୍ତିକତା ନିରୀଶ୍ୱରବାଦୀ ନୁହେଁ, ଈଶ୍ୱରଙ୍କୁ ସେ ସ୍ୱୀକାର କରେ ଭିନ୍ନ ନାମରେ ମାତ୍ର—ମହାନ୍ ଶକ୍ତି (Energy) ଭାବରେ ଏ ଈଶ୍ୱର ନିତ୍ୟବର୍ତ୍ତମାନ । କିନ୍ତୁ ଏ ନାସ୍ତିକତା ଯେବେ ପରଖିଆଣି ଗୋଟିଏ ପୋଜ୍ ବା ଢଙ୍ଗ ହୋଇଥାଏ, ତେବେ ଗୁରୁଜୀମାନେ ନାସ୍ତିକ ବୋଲି ଦୁଃଖ କରିବାର କିଛି ନାହିଁ, "କାହିଁକି ନା ମାଗିଆଣିଲା ଚଅଣ ପୋଡ଼ିକାଏ, ଏ ଢଙ୍ଗ ସରିଯିବ ଦିନେ, ଏ Pose କ୍ଷୟିପଡ଼ିବ, ପୁଣି ନୂଆ ଢଙ୍ଗ ଓ ନୂଆ ପୋଜ୍ ଆସିଯିବ । ଯାହାର ନିଜସ୍ୱ ବୋଲି କିଛି ନାହିଁ, ଯେ କେବଳ ଭାବନା ଫଙ୍କାର, ତାର ବିଶ୍ୱାସ ଓ ତାର ଧାରଣା ଲାଗି ପୁଣି ଭାବିବାକୁ ପଡ଼େ ?" ଅନ୍ୟ ପକ୍ଷରେ ସେପରି ଛାତ୍ରଙ୍କ ସ୍ୱାର୍ଥପରତା ମଧ୍ୟ ବିଗ୍ରହ । ଯଥାର୍ଥ ଭାବରେ ସ୍ୱାର୍ଥପର ହେବା ମଧ୍ୟ ନୈରାଶ୍ୟର କଥା ନୁହେଁ । ତ୍ରିପାଠୀ ମହୋଦୟ 'ଅସ୍ତିନାସ୍ତି' ପ୍ରବନ୍ଧର ଉପସଂହାରରେ କହିଛନ୍ତି, "ଅତଏବ ସଂସାରର ଉନ୍ନତି ପାଇଁ ଏହି 'ମୋହଟି' ବଡ଼ ଦରକାର । ଏହି ମୋହର ଅନ୍ୟନାମ ସ୍ୱାର୍ଥ । ଆମର କଲେଜ ଛାତ୍ରମାନେ ଯେବେ ସ୍ୱାର୍ଥପର ହୋଇଥାନ୍ତି, ତାହେଲେ ଆଶାର କଥା । ସେମାନେ ଯେବେ ସାଙ୍ଗସାଥି ସମାଜ ଭୁଲିଯାଇ ନିଜ ନିଜର ସ୍ୱାର୍ଥ ଦେଖନ୍ତି, ନିଜକୁ ବଡ଼ କରିବାର ଚେଷ୍ଟା କରନ୍ତି, ନିଜ ଭିତରେ ଯେତେଦୂର ସମ୍ଭବ ବାହାର ଶକ୍ତି ସବୁ ନେଇ ସଞ୍ଚୟ କରି ରଖିପାରନ୍ତି, ନିଜର ସୁପ୍ତଗୁପ୍ତଶକ୍ତିକୁ ଯେବେ ଚିଆଁଇ ବାହାରକୁ ବଡ଼ କରି ଆଣିପାରନ୍ତି ତାହେଲେ ସେମାନେ ସମାଜକୁ, ଏ ବିଶ୍ୱସଂସାରକୁ ବଡ଼ କରି ପାରିବେ । କାରଣ ସେଇ ହେଲେ ବିଶ୍ୱ, ସେଇହେଲେ ସମାଜ । ନାହିଁ ଯେବେ ସେମାନେ ଓଲଟା ବୁଝନ୍ତି, ନିଜର ଶକ୍ତି ଓ ନିଜର ସ୍ୱାର୍ଥକୁ ସ୍ୱୀକାର ନ କରି ନିଜକୁ ସମାଜ ବା ସଂସାରର ଗୋଟାଏ ତୁଚ୍ଛ ଅଙ୍ଗ ବୋଲି ଭାବନ୍ତି, ତାହାହେଲେ ସେଇଠାରେ ହେବ ତାଙ୍କର ମରଣ ।" କିନ୍ତୁ ଦୁଃଖର ସହିତ କହିବାକୁ ହୁଏ ଯେ, ତ୍ରିପାଠୀ ନିଜ କଳ୍ପନାର ଅତିଶତାର୍ଥତା ହୃଦୟଙ୍ଗମ କରିଥିଲେ, ଯେଉଁସବୁ କଲେଜ ଛାତ୍ରଙ୍କ ଉପରେ

ତାଙ୍କର ଏତେ ଆସ୍ଥା ଓ ଭରସା, ସେମାନେ ବ୍ୟକ୍ତିଗତ ସାଙ୍ଗସାଥୀ ଓ ସମାଜକୁ ଛାଡ଼ି ପାରନ୍ତି ନାହିଁ କି ନିଜର ଆତ୍ମଶକ୍ତି ଉପରେ ପ୍ରତ୍ୟୟ ପୋଷଣ କରିପାରନ୍ତି ନାହିଁ। ତାଙ୍କର ଶିକ୍ଷା ପୋଷା ଶୁଆର ଶିକ୍ଷା। ସମାଜ ନାମରେ ବ୍ୟକ୍ତିର ମର୍ଯ୍ୟାଦା ଅବମାନିତ ହେଲେ ସମାଜର ଯେ ପୁଷ୍ଟି ଆହୁତ ଘଟେ, ତାହା ଭୁଲିଗଲେ ଚଳିବ ନାହିଁ। କୌଣସି ସମାଜ ବ୍ୟକ୍ତିର ମହତ୍ତ୍ୱକୁ ବଳି ମଧ୍ୟ ଭବ୍ୟ ଓ ଉନ୍ନତ ହୋଇନାହିଁ।

ଗୋବିନ୍ଦ ତ୍ରିପାଠୀ ତାଙ୍କର ଆଦର୍ଶପୁରୁଷ ଗୋପବନ୍ଧୁ ଓ ଲିଙ୍ଗରାଜଙ୍କ ପରି ସମାଜସେବୀର ଆସନଟି ବାଛି ନେଇଛନ୍ତି। ଅବଶ୍ୟ ଜାଣନ୍ତି ସମାଜସେବୀର ସ୍ଥାନ ସବୁବେଳେ ନୀଚରେ ଓ ରାଜନୈତିକର ସ୍ଥାନ ସବୁବେଳେ ଉଚ୍ଚରେ, "ଜଣେ କଣ୍ଟାର ମୁକୁଟ ପିନ୍ଧି ହସ ହସ ମୁହଁରେ ଜଳନ୍ତା ନିଆଁରେ ଝାସ ଦିଏ, ଆଉ ଜଣେ ସୁନାଖଚା ମୁକୁଟ ପିନ୍ଧି ମଧ୍ୟ ସବୁବେଳେ ଗରଗର ତମତମ ହେଉଥାଏ।" ରାଜନୈତିକ ଦୃଷ୍ଟିରେ ସମୁଦାୟ ଦେଶବାସୀ ଅବାଧ୍ୟ, ଅସଭ୍ୟ, ସ୍ୱୈର ବା ଡକେଇତ, ନ ହେଲେ ଛୋଟ ପିଲା ବା ମାଙ୍କଡ଼। ତା' ଦୃଷ୍ଟିରେ ଦେଶବାସୀଙ୍କର ବ୍ୟକ୍ତିଗତ ଅସ୍ତିତ୍ୱ ନାହିଁ। ସେ ଦେଶ-ବାସୀଙ୍କର ଏକମାତ୍ର ଅସ୍ତିତ୍ୱ ଜାଣେ—ତାହା ହେଉଛି ବ୍ୟଷ୍ଟିଗତ—ଗାଈଆଳର ଗାଈପଲ, ଘୁଷୁରିଆର ଘୁଷୁରିପଲ। ସମାଜନୀତି ତାହା ବୁଝେନି। ସେ କହେ, ସମାଜର ପ୍ରତ୍ୟେକ ଲୋକ ଗୋଟାଏ ଗୋଟାଏ ଦେବତା, ତା'ର ଦେବତା; ସେ ତାଙ୍କରି ସେବା କରିବ, ତାଙ୍କରି ପୂଜା କରିବ। ଗୋବିନ୍ଦ ତ୍ରିପାଠୀ ବ୍ୟକ୍ତିସ୍ୱାତନ୍ତ୍ର୍ୟରେ ପ୍ରବଳ ବିଶ୍ୱାସୀ, ମଣିଷକୁ ଦେବତାଜ୍ଞାନରେ ପୂଜା କରନ୍ତି ଓ ପରାମର୍ଶ ଦିଅନ୍ତି। ଦେଶର ଉନ୍ନତିରେ, ସମାଜର କଲ୍ୟାଣରେ ଓ ବ୍ୟକ୍ତି ମଣିଷର ଆନନ୍ଦରେ ତାଙ୍କର ଶାନ୍ତି ଓ ସନ୍ତୋଷ। ସେଇଥିପାଇଁ ସମାଜ ପାଇଁ ତାଙ୍କର ଏତେ ଚିନ୍ତା ଏତେ ଅନୁଭାବନା।

**ଜୀବନ ଚିନ୍ତା :**

ଶ୍ରୀ ତ୍ରିପାଠୀ ବିବର୍ତ୍ତନବାଦରେ ବିଶ୍ୱାସ କରନ୍ତି। ସେଥିପାଇଁ ମଣିଷକୁ ସେ ଈଶ୍ୱରଙ୍କର ପ୍ରତିମୂର୍ତ୍ତି କି ସୃଷ୍ଟିର ସର୍ବଶ୍ରେଷ୍ଠ ଜୀବ ବୋଲି ଭାବିପାରନ୍ତି ନାହିଁ। ମଣିଷ ଅନ୍ୟାନ୍ୟ ସୃଷ୍ଟ ଜୀବଙ୍କ ଭିତରୁ ଅନ୍ୟତମ ଜୀବ ମାତ୍ର। ବରଂ ଅନେକ ଦୃଷ୍ଟିରୁ, ବିଶେଷତଃ ଆହାର, ନିଦ୍ରା ଓ ମୈଥୁନ ଦୃଷ୍ଟିରୁ ସେ ପଶୁପକ୍ଷୀଙ୍କଠାରୁ କୌଣସି ଗୁଣରେ ଭଲ ନୁହେଁ। ତ୍ରିପାଠୀଏ ବୁଝାନ୍ତି, ମଣିଷ ଜାଣୁ ଯେ ସେ ସାଧାରଣ ପ୍ରାଣୀଟିଏ ମାତ୍ର, ତାହାହେଲେ ପ୍ରାଣବାନ୍ ହେବାକୁ ଉଦ୍ୟମ କରିବ। (ସାବଧାନ ଭାଇ ସାବଧାନ) ବିବର୍ତ୍ତନ ଅବ୍ୟାହତ ଅଛି, କ୍ରମବିକାଶର ସମ୍ଭାବନା ଅକ୍ଷୁଣ୍ଣ ଅଛି। ଜୀବନର ସଦ୍‌ଗତି କ୍ରମବିକାଶରେ। ସେ ବୁଝାଇଛନ୍ତି, "କ୍ରମବିକାଶର ଅର୍ଥ ନୁହେଁ କେବଳ ବାହ୍ୟ ବିକାଶ। ମୁଁ ବଡ଼ ଆସନରେ ବସିବି, ଖଟପଲଙ୍କରେ ଶୋଇବି, ମୋର ସ୍ତୁତିଗାନ ଶୁଣିବି, ହଜାର ହଜାର ଲୋକଙ୍କର ନମସ୍କାର ପାଇବି—ଏସବୁ ବାହ୍ୟବିକାଶ।

ମୁକ୍ତିବାରେ ଯେ କ୍ରମବିକାଶ ହୋଇଛି, ତାକୁ ଟିକିଏ ଅନୁଧ୍ୟାନ କଲେ ତୁମେ ହିଁ ଦେଖି-ପାରିବ ଏ ବିକାଶ ଅନ୍ତର୍ମୁଖୀ, ମାନସିକ ଓ ଆତ୍ମିକ । ମନ ବଡ଼ ହେବ, ଆତ୍ମା ନିର୍ମଳ ହେବ । ଏହାହିଁ ବିକାଶର ଲକ୍ଷ୍ୟ (ଧରମ କଥା) । ଯାହା ଏହି ଅନ୍ତର୍ମୁଖୀ ବିକାଶର ଅନ୍ତରାୟ ତାହା ହିଁ ଅଧର୍ମ ଓ ବାଳସୁପ୍ରବଣ । ତେବେ କ'ଣ ପାଇଁ ଏ ବିକାଶର ପ୍ରୟୋଜନ ? ଅନେକ ପ୍ରଶ୍ନ । ମନୁଷ୍ୟ ଜୀବନର ଠିକ୍ ଆଦର୍ଶଟି କ'ଣ ? ସେ କାହିଁକି ବଞ୍ଚି ରହେ ? କିପାଇଁ ତା'ର ଜନ୍ମ ? କାହାର ଉପକାର ଲାଗି ତାହାର ବିକାଶ ଓ ବିନାଶ ? ସ୍ୱେ କ'ଣ ଓ କିଆଁ ? ଉତ୍ତର ସେ ଖୋଜିଛନ୍ତି । ବଡ଼ ପୁରୁଣା ପ୍ରଶ୍ନ । ତେଣୁ ଅନେକ ଉତ୍ତର ବର୍ତ୍ତମାନ । ତ୍ରିପାଠୀ ମହାଶୟ ତନ୍ମଧ୍ୟରୁ ଦୁଇଟିକୁ ବିଗ୍ରହକୁ ଘେନିଛନ୍ତି—ପ୍ରଥମଟି : କେହି କେହି କହନ୍ତି ମନୁଷ୍ୟ ଜୀବନର ଉଦ୍ଦେଶ୍ୟ ହେଲା ଭଗବତ୍ ଉଦ୍ଦେଶ୍ୟପୂରଣ । ମଣିଷ କିଛି ନୁହେଁ । ସବୁ ତାଙ୍କର ଇଚ୍ଛା । ମଣିଷକୁ ଦୋଷ ଦେବାକୁ କିଛି ନାହିଁ, ସେ ଇଚ୍ଛାନୁସାରେ କି ଇଚ୍ଛା କରିପାରେ ନାହିଁ । ତେଣୁ ଦାୟିତ୍ୱ କାହିଁ ? ଏପରି ଆରାମଦାୟକ ଅଭିମତଟିକୁ ତ୍ରିପାଠୀଏ ଶ୍ରଦ୍ଧା କରନ୍ତି ନାହିଁ, ଆଲୋଚନାରେ ଏହାର ଅଯଥାର୍ଥତା ପ୍ରତିପାଦନ କରିଛନ୍ତି । ଅନ୍ୟଟି : ଜନ୍ମର ଉଦ୍ଦେଶ୍ୟ ଜୀବନରେ ଈଶ୍ୱରତ୍ୱର ଅନୁଭୂତି । ଏହି ମତଟି ତାଙ୍କର ସ୍ୱୀକାର୍ଯ୍ୟ । କିନ୍ତୁ ତ୍ରିପାଠୀଙ୍କର ଏହି ଈଶ୍ୱରଟି ତଥାକଥିତ ଈଶ୍ୱର ନୁହନ୍ତି ।—ଏ ଈଶ୍ୱର ଦୟାନିଧି ନୁହନ୍ତି କି ରାକ୍ଷସ ଭଳି ନିଷ୍ଠୁର ନୁହନ୍ତି । ଯେ ତାଙ୍କୁ ପୂଜା କରନ୍ତି, ତାଙ୍କୁ ଯେପରି ସେ କରୁଣାରେ ବିଗଳିତ ହୋଇ ଦୟା କରନ୍ତି ନାହିଁ, ଠିକ୍ ସେପରି ଯେ ପୂଜା କରେ ନାହିଁ, ତାକୁ କୋଧରେ ନର୍କରେ ପକାନ୍ତି ନାହିଁ । ତାଙ୍କ ବୈକୁଣ୍ଠରେ କାନ୍ଦଣା ନାହିଁ କି ଅଟ୍ଟହାସ ନାହିଁ । ସେ ପରମ ଦୟାଳୁ ନୁହନ୍ତି ଯେ ସବୁବେଳେ ଦୁଷ୍ଟ ନିବାର ସନ୍ଥ ପାଳିବାକୁ ଗୁହିଁ ବସିଥିବେ ! ବରଂ ତାଙ୍କୁ ଭୁଲାଇବା ଅସମ୍ଭବ । ଆମର ଗତାନୁଗତିକ ଈଶ୍ୱରବୋଧ ଦେବତାଙ୍କୁ ମଣିଷ କରିବାର ଅସତ୍ ଉଦ୍ୟମ । ଉଦ୍ଦେଶ୍ୟ ଅବଶ୍ୟ ମନୁଷ୍ୟକୁ ଦେବତା କରିବା, କାମ କିନ୍ତୁ ଦେବତାଙ୍କୁ ମନୁଷ୍ୟ କରିବା—ପ୍ରଭୁଙ୍କୁ ମନୁଷ୍ୟସ୍ତରକୁ ଟାଣିବା । ତେଣୁ ତ୍ରିପାଠୀଏ ତାଙ୍କ ଈଶ୍ୱରତ୍ୱର ନିଜସ୍ୱ ବ୍ୟାଖ୍ୟା ପ୍ରସ୍ତୁତ କରିଛନ୍ତି, "ନୀତି ଓ ନୈତିକତାର ବହୁ ଊର୍ଦ୍ଧ୍ୱରେ ଏ ଈଶ୍ୱରଙ୍କର ସ୍ଥାନ । ସେ ଭଲମନ୍ଦର ତୁଳାକାଠି ଧରି ବସି ନଥାନ୍ତି । ଭଲମନ୍ଦ ଈଶ୍ୱରସୃଷ୍ଟ ଜିନିଷ ନୁହେଁ, ସମାଜ ତିଆରି ଜିନିଷ ମାତ୍ର । କାହାର ଦୁଃଖରେ ତାଙ୍କର ହୃଦୟ ଫାଟି ଯାଏ ନାହିଁ କି ଆନନ୍ଦରେ ଭରପୂର ହୋଇଯାଏ ନାହିଁ । ସେ ଅବିନାଶୀ ଶକ୍ତିଟିଏ ମାତ୍ର । ଯେତେ ସୃଷ୍ଟ ପଦାର୍ଥ ସବୁ ଈଶ୍ୱର ଶକ୍ତି ଅବଶ୍ୟ । ତ୍ରିପାଠୀ ଏଇଠି ସାବଧାନ କରାଇ ଦେଇଛନ୍ତି, "ଏହା ବୋଲି ମୁଁ ଈଶ୍ୱର ନୁହେଁ, ତୁମେ ଈଶ୍ୱର ନୁହଁ, ଏ ମାଟି ଧୂଳି ଈଶ୍ୱର ନୁହେଁ । ···ଈଶ୍ୱର ଶକ୍ତିର ସମଷ୍ଟି । ଆଉ ସେହି ଶକ୍ତି ପ୍ରତି ସୃଷ୍ଟି ମଧ୍ୟରେ ଅଛି । ଏ ସମଷ୍ଟି ମଧ୍ୟରେ ଏହି ବ୍ୟଷ୍ଟି ଓ ବ୍ୟଷ୍ଟି ମଧ୍ୟରେ ଥିବା ସମଷ୍ଟିର ଜ୍ଞାନ ହିଁ ଈଶ୍ୱର ଜ୍ଞାନ ଓ ଏହାର ଅନୁଭୂତି ହିଁ ଈଶ୍ୱରାନୁଭୂତି । ଅର୍ଥାତ୍ ମୁଁ

ଯେବେ ମୋର ସମସ୍ତ ପ୍ରାଣମନ ଦେଇ ଅନୁଭବ କରିପାରେ ଯେ ଏ ସୃଷ୍ଟି ମଧ୍ୟରୁ ପ୍ରତ୍ୟେକ ମୋରି ପରି ଓ ମୋ ମଧ୍ୟରେ ସୃଷ୍ଟି ହେବାର ସମାନ ଶକ୍ତି ବିଦ୍ୟମାନ, ତାହାହେଲେ ମୁଁ ମନ ମଧ୍ୟରେ ଈଶ୍ୱରଙ୍କୁ ଅନୁଭବ କରିପାରିବି ।" ବଡ଼ କଠିନ ଉପଲବ୍ଧି । କିନ୍ତୁ ଯୁକ୍ତିଯୁକ୍ତ । 'ସ୍ୱେ କ'ଣ ଓ କିଆଁ' ପ୍ରବନ୍ଧରେ ତାଙ୍କ ସିଦ୍ଧାନ୍ତ ଉପସ୍ଥାପନ କରିଛନ୍ତି, ମନୁଷ୍ୟ ଜୀବନର ଉଦ୍ଦେଶ୍ୟ ପ୍ରତିପାଦନ କରିଛନ୍ତି, "ଅନ୍ୟର ବଡ଼ପଣିଆମାନ ନେଇ ତୁମେ ନିଜେ ବଡ଼ ହୁଅ—ଏଇ ହେଲା ତୁମ ଜୀବନରେ ଈଶ୍ୱରତ୍ୱର ଅନୁଭୂତି । ଅର୍ଥାତ୍ ତୁମ ଭିତରେ ଯେ ବଡ଼ ହେବାର ବୀଜ ରହିଛି, ସେଇଟିକୁ ଫଳପୁଷ୍ପଭରା ଗଛ କରିବା ହିଁ ତୁମର ଏକମାତ୍ର କାର୍ଯ୍ୟ । ତୁମେ ଶ୍ରେଷ୍ଠ ନୁହଁ, ଶ୍ରେଷ୍ଠ ହୋଇପାରିବ । ······ତୁମ ଭିତରେ ଯେ ଶକ୍ତିଟିକ ଅଛି, ସେ ଏଇ ବିଶ୍ୱସଂସାରକୁ ଓଲଟାଇ ଦେଇପାରେ, ସେଇ ଶକ୍ତିକୁ ଫୁଟାଅ । ······ସବୁ ବୀଜ ଏକା ଜାଗାରେ ଏକା ପାଣିପବନରେ ଉଧାଏ ନାହିଁ, ତୁମେ ତୁମର ଉଧେଇବା ଜାଗା ଦେଖିନିଅ, ତୁମର ଈଶ୍ୱର ଶକ୍ତିର ବିକାଶ କର । ଏହି ଆତ୍ମବିକାଶ ହିଁ ତୁମ ଜୀବନରେ ଈଶ୍ୱରତ୍ୱର ଅନୁଭୂତି । ଆତ୍ମବିକାଶ ହିଁ ଜୀବନର ଏକମାତ୍ର ଉଦ୍ଦେଶ୍ୟ ।" ତ୍ରିପାଠୀ ନୀତ୍ସେଙ୍କୁ ଜାଣିଥିଲେ ନିଶ୍ଚୟ । ନୀତ୍ସେ ସେଦିନ କହିଥିଲେ, "For thi old Gods came to an end long ago. And verily it was a good and joyful end of Gods." କଥାଟିକୁ ତ୍ରିପାଠୀଏ ହୃଦୟଙ୍ଗମ କରିଛନ୍ତି । ଈଶ୍ୱର ତାଙ୍କ ପାଇଁ ମୃତ ନୁହନ୍ତି, ତଥାକଥିତ ଈଶ୍ୱର ଅନୁପସ୍ଥିତ ମାତ୍ର । ସମସ୍ତ ଜୀବନ କ୍ରମ-ଅଗ୍ରସରଣଶୀଳ । ବିବର୍ତ୍ତିନୀସ୍ୱ ମଧ୍ୟ । ବିଶ୍ୱକୁ ଓ ଚୂଡ଼ାନ୍ତ ସତ୍ୟ ବୋଲି କିଛି କେଉଁଠି ନାହିଁ । ସଂସାରଟା ମିଛମାୟା ନୁହେଁ, ପରକାଳର ସାନ୍ତ୍ୱନା ବରଂ ମିଛ ଓ ମନଭୁଲାଣିଆ । ସ୍ୱର୍ଗକୁ ଯିବାପାଇଁ ପୁରୀର ସ୍ୱର୍ଗଦ୍ୱାରକୁ ତ୍ରିପାଠୀଏ ଗୋଟାଏ ମନଭୁଲାଣିଆ ସହଜବାଟ ବୋଲି କହିରଖିଛନ୍ତି । ଏସବୁ ଦୃଷ୍ଟିରୁ ତାଙ୍କ ଜୀବନଦର୍ଶନ ଅସ୍ତିତ୍ୱବାଦର ବଡ଼ ନିକଟବର୍ତ୍ତୀ । ତାହାକୁ ଆସ୍ତିକ୍ୟ ଅସ୍ତିତ୍ୱବାଦ ଭାବରେ ଚିହ୍ନିତ କରାଯାଇପାରିବ । ଯେ ବଞ୍ଚିବା (to live) ଓ ଅସ୍ତିତ୍ୱଶୀଳ ହେବା (to exist) ମଧ୍ୟରେ ଥିବା ପାର୍ଥକ୍ୟ ଠିକ୍ ବୁଝନ୍ତି । ତାଙ୍କ ମତରେ ସ୍ୱାଧୀନ ଭାବରେ ଓ ଦାୟିତ୍ୱଶୀଳ ବ୍ୟକ୍ତିଟିଏ ହୋଇ ଅର୍ଥପୂର୍ଣ୍ଣ ଜୀବନ ଯାପନ କରିବାରେ ମଣିଷ ଜୀବନର କୃତାର୍ଥତା ନିହିତ । ତାଙ୍କ ମଣିଷ ବି ଭିନ୍ନ ଭିନ୍ନ ମୁହୂର୍ତ୍ତରେ ଭିନ୍ନ ଭିନ୍ନ ଅବସ୍ଥାର ସମ୍ମୁଖୀନ ହୁଏ ଓ ନୂତନ କରି ନିଜକୁ ପ୍ରସ୍ତୁତ କରିଥାଏ । ମଣିଷର ସଚ୍ଚିତ୍ସ୍ୱ ଭାବରେ ଓ ସ୍ୱାଧୀନ ଭାବରେ ସଂକଳ୍ପ ନେବା ଓ ମନୋନୟନ କରିବା ତଥା କର୍ମ କରି ଅର୍ଥପୂର୍ଣ୍ଣ ଦାୟିତ୍ୱଶୀଳ ଜୀବନ ମାପିବାର ଅଧିକାର ରହିଛି । ପ୍ରତ୍ୟେକ ମଣିଷର ବ୍ୟକ୍ତିଗତ ପଥ ଓ ସ୍ୱାଧୀନ ମତ ତାଙ୍କର ଧ୍ୟେୟ । ସେ ଯୁକ୍ତି କରନ୍ତି, "ମୋର ମୁଣ୍ଡ ଅଛି, ମୋର ମୁଣ୍ଡରେ ମଧ୍ୟ କିଛି ନା କିଛି ବୁଦ୍ଧି ଅଛି, ମୋର ଆଖି କାନ ନାକ ଚମ ସବୁ ଅଛି । ମୁଁ କଥା ବୁଝିପାରେ , ବିଚାର କରିପାରେ, ହିସାବ କରିପାରେ । ମୁଁ ମୋ ଜୀବନର ଗତି ଠିକ୍ କରି ନେବି ନିଜେ ଭାବି,

ଚନ୍ତି, ଅନୁଭବ କରି, ପରୀକ୍ଷା କରି । ଏଇ ମତଟା ନେଲେ ମୁଁ ଅଗଡ଼ୁଆଁ ବୋଲାଇବି କି ଏଇ ମତଟା ନେଲେ ମୁଁ ପଛଡ଼ୁଆଁ ବୋଲାଇବି, ଅମୁକ ଯା କରୁଛନ୍ତି, ଅତଏବ ମୁଁ ଯା କରିବି କି ସମୁକ ଏମିତି ହେଉଛନ୍ତି, ମୁଁ ମଧ୍ୟ ସିମିତିଆ ହେବି—ଏପରି ବ୍ୟକ୍ତି ଯେ ନିଜ ଜୀବନର ମତ ଠିକ୍ କରେ ବା ଠିକ୍ କରିଚି ବୋଲି କହେ, ସେ ନିଜଠାରେ ଦ୍ରୋହୀ, ସମାଜଠାରେ ଦ୍ରୋହୀ, ଏବଂ ସଭ୍ୟତାଠାରେ ବିଶ୍ବାସଘାତକ (ଶ୍ୟାମପାଗଳ) ।'' ସ୍ୱାଧୀନ ନ ହେବାର ସ୍ୱାଧୀନତା ତାଙ୍କ ମଣିଷ ସ୍ୱର୍ଗରେ ନାହିଁ ।—''ମୁଁ ଯେ ଖାଲି ସ୍ୱାଧୀନ ତା ନୁହେଁ, ଜୀବନର ପ୍ରତି ଲତାବଲ୍ଲରୀ ମଧ୍ୟ ପରସ୍ପରଠାରୁ ସ୍ୱାଧୀନ'' (ଆକାଶ କଇଁଆ) । ତେବେ ମଣିଷ ସମ୍ପର୍କରେ ତ୍ରିପାଠୀ ବଡ଼ ଶୁଭବିଶ୍ବାସୀ । ବ୍ୟକ୍ତିଗତ ସ୍ୱାଧୀନତା ମିଳି-କଲେ ମଣିଷ ଯେ ଯଥେଚ୍ଛାଚାର କରିପାରିବ, ଏହା ସେ ସ୍ୱୀକାର କରନ୍ତି ନାହିଁ । ବରଂ ସେ କହନ୍ତି, ''ମଣିଷର ଦେହ ଦେବତାର ମନ୍ଦିର, ମଣିଷର ମନ ଲକ୍ଷ୍ମୀଙ୍କର ଖେଳଘର । ସେଥିରେ ଅନ୍ୟାୟ, ପାପ, ଅତ୍ୟାଚାର ସ୍ଥାନ ପାଇବାର ନାହିଁ । ଯେତେବେଳେ ଦଶଙ୍କ ଦାବିରେ ମନୁଷ୍ୟ ନିଜର ପ୍ରକୃତି ଓ ପ୍ରବୃତ୍ତିକୁ ଦବେଇ ରଖି ସୁଆଙ୍ଗର ନାଟବାଲା ପରି ବ୍ୟବହାର କରିବାକୁ ବାଧ୍ୟହୁଏ, ସେତେବେଳେ ତା ମନରେ ପାପ, ଅତ୍ୟାଚାର ଓ ଅନାଚାର ଆସି ଗାଢ଼ ମାଡ଼ି ବସେ (ଆକାଶ କଇଁଆ) । ଯେଉଁଠି ସେ masman, ମୁଖବିହୀନ ଓ Just like everybody, ଦଶଦାସତ୍ବର ବଶବର୍ତ୍ତୀ, ସେଇଠି ସେ ନିନ୍ଦାର୍ହ; ଯେଉଁଠି ଧର୍ମପ୍ରାଣତା, ଦେଶପ୍ରାଣତା ଓ ଜାତିପ୍ରାଣତା ଯେନ ଅତ୍ୟୁତ୍ସାହୀ, ସେଇଠି ସେ ମଣିଷ ଜାତିରୂପୀ ନାରାୟଣଙ୍କ ଆଖିରେ ମହାପାପୀ, ଆଉ ଯେଉଁଠି ଏଇ ଜାତି, ଧର୍ମ ଓ ଦେଶ ନାଁରେ ହନ୍ତାରି ଓ ମଣିଷମାରୁ ସେଇଠି ସେ ନୃଶଂସ ଓ ନିଦାପଣ୍ଡ—କୌଣସିପ୍ରକାର କ୍ଷମାର ଅଯୋଗ୍ୟ । କିନ୍ତୁ ଯେଉଁଠି ସ୍ୱାଧୀନ ଓ ସ୍ୱତନ୍ତ୍ର, ସେଠାରେ ସେ ସ୍ୱୟଂପ୍ରତିଷ୍ଠ ଓ ସମ୍ରାଟ—ଅପାପବିଦ୍ଧ । ରାଷ୍ଟ୍ରଟା ତା ପାଇଁ, ସେ ରାଷ୍ଟ୍ର ପାଇଁ ନୁହେଁ । ତାହାର ବ୍ୟକ୍ତିଗତ ସ୍ୱାଧୀନତାକୁ ଅକ୍ଷୁଣ୍ଣ ରଖିବାକୁ ହେବ । କିନ୍ତୁ କୌଣସିପ୍ରକାର ଶାସନ ମଣିଷର ବ୍ୟକ୍ତିଗତ ସ୍ୱାଧୀନତା ଅକ୍ଷୁଣ୍ଣ ରଖିବାକୁ ପ୍ରସ୍ତୁତ ନୁହେଁ । ଗଣତନ୍ତ୍ର, ସାମ୍ୟବାଦ, ସମାଜବାଦ—ସବୁବାଦ ମୁହଁରେ ବ୍ୟକ୍ତିଗତ ସ୍ୱାଧୀନତାର କଥା କହନ୍ତି । କିନ୍ତୁ କାର୍ଯ୍ୟରେ କରନ୍ତି ଠିକ୍ ବିପରୀତ । ସବୁ ଶାସନର ଧାରଣା ଯେ, ମଣିଷ ମାତ୍ରେ ଖରାପ, ସୁବିଧା ପାଇଲେ ବିଷୋଦ୍‌ଗାର କରିବେ । ତେଣୁ ଚାବୁକ ନ ବାଜିଲେ ମଣିଷ କେବେ ଭଲ କାମ କରିବ ନାହିଁ । Men never work for good except under compulsion—ମୁସୋଲିନ୍‌ଙ୍କର ଏ ଭାଷା ପ୍ରାୟ ସବୁ ଶାସକଙ୍କର ଭାଷା । ତ୍ରିପାଠୀ ପ୍ରତିବାଦ କରିଛନ୍ତି, ''ଭଗବାନଙ୍କ ଅଂଶରେ ଯେ ଜନ୍ମ ହୋଇଛି, ତା ପ୍ରତି ଏପରି ଶ୍ରେଷ୍ଠ ନଜର ଯେ କରେ, ତାର ମନଟା ସେଇପରି ଖରାପ । ଏ ପୃଥିବୀରେ ଯାହା କିଛି ଭଲ କାମ ହୋଇଛି—ସେ ସ୍ୱାଧୀନ ଚିନ୍ତାରେ ସ୍ୱାଧୀନ ଭାବରେ ।'' ତାଙ୍କର ସବୁଠି ମଣିଷକୁ ସେଇ ଗୋଟିଏ ଆହ୍ୱାନ—ନିଜ ବାଟରେ ନିଜ

ଗୋଲ୍ଡରେ ଚାଲ । ସମସ୍ତ ମଣିଷସମାଜ ପାଇଁ ଯେଉଁବାଟ ପ୍ରଶସ୍ତ, ସେହି ବାଟରେ ହିଁ ସେ ଓଡ଼ିଆଙ୍କୁ ଅଗ୍ରସର ହେବାକୁ ପ୍ରବର୍ତ୍ତାଇଛନ୍ତି । ପରକୁ ତ୍ୟାଗ କରି ନିଜକୁ ସଙ୍କୁଚିତ ରଖିବା ଯେପରି ଏକ ଦାରିଦ୍ର୍ୟ, ନିଜକୁ ତ୍ୟାଗ କରି ପରକୁ ଇଚ୍ଛା କରିବା ବି ସେପରି ଏକ ଭିକ୍ଷୁକତା । ଦେଶପ୍ରାଣତା ଓ ଜାତିପ୍ରାଣତା ବି ଶେଷ କଥା ନୁହେଁ, ଶେଷକଥା ବ୍ୟକ୍ତିଗତ ସ୍ୱାଧୀନତା । —"ଏଣିକି ତେଣିକି ବୁଲି ଯେ ବାଟ ଚାଲେ ସେ ବାଟ ଜାଣେ ନାହିଁ । ସେ ବାଟ ଭୁଲିବ । ଯେ ବାଟ ଜାଣେ, ଯାହାର ଲକ୍ଷ୍ୟ ଠିକ୍, ସେ ତା ରାସ୍ତାରେ ଚାଲିବ । ସେ ରାସ୍ତା ଅନ୍ୟକୁ ଅସୁନ୍ଦର ଦିଶିପାରେ, ଅନ୍ୟ ନାକ ଟେକି ପାରେ, ରାଗିପାରେ, ଥଟ୍ଟା ପରିହାସ କରିପାରେ, କି ଯାଏ ଆସେ ସେଥିରେ ? ମୋର ଏ ବାଟ, ଏ ବାଟରେ ମୁଁ ଯିବି'' (ବଟୁଆ) । ବ୍ୟର୍ଥତା ଅନୁମୋଦନୀୟ, କିନ୍ତୁ ଉଦ୍ୟମହୀନତା କି ଦାୟିତ୍ୱବିମୁଖତା ଅକ୍ଷମଣୀୟ । ସପ୍ତଦଶ ଶତାବ୍ଦୀର ଜଣେ ଇଂରେଜ କବିଙ୍କ "My deer and only love" କବିତାରୁ ପଦେ ଉଦ୍ଧାର କରି ଏ ପ୍ରସଙ୍ଗରେ ସେ ଏପରି ଉପସଂହାର କରିଛନ୍ତି—

He either fears his fate too much
Or his deserts are small
That dares not put it to the touch
To gain or lose it all,

—James Marquis of Montrose,

ଏହି ଦୃଷ୍ଟିରୁ ତ୍ରିପାଠୀଙ୍କ ମଣିଷ ନିଜେ ନିଜର ଭାଗ୍ୟବିଧାତା । ସେ ସମ୍ବଳହୀନ ନୁହେଁ କି ଭାଗ୍ୟହୀନ ନୁହେଁ । ସ୍ୱାଧୀନ ଭାବରେ ସଙ୍କଳ୍ପ ନେବାରେ ଓ ଦାୟିତ୍ୱଶୀଳ ଭାବରେ ଅଗ୍ରସର ହେବାରେ ଜୀବନର ଚରିତାର୍ଥତା । ସେଠାରେ ଜୟପରାଜୟ ତୁଚ୍ଛମୂଲ୍ୟ ।

**ସାହିତ୍ୟ ଚିନ୍ତା :**

ଶ୍ରୀ ତ୍ରିପାଠୀ ମନନଶୀଳ ସାହିତ୍ୟ ସମାଲୋଚନାତ୍ମକ ପ୍ରବନ୍ଧ ଲେଖିଛନ୍ତି, ଉଭୟ ଗୁଣ ଓ ପରିମାଣ ଦୃଷ୍ଟିରୁ ତାହା ବେଶ୍ ପ୍ରଚୁର । ସେଗୁଡ଼ିକ ଏକପକ୍ଷରେ ଯେପରି ଯୁକ୍ତିନିର୍ଭର ଓ ରସଗ୍ରାହୀ, ଅନ୍ୟପକ୍ଷରେ ସେପରି ଏକନିଷ୍ଠ ସ୍ୱଜାତ୍ୟାଭିମାନ ଓ ସ୍ୱଭାଷା ପ୍ରୀତିରେ ଗାମ୍ଭୀର୍ଯ୍ୟମାନ ଓ ମୂଲ୍ୟମାନ । ତ୍ରିପାଠୀଙ୍କ ସାହିତ୍ୟବୋଧ ଉଚ୍ଚକୋଟୀର । ଅଧ୍ୟୟନର ପରିସର ଥିଲା ବ୍ୟାପକ ଓ ଗଭୀର । ସେ ଇଂରାଜୀ ସାହିତ୍ୟର ଛାତ୍ର ଥିଲେ । ସେହି ସୂତ୍ରରେ ଅର୍ଜିଥିଲେ ପରିଶୀଳିତ ୟୁରୋପୀୟ ମନ ଓ ମାର୍ଜିତ ସାହିତ୍ୟବୋଧ । ସଂସ୍କୃତ ସାହିତ୍ୟରେ ତାଙ୍କର କିଛିଟା ପ୍ରବେଶ ଥିଲା; ଏଣେ ପଢ଼ିଥିଲେ ମଧ୍ୟ ଓଡ଼ିଆ ସାହିତ୍ୟର ଯାହା କିଛି ଅବଶ୍ୟ ପାଠ୍ୟ । କବି ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର

ଓ ବଳଦେବ ରଥଙ୍କ ରଚନାରୁ ନିର୍ବାଚିତ ଉଦ୍ଧୃତିରୁ ପ୍ରାଚୀନ ଓଡ଼ିଆ ସାହିତ୍ୟ ସହିତ ତାଙ୍କ ରସାଳ ଯୋଗାଯୋଗ ଦୁର୍ଲକ୍ଷ୍ୟ ରହେ ନାହିଁ । ଅନ୍ୟପକ୍ଷରେ ପତ୍ରପତ୍ରିକା ସହିତ ତାଙ୍କର ସଚଳ ସମ୍ପର୍କ ଥିବାରୁ ସେ ସମସାମୟିକ ସାହିତ୍ୟର ଗତିବିଧି ଲକ୍ଷ୍ୟ କରିବାକୁ ବେଶ୍ ସମର୍ଥ ଥିଲେ । ତାଙ୍କର ପରିଶୀଳିତ ମନ ଓ ପ୍ରଶିକ୍ଷିତ ସାହିତ୍ୟଦୃଷ୍ଟି ଓଡ଼ିଆ ସାହିତ୍ୟର ଦୋଷତ୍ରୁଟିକୁ ସ୍ପଷ୍ଟ ଦେଖିପାରୁଥିଲା ଓ ତାର ପ୍ରତିଷେଧକଳ୍ପେ ସମାଲୋଚନା ସାହିତ୍ୟ ରଚନାରେ ପ୍ରବୃତ୍ତ ରହିଥିଲା । ଓଡ଼ିଆଙ୍କ ରୁଚିମାର୍ଜ୍ଜନା ଥିଲା ତାଙ୍କ ସମାଲୋଚନାର ପ୍ରମୁଖ ଉଦ୍ଦେଶ୍ୟ । ରାଧାନାଥଙ୍କ ସମୟରୁ ଓଡ଼ିଆ ସାହିତ୍ୟରେ "ସଂସ୍କୃତ ଭାଷା, ବଙ୍ଗଳା ଛାଞ୍ଚ ଓ ବିଲାତି କଥାର ଯେଉଁ ତ୍ରିନାଥ ମେଳା" ଆରମ୍ଭ ହୋଇ-ଯାଇଥିଲା, ତାହାର କୁପ୍ରଭାବକୁ ପ୍ରତିହତ କରିବାକୁ ହେବ, ତଥାକଥିତ ସାହିତ୍ୟ ସମାଲୋଚକମାନଙ୍କ ଅଜ୍ଞାନତା ଓ ସାହିତ୍ୟବୋଧହୀନତା ହାତରୁ ରକ୍ଷା କରିବାକୁ ପଡ଼ିବ, ଅଧିକନ୍ତୁ ତାଙ୍କୁ ନୂଆ ସୌନ୍ଦର୍ଯ୍ୟଦୃଷ୍ଟି, ଭବ୍ୟ ସାହିତ୍ୟବୋଧ ଓ ସାରସ୍ୱତ ଦାୟିତ୍ୱଶୀଳତା ସମ୍ବନ୍ଧରେ ସଚେତନ କରାଇବାକୁ ପଡ଼ିବ, ଅଭିଜ୍ଞତା-ଅଭିଜ୍ଞତା ମଧ୍ୟରେ ଥିବା ତାରତମ୍ୟ ବିଚାର ପାଇଁ ତୁଳନାତ୍ମକ ସାହିତ୍ୟ ସମୀକ୍ଷାର ଉପାଦେୟତା ବୁଝାଇବାକୁ ହେବ । କିଏ ଦାୟିତ୍ୱନେବ ? ମାଡ଼ ମୁଲେଇବ ? ମାଡ଼ମୁଲନ୍ତି ସେହିମାନେ, ଯେଉଁମାନେ ଅନ୍ୟମାନଙ୍କପରି ଭାବିପାରନ୍ତି ନାହିଁ କି ଅନ୍ୟମାନଙ୍କ ପରି ଦେଖିପାରନ୍ତି ନାହିଁ । ମୂଢ଼ମନ ଓ ସ୍ଥୂଳଦୃଷ୍ଟି ନିରାପଦ ନିଶ୍ଚୟ । କିନ୍ତୁ ସମସାମୟିକ ସାହିତ୍ୟବୋଧର ବହୁ ଊର୍ଦ୍ଧ୍ୱରେ ଥିଲେ ଶ୍ରୀ ତ୍ରିପାଠୀ—ଏବେ ମଧ୍ୟ ତାଙ୍କୁ ଠିକ୍ ବୁଝିବାର ମାନସିକତା ଗଢ଼ିଉଠିନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ତେଣୁ ସେଦିନ ତାଙ୍କୁ ମାଡ଼ ଦୁଷ୍ପ୍ରାପ୍ୟ ନ ହେବା କଥା । ପ୍ରକୃତରେ ତାଙ୍କ ପ୍ରବନ୍ଧରେ ସ୍ପଷ୍ଟ ଦିଗ୍‌ଦର୍ଶନ ଅଛି, ହେଉ ନା ପଛେ ତାହା ଯେତେ ଅପ୍ରୀତିକର ଓ ପୀଡ଼ାଦାୟକ । ସେତେବେଳେ ଓଡ଼ିଆ ସାହିତ୍ୟର ସବୁଠୁଁ ବଳି ବଡ଼ ସମସ୍ୟା ଥିଲା, ଓଡ଼ିଆ ସାହିତ୍ୟରେ ଓଡ଼ିଆ ଭାଷାର ଭୂମିକା ସମସ୍ୟା । ସମସ୍ୟାଟିକୁ ଶ୍ରୀ ତ୍ରିପାଠୀ ସାହିତ୍ୟର ପ୍ରାଣପ୍ରକୃତି ଦୃଷ୍ଟିରୁ ବିଚାର କରିଛନ୍ତି । ସାହିତ୍ୟରେ ମିଥ୍ୟା ହିଁ ସୁନ୍ଦର । ତାଙ୍କ 'ମିଛ କଥା' ଓ 'ସାହିତ୍ୟରେ ନ୍ୟାୟ' ପ୍ରବନ୍ଧ ଦୁଇଟି ଦ୍ରଷ୍ଟବ୍ୟ । ନିକଟରେ ଏଗୁଡ଼ିକ ପାଠଯୋଗ୍ୟତା ହରାଇନାହାନ୍ତି । ସାହିତ୍ୟରେ ନ୍ୟାୟ ବା ଯୁକ୍ତିତର୍କର ସ୍ଥାନ ନାହିଁ ବୋଲି କେହି କହିବେ ନାହିଁ, କିନ୍ତୁ ସବୁଦିନେ ତାର ଆରମ୍ଭ କଳ୍ପନାରୁ । ତ୍ରିପାଠୀ ଆନାତୋଲ ଫ୍ରାନ୍‌ସଙ୍କ 'ସିଲେଭଷ୍ଟାର ବାର୍ଣ୍ଣାଡ' ନାମକ ଗଦ୍ୟକାବ୍ୟରୁ ଫେୟାରୀ ତୁଣ୍ଡରେ ଯେଉଁ ଉକ୍ତି ଉପସ୍ଥାପନ କରିଛନ୍ତି, ତାହା କେବଳ ତାଙ୍କ ଅଧ୍ୟୟନର ବ୍ୟାପକତା ସୂଚାଏ ନାହିଁ, ସୂକ୍ଷ୍ମ ଗଭୀର ରସଦୃଷ୍ଟିର ସାକ୍ଷ୍ୟ ଦିଏ ମଧ୍ୟ । ଫେୟାରୀ କହିଛି, "ଜାଣିବା କିଛି ନୁହେଁ, କଳ୍ପନା କରିବା ହିଁ ସବୁ । ଯାହା କଳ୍ପିତ ନୁହେଁ ତାହା ଜୀବନ୍ତ ନୁହେଁ । ମୁଁ କାଳ୍ପନିକ । ଏହାହିଁ ବଞ୍ଚି ରହିବା । ଲୋକେ ମୋତେ ସ୍ୱପ୍ନ ଦେଖନ୍ତି, ଆଉ ମୁଁ ଆସି ସେମାନଙ୍କ ଆଗରେ ଠିଆ ହୁଏ । ଏହି

ସଂସାର କେବଳ ସ୍ୱପ୍ନ । ତୁମକୁ କେହି ସ୍ୱପ୍ନ ଦେଖେ ନାହିଁ । ସୁତରାଂ ତୁମେ ଜୀବନ୍ତ ନୁହଁ ।'' କବି ଓ ଲେଖକଙ୍କ ଜୀବନରେ କଳ୍ପନାର ଭୂମିକା ବୁଝାଇବାକୁ ଏହାଠାରୁ ବଳି ସୁନ୍ଦର ଉକ୍ତି ଆଉ କାହିଁ ? ସାହିତ୍ୟର ଚିରସହଚରୀ କଳ୍ପନା । ତେବେ ଏ କଳ୍ପନାକୁ କେବଳ ମୋ ସହଚରୀ ଭାବିଲେ ଭୁଲ ହେବ, ଏ ବଡ଼ ଛଳନାମୟୀ ମଧ୍ୟ । ତେବେ ତାହାର ଜଗତ ଅନେକାଂଶରେ ଅବାସ୍ତବ ବୋଲି ହିଁ ବାସ୍ତବ, ଅନେକତଃ ମିଛ ବୋଲି ହିଁ ସତ୍ୟ । ଅଲୌକିକ ବୋଲି ଅଧିକ ସୃଜନଶୀଳ, ଅନୈତିକ ବୋଲି ହିଁ ବେଶି ଭବ୍ୟ ଓ ଶାଳୀନ । କୌଣସି ଓଡ଼ିଆ ସମାଲୋଚକ ସେଦିନ ବଗାଡ଼ି ମୁଖରେ ଗୋଟିଏ ଗଳ୍ପ ଶୁଣି ଏତେ ଉତ୍‌କ୍ଷିପ୍ତ ହୋଇପଡ଼ିଛନ୍ତି ଯେ, ତାଙ୍କ ପ୍ରକାରାନ୍ତରେ ତେଣୁ ତ୍ରିପାଠୀ ପୁଙ୍ଗବ ଫେସ୍ତାଗୀ ଭାଷାରେ ବୁଝାଇଛନ୍ତି, ''ବଗାଡ଼ି କଥା କହିପାରେ ବୋଲି ଯେତେବେଳେ ତୁମେ ସନ୍ଦେହ କରୁଛ, ସେତେବେଳେ ତୁମର ପୁରୁଣା ଗନ୍ତାଘରେ ଗୋଟାଏ ଗଧର ଚମଡ଼ା ଥିବା ଅସମ୍ଭବ ନୁହେଁ ।'' ବସ୍ତୁର ପୁରୁଣା ପୁଣି ବୋଧଶକ୍ତି ଅନୁପସ୍ଥିତ । ଏଥିରେ କି ସମାଲୋଚନା ଲେଖିହୁଏ ? ତ୍ରିପାଠୀ ଏମିତି ମାତି ମୁଲନ୍ତି, କିନ୍ତୁ ସୌଭାଗ୍ୟର କଥା ଯେ ପ୍ରତିପକ୍ଷ ତାଙ୍କ କଥାର ମର୍ମ ବୁଝନ୍ତି ନାହିଁ । କବି ଓ ସାହିତ୍ୟିକମାନେ ଏହି ଦିବୋନ୍ମାଦଘୂର୍ଣ୍ଣିତନେତ୍ରୀ କଳ୍ପନା ବା ମିଛକଥା ବଳରେ ଭାଷାରେ ଲାବଣ୍ୟ ସଞ୍ଚାର କରିଥାନ୍ତି । ସାହିତ୍ୟର ଦେହ ହେଉଛି ଭାଷା, ଆଉ ବର୍ଣ୍ଣନାଭଙ୍ଗୀ ହିଁ ଲାବଣ୍ୟ । ତ୍ରିପାଠୀ ମହାଶୟ ସତର୍କ କରି ଦେଇଛନ୍ତି ଯେ, ଭାଷା ଲାଳିତ ହୋଇଉଠିଲେ ରଚନା ସ୍ୱତଃ ଲାବଣ୍ୟମୟ ହୋଇଯିବ ନାହିଁ । ଯାହା କାନକୁ ଭଲ ଲାଗିବ ତାହା ମନକୁ ଭଲ ଲାଗି ନ ପାରେ । ଏପରି ଭାଷା ବି ଜୀବନ୍ତ ନୁହେଁ । ସାହିତ୍ୟର ଭାଷା ଜୀବନ୍ତ ହେବ । ଭାଷା ଯେତେବେଳେ ଯୁଗପତ ପରିଶୀଳିତ ମନକୁ ଓ ପ୍ରଶିକ୍ଷିତ କାନକୁ ଭଲ ଲାଗେ, ସେତେବେଳେ ତାହା ଜୀବନ୍ତ ହୋଇଉଠେ । ଜୀବନ୍ତ ଭାଷା ବି ଯଥେଷ୍ଟ ନୁହେଁ । ସାହିତ୍ୟର ଭାଷା ଏକାଧାରରେ ଜୀବନ୍ତ ଓ ଛବିଳ ହେବା ଉଚିତ । ଜୀବନ୍ତ ଓ ଛବିଳ ଭାଷା ହିଁ ଲାବଣ୍ୟମୟ ଭାଷା । ଏହି ଜୀବନ୍ତ ଓ ଛବିଳ ଭାଷା ହିଁ ମିଛକୁ ସତ୍ୟ ବୋଲି ପ୍ରତିପନ୍ନ କରିଥାଏ । ଏଇଥିପାଇଁ ବୋଧହୁଏ କବି ସ୍ପିଏଟସ୍ କହନ୍ତି, "We poets should be good liars.'' ଏଇଠାରୁ ଓଡ଼ିଆ ସାହିତ୍ୟର ସମସ୍ୟାଟି ମୁଣ୍ଡ ଟେକେ । ସାହିତ୍ୟର ଏହି ଜୀବନ୍ତ ଓ ଛବିଳ ଭାଷା ସୃଷ୍ଟିରେ ଓଡ଼ିଆ ଭାଷାର ଭୂମିକା କ'ଣ ? ଯେଉଁ ଭାଷା ଯୁଗପତ କାନକୁ ଭଲ ଲାଗିବ ଓ ମନକୁ ନଚାଇବ, ତାହା ଯେବେ ଜୀବନ୍ତ ଭାଷା ହୁଏ ତେବେ କବି ଅଭିମନ୍ୟୁଙ୍କ 'ନେଲୁ ନାହିଁ କାହିଁପାଇଁ ତୋ କଠାଉଛଡା' ପାଦ ତୁଳନାରେ, ଉପେନ୍ଦ୍ରଙ୍କ ''ଦେଖି ନବକାଳିକା ବକାଳିକା ମାଳିକା, ଆଳି କାଳିକା କାନ୍ତ ସ୍ମର'ର ଭାଷା ନିଷ୍ପ୍ରଭ ମନେହେବ ନାହିଁକି ? ''କହିଇ ମନ ଆରେ ମୋ ବୋଲି କର'' ତୁଳନାରେ ''ରେ ଆସ୍ତନ, ଜନ୍ତୁ ପରିହରି, ଫେଡ଼ ଶକ୍ତାର ଲୋଚନ'' ଇତ୍ୟାଦି ନିଷ୍ପ୍ରାଣ ବୋଧ ହେବ ନାହିଁକି ? କବି ଉପେନ୍ଦ୍ରଙ୍କ ଭାଷା ଜୀବନ୍ତ ନୁହେଁ କାରଣ

ତାହା ବୁଦ୍ଧିକୁ ସ୍ପର୍ଶ କରେ, କିନ୍ତୁ ମନକୁ ଛୁଏଁ ନାହିଁ; ମଧୁସୂଦନଙ୍କ ଭାଷା ଜୀବନ୍ତ ନୁହେଁ କାରଣ ସେଥିରେ ଅନ୍ତରଙ୍ଗତା ଅନୁପସ୍ଥିତ, ଅନୁପସ୍ଥିତ ବି 'ବ୍ୟାକୁଳ ହୃଦୟର ଆକୁଳ ଶୋକାଶ୍ରୁ' । ସମସାମୟିକ ଓଡ଼ିଆ କବିତାର ଅବସ୍ଥା ଆହୁରି ବେଶି ଶୋଚନୀୟ । ତ୍ରିପାଠୀ ମହାଶୟ 'ନବଭାରତ' ଓ 'ସହକାର' ପୃଷ୍ଠାରୁ ଉଦାହରଣ ଦେଇ ଦେଖାଇଛନ୍ତି ଯେ, ଆଧୁନିକ କବିତା ମର୍ମସ୍ପର୍ଶୀ ନୁହେଁ କି ଲୋକପ୍ରିୟ ନୁହେଁ । ତାହାର ଭାଷାରେ ପୁଣି ବଙ୍ଗଳାର ପ୍ରାଦୁର୍ଭାବ ଅନାୟାସଲକ୍ଷ୍ୟ । 'ଅରସିକ' ପ୍ରବନ୍ଧରେ ଏହି ପ୍ରସଙ୍ଗରେ ସେ କବି ଅଭିମନ୍ୟୁଙ୍କ 'ଦୂତୀ କର ଧରି ହରି ବୋଇଲେ କିଶୋରୀ' ପଙ୍କ୍ତି ସହିତ ଅନ୍ୟତମ ଆଧୁନିକ କବିଙ୍କ "ଆସିଛି ଭୁବନ ପରେ ଯୌବନ ସରସା ॥ ଘନ ଗୌରବ ନବ ବରଷା" ପଦର ତୁଳନାତ୍ମକ ବସ୍ତୁର ବିଶ୍ଳେଷଣ କରିଛନ୍ତି ଓ ପ୍ରତିପାଦନ କରିଛନ୍ତି ଯେ, ଆଧୁନିକ କବିଙ୍କ "ଲେଖିବା ଢଙ୍ଗଟା ଏକାବେଳକେ ଓଡ଼ିଆ ନୁହେଁ ।" ଆଧୁନିକ କବିତାରେ ପ୍ରଯୁକ୍ତ ଶବ୍ଦ ସଂସ୍କୃତ ଶବ୍ଦ । ଅଭିମନ୍ୟୁଙ୍କ ଲେଖା ଓଡ଼ିଆ, କିନ୍ତୁ ଆଧୁନିକ କବିଙ୍କ ଲେଖା ଓଡ଼ିଆ ଅପେକ୍ଷା ବଙ୍ଗଳା ଭାଷାର ନିକଟବର୍ତ୍ତୀ । 'ଆସିଛି' କ୍ରିୟାପଦଟିକୁ ଅନୁବାଦ କରିଦେଲେ କବିତା ପଙ୍କ୍ତିଟି ଆପେ ଆପେ ବଙ୍ଗଳାରେ ଅନୂଦିତ ହୋଇଯିବ, କିନ୍ତୁ ଅଭିମନ୍ୟୁଙ୍କ ଲେଖାକୁ ସହଜରେ ଅନୁବାଦ କରି ହେବ କି ? ତେଣୁ ଓଡ଼ିଆ ସାହିତ୍ୟର ଭାଷା ଏକପକ୍ଷରେ ଯେପରି ସବଳ ଓ ଜୀବନ୍ତ ହେବା ପ୍ରୟୋଜନ, ଅନ୍ୟପକ୍ଷରେ ସେପରି ଲେଖାର ଢଙ୍ଗ ଓ ଛାଞ୍ଚ ମଧ୍ୟ ଓଡ଼ିଆ ହେବା ବାଞ୍ଛନୀୟ । ପ୍ରତ୍ୟେକ ଜାତିର କହିବାର ଢଙ୍ଗ ଓ ଛାଞ୍ଚ ସ୍ୱତନ୍ତ୍ର । ଓଡ଼ିଆଏ ସ୍ୱାତନ୍ତ୍ର୍ୟ ହରାଇବେ କାହିଁକି ? ଓଡ଼ିଆ କବିତା ବଙ୍ଗଳା, ହିନ୍ଦୀ କି ଇଂରାଜୀ ଛାଞ୍ଚରେ ଲେଖାଯିବ କାହିଁକି ? ପ୍ରକୃତ କବି ଲେଖିବ ନିଜ ଜାତିର ଲୋକଙ୍କ ପାଇଁ ନିଜ ଭାଷାରେ, ଖାଣ୍ଟି ଓଡ଼ିଆ ଭାଷାରେ । ଲେଖା ହେବ ଅନ୍ତରଙ୍ଗ ଓ ହୃଦୟଭେଦୀ । ଆଧୁନିକ ଓଡ଼ିଆ ସାହିତ୍ୟ ଲୋକପ୍ରିୟ ନ ହେବାର କାରଣ ହେଉଛି—ତାର କଥା ବଙ୍ଗଳା, ଛାଞ୍ଚ ବଙ୍ଗଳା ଓ ଶବ୍ଦ କ୍ଳିଷ୍ଟ ସଂସ୍କୃତ । ତ୍ରିପାଠୀଏ ସ୍ପଷ୍ଟ କହିଛନ୍ତି, 'ଓଡ଼ିଆରେ ବହି ଲେଖା ହଉଚି, ଅତଏବ ବହିର କଥା, ବର୍ଣ୍ଣନା ଓ ଭାଷ୍ୟ ସବୁ ଓଡ଼ିଆ ଲୋକଙ୍କ ଲାଏକ ହେବା ଉଚିତ (ମିଛକଥା-୨) । ଏହି ପ୍ରସଙ୍ଗରେ ତ୍ରିପାଠୀଙ୍କ 'ମାସ୍ୱାଙ୍କୀ' ଉପନ୍ୟାସର ୧୩ଶ ପରିଚ୍ଛେଦ ଅବଶ୍ୟ ପଠନୀୟ । ସେଠାରେ ଯୁକ୍ତିତର୍କ ଓ ବସ୍ତୁର ବିଶ୍ଳେଷଣର ଏକ ଦୀର୍ଘ ଆସର ଅଛି ଓ ଶେଷକୁ ପ୍ରତିପାଦନ କରାଯାଇଛି ଯେ, "ଓଡ଼ିଆ ସାହିତ୍ୟ ତା'ର ଅଙ୍ଗପୁଷ୍ଟି ନିମନ୍ତେ କାହାର ଅନୁଗ୍ରହ ଅପେକ୍ଷା କରେ ନାହିଁ । ପ୍ରକୃତରେ ଭିକ ମାଗି ପେଟ ପୋଷେ ନାହିଁ । ଅନୁଗୃହୀତ ଓଡ଼ିଆ ସାହିତ୍ୟ କେବେ ଉନ୍ନତ ହୋଇପାରିବ ନାହିଁ" (ଗୋବିନ୍ଦ ତ୍ରିପାଠୀ ଗ୍ରନ୍ଥାବଳୀ, ୧ମ ଖଣ୍ଡ, ପୃଷ୍ଠା ୨୩୭ ) ।

ଓଡ଼ିଶାର ସାହିତ୍ୟସେବୀଙ୍କ ପାଖରେ ତ୍ରିପାଠୀଙ୍କର ଆନ୍ତରିକ ନିବେଦନ ଯେ, ସେମାନେ ଭାଷାକୁ ସବଳ ଓ ଜୀବନ୍ତ କରିବାକୁ ଚାହିଁଲେ ନିଜ ଜାତିର ଭାଷା ପଢ଼ନ୍ତୁ ।

ଦେଶର ଭାଷା, ଗାଁ ଲୋକଙ୍କ ମୁହଁର ଭାଷା ଜୀବନ୍ତ ଓ ଚଳନ୍ତି । ଅବଶ୍ୟ ସେ ଇଂରାଜୀ ଓ ବଙ୍ଗଳା ସାହିତ୍ୟ ପଢ଼ିବାକୁ ବାରଣ କରନ୍ତି ନାହିଁ କି ବିଦେଶୀ ଶବ୍ଦପ୍ରୟୋଗକୁ ପ୍ରଣିଧାନ ଅଶୁଦ୍ଧ ବୋଲି ଭାବନ୍ତି ନାହିଁ । ଇଂରାଜୀ ଓ ବଙ୍ଗଳା ସାହିତ୍ୟ ଉନ୍ନତ । ତେଣୁ ଅବଶ୍ୟ ପାଠ୍ୟ । କିନ୍ତୁ ତାଙ୍କର ସର୍ତ୍ତ ଅଛି, "ଯେ ଓଡ଼ିଆ ଭାଷାରେ ଓଡ଼ିଆ ସାହିତ୍ୟର ଶ୍ରୀକଳେବର ବୃଦ୍ଧି କରିବାକୁ ଚାହେଁ, ତା ପକ୍ଷରେ ପ୍ରଥମେ ଓଡ଼ିଆ ଭାଷାକୁ ଅନୁପ୍ରାଣିତ କରି ତାପରେ ଅନ୍ୟଭାଷା ଓ ସାହିତ୍ୟରେ ପଶିପାରେ । ଏଇ ମାତ୍ର ।" ଓଡ଼ିଆ ଲେଖକମାନେ ଓଡ଼ିଆ ଭାଷାରେ ଯଥେଷ୍ଟ ଅଭ୍ୟାସ ନ ହେବା ପର୍ଯ୍ୟନ୍ତ ବିଶେଷତଃ ବଙ୍ଗଳା ସାହିତ୍ୟ ନ ପଢ଼ିବା ବାଞ୍ଛନୀୟ । ଓଡ଼ିଆ ସାହିତ୍ୟରେ ଯଥେଷ୍ଟ ପାଠ୍ୟବସ୍ତୁ ଅଛି । ଦ୍ୱିତୀୟତଃ ବିଦେଶୀ ଭାଷା ଯେବେ ନିତାନ୍ତ ଦରକାର ହୁଏ, ତାହାହେଲେ "ସେଗୁଡ଼ିକ ଓଡ଼ିଆ ଗୁଣ୍ଡରେ ଶୋଷ ପାଇଲା ପରି, ଓଡ଼ିଆ ପଖାଳଖିଆ ବୁଦ୍ଧିରେ ପଶିଲା ପରି ହେଉ । ଏଇଠି ପ୍ରତିବାଦ ଉଠିଲା । ଏପରିକି ଡଃ ମାୟାଧର ମାନସିଂହ ତାଙ୍କୁ ଭୁଲ ବୁଝିଲେ । ସେ କୁଆଡ଼େ ହାଡ଼ି, ପାଣ ଯେଉଁ ଭାଷାରେ କଥା କହନ୍ତି, ସେହି ଭାଷାରେ ସାହିତ୍ୟ ଲେଖାଯାଉ ବୋଲି ଯୁକ୍ତି କରନ୍ତି । ପ୍ରାଚୀନ ସାହିତ୍ୟ ତୁଳନାରେ ଆଧୁନିକ ସାହିତ୍ୟକୁ ନିକୃଷ୍ଟ ବୋଲି ପ୍ରତିପାଦନ କରିବାକୁ ଚାହାନ୍ତି ଇତ୍ୟାଦି ଇତ୍ୟାଦି । ବୁଝାମଣା ପୁରା ଭୁଲ । ତ୍ରିପାଠୀ ମହାଶୟ ବରଂ ଲୋକଙ୍କ କହିବା ଭାଷା ଓ ଲୋକଙ୍କ ବୁଝିବା ଭାଷାର ପାର୍ଥକ୍ୟ ବୁଝନ୍ତି । ଗାଉଁଲି ଭାଷାରେ ଲେଖିବାକୁ ହେଲେ ତାକୁ ଭାଙ୍ଗିରୁଜି ସେଥିରୁ ଗୋଟିଏ ସାହିତ୍ୟିକ ଭାଷା ସୃଷ୍ଟି କରିବାକୁ ପରାମର୍ଶ ଦିଅନ୍ତି, ଯାହା ହେବ ଏକାଧାରରେ ସରଳ ଓ ସୁନ୍ଦର । ସାହିତ୍ୟର ଭାଷା ପ୍ରକୃତରେ ଭାଷା ଭିତରର ଭାଷା—Language within language । ଅଧିକନ୍ତୁ ବୁଝି ହୋଇ ଯିବାଟା ସାହିତ୍ୟରେ ମଧ୍ୟ ଶେଷ କଥା ନୁହେଁ । ସେ ଲୋକପ୍ରିୟ ସାହିତ୍ୟ ଓ ଲୋକପ୍ରିୟ ଆଲମାନାକ ମଧ୍ୟରେ ଥିବା ତାରତମ୍ୟ ବିଚାର କରିପାରନ୍ତି । ସରଳ ସହଜ ସାଧାରଣବୋଧ୍ୟ ଭାଷାରେ ସାହିତ୍ୟ ସୃଷ୍ଟି ସମ୍ଭବ । କିନ୍ତୁ ଯାହାସବୁ ସରଳ, ସହଜ, ସାଧାରଣ ବୋଧ୍ୟ ଭାଷାରେ ରଚିତ ସେଗୁଡ଼ିକ ସାହିତ୍ୟ ନ ହୋଇ ପାରନ୍ତି । ତ୍ରିପାଠୀଙ୍କ ସାହିତ୍ୟବୋଧ ବେଶ୍ ସୂକ୍ଷ୍ମ ଓ ଗମ୍ଭୀର । ସେ ବୁଝାଇଛନ୍ତି, "ଏଇତ ସହଜ ସରଳ ଓଡ଼ିଆ ଭାଷା; ଭାଗବତର ନିଗୂଢ଼ ତତ୍ତ୍ୱକଥାଠାରୁ ଆରମ୍ଭ କରି ଉପନ୍ୟାସ ଗଳ୍ପ, ଦେଶପ୍ରିୟ ଗୀତିସବୁ ଏ ଭାଷାରେ ଲେଖାଯାଇପାରେ । ଆଉ ଏ ସାହିତ୍ୟ ଯେ ଲୋକପ୍ରିୟ ସାହିତ୍ୟ, ତାହା ଓଡ଼ିଶାର ସବୁ ଶ୍ରେଣୀର ପାଠକ ମାନିଛନ୍ତି । ବୈଷ୍ଣବ ପାଣି, କୃଷ୍ଣବାବୁ ଇତ୍ୟାଦିଙ୍କ ଲେଖା ଲୋକପ୍ରିୟ ଆଲମାନାକ—କାରଣ ଏଥିରେ ନାହିଁ ସାହିତ୍ୟର ଉନ୍ନତ ଭାବ, ହୃଦୟର ସ୍ପନ୍ଦନ, ଅନୁଭୂତିର କମ୍ପନ । ଉଭୟ ଭାଷା ଏକା ହୋଇପାରେ କିନ୍ତୁ ଭାବ ଓ ବିଷୟ ନେଇ ଗୋଟାଏ ଆଲମାନାକ ଓ ଗୋଟାଏ ସାହିତ୍ୟ" (ଅରସିକ) । ଏ କଥା ଏବେ କ'ଣ ଓଡ଼ିଆଏ ବୁଝିଲେଣି ? ଡଃ ମାନସିଂହ କ'ଣ ଠିକ୍ ବୁଝିଥିଲେ ? ତାଙ୍କ ଓଡ଼ିଆ ସାହିତ୍ୟର ଇତିହାସ କହିଲେ ଅବଶ୍ୟ ବୁଝିବାର

କୌଣସି ପ୍ରମାଣ ନାହିଁ । ଏଥିକରେ କିନ୍ତୁ ପ୍ରତିପକ୍ଷ ନିରସ୍ତ ହୋଇନାହାନ୍ତି; ଯୁକ୍ତି ବାଢ଼ିଛନ୍ତି, ଅଶିକ୍ଷିତ ଓଡ଼ିଆମାନେ ନୂଆ ଯୁଗର ନୂଆ ଭାବ ବୁଝିବେ କପରି ? ଆଧୁନିକ ସାହିତ୍ୟର ସୌନ୍ଦର୍ଯ୍ୟ ଉପଲବ୍ଧି କରିବେ କପରି ? ଆଧୁନିକ ଲେଖାର ଭାବ ଉଚ୍ଚ ଓ କାରବାର ମଧ୍ୟ ଉଚ୍ଚ ଆଧୁନିକ ସାହିତ୍ୟ ଦୁର୍ବୋଧ ନ ହେବ କପରି ? ତ୍ରିପାଠୀଏ ପ୍ରତିବାଦ ଜଣାଇଛନ୍ତି, "କଥାଟା ମୂଳରୁ ଶେଷ ପର୍ଯ୍ୟନ୍ତ ଅସତ୍ୟରେ ପୂର୍ଣ୍ଣ । ସାହିତ୍ୟ ଯେବେ ମନୁଷ୍ୟ ଜୀବନର ଚିତ୍ର ହୁଏ, ତାହାହେଲେ କୌଣସି ସମାଜ ତା'ର ସାହିତ୍ୟର ଅନୁପଯୁକ୍ତ ହୋଇ ନ ପାରେ (ମିଛ କଥା) ! ଏହି କଥାଟିକୁ ଅରସିକ ପ୍ରବନ୍ଧରେ ସେ ସ୍ପଷ୍ଟ ଭାବରେ ବୁଝାଇଛନ୍ତି, "ଏ ଯୁଗର ଲୋକେ ଆମ କବିତା ବା ଲେଖା ବୁଝିପାରିବେ ନାହିଁ କହିବା ମନୁଷ୍ୟଜାତି ପ୍ରତି ଅବମାନନା । ଜାତିର ଅନେକ ଦୋଷ ଥାଇପାରେ, କିନ୍ତୁ ଜାତିର ମନୁଷ୍ୟଗୁଡ଼ାକ ଆମ ତୁମ ପରି ମନୁଷ୍ୟ—ମହତ, ଉଦାର ଓ ସ୍ୱର୍ଗୀୟ । ସେ ଯେତେ ଅପାଠୁଆ ହେଉ, ଯେତେ ଅସଭ୍ୟ ହେଉ, ଯାହା ସୁନ୍ଦର ତାକୁ ବାଛିନେବାର ଶକ୍ତି ତା'ର ବରାବର ରହିଛି (ଅରସିକ) । ତ୍ରିପାଠୀଙ୍କ ପାଇଁ ନୂଆ ଭାବ, ନୂଆ ଧାରଣା, ନୂଆ କଥା, ନୂଆ ସୂର୍ଯ୍ୟ ପରି । ସେହି ନୂଆ ପୁରୁଣାରୁ ଗଢ଼ା ହୋଇଥିବା ନୂଆ । "ଝଡ଼ ତୋଫାନ ପରେ ନୂଆ ସୂର୍ଯ୍ୟକୁ ଦେଖି ମନେହୁଏ, କାରଣ ସେ ସୂର୍ଯ୍ୟ ଆମର ପୁରୁଣା ଜଣା ସୂର୍ଯ୍ୟ ଆସିଛି,ନୂଆ ଆଲୋକ, ନୂଆ ତେଜ ନେଇ ।" ଏ ବୁଢ଼ୀ ପୃଥିବୀ ସବୁ ଦେଖି-ସାରିଛି, ସବୁ ଶୁଣି ସାରିଛି, ତାକୁ ଏକଦମ ନୂଆ କିଛି ଦେଖାଇବାକୁ ନାହିଁ କି ଶୁଣାଇବାକୁ ନାହିଁ । ଐତିହ୍ୟ ଓ ଆଧୁନିକତା ହାତ ଧରାଧରି ହୋଇ ଚାଲନ୍ତି— ତ୍ରିପାଠୀ ସେହି ଆଧୁନିକତାକୁ ଶ୍ରଦ୍ଧା ଓ ଭକ୍ତି ଜଣାଇବାକୁ ପ୍ରସ୍ତୁତ ଯାହା ଐତିହ୍ୟ ଉପରେ ପ୍ରତିଷ୍ଠିତ । ସେ ବୁଝାଇଛନ୍ତି, "କିନ୍ତୁ ପୁରୁଣାର ଅଜଣା ନୂଆ ଜିନିଷ ଦେଖିଲେ ଭକ୍ତି ହବ ନାହିଁ, ଭୟ ହବ; ଶ୍ରଦ୍ଧା ହବ ନାହିଁ, ବିରକ୍ତି ହବ । ଆମେ ନୂଆ ଲେଖକ-ମାନଙ୍କୁ ଶ୍ରଦ୍ଧା କରିବାକୁ ଚାହୁଁ, ଭୟ କରିବାକୁ ଚାହୁଁ ନାହିଁ ।" ସେହି ହେତୁରୁ ନୂଆ ସୂର୍ଯ୍ୟର ନୂଆ ତେଜରେ ଆଖି ଝାପ୍‌ସା ହୋଇ ଯେତେବେଳେ ସେମାନେ ଅମଡ଼ାମାଡ଼ି ଚାଲନ୍ତି, ତାଙ୍କୁ ଟିକିଏ ହାତ ଠାରି ଧରି ବାଟକୁ କାଢ଼ି ଆଣିବାକୁ ଚେଷ୍ଟାକରୁ (ଅରସିକ) । ଆଧୁନିକ ଓଡ଼ିଆ ସାହିତ୍ୟର କିଛି ନାହିଁ ବୋଲି ସେ କହିନାହାନ୍ତି, ବରଂ କହିଛନ୍ତି, ତା'ର ଭାବ ଅଛି, ରୁଚି ଅଛି, ସଭ୍ୟତା ଅଛି, ଲଳିତ୍ୟ ଅଛି, ଛନ୍ଦ ଅଛି—ସବୁ ଅଛି; ତଥାପି ଏ ଲେଖା ଲୋକଙ୍କୁ ନିର୍ଜୀବ ପରି ଲାଗେ । କାହିଁକି ? ତା'ର କାରଣ ଏଥିରେ ନାହିଁ ସହୃଦୟତା, ନାହିଁ ଓଡ଼ିଆର ସୁଖଦୁଃଖରେ ସମବେଦନା । ଏ ଯେପରି ହୋଟେଲପେଟ ଗରିବ ଓଡ଼ିଆଙ୍କୁ ବଙ୍ଗାଳିବାବୁଙ୍କର ଦରେଇଟି ଓଡ଼ିଆରେ ଆଶ୍ୱାସନା, ବିଲାତ ସାଇବଙ୍କ ଟୁଣ୍ଡା ଓଡ଼ିଆରେ ସମ୍ବର୍ଦ୍ଧନା । ସେ ଓଡ଼ିଆର କି ଲଭ ? ଓଡ଼ିଆ ସେଥିରୁ କ'ଣ ବୁଝିବ ? କି ଆଶ୍ୱାସନା ପାଇବ ? (ଅରସିକ) । ଗାଁ ଗହଳର ମୌଖିକ ଓଡ଼ିଆ ଭାଷାରେ ଲେଖାଯିବ ଓଡ଼ିଆ ସାହିତ୍ୟ; ଛନ୍ଦକୁ ଚାହିଁ ଭାଷା ବଦଳିବ ନାହିଁ,

ଭାଷାକୁ ସ୍ୱୟଂ ତିଆରି ହେବ ଛନ୍ଦ । ନୂଆ ଯୁଗର ନୂଆ ରୁଚି ପ୍ରବର୍ତ୍ତିତ ହେବ ନିଶ୍ଚୟ । କିନ୍ତୁ ତାହା ଐତିହ୍ୟରୁ ବିଚ୍ଛିନ୍ନ ହୋଇପାରିବ ନାହିଁ; ଆଉ ସେଥିରେ ଫୁଟି ଉଠିବ ଓଡ଼ିଆଙ୍କ ସୁଖଦୁଃଖରେ ସମବେଦନା ଓ ସହୃଦୟତା, ଓଡ଼ିଶା ମାଟିର ବାସ୍ନା ଓ ଓଡ଼ିଆଙ୍କ ଜାତୀୟ ସ୍ମୃତିର ସୌରଭ । ଓଡ଼ିଆ ସାହିତ୍ୟ ଇତିହାସରେ ତ୍ରିପାଠୀଙ୍କ ବକ୍ତବ୍ୟ ଓ ଉଦ୍ଦେଶ୍ୟର ଏକ ତାତ୍ପର୍ଯ୍ୟମୟ ଭୂମିକା ସ୍ୱୀକାର କରିବାକୁ ହେବ—ଯେତେବେଳେ ଐତିହ୍ୟ ଅସ୍ୱୀକାର ତଥା ଓଡ଼ିଆ ଭାଷା ଓ ସାହିତ୍ୟର କଲ୍ୟାଣକାମନାର ଅଭାବ ବଳବତ୍ତର ହୋଇଉଠୁଥିଲା, ସେତେବେଳେ ବ୍ୟଙ୍ଗର କଷାଘାତର ଓ ସତ୍‌ପରାମର୍ଶରେ ତାରୁଣ୍ୟର ଅବିବେଚନାମୟ ବେଗକୁ ସେ ସଂଯତ ଓ ସଂହତ କରିଛନ୍ତି ନିଶ୍ଚୟ । ଓଡ଼ିଆ ସାହିତ୍ୟ ଆତ୍ମସମାହିତ ହୋଇ ଶିଖିଛି, ଆତ୍ମସମ୍ମାନବୋଧ ଅର୍ଜିଛି ।

ନବୀନ ଲେଖକମାନଙ୍କୁ ତ୍ରିପାଠୀ ନିରୁତ୍ସାହିତ କରନ୍ତି ନାହିଁ, ସେମାନଙ୍କ 'ଅସନ୍ଦିଗ୍ଧ ପାଣ୍ଡିତ୍ୟ' ଓ 'ପ୍ରଶଂସ୍ୟ ଉଦ୍ୟମ'ରେ ତାଙ୍କର ଗଭୀର ବିଶ୍ୱାସ । ସେ କେବଳ ସେମାନଙ୍କ ପାଖରେ ବଡ଼ ବିନୀତ ଭାବରେ କେତୋଟି ଜଣାଶୁଣା କଥା ନିବେଦନ କରନ୍ତି, ତାଙ୍କର ଭୁଲଭ୍ରାନ୍ତି ଦେଖାନ୍ତି (ସାହିତ୍ୟ ଓ କଳ୍ପନା) । ତାଙ୍କ ପାଇଁ ସାହିତ୍ୟ ଅନ୍ୟତମ କଳା । କଳାର କାର୍ଯ୍ୟହେଲା ଅବାସ୍ତବରେ ବାସ୍ତବତାର ଭ୍ରମ ଉପୁଜାଇବା—ଅନ୍ୟକଥାରେ କହିବାକୁ ଗଲେ ମୃତ ବ୍ୟକ୍ତିତ୍ୱରେ ଜୀବନ ସଞ୍ଚାରିବା, ନିର୍ଜୀବକୁ ଜୀବନଦାନ ଦେବା, ଅପ୍ରତ୍ୟକ୍ଷକୁ ପ୍ରତ୍ୟକ୍ଷ କରିବା । ଏଠାରେ କଳ୍ପନାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଆଉ ସମାନୁପାତିକ ସାମୂହିକ ସୌନ୍ଦର୍ଯ୍ୟସୃଷ୍ଟି ଶେଷକଥା । ବିଷୟବସ୍ତୁ ସାହିତ୍ୟରେ ଅବାନ୍ତର, ସେଠାରେ ଖୋଜାଯାଏ ସାମୂହିକ ସୌନ୍ଦର୍ଯ୍ୟସୃଷ୍ଟି ମାତ୍ର । ସାହିତ୍ୟିକଙ୍କ ରଚନାରେ ସେହି ସୌନ୍ଦର୍ଯ୍ୟବୋଧ ଓ ଶୋଭାପ୍ରକାଶ ହିଁ ପ୍ରାଣସ୍ୱରୂପ । ସେଥିରେ କବି ଓ ସାହିତ୍ୟିକଗଣ ଯେବେ ଦର୍ଶନ ଓ ବିଜ୍ଞାନାଦି ପ୍ରୟୋଗ କରିଥାନ୍ତି, ତାହାହେଲେ ସେସବୁ ଆନୁଷଙ୍ଗିକ; ବିଷୟବସ୍ତୁର ଆବହାଓ୍ୱା, ବେଷ୍ଟନୀ ମାତ୍ର । ସେ ସବୁ ଦରକାର ପଡ଼ିପାରେ, ନ ପଡ଼ିପାରେ (ଶ୍ରେଷ୍ଠ କଥାଟିଏ) । ସେଦିନ ଯେଉଁ ତରୁଣଗଣ ସାମ୍ୟବାଦ ବିଶେଷତଃ ଲେନିନ ଜାତୀୟ ସାମ୍ୟବାଦ ନେଇ ଅତ୍ୟୁତ୍ସାହୀ ହୋଇପଡ଼ିଥିଲେ, ସେମାନଙ୍କୁ ସେ ସାହିତ୍ୟର ପ୍ରାଣପ୍ରକୃତି ସମ୍ବନ୍ଧରେ ସଚେତନ କରାଇଛନ୍ତି । ସାହିତ୍ୟ ସବୁଦିନେ ଚିରସତେଜ ଗୋଲାପ ଫୁଲଟିଏ ପରି ଫୁଟି ରହିଥାଏ; ତାକୁ ସେଦିନ ଯେଉଁମାନେ ବୁର୍ଜୁଆ ବିଳାସ ବୋଲି ପ୍ରତ୍ୟାଖ୍ୟାନ କରିବାକୁ ବସିଛନ୍ତି, ଧ୍ୱଂସ ଓ ସମାଜବିପ୍ଳବର ଆହ୍ୱାନ ନେଇ ମାତିଛନ୍ତି, ମିଥ୍ୟା ଫ୍ରଏଡ଼ୀୟ ମନୋବିଶ୍ଳେଷଣ ନେଇ ପାଟି କରିଛନ୍ତି, ସେମାନଙ୍କୁ ସେ 'ପାରଡ଼ାପୋକ' ବୋଲି ଅଭିହିତ କରିବାକୁ ପଛାଇନାହାନ୍ତି । ଗୋଲାପଫୁଲର ମହୁମାଛି ହେବାରେ ସାହିତ୍ୟିକର କୃତାର୍ଥତା, କଖାରୁ-ଫୁଲର ପାରଡ଼ାପୋକ ହେବାରେ ନୁହେଁ । ଶେଷକୁ ତାଙ୍କ କଥା ରହିଛି । କଖାରୁଫୁଲ ଓ ପାରଡ଼ାପୋକମାନେ ଓଡ଼ିଆ ସାହିତ୍ୟ କ୍ଷେତ୍ରରୁ ବିଦାୟ ନେଇଛନ୍ତି । ତ୍ରିପାଠୀଙ୍କ

ପ୍ରବନ୍ଧ ଏବେ ବି ପାଠଯୋଗ୍ୟତା ହରାଇନାହିଁ । ଏବେ ବି ଯେ କେହି ତରୁଣ ସାହିତ୍ୟିକ ଦିଗଦର୍ଶନ ପାଇଁ ତାଙ୍କ ପ୍ରବନ୍ଧ ପଢ଼ିପାରନ୍ତି । ବିଶେଷତଃ କବିତାରେ ବିଷୟ ବିଚାର, ସାହିତ୍ୟ ଓ କଳ୍ପନା, ସାହିତ୍ୟରେ ନ୍ୟାୟ, କଖାରୁ ଫୁଲ, ଶ୍ରେଷ୍ଠ କଥାଟିଏ, ସାହିତ୍ୟ ଓ ଉପନ୍ୟାସ, ଏକାଙ୍କିକା, ଇଂରାଜୀ ସାହିତ୍ୟର ଉପାଦେୟତା, ମିଛକଥା ଓ ଅରସିକ ଆଦି ପ୍ରବନ୍ଧ ପଢ଼ି ଯେ କେହି ଉପକୃତ ହୋଇପାରନ୍ତି । ତଦ୍ୱାରା ସାହିତ୍ୟିକ ଅବବୋଧ ବଢ଼ିବ, ଗଳ୍ପ, ଉପନ୍ୟାସ, ଏକାଙ୍କିକାଦି ରଚନାର ମୂଳସୂତ୍ର ଜାଣିହେବ । ଅଧିକନ୍ତୁ ଦେଶୀବିଦେଶୀ ବହୁ ଉଚ୍ଚକୋଟିର ସାହିତ୍ୟିକଙ୍କ ବିଚାରବୋଧ ସହିତ ପରିଚିତ ହୋଇହେବ । ଗେଟେ, ରୋମାରୋଲାଁ, ସେକ୍ସପିଅର, କବି ସ୍ୱିନବର୍ଣ୍ଣ, କୀଟସ୍, ମିଲଟନ୍, ସ୍କଟ୍, ଟେନିସନ୍, ରସେଲ୍, ଡ୍ରିଙ୍କଓ୍ୱାଟର, କିପ୍ଲିଂ ଲିମ୍ବଷ୍ଟି, ଡିକେନ୍ସ, ଚେଷ୍ଟରଟନ, ଭଲଟେୟାର, ବର୍ଣ୍ଣାଡ଼ ଶ', ହୋଓ୍ୱାର୍ଡ, ବାଣ, କାଳିଦାସ, ଭାରବୀ, ମାଘ, ଉପେନ୍ଦ୍ର, ଅଭିମନ୍ୟୁ, କବିସୂର୍ଯ୍ୟ ଓ ରବୀନ୍ଦ୍ରନାଥ ଆଦି ବହୁ ସାହିତ୍ୟିକଙ୍କ ରୁଚି, ବିଚାର ଓ ସୌନ୍ଦର୍ଯ୍ୟବୋଧ ସମ୍ବନ୍ଧରେ ସେ ସଚେତନ ଥିଲେ । ତାଙ୍କ ପ୍ରବନ୍ଧ ପଢ଼ିଲେ ତେଣୁ ଉଭୟବୋଧ ଓ ବିଚାର ମାର୍ଜିତ ହୋଇପାରିବ ।

କେବଳ ଓଡ଼ିଆ ସାହିତ୍ୟ ସୃଷ୍ଟି ନୁହେଁ, ଏହାର ପ୍ରଚାର ଓ ପ୍ରସାର ପାଇଁ ମଧ୍ୟ ତ୍ରିପାଠୀଙ୍କର ଆଗ୍ରହ ଥିଲା । ଗ୍ରାହକତାରେ ସାହିତ୍ୟିକଙ୍କର ସୁଖ ଓ ସୌଭାଗ୍ୟ । ତାଙ୍କ 'ଅଡା ବେପାରୀ' ପ୍ରବନ୍ଧ ପଠନୀୟ । ଲୋକଙ୍କ ଦାରିଦ୍ର୍ୟ, ସରକାରଙ୍କ ଅବୁଝାମଣା କି ଲୋକଙ୍କ ମୂର୍ଖତା ଓଡ଼ିଆ ସାହିତ୍ୟର ପ୍ରଚାର ଓ ପ୍ରସାର କ୍ଷେତ୍ରରେ ପ୍ରକୃତ ଅନ୍ତରାୟ ନୁହେଁ, ଅନ୍ତରାୟ ହେଉଛି ଓଡ଼ିଆଙ୍କ ଅନାଗ୍ରହ ଓ ଉଦ୍ୟମହୀନତା । ଉତ୍କଳ ସାହିତ୍ୟ ସମାଜ, ସବୁଜ ସାହିତ୍ୟ ସଙ୍ଘ ଓ ନବଯୁଗ ସାହିତ୍ୟ ସଂସଦକୁ ସେ ନିଜ ନିଜର ଅହଙ୍କାରର ପରିଧି ଭାଙ୍ଗି ସମସ୍ତଙ୍କୁ କୋଳେଇ ନେବାକୁ ଆହ୍ୱାନ ଦେଇଛନ୍ତି । ପଞ୍ଚାୟତ ଗୁଡ଼ିକରେ ଶ୍ରେଷ୍ଠ ଲାଇବ୍ରେରୀ ଓ ପଢ଼ିବା ଘର ବ୍ୟବସ୍ଥା କରିବାକୁ ଚାହିଁଛନ୍ତି, ବୁକ୍ ବହି ଦୋକାନ ସଂଖ୍ୟା ବଢ଼ାଇବାକୁ ଉପଦେଶ ଦେଇଛନ୍ତି । ସୁନ୍ଦର ଛପା ଓ ମନୋଜ୍ଞ ପ୍ରଚ୍ଛଦ ପ୍ରସ୍ତୁତ କରିବାକୁ ପ୍ରକାଶକମାନଙ୍କୁ ନିବେଦନ କରିଛନ୍ତି । ବହି ଆକର୍ଷଣୀୟ ହୋଇପାରିବ । ଲୋକେ ଭଲ ବହି ପଢ଼ିବେ, ମାର୍ଜିତ ରୁଚି ଓ ସୌନ୍ଦର୍ଯ୍ୟବୋଧରେ ଉଦ୍‌ବୁଦ୍ଧ ହେବେ । ତାଙ୍କର ସଦ୍‌ରୁଚି ପ୍ରବୃତ୍ତି ହିଁ ପ୍ରବଳ । ଅପସାହିତ୍ୟ ଛପାକୁ ସେ ବନ୍ଦ କରିବାକୁ ଚାହାନ୍ତି, ଲୋକଙ୍କ ରୁଚି ଓ ବୁଦ୍ଧିକୁ ଖରାପ କରୁଥିବାରୁ ଛାପାଖାନା ମାଲିକ ଓ ପ୍ରକାଶକଙ୍କୁ ଶାସ୍ତି ଦେବାର ବ୍ୟବସ୍ଥା ରହୁ ବୋଲି ଯୁକ୍ତି ବାଢ଼ିଛନ୍ତି । ଓଡ଼ିଶାରେ 'Board of Censors' ଅନୁଷ୍ଠାନ ଗଢ଼ିବାକୁ ହେବ । ଏହା ସମ୍ଭବ କି ? ସେ ତାଙ୍କର ସାମର୍ଥ୍ୟର ସୀମିତତା ଜାଣନ୍ତି, କିନ୍ତୁ ଜାହାଜ ମୁଲାଇବାର ଦୁରାକାଙ୍କ୍ଷାକୁ ଛାଡ଼ିବାକୁ ପ୍ରସ୍ତୁତ ନୁହନ୍ତି ।

ଓଡ଼ିଆ ସମାଲୋଚନା ସାହିତ୍ୟକୁ ତ୍ରିପାଠୀଙ୍କ ଅବଦାନ କଳନା କରିବାକୁ ହେଲେ ତାଙ୍କ ସମସାମୟିକ ସାହିତ୍ୟ ସମାଲୋଚକଙ୍କ ବିଦ୍ୟାବୁଦ୍ଧି ସମ୍ବନ୍ଧରେ ସଚେତନ ହେବାକୁ ହେବ । ସେ ଦିନ ସେମାନେ 'ସାହସ'କୁ ଲେଖନ୍ତି 'ସାହାସ' ଓ Psycho-Analysis ବନାନ ନ ଆସୁ ପଛେ ଫ୍ରଏଡ଼ଙ୍କ ମନୋବିଶ୍ଳେଷଣ ଯୋକ ମାରି ପାରନ୍ତି । ବିଦ୍ୟା ସୁପ୍ରଶସ୍ତ ! ଆଉ ବୁଦ୍ଧି ? ତାଙ୍କର ବୁଦ୍ଧିଦାତା ଥିଲେ ତିନିଜଣ । ୧ମ—ନେଲସନ ସାହେବ ( ତାଙ୍କପରି କଣା ଆଖିଟି ପାଖରେ ଟେଲିସ୍କୋପ ଧରି ଏମାନେ କବିଙ୍କ ହୃଦୟ ସଙ୍କେତଟା ଏପରି ଖିନ୍ ଖିନ୍ କରି ଦେଖିପାରନ୍ତି ଯେ ସେ ବିଚରା ଛାଡ଼ି ଛାଡ଼ି ରଡ଼ି ଗୁଡ଼ି ପଳାଏ । ୨ୟ—ଚୁନୁନ୍ତ୍ରା ( ଏମାନଙ୍କ ଅନୁଗ୍ରହ ଯାହା ଉପରେ ପଡ଼େ, ତା ଜୀବନରେ ଗୋଟିଏ ମହତ୍ତ୍ୱ ଫୁଟିଉଠେ । ପୁଣି ଏମାନଙ୍କୁ ମାଇଲେ ହାତ ଟଙ୍କାଏ । ) ୩ୟ—ସେକ୍ସପିଅରଙ୍କ ଇୟାଗୋ ( ବ୍ୟାଖ୍ୟା ନିଷ୍ପ୍ରୟୋଜନ ) (ଖଣ୍ଡିଏ ପତ୍ର—ସହକାର, ଏପ୍ରିଲ ମେ' ୧୯୨୫ ) । ଏଣୁ ଏମାନଙ୍କ ଅନୁଗ୍ରହରେ ଯେବେ ନାଟ୍ୟକାର ରାମପାଳ ମିଶ୍ର ପାଗଳ ହୋଇଥାନ୍ତି ତେବେ ଆଶ୍ଚର୍ଯ୍ୟାନ୍ୱିତ ହେବାରେ କିଛି ନାହିଁ । ନାଟ୍ୟକାର ଅଶ୍ୱିନୀକୁମାରଙ୍କୁ ମଧ୍ୟ ଏମାନେ ଗୁଡ଼ିନାହାନ୍ତି । ତାଙ୍କ ନାଟକର ବିପକ୍ଷ ସମାଲୋଚନା ଅକୃତଜ୍ଞତାର ଚିହ୍ନ ମାତ୍ର । ଅଶ୍ୱିନୀକୁମାରଙ୍କ ସତ୍‌ସାହସ, ସାଧୁ ଉଦ୍ୟମ ଓ ନିଷ୍କଳଙ୍କ ସାହିତ୍ୟସ୍ପୃହାକୁ ତ୍ରିପାଠୀଏ ପ୍ରଶଂସା କରନ୍ତି ଓ କହନ୍ତି ଯେ, ସମାଲୋଚନା ଯେପରି ଲେଖକର ଆଗ୍ରହରେ ଶୀତଳତା ନ ଆଣେ ସେଥିପାଇଁ ସମାଲୋଚକ ସଚେତନ ରହିବା ଉଚିତ । ସମାଲୋଚନା ମାନେ ଅଜସ୍ର ଦୋଷ ପ୍ରଦର୍ଶନ ନୁହେଁ କି ଅଜସ୍ର ଗୁଣଗାନ ନୁହେଁ । ସମାଲୋଚନାମାନେ ସୁବିସ୍ତୃତ ଭାବରେ ଲେଖା ବା ଲେଖକର ସ୍ଥାନ ନିରୂପଣ ବା ମୂଲ୍ୟାୟନ । ଏହି ମୂଲ୍ୟାୟନ ତୁଳନାଶୀଳ ହେଲେ ଆହୁରି ଭଲ କଥା । ତ୍ରିପାଠୀ ମହୋଦୟ ବିଦ୍ୟାପତିଙ୍କ ପଦାବଳୀ ଅନୁବାଦ ଉପଲକ୍ଷେ ତୁଳନାତ୍ମକ ସମାଲୋଚନାର ଉପାଦେୟତା ପ୍ରତିପାଦନ କରିଛନ୍ତି, "ଘରର ରତ୍ନ ଯେତେ ଉଜ୍ଜ୍ୱଳ ହେଲେ ମଧ୍ୟ ବାହାର ରତ୍ନ ସହିତ ତୁଳନା ନ କଲେ ପ୍ରକୃତ ମୂଲ୍ୟ ନିର୍ଦ୍ଧାରଣ କରାଯାଇ ପାରେ ନାହିଁ । ବିପରୀତ ପକ୍ଷରେ ମଧ୍ୟ ଜାତିଗତ ଦୋଷ ଭିନ୍ନ ଆଦର୍ଶର ସମ୍ମୁଖୀନ ଓ ସମବିବେଚ୍ୟ ନ ହେଲେ ତିରୋହିତ ହୁଏ ନାହିଁ । ମନୁଷ୍ୟ ଜୀବନରେ ପ୍ରବାସ ଯେପରି ଉପକାରୀ, ଜାତୀୟ ସାହିତ୍ୟ ସମ୍ବନ୍ଧରେ ମଧ୍ୟ ପରଦେଶୀ ସାହିତ୍ୟର ଆଲୋଚନା ସମାନ ଉପଯୋଗୀ । ···ଜାତୀୟ ଆଦର୍ଶକୁ ସୁନ୍ଦର, ପରିସ୍ଫୁଟ ଏବଂ ପୂର୍ଣ୍ଣତାଭିମୁଖୀ କରିବାକୁ ହେଲେ ଭିନ୍ନ ଆଦର୍ଶ ସହିତ ତାହାର ପରିମାଣ ତୁଳନା ଓ ମିଶ୍ରଣ ନିତାନ୍ତ ପ୍ରୟୋଜନ (ବିଦ୍ୟାପତି—୧ ଓ ୨) । କବି ଉପେନ୍ଦ୍ରଙ୍କ ଉପମାକୁ ସେ ପ୍ରସଙ୍ଗତଃ ସେଲି ଓ ସେକ୍ସ-ପିଅରଙ୍କ ଉପଯୁକ୍ତ ବୋଲି ଘୋଷଣା କରିଛନ୍ତି । ବୈଦେଶିକ ସାହିତ୍ୟ ସହିତ ସମ୍ବନ୍ଧ ନ ଥିବାରୁ ଆମ ପ୍ରାଚୀନ ସାହିତ୍ୟର କେବଳ ଅଶ୍ଳୀଳତାହିଁ ଆଖିକୁ ଦିଶେ; ମହତ୍ତ୍ୱ ଓ ସୌନ୍ଦର୍ଯ୍ୟ [illegible]ନାଶ୍ରିତ ହୋଇରହେ । ଭଞ୍ଜେ ତାଡ଼କୀର ଆକ୍ରମଣ ଉପଲକ୍ଷେ ଯେଉଁ

ଉପମା ପ୍ରୟୋଗ କରିଛନ୍ତି ତାହାକୁ ସେ ଅଗ୍ରୁଜ୍ଜ୍ୱଳ ଏକ ରତ୍ନ ବୋଲି ଅଭିହିତ କରିଛନ୍ତି । ବୈଦେଶିକ ବିଳାସରେ ଅଛି, "ବଜ୍ରମି ଆସଇ ମନହୁଁ ବେଗେ ବଢ଼ ମେଘ ଖଣ୍ଡ କ ବାୟୁବେଗେ ।" ଏପରି କଳ୍ପନା କାଳିଦାସଙ୍କ ରଘୁବଂଶରେ ବର୍ତ୍ତମାନ, "କାଲକେବ ନବଦ୍ଧା ବଳାକଜା ।" ଉଭୟର ଭାଷା ଛବିଳ ଓ ଜୀବନ୍ତ—ମହତ କବିଙ୍କର ଉପଯୁକ୍ତ । ଅଧିକନ୍ତୁ ସେ କହିଛନ୍ତି, "ଆଜି ଆମ୍ଭମାନଙ୍କ ଆତ୍ମତୃପ୍ତ ଦୃଷ୍ଟିରେ ଯାହା ଅଶ୍ଳୀଳ ବୋଲି ପ୍ରତୀୟମାନ ହୁଏ, କାଲି ବୈଦେଶିକ ସାହିତ୍ୟରଥୀମାନଙ୍କର ସେହି ସେହି ବିଷୟ ଦେଖିଲେ ତାର ପ୍ରତି ଆଦର ହେବ ।" ଅନୁବାଦ ଓ ତୁଳନାତ୍ମକ ସମାଲୋଚନା ମାଧ୍ୟମରେ ସାହିତ୍ୟବୋଧ ପ୍ରଶସ୍ତ ଓ ଉଦାର ହେବ, ରୁଚି ଓ ସୌନ୍ଦର୍ଯ୍ୟ ଦୃଷ୍ଟି ମାର୍ଜିତ ଓ ଶାଣିତ ହେବ । ତ୍ରିପାଠୀଙ୍କ ସମୟର ସମାଲୋଚନାର ଦଶା ଅବଶ୍ୟ ଶୋଚନୀୟ ଥିଲା । ନିରପେକ୍ଷ ନିଷ୍କାମ ସମାଲୋଚନା କଳ୍ପନାତୀତ । —"ଜନଗତ ଈର୍ଷା ଆକ୍ରୋଶ, ସମାଲୋଚକଙ୍କର ସଂକୀର୍ଣ୍ଣ ମନର ବୃଥା ଆସ୍ଫାଳନ ହିଁ ବର୍ତ୍ତମାନ ସମାଲୋଚନା ନାମରେ ଆଖ୍ୟାତ ।" ତେଣୁ ସେ ସାହିତ୍ୟରେ ସମାଲୋଚନାର ସ୍ଥାନ ନିରୂପଣ କରିବାକୁ କବି ସ୍ୱିନବର୍ଣ୍ଣ ଓ ସିଲରଙ୍କୁ ସ୍ମରଣ କରିଛନ୍ତି । କବି ସ୍ୱିନବର୍ଣ୍ଣ କହିଥିଲେ, "ସମାଲୋଚକର କାର୍ଯ୍ୟ ଝାଡ଼ୁଦାରଣୀର କାର୍ଯ୍ୟପରି । ସେ ସାଆନ୍ତଙ୍କର ଅର୍ଥାତ୍ ପ୍ରତିଭାଶାଳୀ ଲେଖକଙ୍କର ଆସିବା ଅପେକ୍ଷାରେ ଘରଦ୍ୱାର ସଫାସୁତୁରା କରୁଥାଏ, ସାଆନ୍ତ ଆସିଲେ ସେ ଘର ଛାଡ଼ି ପଳାଇବ—ଏହି ପର୍ଯ୍ୟନ୍ତ ।" ଅନ୍ୟତ୍ର ସେ ସିଲରଙ୍କୁ ଉଦ୍ଧାର କରିଛନ୍ତି, "ସାହିତ୍ୟରେ ସମାଲୋଚନାର ସ୍ଥାନ ଅଛି, ଆଉ ସେ ସ୍ଥାନ ସିଲରଙ୍କ ଭାଷାରେ ଝାଡ଼ୁଦାରର—Serving wenchର ସ୍ଥାନ ହେଲେ ମଧ୍ୟ ସେ ଝାଡ଼ୁଦାର ଅତି ଉଚ୍ଚ, ତାର କାର୍ଯ୍ୟ ଅତି ମହତ । ସେ କାହାରିକୁ ଶ୍ରେଷ୍ଠ କରିବାକୁ ଯାଏ ନାହିଁ, କେବଳ ସାହିତ୍ୟ ମନ୍ଦିରରୁ ବୁଢ଼ୀଆଣି ଜାଲ ଅଳିଆମଳିଆ ପୋକଜୋକ ଓଲେଇପୋଲେଇ ଫିଙ୍ଗି ଦିଏ, ଘରଟିକୁ ଚକ୍‌ଚକ୍‌ତକ୍‌ତକ୍ କରି ରଖେ, ସରସ୍ୱତୀଙ୍କ ଆଗମନ ପାଇଁ । ସରସ୍ୱତୀ ଯେତେବେଳେ ଆସନ୍ତି, ସେତେବେଳେ ସେ ଆପେ ଘୁଞ୍ଚି ମୁଣ୍ଡିଆ ଗୋଟିଏ ମାରି ପଳେଇଯାଏ" (ଅରସିକ) । ଦୁହିଁଙ୍କର ବକ୍ତବ୍ୟ ସମାନ । ସେମାନଙ୍କ ଆଦର୍ଶହିଁ ତ୍ରିପାଠୀଙ୍କର ଆଦର୍ଶ । ସେ ସାରସ୍ୱତ ଝାଡ଼ୁଦାରର ମହତ ଭୂମିକାଟିକୁ ବଡ଼ ବିଶ୍ୱସ୍ତ ଭାବରେ ସୁସମ୍ପନ୍ନ କରିଛନ୍ତି । ମନ୍ଦିରରୁ ବୁଢ଼ୀଆଣି ଜାଲ ଝାଡ଼ିଛନ୍ତି, ପୋକଜୋକ ଓଲେଇ ଫିଙ୍ଗିଛନ୍ତି । ଏହି ନିଷ୍କାମ ସାଧନାରେ ତାଙ୍କର କୃତାର୍ଥତା । ଓଡ଼ିଆ ଭାଷାରେ ଓଡ଼ିଆ ସାହିତ୍ୟ ସୃଷ୍ଟିର ଶୁଭ୍ର ପରିବେଶ ଗଢ଼ି ଉଠିଛି, ସେ ବିଦାୟ ନେଇଛନ୍ତି । ବିଜେ କରିଛନ୍ତି ସରସ୍ୱତୀ, ଆସିଛନ୍ତି ବି ସାଆନ୍ତମାନେ । ସାହିତ୍ୟ ସମାଲୋଚକ ଗୋବିନ୍ଦ ତ୍ରିପାଠୀ ଏହି ସୂତ୍ରରେ ଗୋପୀନାଥ ମହାନ୍ତି, ରାଜକିଶୋର ପଟ୍ଟନାୟକ, କିଶୋରୀଚରଣ ଦାସ, ଶାନ୍ତନୁ କୁମାର ଆଚାର୍ଯ୍ୟ ଓ ରମାକାନ୍ତ ରଥ ଆଦି ସାହିତ୍ୟିକଙ୍କ ଆଗମନଶଂସୀ ହୋଇ-ଉଠିଛନ୍ତି ।

## (ଗଦ୍ୟ)

ଗୋବିନ୍ଦ ତ୍ରିପାଠୀ ଓଡ଼ିଆ ପ୍ରବନ୍ଧ ସାହିତ୍ୟ ଇତିହାସରେ ଗଦ୍ୟର ଏକ ଅଭିନବ ରୀତି ପ୍ରବର୍ତ୍ତନ କରିଛନ୍ତି । ଓଡ଼ିଆ ସାହିତ୍ୟର ଭାଷା ଯେପରି ହେବା ଉଚିତ ବୋଲି ସେ ଯୁକ୍ତି କରି ଆସିଛନ୍ତି, ସେହି ଭାଷାରେ ସେ ପ୍ରବନ୍ଧ ଲେଖିଛନ୍ତି । ଲେଖାର ଢଙ୍ଗଟା ଏକାବେଳେକେ ଓଡ଼ିଆ । ଜଟିଳ ଜ୍ଞାନ-ବିଜ୍ଞାନର ବିଷୟ ଓ ଦାର୍ଶନିକ ପ୍ରତ୍ୟୟ-ଘନ ଚିନ୍ତାପ୍ରକାଶର ସମ୍ପୂର୍ଣ୍ଣ ସାମର୍ଥ୍ୟ ଓ ଉପଯୋଗିତା ଯେ ଚଳିତ ଭାଷା ମଧ୍ୟରେ ବର୍ତ୍ତମାନ, ତାହା ସେ ନିଜ ରଚନାରେ ପ୍ରମାଣିତ କରିପାରିଛନ୍ତି । ଚଳିତ ଓଡ଼ିଆ ଭାଷାରେ ଯୁକ୍ତି ବିସ୍ତାରନିଷ୍ଠ ମନନଶୀଳ ଅଥଚ ସରସ ପ୍ରବନ୍ଧର ଲେଖକ ସେ । ଯେଉଁ ଭାଷାରେ ଓଡ଼ିଆ କଥା କହେ, ସେହି ଭାଷାରେ ଲେଖିଲେ ଲେଖା ପ୍ରାଣ ପାଏ । ମୁହଁର କଥା ଓ ସାହିତ୍ୟ ରଚନାର ଭାଷା ଅବଶ୍ୟ ଏକ ଓ ଅଭିନ୍ନ ନୁହନ୍ତି । କିନ୍ତୁ ଦୁହିଁଙ୍କ ମଧ୍ୟରେ ଯଥାସମ୍ଭବ ସାମଞ୍ଜସ୍ୟବିଧାନରେ ତାଙ୍କର କୃତିତ୍ୱ ଅବିସମ୍ବାଦିତ । ଯେଉଁ କଥାଟି ନିତାନ୍ତ ନହେଲେ ନୁହେଁ, ସେତିକି ସେ ଯେଉଁଠୁ ପାରନ୍ତି ଆଣନ୍ତି । କିନ୍ତୁ ତାକୁ ନିଜ ଭାଷା ସହିତ ଖାପଖୁଆଇ ନିଅନ୍ତି । କିନ୍ତୁ ତା'ଠାରୁ ବେଶି କିଛି ସେ ଧାର କରନ୍ତି ନାହିଁ କି ଚୋରି କରନ୍ତି ନାହିଁ । ନର୍ସିଙ୍ଗହୋମ୍ (Nursing Home) ଶବ୍ଦଟି ଯେବେ ଆସିବ ତେବେ ତାହା ହୋଇଯିବ ନରସିଂହ ହୋମ୍, ବଲସେଭିଜମ୍ ହେବ ବଲ-ସେବୀବାଦ । ଅବଶ୍ୟ ଏପରି ରୂପାନ୍ତରୀକରଣରେ ବ୍ୟଙ୍ଗର ଆମେଜ ମିଶିଛି । ପ୍ରକୃତରେ ବ୍ୟଙ୍ଗବିଦ୍ରୂପର ତୀକ୍ଷ୍ଣ ଦ୍ୟୋତନାବିଶିଷ୍ଟ ବିଦଗ୍ଧମନର ପରିଚୟବାହୀ ସରସ ରଚନାରୀତିର ପ୍ରାବନ୍ଧିକ ସେ । ଶବ୍ଦକୁ ନେଇ ବ୍ୟଙ୍ଗବିଦ୍ରୂପପ୍ରଧାନ ପରିହାସ-ରସିକତା ପ୍ରକାଶ କରିବାରେ ତାଙ୍କର ଉତ୍ସାହ କିଛି କମ୍ ନୁହେଁ । ଚର୍ଚ୍ଚିଲଙ୍କୁ କହିବେ ଚର୍ଚ୍ଚହିଲ୍, ସାମ୍ୟବାଦୀକୁ ଶ୍ୟାମବାଦୀ ଓ ଷ୍ଟୁଟ୍‌ନିକ ଯୁଗକୁ ଫୁଟାଣିକ ଯୁଗ । ଏମିତି ଆମ୍ବ ହୁଏ ଆମହମ୍ (ହିନ୍ଦୀ), ଆମ୍ ବି (ଓଡ଼ିଆ) ଅର୍ଥାତ୍ ଆସ ମ ବସ । ଦଳଲି ହୁଏ କଂଗ୍ରେସଦଳୀ, କମ୍ୟୁନିଷ୍ଟଦଳୀ, Kingଦଳୀ କି କିସାନ୍‌ଦଳୀ । mango ମ୍ୟାନ୍ ଗୋ । ସେ ଅଦ୍ଭୁତ ଅଭାବିତ ମଜା ଉପମାନ ବି ଆକାଶରୁ ତୋଳି ଯୋଗାଇଦିଅନ୍ତି, ବକ୍ତବ୍ୟ ସ୍ପଷ୍ଟ ହୋଇଉଠେ, ଆଉ ଏଣେ ଲେଖା ବି ହୁଏ ପ୍ରୀତିକର । ଦୁଇଟି ଦୃଷ୍ଟାନ୍ତ ଦେଖନ୍ତୁ ।

୧ । ତୁମ ଦେହର ଚାଲ ବାହାରିବାକୁ ତୁମର ଯେବେ ସଫା ଚମଡ଼ା ଖଣ୍ଡେ ଥାଏ, ତାହାହେଲେ କଳା ଚମଡ଼ାବାଲାଙ୍କ ପାଖରେ ତୁମେ ଦେବତା ବନିବାକୁ ଚେଷ୍ଟା କରୁଚ—ଯିମିତି ପଢ଼ୁଆ ଯିବା ଲୋକଙ୍କଠାରୁ ଫ୍ଲାସ୍‌କୁ ଯିବାବାଲା ତୁମେ ବେଶି ସଭ୍ୟ ଓ ଧନୀ ବୋଲି ଦାବିକର । କିନ୍ତୁ କାର୍ଯ୍ୟରେ ସବୁ ଏକା । ବିରାଡ଼ି ତା ମଇଳାକୁ ବାଲିରେ ବା ମାଟିରେ

ଯୋଡ଼େଇପକାଏ, ହାତ ତା' କରେନ । ସେ ତା' ମଇଳାକୁ ଯେଉଁଠି ପାଇଲା ସେଠି ପକାଇଦେଲା । ଯା ବୋଲି ଯେବେ ବସ୍ତୁ ହାତଠାରୁ ବଡ଼ ହୁଏ, ତା' ହେଲେ ତୁମେ କ୍ଲାସ୍‌କୁ ଯିବାବାଲା ପଢ଼ୁଆବାଲାଙ୍କଠୁଁ ବଡ଼ ସଭ୍ୟ ହବ ।

—ସାବଧାନ ଭାଇ ସାବଧାନ

୨ । ଖଣ୍ଡିଏ ଅଳଙ୍କାର ଲାଗି ଗୋଟିଏ ଭାଷାକୁ ବିକଳ କରି ଥୋଇବା କ'ଣ ରସିକତା ? ଏକଥା ବୁଝାଇବାକୁ ବର୍ଣ୍ଣିଆର ସୁନ୍ଦର ସୁନା ବାଲ ହଳକ କଥା ଉଦାହୃତ—"ସେ ବାଲା ପିନ୍ଧିବାକୁ ପଡ଼ିଲେ ମୋ ପ୍ରଣୟିନୀକୁ ଆଉ ଗୁରଅଙ୍ଗୁଳ ମୋଟା କରିବା ଦରକାର । ମୁଁ ଯାଇ ପ୍ରଣୟିନୀଙ୍କୁ ଖୁବ୍ ଖୁଆଇଲି, ମୋଟା ହେବାକୁ ଔଷଧ ଦେଲି । କେତେ ମାସ ପରେ ପ୍ରଣୟିନୀ ମୋର ଯେତେବେଳେ ବାଲାହଳକ ପିନ୍ଧିବାକୁ ଉପଯୁକ୍ତ ମୋଟା ହୋଇଗଲେ, ସେତେବେଳେ ଦେଖିଲି ତାଙ୍କର ଯେ ପିଟି-ଦେଲାପରି ସୁନା ହାତଟି ଦେଖି ମୁଁ ମଜ୍ଜିଥିଲି, ସେ ନାହିଁ; ସେ ବର୍ତ୍ତମାନ ଗୋଟିଏ ମସ୍ତବଡ଼ ତୁଳାଗଦା ।"

—ଅରସିକ

ଏ ସବୁ ଉପମାଳଙ୍କାର ଅଙ୍ଗସୌଷ୍ଠବ ମାତ୍ର ନୁହେଁ, ଭାବାଭିବ୍ୟକ୍ତିର ଅବିଚ୍ଛେଦ୍ୟ ଅଙ୍ଗ । ଏସବୁ ଉପମା ସାଙ୍ଗକୁ ଅଛି ଗାଁଗଣ୍ଡାର ଢଗଢମାଳି ଓ ପ୍ରବାଦ ପ୍ରବଚନ ମଧ୍ୟ । ଏପରି ବ୍ୟଙ୍ଗବିଦ୍ରୂପ ପ୍ରଧାନ ପରିହାସ-ରସିକତା ସହିତ କିନ୍ତୁ ସବୁଠୁଁ ଭାବାଳୁତାଶୂନ୍ୟ ସଂସ୍କାରମୁକ୍ତମନନଶୀଳତା ବର୍ତ୍ତମାନ । ତ୍ରିପାଠୀଙ୍କ ଗଦ୍ୟଶୈଳୀ ପ୍ରସାଦଗୁଣାନ୍ୱିତ ହୃଦ୍ୟ ଓ ଲଘୁଚପଳ ଅଥଚ ତୀକ୍ଷ୍ଣ ବୁଦ୍ଧିଦୀପ୍ତ ପରିଚ୍ଛନ୍ନ ଓ ପ୍ରାଣବନ୍ତ । ସେଥିରେ ଯୁକ୍ତି ଓ ତଥ୍ୟର ସୁଶୃଙ୍ଖଳ ସମାବେଶ ଅନାୟାସଲକ୍ଷ୍ୟ । ଅଧିକନ୍ତୁ ତାହାର ଅନ୍ତର୍ନିହିତ ସଂଯତ ଆବେଗ, ଦୃଢ଼ ପ୍ରକୃତିସ୍ଥତା ଓ ଶ୍ଲେଷସ୍ପର୍ଶମୟ ବିନ୍ୟାସଭଙ୍ଗୀ ବେଶ୍ ମାର୍ଜିତ ଓ ପ୍ରଶିକ୍ଷିତ । ଏଣୁ ତାହା ସାଧୁଗଦ୍ୟଶୈଳୀ ଅପେକ୍ଷା କୌଣସି ଗୁଣରେ ଦୁର୍ବଳ ବା ଅପକୃଷ୍ଟ ନୁହେଁ । ତାହା ବରଂ ଗୋବିନ୍ଦ ତ୍ରିପାଠୀଙ୍କ ସ୍ୱତନ୍ତ୍ର ରୁଚି ଓ ମାନସପ୍ରବଣତାର ଉପଯୁକ୍ତ ବଚନଭଙ୍ଗୀ—ଭଦ୍ର, ସରଳ ଓ ସରସ ଅଥଚ ଦୃଢ଼, ଅନମନୀୟ, ଯୁକ୍ତିଭୂୟିଷ୍ଠ ଓ ଗତାନୁଗତିକତାର ଘୋର ପରିପନ୍ଥୀ । ଏଇଥିପାଇଁ କହିବାକୁ ହୁଏ ଯେ, ଓଡ଼ିଆ ପ୍ରବନ୍ଧ ସାହିତ୍ୟ ଇତିହାସରେ ତ୍ରିପାଠୀଙ୍କ ଶବ୍ଦବିନ୍ୟାସ ଓ ପ୍ରକାଶଭଙ୍ଗୀ ସଂପୂର୍ଣ୍ଣ ଅନନ୍ୟ ଓ ଅନନୁକରଣୀୟ ।

ତ୍ରିପାଠୀଙ୍କ ପ୍ରବନ୍ଧ ସମ୍ବୋଧନାତ୍ମକ । ତାହା ମନଖୋଲା ଆଳାପ ଆଲୋଚନା ଭଙ୍ଗୀରେ ଲେଖା । ପାଠକକୁ ସେ 'ତୁମେ' ବୋଲି ସମ୍ବୋଧନ କରନ୍ତି ଓ ସେହି

'ରୁମେ'ଙ୍କ ପକ୍ଷରୁ ସମ୍ଭାବ୍ୟ ପ୍ରଶ୍ନ ଓ ମନ୍ତବ୍ୟ ପ୍ରତି ସତର୍କ ରହନ୍ତି । ଫଳରେ ତାଙ୍କ ପ୍ରବନ୍ଧ ସେହି ନିକଟ ପ୍ରତିପକ୍ଷର ମନ୍ତବ୍ୟ ଓ ଆଲୋଚନାର ପ୍ରତିଚ୍ଛାୟାରୁ ସ୍ୱତଃ ବିତର୍କାଶ୍ରୟୀ ହୋଇଉଠେ । ଏଠାରେ ମନେରଖିବାକୁ ହୁଏ ଯେ, ଯେଉଁ ବିଷୟରେ ତାଙ୍କର ପରିଷ୍କାର ଧାରଣା ଥାଏ, ସେହି ବିଷୟରେ ସେ ପ୍ରତିପକ୍ଷର ସମ୍ଭାବିତ ବକ୍ତବ୍ୟକୁ ଭଲଭାବରେ ସମାଲୋଚନା କରି ସମ୍ପୂର୍ଣ୍ଣ ନିଜସ୍ୱ ଏକ ବଳିଷ୍ଠ ଅଭିମତରେ ଉପନୀତ ହୋଇପାରନ୍ତି । 'ରୁମେ'ଙ୍କୁ ଘେନି ଖେଳିବାରେ ତାଙ୍କର ଆନନ୍ଦ । ଯେତେବେଳେ ସେ ତା' ପକ୍ଷରେ ଯୁକ୍ତି ଆରମ୍ଭ କରିଦିଅନ୍ତି, ସେତେବେଳେ ବୁଝିହୁଏ 'ରୁମେ'ଟି ଡନକୁଇକ୍ଜୋଟିକୁ ଗଲା । ପ୍ରବନ୍ଧକୁ ଯଥାସମ୍ଭବ ହୃଦ୍ୟ ଓ ପ୍ରାଣବନ୍ତ କରିବାକୁ ହେଲେ ବକ୍ରୋକ୍ତିର ବ୍ୟବହାର ଯେ କିପରି କାର୍ଯ୍ୟକାରୀ ହୋଇପାରେ, ତାହା ଗୋବିନ୍ଦ ତ୍ରିପାଠୀଙ୍କ ବନ୍ଧୁଆ କି ଅରସିକ ବା ଆକାଶ କଇଁଆ କି କାଳୁଣୀ ବେଶ୍ୟା ନ ପଢ଼ିଲେ ବୁଝିହେବ ନାହିଁ । ବକ୍ରୋକ୍ତିର ଖେଳ 'ରୁମେ'ର ଜାଲ । 'କବି ପ୍ରେୟସୀ'ର ବ୍ୟାଜସ୍ତୁତି ଦୁର୍ଲଭ୍ୟ । କବିମାନଙ୍କ ତୁଳନାରେ ସେ 'ରୁମେମାନଙ୍କୁ' ଏପରି ଚମତ୍କାର ଭାବରେ ହୀନପ୍ରଭ କରିଦେଇଛନ୍ତି ଯେ, ବୁଝିଲେ ଆମ ଜୀବନ ଅପ୍ରୀତିକର ହୋଇଉଠିବ, ଆମ ସଂସାର-ଜ୍ଞାନ ଓ ବୋଧଶକ୍ତି କେଡ଼େ ଖରାପ ତାହା ସ୍ପଷ୍ଟ ହୋଇଯିବ । କବିମାନେ ଖୁବ ଭଲ ଓ ସବୁଠୁଁ କମ୍ ସ୍ୱାର୍ଥପର । ସେଦିନ ବାଇରନ୍ କହୁଥିଲେ, କବି ସେଲିଙ୍କ ସହିତ ତୁଳନା କଲେ ପଶୁ ବୋଲି ମନେ ନ ହେବା ଏମିତି ଲୋକ ମୁଁ ଦେଖିନାହିଁ । ଏ ତ ସେମିତିଆ କଥା । କବିଙ୍କ ସହିତ ତୁଳନା କରାଗଲେ କିଏ ପୁଣି ଖରାପ ବୋଲି ପ୍ରତିପନ୍ନ ନ ହେବ ? ତ୍ରିପାଠୀ ମହାଶୟଙ୍କ କବିପକ୍ଷପାତିତା ଅମୂଳକ ନୁହେଁ । ଅଧିକନ୍ତୁ ସେ ଭିତରେ ଭିତରେ କବିଟିଏ । ବାହାରକୁ ଚିନ୍ତାଶୀଳ ମନସ୍ୱୀଟିଏ ବୋଲି ମନେହେଉଥିଲେ ହେଁ ମୂଳତଃ ସେ ବଡ଼ ଆବେଗପ୍ରବଣ ଲୋକ—ଛଳ ଛଳ ଜୀବନର ଉପାସକ । କିଶୋରର ଅବୋଧତା ଓ ଯୌବନର ଅବାଧତାରେ ତାଙ୍କର ଆନନ୍ଦ । ଯେଉଁଠି ସେ ଜୀବନର ଧୁକ ଧୁକ ପାଆନ୍ତି ନାହିଁ, ସେଠାରେ ମରଣର ସ୍ଥିରତା ଓ ଶୀତଳତା ଅନୁଭବ କରନ୍ତି । ପ୍ରବନ୍ଧ ଏଣୁ ଏକ ସମ୍ବୋଧନ ନ ହୋଇ ରହିପାରି ନାହିଁ । 'ରୁମେ' ସମ୍ବୋଧନରେ ତ୍ରିପାଠୀଏ ପାଠକକୁ ପାଖରେ ପାଆନ୍ତି, ଯୁକ୍ତିତର୍କ ଓ ବିଦ୍ୟାବୁଦ୍ଧିର ଖେଳ ଖେଳୁ ଖେଳୁ କ୍ରମଶଃ ତା ପାଖରେ ହୃଦୟର ଦ୍ୱାର ଖୋଲିଦିଅନ୍ତି । ତାଙ୍କ ସହିତ ପାଠକର ନିକଟତମ ପରିଚୟ ଘଟେ । ସେ ତାଙ୍କ ବ୍ୟକ୍ତିତ୍ୱର ସ୍ପନ୍ଦନ ଅନୁଭବ କରେ । ବ୍ୟକ୍ତିତ୍ୱର ସ୍ପନ୍ଦନ ହିଁ ତ ପ୍ରବନ୍ଧର ପ୍ରାଣବସ୍ତୁ !

ତ୍ରିପାଠୀଙ୍କ ପ୍ରବନ୍ଧକୁ ଏବେ ରମ୍ୟରଚନା କୁହାଯାଉଛି । ଭଲ କଥା । ତାଙ୍କର ଅଧିକାଂଶ ଲେଖା ଯଥାର୍ଥରେ ରମଣୀୟ ରଚନା । କିନ୍ତୁ ଆଜିକାଲି ଯେତେବେଳେ କୌଣସି ବିଷୟରେ ଲଘୁଚପଳ ଭଙ୍ଗୀରେ କିଏ କିଛି ହାସ୍ୟତରଳ କଥା ଲେଖିଲେ, ତାକୁ ରମ୍ୟରଚନା ବୋଲି ଚଳେଇନିଆଯାଉଛି, ସେତେବେଳେ ଆପତ୍ତି କରିବାର

ଅଛି । ତ୍ରିପାଠୀଙ୍କ ରଚନା ଏତେ ଶସ୍ତା ଜନପ୍ରିୟ ନୁହେଁ । ତାହା ଯଥାର୍ଥରେ ଗଠନ ଓ ରମ୍ୟ । ସେଥିରେ ଜଗତ ଓ ଜୀବନ ପ୍ରତି ଏକ ବିଶେଷ ଦୃଷ୍ଟିଭଙ୍ଗୀ ସମୁଦ୍ୟତ ଅଛି । ତାହା ମଧ୍ୟ ସହୃଦୟ-ହୃଦୟ-ସଂବାଦୀ—ତଥ୍ୟ, ତତ୍ତ୍ୱ ଓ ପାଣ୍ଡିତ୍ୟ ମାଧ୍ୟମରେ ତାହା କେବଳ ବୁଦ୍ଧି ସହିତ ସଂଯୋଗ ସ୍ଥାପନ କରେନାହିଁ, ଆବେଗ ଓ ରସପ୍ରେରଣା ଯୋଗୁ ସହୃଦୟ ପାଠକର ହୃଦୟ ସହିତ ସମ୍ପର୍କ ସ୍ଥାପନ କରିବାକୁ ଚାହେଁ, କୃତାର୍ଥ ବି ହୁଏ । ତେଣୁ ତାହାକୁ ତଥାକଥିତ ରମ୍ୟରଚନା ନାମରେ ଅଭିହିତ ନ କରି ଗଦ୍ୟକବିତା କହିଲେ ବରଂ ଯଥାର୍ଥ ହେବ । ତ୍ରିପାଠୀଏ ଇଂରାଜୀ ପ୍ରବନ୍ଧ ସହିତ ପରିଚିତ ଥିଲେ । ସେହି ସୂତ୍ରରେ ସେ ଊନବିଂଶ ଶତାବ୍ଦୀରେ ପ୍ରଚଳିତ ଇଂରାଜୀ 'Familiar Essay' ଆଦର୍ଶରେ ଉଦ୍‌ବୁଦ୍ଧ ହୋଇଥିବା ଅସମ୍ଭବ ନୁହେଁ । ଏଥିରେ ବିଷୟବସ୍ତୁ ସମ୍ବନ୍ଧରେ କିଛି ବିଧିନିଷେଧ ନାହିଁ । ଅତି ତୁଚ୍ଛ, ଅତି କ୍ଷୁଦ୍ର, ଅତି ଅକିଞ୍ଚିତକର କୌଣସି ବିଷୟ ବା ପ୍ରସଙ୍ଗ ଅବଲମ୍ବନ କରି ଲେଖକ କଥା କହିବାକୁ ଆରମ୍ଭ କରନ୍ତି, କ୍ରମଶଃ ଆସିଯାଏ ବହୁସତ୍ୟ, ବହୁତଥ୍ୟ, ବହୁତତ୍ତ୍ୱ ଓ ବହୁ-ଅନୁଭବର ଅବତାରଣା । ଗମ୍ଭୀରରୁ ଗମ୍ଭୀରତର ହୋଇଉଠେ ଆଲୋଚନା । ଆକାଶ କଇଁଆ, କଖାରୁ ଫୁଲ, କଦଳୀ, ଆମ୍ବ, କଞ୍ଚୁଆ, ଛେନାଗୁଡ଼, ବୋମା ଓ ଦାଢ଼ି ଆଦି ପ୍ରବନ୍ଧ ଏହି Familiar Essay ଭଙ୍ଗୀରେ ଲେଖା । ତୁଚ୍ଛକୁ ତାଚ୍ଛଲ୍ୟ କରିବାକୁ ହେବନାହିଁ; ଭାବାବିଷ୍ଟ ମନ ଓ ଆବେଗତପ୍ତ ହୃଦୟ ଥିଲେ ତୁଚ୍ଛାତିତୁଚ୍ଛ ବିଷୟକୁ ଯୋଗୁ ବି ସୁନ୍ଦର ରଚନା ପ୍ରସ୍ତୁତ କରିହୁଏ । ଦାଢ଼ି ରଖାରୁ 'ଦାଢ଼ି' ପ୍ରବନ୍ଧର ଆରମ୍ଭ । ଏହି ଦାଢ଼ି ପ୍ରୀତି କପରି ସଂସାରର ସବୁ ଅଶାନ୍ତିର କାରଣ—ଶେଷପର୍ଯ୍ୟନ୍ତ ତାହାହିଁ ପର୍ଯ୍ୟାଲୋଚିତ । ବିଶ୍ୱ ରାଜନୀତି ଓ ସମାଜନୀତିଠାରୁ ଆରମ୍ଭ କରି ମାକିଆଭେଲିଙ୍କ 'The prince' ଓ ଶ୍ରୀକୃଷ୍ଣଙ୍କ 'ଭଗବଦ୍‌ଗୀତା' ପର୍ଯ୍ୟନ୍ତ ସବୁ ବିସ୍ତରକୁ ଆସିଛି । ଦାଢ଼ି ବିସର୍ଜନରେ ଅର୍ଥାତ୍ ଆବରଣ ଉନ୍ମୋଚନରେ ମଣିଷର ମୁହଁ ପ୍ରକଟିବ—ମଣିଷର ସାକ୍ଷାତକାର ଘଟିବ । ମୁହାଁମୁହିଁ ମଣିଷ ସବୁ ଅନର୍ଥର ହେତୁ । ମଣିଷର ସାକ୍ଷାତକାର ଘଟିଲେ—ତାହାର ବିବସନ ଅନ୍ତଃକରଣର ସଂସ୍କାରମୁକ୍ତ ପ୍ରେମରେ ହିଁ ସାରା ପୃଥିବୀର ସବୁ ପାପତାପ, ଅଶିବ ଅଶାନ୍ତି ଦୂର ହୋଇଯିବ, ଅନ୍ୟଥା ନୁହେଁ । ଆରମ୍ଭ ହାସ୍ୟକୌତୁକରୁ । ଉପସଂହାର କିନ୍ତୁ ଗମ୍ଭୀର ତତ୍ତ୍ୱାଲୋଚନାରେ । ବହୁମୁଖୀ ପାଣ୍ଡିତ୍ୟ ଓ ଚିନ୍ତାଶୀଳତାରେ ତଥା ତୀକ୍ଷ୍ଣ ବିସ୍ତରବୁଦ୍ଧି ଓ ଗଠନମୂଳକ ଅଭିଜ୍ଞବନାରେ ଗୋବିନ୍ଦ ତ୍ରିପାଠୀ ଏମିତି ଯେକୌଣସି ବିଷୟବସ୍ତୁକୁ ପ୍ରବନ୍ଧର ଅବଲମ୍ବନ କରିପାରନ୍ତି । ସାହିତ୍ୟରେ ବିଷୟବସ୍ତୁ ଅବାନ୍ତର ନୁହେଁକି ? ବିଷୟବସ୍ତୁ ଉପଲକ୍ଷ । ଲକ୍ଷ୍ୟ କିନ୍ତୁ ସେହି ବିଷୟବସ୍ତୁକୁ ଯୋଗୁ ସାହିତ୍ୟିକଙ୍କ କଳ୍ପିତଭାବ, ବିଶ୍ୱାସ ଓ ଅନୁରାଗ ପ୍ରକାଶ କରିବାର କ୍ଷମତା । ଏ କ୍ଷେତ୍ରରେ ଯେ ଯେଉଁ ପରିମାଣରେ କ୍ଷମ, ସେ ସେହି ପରିମାଣରେ ଦକ୍ଷ ସାହିତ୍ୟିକ । ଏହି ଦୃଷ୍ଟିରୁ ଦେଖିଲେ ଗୋବିନ୍ଦ ତ୍ରିପାଠୀ ଜଣେ ଦକ୍ଷ ପ୍ରାବନ୍ଧିକ—ଭାବାଳୁତାଶୂନ୍ୟ, ବୁଦ୍ଧିଦୀପ୍ତ ଓ ମନନଶୀଳ ପ୍ରବନ୍ଧ ରଚୟିତା

ସ୍ୱାଦରେ ପୂର୍ଣ୍ଣ । ସବୁଠି ସେ ସଂସ୍କାରମୁକ୍ତ ଚିନ୍ତାଶୀଳତା ଓ ସୂକ୍ଷ୍ମ ଅନ୍ତର୍ଦ୍ଦୃଷ୍ଟିର ପରିଚୟ ଦିଅନ୍ତି, ଅଥଚ କେଉଁଠି ସ୍ୱଭାବସିଦ୍ଧ ପରିହାସ-ରସିକତା ଛାଡ଼ିପାରନ୍ତି ନାହିଁ । ସେଇଥିପାଇଁ ତାଙ୍କ ପ୍ରବନ୍ଧ ହୁଏ ଏକାଧାରରେ ସରସ, ଉଜ୍ଜ୍ୱଳ ଓ ଉପଭୋଗ୍ୟ ।

## (ପାଞ୍ଚ)

ଠାଏ ଗୋବିନ୍ଦ ତ୍ରିପାଠୀ ବର୍ଣ୍ଣାଡ୍ ଶ'ଙ୍କ କଥା କହୁକହୁ ନିଜକଥା କହିଦେଇଛନ୍ତି, "ତାଙ୍କର ଗୋଟିଏ ଖୋଇ, ଯାହା ଅଛି, ତାକୁ ନାହିଁ ବୋଲି ପ୍ରମାଣ କରିବା—ଯାହାକୁ ସମସ୍ତେ ଭଲ ବୋଲି କହନ୍ତି, ତାକୁ ଖରାପ ବୋଲି ବୁଝାଇବା ।" ତ୍ରିପାଠୀଙ୍କର ଖୋଇ ବି ସେଇଆ—To tease us out of thoght. ତେଣୁ ତାଙ୍କ ପକ୍ଷରେ ମାତ୍ର ମୂଲ୍ୟଇବା ସ୍ୱାଭାବିକ କଥା । କିନ୍ତୁ ନିର୍ଭୟରେ ନିଜ ରୁଚି ଓ ବିଶ୍ୱାସକୁ ଉପସ୍ଥାପନ କରିଛନ୍ତି । ନିଜର ଅକପଟ ଆତ୍ମପ୍ରକାଶକୁ ବଡ଼ କରି ଦେଖିଛନ୍ତି । —ସେଥିରେ ଯେବେ କେହି କ୍ଷୁବ୍ଧ ଓ ଉଦ୍‌ବିଗ୍ନ ହୋଇଉଠନ୍ତି, ତାଙ୍କର ଭାବିବାର କିଛି ନାହିଁ । ତାଙ୍କ ପ୍ରବନ୍ଧର ବିଷୟବସ୍ତୁ ବରଂ ସେହି ନିଜେ; ଜୀବନରେ ସେ ଯେପରି ପ୍ରତିଭାତ ହୁଅନ୍ତି, ସାହିତ୍ୟରେ ବି ସେପରି ଅଙ୍କିତ କରିଛନ୍ତି । ମୁଖା ନାହିଁ କି କୃତ୍ରିମତା ନାହିଁ । କ'ଣ ତାଙ୍କ ପ୍ରବନ୍ଧର ଫଳଶ୍ରୁତି ? ଜ୍ଞାନଦାନ ତାଙ୍କ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ, ନୂଆ ଭାବନାରେ ଅନୁଭାବିତ କରାଇବାରେ ହିଁ ତାଙ୍କର କୃତିତ୍ୱ । ତେଣୁ ସିଦ୍ଧାନ୍ତର ଗ୍ରହଣଯୋଗ୍ୟତା ଉପରେ ତାଙ୍କ ପ୍ରବନ୍ଧର ମୂଲ୍ୟ ନିର୍ଭର କରେନାହିଁ, ସ୍ୱାଧୀନ ଚିନ୍ତାର ଉନ୍ମେଷ ଘଟାଇବାରେ, ଚିନ୍ତା ଓ ଚେତନାର ବିଚିତ୍ର ମହଲରେ ପଦଚାରଣା କରିବାକୁ ପାଠକକୁ ଆମନ୍ତ୍ରଣ ଜଣାଇବାରେ ତାଙ୍କ ପ୍ରବନ୍ଧର ମୂଲ୍ୟ ନିର୍ଭର କରେ । ପାଠକର ଶାନ୍ତ ନିଶ୍ଚିନ୍ତତାକୁ ସେ ଭାଙ୍ଗିବାକୁ ଚାହାନ୍ତି, ଗତାନୁଗତିକତାବଦ୍ଧ ମନରେ ତାର ଅଶାନ୍ତି ସୃଷ୍ଟି କରିବାକୁ ଉଦ୍ୟମ କରନ୍ତି । ମୁକ୍ତମନର ସାଧନା ପାଇଁ ତାଙ୍କର ପ୍ରବର୍ତ୍ତନା । ଗୋବିନ୍ଦ ତ୍ରିପାଠୀଙ୍କ ଉଦ୍ୟମ ଚରିତାର୍ଥ ହେବ, ଓଡ଼ିଆଏ ଯେବେ ଏ ପ୍ରବନ୍ଧ ସବୁ ପଢ଼ିବେ ଓ ନିଜର ନିର୍ବୋଧ ମନକୁ ବୁଦ୍ଧିର ତୀକ୍ଷ୍ଣତାରେ ଦୀକ୍ଷିତ କରିବେ ।

**ଦାଶରଥି ଦାସ**

# ସାହିତ୍ୟ ଓ ଉପନ୍ୟାସ

ଫରାସୀ ବିପ୍ଳବୀ ଭଲଟେୟାର ଆଜକୁ ଦୁଇ ଶତ ବର୍ଷ ତଳେ କହିଥିଲେ "ମତେ ଯାହା ଭଲଲାଗେ, ମୁଁ ତାହା ପଢ଼େ । ପ୍ରତିଭାଶାଳୀ ଲେଖକଙ୍କର ପ୍ରତ୍ୟେକ ଲେଖା ଯେ ପଢ଼ିବାର ଜିନିଷ ହେବ—ଏହା କେବଳ ନିର୍ବୋଧମାନେ ଭାବିପାରନ୍ତି ।" କଥାଗୁଡ଼ିକ ଖାଣ୍ଟିଆ ହେଲେ ମଧ୍ୟ ନିରାଟ ସତ୍ୟ । ମିଲ୍‌ଟନ ପ୍ରତିଭାଶାଳୀ ଲେଖକ ଥିଲେ—ବୋଧହୁଏ ସେକ୍‌ସପିୟରଙ୍କୁ ଛାଡ଼ିଦେଲେ ତାଙ୍କ ସମସ୍ତ ପର୍ଯ୍ୟନ୍ତ ତାଙ୍କ ଭଳି ପ୍ରତିଭାଶାଳୀ କବି ଓ ଲେଖକ ଇଂରେଜୀ ରାଜ୍ୟରେ ଆଉ ଜନ୍ମ ହୋଇ ନ ଥିଲେ । ତଥାପି ତାଙ୍କ ଲେଖା ପଣ୍ଡିତ କେତେଜଣଙ୍କ ଛଡ଼ା ଆଉ କେହି ବେଶୀ ପଢ଼ନ୍ତି ନାହିଁ । ପ୍ରତିଭାର ନିଜର ଦେଇ ପାଠକର ମନକୁ ଯେପରି ଭୁଲେଇ ପାରିହୁଏ ନାହିଁ, ସେହିପରି ଜଣେ ପ୍ରତିଭାଶାଳୀ ଲେଖକର ଗ୍ରନ୍ଥରେ ଅନ୍ୟାନ୍ୟ ଲେଖକମାନଙ୍କୁ ମଧ୍ୟ ଢାଳିବା ସହଜ ନୁହେଁ, ସମ୍ଭବ ନୁହେଁ, ଉଚିତ ମଧ୍ୟ ନୁହେଁ ।

କିନ୍ତୁ ଓଡ଼ିଆ ସାହିତ୍ୟରେ ବର୍ତ୍ତମାନ ସେଇ କଥାଟା, ସେଇ ଅସମ୍ଭବକୁ ସମ୍ଭବ କରିବା, ଅନୁଚିତକୁ ଉଚିତ କରିବାର ଚେଷ୍ଟାଟା ବଡ଼ ବେଶୀ ହୋଇପଡ଼ିଛି । ପ୍ରାୟ ପଚିଶ ବର୍ଷ ବିତିଗଲା ରାଧାନାଥଙ୍କର ଅନୁକରଣରେ । ରାଧାନାଥଙ୍କ କବିତାର ଅନୁରୂପ ନ ହେଲେ କୌଣସି କବିତାକୁ ଆଖିପକାଇବା ଥିଲା ପାପ । ସୌଭାଗ୍ୟକ୍ରମେ ମେହେରଙ୍କର କବିତା ଛପା ହେଲାରୁ ଓ ଓଡ଼ିଶାର ସବୁ ଦୋଷରେ ଦୋଷୀ ସତ୍ୟବାଦିଆ ପଂକ୍ତିକ ଜବରଦସ୍ତିଆ କବିତାର ସୁଅକୁ ଅନ୍ୟମୁହାଁ କରିବାରୁ ରାଧାନାଥୀ କବିତାର ପ୍ରଭାବ ଟିକିଏ କମିଲା । କିନ୍ତୁ ରାଧାନାଥଙ୍କ ପରି ସମାନ ବ୍ୟକ୍ତିତ୍ୱ ଓ ପ୍ରତିଭା ଏ ପର୍ଯ୍ୟନ୍ତ ଜନ୍ମି ନ ଥିବାରୁ ଗୋଟିଏ ସଜୀବ ଓ ସତେଜ ଆଦର୍ଶ ରହିଲା ନାହିଁ । ଫଳରେ ପ୍ରାୟ ୧୯୨୦ ଠାରୁ ୧୯୩୦ ପର୍ଯ୍ୟନ୍ତ ଦଶଟି ବର୍ଷ ଓଡ଼ିଆ ସାହିତ୍ୟ ମୁଣ୍ଡହୀନ ଶ୍ରୀହୀନ ଅବସ୍ଥାରେ ବାଟ ଖୋଜି ବୁଲୁଥିଲା । ୧୯୩୦ର ଆଖପାଖରେ ସବୁଜଦଳିଆ ମୁଣ୍ଡ ଟେକି ବାହାରିଲେ । ଏହା ଆଗରୁ ଏମାନଙ୍କ କବିତା ଇତ୍ୟାଦି ବେଳେବେଳେ ଛପା ହୋଇଥିଲା; କିନ୍ତୁ ସଂଘବଦ୍ଧ ଭାବରେ ଗୋଟିଏ ଆଦର୍ଶକୁ ସ୍ଥିର ରଖି ନିଜର ଲେଖାକୁ ନିୟନ୍ତ୍ରିତ କରିବାର ଇଚ୍ଛା ଓ ଉଦ୍ୟମ ଏ ଦଳର ପ୍ରାୟ ଏହି ସମୟରୁ ପ୍ରକାଶ ପାଇଥିଲା । ଏମାନଙ୍କର ଆଦର୍ଶ କେତେବେଳେ ରବୀନ୍ଦ୍ରନାଥ, କେତେବେଳେ ବା କାଜି ନଜରୁଲ୍ । ସବୁ ପୁରୁଣା ଜିନିଷକୁ ଠେଲି ଦୂରା କରିନେଇ ତା'ର ସ୍ଥାନରେ ମନମୁତାବକ ଗୋଟାଏ ଦେଉଳ ସ୍ଥାପନ କରି ତା' ଭିତରେ ମନମାଫିକ୍ ବେଶରେ ସରସ୍ୱତୀଙ୍କୁ ସଜାଇ ସ୍ୱାଧୀନ ପୂଜା-ପଦ୍ଧତିରେ ତାଙ୍କର ପୂଜା କରିବା—ଏଇ ହେଲା ସେମାନଙ୍କର ଲକ୍ଷ୍ୟ । ଲେଖକମାନେ ଯୁବକ ଓ ପାଠୁଆ । ବିଂଶ ଶତାବ୍ଦୀର ନୈତିକ, ଆର୍ଥିକ ଓ ରାଜନୈତିକ ବିପ୍ଳବ ଓ

ଅସ୍ଥିରତାର ଶକ୍ତି ସେମାନେ ପାଶ୍ଚାତ୍ୟର ସାହିତ୍ୟରୁ ସଂଗ୍ରହ କରି ଓ ନିଜର ଉଦାର ଭାବପ୍ରବଣ ହୃଦୟର ଉଦ୍ଦାମ ଶକ୍ତି ସହିତ ସେହି ଅବଶ୍ୟ—ଆଦରଣୀୟା ମହାଶକ୍ତିକୁ ମିଶାଇ ସେମାନେ ଏପରି ଉଦ୍ଦାମ ଓ ଚଞ୍ଚଳ ହୋଇ ଉଠିଥିଲେ ଯେ, କୌଣସି ପ୍ରକାର ବନ୍ଧନ, କୌଣସି ପ୍ରକାର ନିୟମ, କୌଣସି ପ୍ରକାର ଅବଗୁଣ୍ଠନର ଭାର ସହ୍ୟ କରିବାକୁ ଉଚିତ ଭାବୁ ନ ଥିଲେ । ପୁଣି ପାଶ୍ଚାତ୍ୟର ସାହିତ୍ୟର ଉନ୍ନତି ଓ ବିଭବ ଦେଖି ସେମାନଙ୍କର ଦେଶକାମୀ ହୃଦୟ ଏପରି ବ୍ୟଥିତ ହୋଇପଡ଼ିଥିଲା ଯେ, ସେମାନେ ସେମାନଙ୍କର ହନୁମନ୍ତ ଶକ୍ତି ଯୋଗେ ଜବରଦସ୍ତି ସାହିତ୍ୟର ଗତି ପଚିଶ ବର୍ଷ ଆଗକୁ ଠେଲି ଆଣିବାକୁ ଚେଷ୍ଟାକରିଥିଲେ । "ଉଦ୍ୟମ ସାଧୁ, ଉଦ୍ଦେଶ୍ୟ ମହତ୍", କିନ୍ତୁ ଉଦ୍ୟମ ଓ ଉଦ୍ଦେଶ୍ୟର ପ୍ରଣାଳୀ ଅସାଧୁ ନ ହେଲେ ହେଁ ଅହିତକର । ଜାତି ଓ ସମାଜକୁ ଅନୁକରଣର ବଦ୍ଧ ଜଲାରୁ ଟାଣି ଓଟାରି ଆଣିବାକୁ ହେଲେ ଏହିପରି ଗୋଟାଏ ବିପ୍ଳବ ଓ ଆନ୍ଦୋଳନ ଦରକାର । କିନ୍ତୁ ପ୍ରତ୍ୟେକ ଆନ୍ଦୋଳନ ପଛରେ ଅନେକ ଅନିୟମ ପଶିଯାଏ—ଯାହା ଆନ୍ଦୋଳନକାରୀମାନେ ଦେଖି ପାରନ୍ତି ନାହିଁ, ଦେଖିଲେ ମଧ୍ୟ ଯାହାକୁ ବାରଣ କରିବା ପାଇଁ ସେମାନଙ୍କର ସମୟ ଓ ଧୈର୍ଯ୍ୟ ନ ଥାଏ; ଅଥଚ ସେଇ ଅନିୟମ-ଗୁଡ଼ିକର ବ୍ୟବସ୍ଥା ନ କଲେ ତାହା ବିପ୍ଳବ ବା ଆନ୍ଦୋଳନର ସବୁ ସୁଫଳଗୁଡ଼ିକୁ ନଷ୍ଟ କରି ଜାତି ଓ ସମାଜ ମଧ୍ୟରେ ମାରାତ୍ମକ ବିଶୃଙ୍ଖଳା ସୃଷ୍ଟି କରେ । ବୋଧହୁଏ ଏହି ଅଭାବଟି ପୂରାଇବା ପାଇଁ ଜଳନ୍ତା ଘରେ ପାଣି ପକାଇବା ନୀତିରେ ପ୍ରାଚୀ ସମିତି ଓ ପ୍ରାଚୀ ଗ୍ରନ୍ଥାଗାରର ସ୍ଥାପନ । ତା' ନ ହେଲେ ଓଡ଼ିଶାରେ ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ, ସାମନ୍ତସିଂହାର ପ୍ରଭୃତିଙ୍କର ସଂସ୍ଥାପନା ପାଇଁ ବିଶେଷ ଉଦ୍ୟମ କରିବାର କୌଣସି ଆବଶ୍ୟକତା ନ ଥିଲା—କାରଣ ଥାପିଲା ବରଗଛ ପାଖରେ ଆଉ ଗୋଟିଏ ବରଗଛ ଥାପନାର ଚେଷ୍ଟା ନିରର୍ଥକ ।

କାବ୍ୟ ଓ କବିତା ଦିଗରେ ଯେପରି, ଗଳ୍ପ ଓ ଉପନ୍ୟାସ ସମ୍ବନ୍ଧରେ ମଧ୍ୟ ସେହିପରି । ଓଡ଼ିଶାରେ ଆଧୁନିକଧରଣର ଗଳ୍ପ, ଉପନ୍ୟାସ ଫକୀରମୋହନ ବାବୁଙ୍କ ଠାରୁ ଆରମ୍ଭ ବୋଲି କହିଲେ ଚଳେ । ତା ପୂର୍ବରୁ ଯେ ଖଣ୍ଡେ ଅଧେ ଥିଲା, ସେ ନ ଥିଲେ ମଧ୍ୟ ଚଳିଥାନ୍ତା । ଏ ସ୍ଥଳରେ ଅବସ୍ଥା ଆହୁରି ଟିକିଏ ବେଶୀ ଗୁରୁତର । କାବ୍ୟ ସାହିତ୍ୟରେ ଗୋଟିଏ ଦୁଇଟା ଆଦର୍ଶ ଆଗରୁ ଥିଲା । ରାଧାନାଥଙ୍କ ଆଦର୍ଶ ତା' ସଂଖ୍ୟା ବଢ଼ାଇଲା ମାତ୍ର । କିନ୍ତୁ ଉପନ୍ୟାସ ଓ ଗଳ୍ପ ସାହିତ୍ୟରେ ଫକୀରମୋହନ ବାବୁ ପ୍ରଥମ, ଆଉ ଦୋଷର କଥା ଯେ, ସେ ଥିଲେ ଜଣେ ବଡ଼ ଧରଣର ସାହିତ୍ୟିକ—ଅନ୍ତତଃ ସାହିତ୍ୟର ଏହି ବିଭାଗ ସମ୍ବନ୍ଧରେ । ଫଳରେ ସେ ଯେ ରୂପମାର୍ଗ ଗଲେ, ସେ ରୂପକୁ ଲଙ୍ଘିବାର ଶକ୍ତି ତ ଓଡ଼ିଶାରେ ଅନେକ କାଳ ପର୍ଯ୍ୟନ୍ତ କାହାରି ହୋଇ ନାହିଁ; ପରନ୍ତୁ ସେ ରୂପା ଅପେକ୍ଷା ଓ ଛଡ଼ା ଅନ୍ୟ ଭଲ ରୂପା ଯେ ଥାଇପାରେ, ଏ କଥାଟା କଳ୍ପନାରେ ଆଣିବାକୁ ମଧ୍ୟ ଆମ ଦେଶର ଅଧିକାଂଶ ପାଠୁଆ ଅମଙ୍ଗ । ଏପରି ଅବସ୍ଥାରେ

ଫଳ ଯାହା ହେବାର ତାହା ହେଉଛି । ଓଡ଼ିଶାରେ ଏପର୍ଯ୍ୟନ୍ତ ଯେତେ ଭଲ ମନ୍ଦ ଛୋଟ ବଡ଼ ଉପନ୍ୟାସ ଓ ଗପ ଲେଖାହେଲଣି, ସେମାନଙ୍କ ମଧ୍ୟରୁ ପ୍ରାୟ ଶତକଡ଼ା ୭୫ ସେଇ ଗୋଟିଏ ଗ୍ରନ୍ଥରେ ଓ ଗୋଟିଏ ଗ୍ରୁପରେ ଢଞ୍ଚାର । ଯଦି ସେ ଗ୍ରନ୍ଥ ଓ ଗ୍ରୁପ ପ୍ରକୃତରେ ଭିତର ବୃଦ୍ଧି ଅନୁକରଣ କରାଯାଇଥାନ୍ତା, ତା'ହେଲେ ବରଂ ରକ୍ଷା ଥିଲା; କିନ୍ତୁ ତା' ମଧ୍ୟ ହୋଇନାହିଁ । ଏ ଅନୁକରଣଗୁଡ଼ାକ ଅଧାପନ୍ତରିଆ ଆଉ ସେଥିପାଇଁ ଦାୟୀ କେତେକ ପରିମାଣରେ ଫକୀରମୋହନବାବୁ ନିଜେ । ତାଙ୍କ ଲେଖାରେ ଉପନ୍ୟାସ ଓ ଗଳ୍ପର ସବୁ ଅଳଙ୍କାର ଓ ଆଭରଣ (Technique) ଥିଲା । କିନ୍ତୁ ଗଳ୍ପର ମଜ୍ଜାଟା ତା' ମଧ୍ୟରେ ଏତେ ବେଶୀ ଥିଲା ଯେ, ଉପରଠାଉରିଆ ପାଠକମାନେ ସେଇ ମଜ୍ଜାର ସୁଅରେ ଭାସିଯାଇ ଅଳଙ୍କାର ଓ ଆଭରଣଗୁଡ଼ିକୁ ଲକ୍ଷ୍ୟ କରିପାରୁ ନ ଥିଲେ ଓ ପାରୁ ନାହାନ୍ତି ମଧ୍ୟ; ଅଥଚ ସେଇ ଆଭରଣ ଓ ଅଳଙ୍କାରଗୁଡ଼ିକ ବାଦ୍‌ଦେଲେ ଫକୀରମୋହନଙ୍କ ଗଳ୍ପ ଆଜକାଲି ଯୁଗର ଯେକୌଣସି ଲେଖକଙ୍କ ଲେଖା ଅପେକ୍ଷା କମ୍ ଦରର ହୋଇଯିବ । ସାଧାରଣ ଭାବରେ ଉଦାହରଣ ଦେଲେ ବିଷୟଟା ବୃଦ୍ଧିହୋଇଯିବ । ବିଶେଷ ଉଦାହରଣ ଯଥାସ୍ଥାନରେ ଉପନ୍ୟାସରେ ଅଳଙ୍କାର ବିଷୟ ଆଲୋଚନାରେ ଦେବାର ଇଚ୍ଛା ରହିଲା ।

ଗାଉଁଲି ଲୋକଙ୍କ ସାଦାସିଧା ଜୀବନ ବର୍ଣ୍ଣନା କରିବାକୁ ଯାଇ ଫକୀରମୋହନ-ବାବୁ ଅନେକ ସ୍ଥାନରେ ତାହାର ଆଗ ଓ ପଛ ବର୍ଣ୍ଣନା ଅର୍ଥାତ୍ ଅବତରଣିକା ଓ ଗୌରଚନ୍ଦ୍ରିକାରେ ଏପରି ଗାଉଁଲି ଭାଷା ଓ ଭଙ୍ଗୀ ବ୍ୟବହାର କରିଥାନ୍ତି ଯେ, ପାଠକ ପ୍ରକୃତ ବିଷୟକୁ ଆସିଲାବେଳକୁ ନିଜ ଆରାମଚୌକିରୁ ଯୋଗିନୀ ସାହାଯ୍ୟରେ ଏକ ପ୍ରକାର ମଫସଲ ଗାଁ ଭିତରକୁ ପଶି ଯାଇଥାନ୍ତି । ଫଳରେ ତା'ପର ବିଷୟଗୁଡ଼ିକ ଅନୁଭବ କରିବାକୁ ଓ ସେ ସମସ୍ତ ପ୍ରତି ହୃଦୟରେ ସହାନୁଭୂତି ଆଣିବାକୁ ବିଶେଷ କଷ୍ଟ କରିବାକୁ ହୁଏ ନାହିଁ । ଫକୀରମୋହନଙ୍କର ସେହି ସେହି ସ୍ଥାନରେ ମାର୍ଜିତ ସଂସ୍କୃତିଆ ଓଡ଼ିଆ ଭାଷାର ବର୍ଣ୍ଣନା ବ୍ୟବହାର କରି, ଦେଖିବ ପ୍ରକୃତ ବିଷୟଟା ପଢ଼ିବାବେଳେ ମନରେ ଯେ ସ୍ପନ୍ଦନ, ଯେ ସହାନୁଭୂତି, ଯେ ମୂର୍ଚ୍ଛନା ଆସିବାର କଥା, ତାହାର କଣିକାଏ ସୁଦ୍ଧା ଆସିବନାହିଁ । ଏଇ ଯେ ଜିନିଷଟା ମୁଁ କହିଲି, ତାହା ଖାଲି ଉପନ୍ୟାସ ବା ଗଳ୍ପର ବିଶେଷତ୍ୱ ନୁହେଁ । କାବ୍ୟ, ସଙ୍ଗୀତ, ନାଟକ ଇତ୍ୟାଦିରେ ମଧ୍ୟ ଏହାର ବ୍ୟବହାର ଆବଶ୍ୟକ ହୋଇପଡ଼େ । କୌଣସି ଦୁଃଖାବହ ଦୃଶ୍ୟର ଅବତାରଣା କରିବା ପୂର୍ବରୁ ଓ ପରେ କବି ପ୍ରକୃତିର ଦୁଇଟି ବିଭାଗ ମଧ୍ୟରୁ ଗୋଟିଏ ଏପରି ବର୍ଣ୍ଣନା କରେ ଯେ, ପାଠକ ସେହି ବର୍ଣ୍ଣନାର ଭାବରେ ମୁଗ୍ଧ ହୋଇ ହଠାତ୍ ପ୍ରଧାନ ବିଷୟରେ ପହଞ୍ଚି ଗଲାବେଳକୁ ତାହାର ହୃଦୟ ସେହି ନୂତନ ଭାବର ବିଶାଳତା ଓ ଗମ୍ଭୀରତା ଗ୍ରହଣ କରିବା ପାଇଁ ପ୍ରସ୍ତୁତ ହୋଇଥାଏ—ଅର୍ଥାତ୍ କୌଣସି ଗଭୀର ଦୁଃଖର ବିଷୟ ବର୍ଣ୍ଣନା କରାଯିବ । କବି ତା' ପୂର୍ବରୁ ବର୍ଣ୍ଣନା କଲେ ପ୍ରକୃତିର କୌଣସି ହାସ୍ୟମୟ

ଆନନ୍ଦମୟ ରୂପ । ଏହି ଆନନ୍ଦର ମଧ୍ୟରେ ହଠାତ୍ ଦୁଃଖର ଅବତାରଣା ହେଲ ମାତ୍ରକେ ଦୁଇଟି ପରସ୍ପର ବିରୋଧ ଭାବର ତୁଳନାରେ ଦୁଃଖର ମାତ୍ରା ଅତିଶୟ ପରି ଜଣାଯାଏ । ଅଥବା ସେହି ଦୁଃଖ ଦୃଶ୍ୟର ବର୍ଣ୍ଣନା ଆଗରୁ ପ୍ରକୃତିର ଅନ୍ଧକାରମୟ, ନିରାନନ୍ଦ ରୂପ ବର୍ଣ୍ଣନା କରିଗଲେ, ସେହି ବର୍ଣ୍ଣନାର ଫଳସ୍ୱରୂପ ମନଟା ଯେ ଆସ୍ତେ ଆସ୍ତେ ଦବି ଯାଉ-ଥାଏ,ତାହା ପ୍ରକୃତ ବିଷୟର ବିଷାଦ ବିଶେଷରୂପେ ଅନୁଭବ କରେ । ଉଭୟ ପ୍ରଥା ସ୍ଥଳବିଶେଷରେ ଉପାଦେୟ । ଗଙ୍ଗାଧର୍ ଓ ରାଧାନାଥଙ୍କ ମଧ୍ୟରେ ତୁଳନା କରିବାକୁ ଯାଇ ଜଣେ ଖ୍ୟାତନାମା ଯୁବକ ସାହିତ୍ୟିକ ଗଙ୍ଗାଧରଙ୍କ ପ୍ରଯୁକ୍ତ ପ୍ରଥାକୁ ଯେ ରାଧାନାଥଙ୍କ ପ୍ରଯୁକ୍ତ ପ୍ରଥାଠାରୁ ନିକୃଷ୍ଟ ବୋଲି ଗ୍ରହଣ କରିଅଛନ୍ତି—ସେ ସାହିତ୍ୟ ସମାଲୋଚନା ଦୃଷ୍ଟିରେ ଠିକ୍ ହୋଇନାହିଁ । "ସମେ ସମେ ଓ ବିଷମେ ସମେ", ଗୀତ ତାଲ୍ରିରୀ ବିଦ୍ୟାରେ ଯେପରି, ସାହିତ୍ୟରେ ମଧ୍ୟ ସେହିପରି ସମାନ ହିତକାରକ, କାରଣ ଉଭୟେ ପ୍ରକୃତିର ଅବଶ୍ୟମ୍ଭାବୀ ରୂପ ।

ଫକୀରମୋହନଙ୍କର ଏହି ଅଳଙ୍କାରଗୁଡ଼ିକ ପ୍ରତି ଆଜକାଲିକାର ତାଙ୍କ ସେବକ-ମାନେ ବିଶେଷ ଦୃଷ୍ଟି ଦେଲପରି ମନେହୁଏ ନାହିଁ । ସାହିତ୍ୟ ଗୋଟିଏ କଳା । ଅଳଙ୍କାର ତାହାର ପ୍ରଧାନ ସୌଷ୍ଠବ । ବିଶେଷତଃ ଉପନ୍ୟାସରେ ଅଳଙ୍କାରର ପ୍ରୟୋଜନୀୟତା ବେଶୀ । କାବ୍ୟରେ ସଙ୍ଗୀତର ମୂର୍ଚ୍ଛନା ଅଛି । ଅତଏବ, କାବ୍ୟକୁ ନିରାଭରଣ କଲେ ମଧ୍ୟ ସଙ୍ଗୀତର ସୁଅରେ ସେ କେତେକ ପରିମାଣରେ ସୁଖପାଠ୍ୟ ହୋଇପାରେ । ମାତ୍ର ଉପନ୍ୟାସ ଗଦ୍ୟ ସାହିତ୍ୟ । ତାହାର ବିଶିଷ୍ଟ ଅଳଙ୍କାରଗୁଡ଼ିକ ବାଦ୍ ଦେଲେ ସେ ଦର୍ଶନ ଶାସ୍ତ୍ର କି ବିଜ୍ଞାନଶାସ୍ତ୍ର ପରି ନୀରସ ଓ ଦୁଷ୍ପାଠ୍ୟ ହୋଇଯିବ ।

ଆଜକାଲି ଆମ ଉପନ୍ୟାସ-ଲେଖକମାନେ ଯେ ଏ କଥା ନ ଜାଣନ୍ତି, ତା' ନୁହେଁ । ସେମାନେ ଯେ ନ କରନ୍ତି, ତାହାର କାରଣ ଏଇ ଅନ୍ଧ ଅନୁକରଣ । ପ୍ରତିଭାର ଅନୁଶୀଳନ ଉମକାଂକ୍ଷୀ ହୋଇପାରେ; ମାତ୍ର ଅନୁକରଣ ଜାତି ଓ ସମାଜ ପକ୍ଷରେ ବିଶେଷ ଅନିଷ୍ଟକାରୀ । ପ୍ରତିଭାବାନ୍ ବ୍ୟକ୍ତି ମନୁଷ୍ୟ । ତାଙ୍କର ସବୁ ଲେଖା, ସବୁ କଥା ସମାନ ଭାବରେ ସୁନ୍ଦର ହୋଇ ନ ପାରେ । ସୁତରାଂ ତାଙ୍କ ଲେଖାରେ କ'ଣ ସୁନ୍ଦର ଓ କ'ଣ ଅସୁନ୍ଦର, କ'ଣ ଭଲ ଓ କ'ଣ ଭଲ ନୁହେଁ—ଏହାର ଯଥାଯଥ ବିଚାର କରିବା ଉଚିତ୍ । ଖାଲି ଅମୁକ ଲୋକ ଲେଖିଛନ୍ତି, ସୁତରାଂ ତାହାହିଁ ସୁନ୍ଦର ଅଥବା ଅମୁକବାବୁଙ୍କର ଲେଖାପରି ହୋଇଚି, ସୁତରାଂ ତାହାହିଁ ସୁନ୍ଦର—ଏପରି ବୁଝିବା ଓ ଭାବିବା ନିତାନ୍ତ ଅନ୍ୟାୟ ଓ ବୋକାମିର କଥା । ମନେରଖିବାକୁ ହେବ ଯେ, ଏ ସଂସାରରେ ଅନେକ ଭିନ୍ନ ଭିନ୍ନ ପ୍ରକୃତିର ଲୋକ ଅଛନ୍ତି । ସେମାନଙ୍କର ଭାବନା-ଚିନ୍ତା ସେମାନଙ୍କର ଭିନ୍ନ ପ୍ରକୃତିର ଅନୁରୂପ । ପ୍ରତିଭା ଗୋଟାଏ କିଛି ଧରାବନ୍ଧା ମପାମପି ଜିନିଷ ନୁହେଁ । ଜଳ ଯେପରି ପାତ୍ରର ଆକାର ଗ୍ରହଣ କରେ, ପ୍ରତିଭା ସେହିପରି ବ୍ୟକ୍ତିବିଶେଷର ପ୍ରକୃତି

ଗ୍ରହଣ କରେ । ଯାହାର ପ୍ରକୃତି ଓ ପ୍ରତିଭା ବିକାଶ ଓ ଶିକ୍ଷା ଯେପରି, ତା'ର ସେହିପରି ସାହିତ୍ୟ ଲେଖିବା ଉଚିତ । ଆଉ ତାହାର ବିଶିଷ୍ଟ ପ୍ରତିଭା ଦିଗରୁ ତା'ର ସାହିତ୍ୟକୁ ସମାଲୋଚନା କରିବା ସମାଲୋଚକର ଉଚିତ । ମୋର ଦକ୍ଷିଣମୁଖୀ ପ୍ରତିଭାକୁ ଭାଙ୍ଗି ଜବରଦସ୍ତି ସମାଲୋଚକକୁ ତୃପ୍ତ କରିବା ପାଇଁ ବାମମୁଖୀ କରିବାକୁ ଚେଷ୍ଟାକରିବା ଖାଲି ମୋ ନିଜ ପ୍ରତି ବିଶ୍ୱାସଘାତକତା ନୁହେଁ—ଈଶ୍ୱରଙ୍କ ପ୍ରତି ମଧ୍ୟ ମହାନ୍ ଅବିଶ୍ୱାସର ଚିହ୍ନ । ଅବଶ୍ୟ ପ୍ରକୃତରେ ଜଣେ ଓଡ଼ିଆ ଯୁବକ ସମାଲୋଚକ ଯେପରି ଲେଖିଥିଲେ, ସାହିତ୍ୟର ଉଦ୍ଦେଶ୍ୟ ଯଦି ଅର୍ଥକଷ୍ଟ ବା ଯଶସ୍ପୃହା ହୁଏ, ତା'ହେଲେ ମୋ ନିଜ କଥା ପୋଡ଼ିଯାଉ ପଛକେ, ମୁଁ ପରକଥାରେ ହାଁଜୀ ମାରିପାରେ । କିନ୍ତୁ ପ୍ରକୃତରେ ସାହିତ୍ୟର ଉଦ୍ଦେଶ୍ୟ ଅର୍ଥକଷ୍ଟ ନୁହେଁ କି ଯଶସ୍ପୃହା ନୁହେଁ । ସମାଲୋଚକ ନିଜ ମନର ମାପକାଠି ବା ତାଙ୍କ ସଙ୍ଗୀମାନଙ୍କ ମାପକାଠିରୁ ଏଡ଼େ ବଡ଼ ଗୋଟାଏ ସିଦ୍ଧାନ୍ତ କରି-ପକାଇ ବୋଧହୁଏ ଠିକ୍ କରିନାହାନ୍ତି । ସେମାନେ ଯେ ସାହିତ୍ୟ ଲେଖୁଚନ୍ତି, ସେ ଯେ ଅର୍ଥକଷ୍ଟ—ତାହା ଦାଣ୍ଡରେ ପଡ଼ି ହାଟରେ ଗଡ଼ ଗଡ଼ଉଚି । କିନ୍ତୁ ଉପେନ୍ଦ୍ରଭଞ୍ଜ, ଶ୍ରୀହର୍ଷ, ପ୍ରତାପରୁଦ୍ର, ଲର୍ଡ ଲିଟନ୍, ଲର୍ଡ ବିକନ୍ସ ଫିଲ୍ଡ ଇତ୍ୟାଦି ସାହିତ୍ୟିକମାନେ ଯେ ଲେଖାଲେଖି ଯାଇଚନ୍ତି, ସେ କେଉଁ ଉଦ୍ଦେଶ୍ୟରେ ? ସେମାନେ ଯେ ଅର୍ଥ ଉଦ୍ଦେଶ୍ୟରେ ଲେଖି ଥିଲେ, ଏପରି କହିବା ବାତୁଳର ଉକ୍ତି ଛଡ଼ା ଆଉ କିଛି ହୋଇପାରେ ନାହିଁ । ସେତେବେଳେ ଛାପାଖାନା ନ ଥିଲା କି ବିଜ୍ଞାପନ ଶସ୍ତଧାସ୍ତ ପ୍ରକାଶକ ସବୁ ନ ଥିଲେ ଯେ, ସେମାନେ ତାଙ୍କ ଲେଖାଗୁଡ଼ାକ ଦେଶବିଦେଶରେ ପ୍ରଚାର କରି ପ୍ରଶଂସା ପାଇବାର ଆଶା ରଖିଥିଲେ । ପରବର୍ତ୍ତୀ ଯୁଗର କଥା କହେ । ଭଲଟେୟାର, ଗେଟେ, ସେଲି, ବାଇରନ୍, ଅସ୍କାର ୱାଇଲଡ୍ ପ୍ରଭୃତି ଲେଖକମାନେ ସେମାନଙ୍କ ସମୟରେ ସମାଜର ଚକ୍ଷୁଶୂଳ ଓ ସାହିତ୍ୟ ସମାଲୋଚକମାନଙ୍କର ପିକଦାନି ଥିଲେ । ଦେଶରୁ ତଡ଼ା ଖାଇଚନ୍ତି—କେତେକ ସେମାନଙ୍କ ମଧ୍ୟରୁ ଜେଲ ମଧ୍ୟ ଯାଇଚନ୍ତି; ତଥାପି ସେମାନେ ଲେଖିଯାଇଚନ୍ତି ଯେପରି ଲେଖୁଥିଲେ । ପଇସା ପାଇବା ପାଇଁ, ଯଶ ଅର୍ଜିବା ପାଇଁ ବା ଦେଶର କର୍ତ୍ତା ଓ ସମାଲୋଚକମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେମାନେ ଲେଖାର ରୀତି ବଦଳେଇବାତ ଦୂରର କଥା, ଲେଖା ମଧ୍ୟ ବନ୍ଦ କରିନାହାନ୍ତି । ଲେଖିବା ଯେପରି ଥିଲା ତାଙ୍କ ଜୀବନଧାରଣର ପ୍ରଧାନ ଉପାୟ । ନ ଲେଖିଲେ ସେ ଯେପରି ମରିଯାଆନ୍ତେ । ଏ ସବୁ ବିଷୟ ଭାବିଲେ କିଏ କହିବ ଯେ, ସାହିତ୍ୟର ଉଦ୍ଦେଶ୍ୟ ଅର୍ଥକଷ୍ଟ ବା ଯଶସ୍ପୃହା ? ସାହିତ୍ୟର ଉଦ୍ଦେଶ୍ୟ ସାହିତ୍ୟ—ଅନ୍ୟ କିଛି ନୁହେଁ । ଭାବୁକ ନିଜ ଭାବନାରେ ଠେଲି ହୋଇ ନିଜ ପ୍ରକୃତିର ଉପଯୋଗୀ ଭାଷାରେ ଓ ଛନ୍ଦରେ ମନକଥା, ତା' କଳ୍ପନାର କଥାକୁ ଲେଖିଯାଏ—ଲେଖିବାକୁ ସେ ବାଧ୍ୟ । ଫକୀରମୋହନ ଯେତେବେଳେ ଓଡ଼ିଆ ଭାଷାରେ ଉପନ୍ୟାସ ଲେଖିଲେ, ସେତେବେଳେ କ'ଣ ସେ ମନେକରିଥିଲେ ଯେ, ଓଡ଼ିଶାରେ ତାଙ୍କ ବହି ବିକ୍ରି ହେବ, ଆଉ ସେହି ବିକ୍ରି ପଇସାରୁ ସେ କୋଠା ଦୋତାଲା

କରିବେ ? ସେ କ'ଣ ବୁଝିପାରି ନ ଥିଲେ ଯେ, ସେତେବେଳେ ଓଡ଼ିଶାରେ ଏପରି ଶହେ ଖଣ୍ଡେ ଲୋକ ନ ଥିଲେ, ଯେ କି ତାଙ୍କ ଉପନ୍ୟାସର ପ୍ରକୃତ ମହତ୍ତ୍ୱ ବୁଝିପାରିବେ ? ସେ ଲେଖିଥିଲେ କାହିଁକି ? ତାଙ୍କ ନିଜ ମନର ଭାବ, କଳ୍ପନାର ସାମଗ୍ରୀଗୁଡ଼ିକୁ ଦେଶ-ବାସୀଙ୍କୁ ଦେଇ ଯିବା ପାଇଁ । ସେଇ ହେତୁରୁ ମୁଁ କହେ, ସେ ଲେଖିଥିଲେ ସାହିତ୍ୟ—ସାହିତ୍ୟ ନିମନ୍ତେ । ଆଜିକାଲି ଯେଉଁମାନେ ଉପନ୍ୟାସ ଲେଖୁଚନ୍ତି—ସେମାନଙ୍କ ଭିତରୁ ଅନେକଙ୍କର ଉଦ୍ଦେଶ୍ୟ ଅର୍ଥକଷ୍ଟ, କେତେକଙ୍କର ସାହିତ୍ୟ ଜୀବିକା ନିର୍ବାହର ଗୋଟାଏ ପନ୍ଥା । ସୁତରାଂ ସେମାନେ ଲୋକରୁଚି, ବିଶେଷତଃ ସମାଲୋଚକ ରୁଚି ଅନୁସାରେ ଉପନ୍ୟାସ ଲେଖିବାକୁ ବାଧ୍ୟ । ଆଉ ଯେହେତୁ ଆମ ଦେଶ ସମାଲୋଚକମାନଙ୍କ ଭିତରେ ଅନୁଶୀଳନୀ ଶକ୍ତି ନାହିଁ, ସେଇ ହେତୁରୁ ସେମାନଙ୍କର ଲେଖା ଏକଦେଶିଆ ବାନ୍ଧିଗଣ୍ଡିରେ ରହିଯାଉଚି । ମୁଁ ଉଦାହରଣ ଦେଇ ଟିକିଏ କଥାଟା ବୁଝାଇଦିଏଁ । ବର୍ତ୍ତମାନ ପର୍ଯ୍ୟନ୍ତ ଯେତେ ଉପନ୍ୟାସ ଲେଖାହୋଇଚି, ତା'ମଧ୍ୟରୁ ଅଧିକାଂଶ ସାମାଜିକ, ଆଉ ଗୋଟିଏ ପ୍ରକାର ସାମାଜିକ । ସମାଜ ଜୀବନରେ ଯେ ଅନେକ ପ୍ରକାର ଘଟଣା ଘଟୁଚି, ଅନେକ ନୂଆ ନୂଆ କଥା ହୋଇ ଯାଉଚି, ସେ ସବୁର ହିସାବ ସମସାମୟିକ ଉପନ୍ୟାସ ବା ଗଳ୍ପମାନଙ୍କରୁ ମିଳିବା ଅସମ୍ଭବ । ଐତିହାସିକ ଉପନ୍ୟାସ, ଭ୍ରମଣ ଗଳ୍ପ, ସାହସିକ ଗଳ୍ପ, ଗୋଲକ ଧନ୍ଦା ଗଳ୍ପର ଅଭାବ ଏତେ ବେଶୀ ଯେ, ସେ ସବୁ ନାହିଁ ବୋଲି କହିଲେ ମଧ୍ୟ ଚଳନ୍ତା । ଗଳ୍ପ ସାହିତ୍ୟର ଏହି ସନାତନ ଅବସ୍ଥାକୁ ଭାଙ୍ଗି ତାକୁ ବହୁମୁଖୀ କରିବା ନିମନ୍ତେ ମୁଁ ଏହି ପ୍ରବନ୍ଧ ଦ୍ୱାରା ଉତ୍କଳର ଯୁବକ ସାହିତ୍ୟିକମାନଙ୍କୁ ଅନୁରୋଧ କରୁଚି । କେହି ପଢ଼ିବେ ନାହିଁ ବା ତାଙ୍କ ବହି ଆଦର ପାଇବ ନାହିଁ, ଏପରି ଆଶଙ୍କା କରି ନିଶ୍ଚେଷ୍ଟ ହୋଇ ବସି ରହିବା ଭୁଲ । କାରଣ ବହିକୁ ଚିତ୍ତାକର୍ଷକ କରି ପାରିଲେ, ତା'ର ରୁଚି-ଅନୁକୂଳ ରୁଚି ପାଠକମାନଙ୍କ ମଧ୍ୟରେ ଅବଶ୍ୟ ମିଳିବ । ତା'ପରେ ସାହିତ୍ୟିକ ଲୋକରୁଚିକୁ ଅପେକ୍ଷା କରେ ନାହିଁ—ସେ ଲୋକରୁଚି ତିଆରି କରେ ।

ସାହିତ୍ୟ ସମାଜର ରୁଚି ତିଆରି କରେ ବୋଲି କହିବା ଦ୍ୱାରା କେହି ଯେପରି ମନେ ନ କରନ୍ତି ଯେ, ସାହିତ୍ୟିକ ନୀତିଶିକ୍ଷକର ଆସନ ମାଡ଼ିବସେ । ଲୋକରୁଚି ତିଆରି କରିବା ସାହିତ୍ୟର ଲକ୍ଷ୍ୟ । ଲୋକମାନଙ୍କୁ ଶିକ୍ଷାଦେବା ସାହିତ୍ୟର କର୍ତ୍ତବ୍ୟ ନୁହେଁ । 'ବିଦ୍ୟା ବିନୋଦାୟ'—ସାହିତ୍ୟ କେବଳ ଆନନ୍ଦ ଦିଏ । ଆମ ଦେଶରେ ସମାଲୋଚନାର ଏପରି ଆଡ଼ମ୍ବର, ଆମ ଦେଶ ପ୍ରକାଶକମାନଙ୍କର ବୁଦ୍ଧି ଏପରି ବିଚକ୍ଷଣ ଯେ ସେମାନେ ବହି ଖଣ୍ଡିଏ ପାଇଲାକ୍ଷଣି ବାଛି ବସିବେ—ଏଥିରେ ଶିଖିବାର, ଅର୍ଥାତ୍ ସ୍କୁଲଗାମୀ ପିଲାଙ୍କର ଶିଖିବାର ଉପାଦାନ କେତେ ଅଛି ? ଯହିଁରେ ସେ ଉପାଦାନ ଯେତେ ବେଶୀ ସେହି ବହିଗୁଡ଼ିକର ସେତିକି ବେଶୀ ଆଦର । ଆଜିଯାଏ ସ୍କୁଲଗାମୀ ପାଠ୍ୟପୁସ୍ତକ ଛପାଇ ଓ ବିକି ପେଟ ପୋଷି ଆସୁଛନ୍ତି କି ନା, ସେଇ ହେତୁରୁ ପୁରୁଣା ବହିର ମାଷ୍ଟ୍ରାଟା

ଛାଡ଼ି ହୁଏ ନାହିଁ । କିନ୍ତୁ ଏ ଦେଶର ସାହିତ୍ୟକୁ ଆଗକୁ ଟିକିଏ ଠେଲିଦେବାର ପ୍ରକୃତ ଇଚ୍ଛା ଥିଲେ, ସେମାନଙ୍କୁ ଏ ଗୃହଶାଳୀ ଅବଧାନିଆ ବୃତ୍ତି ଛାଡ଼ିବାକୁ ପଡ଼ିବ । ବୁଝିବାକୁ ହବ ଯେ, ସାହିତ୍ୟର ଓ ପାଠ ବଖାଣର କାର୍ଯ୍ୟ ଅଲଗା ଅଲଗା । ସାହିତ୍ୟିକ ବିଶେଷତଃ ଔପନ୍ୟାସିକ ବିଷ୍ଣୁଶର୍ମାଙ୍କ ଭଳି ବସି ରୂପକଥା ଛଳରେ କାହାରି ଶିକ୍ଷା ବଢ଼ାଇବାକୁ ପରିଶ୍ରମ କରିପାରେ ନାହିଁ । ତା'ପାଇଁ ରାଣି ରାଣିଟା ରାଜା ପୁଅ ନାହାନ୍ତି, କି ମୋଟା ଦରମା ମଧ୍ୟ ନାହିଁ । ସେ ଯାହା ଲେଖେ—ତାହା ନିଜର ଆନନ୍ଦ ନିମନ୍ତେ ଓ ପାଠକର ଚିତ୍ତ 'ବିନୋଦନ' ନିମନ୍ତେ । ଏହି ବିନୋଦନଟି ହେଲା ତାହାର କାର୍ଯ୍ୟ । ଆଉ ଏ ଗୋଟିଏ ମହତ୍ କାର୍ଯ୍ୟ । ସ୍କୁଲରେ ବସି ପାଠପଢ଼ାଇବା ଠାରୁ ମଧ୍ୟ ମହତ୍ କାର୍ଯ୍ୟ, କଷ୍ଟକର କାର୍ଯ୍ୟ ମଧ୍ୟ । ତା'ର ଶିଷ୍ୟମାନେ ଖାଲି ଗଣ୍ଡମୂର୍ଖ ଦୁଧଖିଆ ପିଲା ନୁହନ୍ତି । ତା' ହାତରେ ଛାଟବାଡ଼ି କି ପରୀକ୍ଷା ନମ୍ବର ନାହିଁ । ତଥାପି ସେ ଏହି ଦରପାଠୁଆ, ପାଠୁଆ ଓ ଅପାଠୁଆଙ୍କର ଚିତ୍ତବିନୋଦନ କରିବ । ତାଙ୍କୁ ମଦ ଖୁଆଇ ନୁହେଁ କି ତାଙ୍କୁ ବେଶ୍ୟା ଘରକୁ ନେଇ ନୁହେଁ । ସାଧୁ ଭାବରେ, ଭଦ୍ରକଥା କହି । ଏହାର ମଧ୍ୟରେ ତାକୁ ପାଠକମାନଙ୍କର ରୁଚିକୁ ନିଜ ରୁଚିର ଅନୁରୂପ ହେବା ପାଇଁ ଚେଷ୍ଟା କରିବାକୁ ମଧ୍ୟ ପଡ଼ିବ । କାରଣ ସେ ଲେଖେ ନିଜ ରୁଚି ଅନୁସାରେ ଏବଂ ପାଠକ ପାଖରେ ତାହାର ରୁଚିକୁ ଆଦରଣୀୟ କରିବାକୁ ଇଚ୍ଛା କଲେ, ସେ ନିଜ କଲମ କୁହୁକ ଦ୍ୱାରା ପାଠକର ରୁଚି ଉପରେ ନିଜ ରୁଚିର ଛାୟା ପକାଇବାକୁ ଚେଷ୍ଟା କରିବ । ଇଂରେଜୀ ଉପନ୍ୟାସର ଜନ୍ମଦାତା ହେନେରି ଫିଲ୍‌ଡିଂ ତାଙ୍କ 'ଟମ୍ ଜୋନସ୍' ଉପନ୍ୟାସର ଆରମ୍ଭରେ କହିଥିଲେ ଠିକ୍ ଏହି କଥା । ସେ ନିଜକୁ ଅର୍ଥାତ୍ ଔପନ୍ୟାସିକକୁ ଗୋଟାଏ ଶୁଣ୍ଡି ସାଙ୍ଗରେ ତୁଳନା କରି ଦେଖାଇଥିଲେ ଯେ, ଔପନ୍ୟାସିକ ପାଠକମାନଙ୍କର ରୁଚି ଓ ଆନନ୍ଦ ନିମନ୍ତେ ଚେଷ୍ଟା କରିବା ନିତାନ୍ତ ପ୍ରୟୋଜନ । ପୃଥିବୀ—ସାହିତ୍ୟର ଆଲୋଚନା କଲେ ଏ ବିଷୟଟି ସ୍ପଷ୍ଟ ଜଣାପଡ଼ିବ । ପାଠକର ରୁଚି ଓ ଲେଖକର ରୁଚି ମଧ୍ୟରେ ସାମଞ୍ଜସ୍ୟ ସ୍ଥାପନ କରିବାରେ ହେଲା ସାହିତ୍ୟିକର ବିଶେଷତଃ ଔପନ୍ୟାସିକର ବାହାଦୁରୀ । ଏ ସାମଞ୍ଜସ୍ୟ ଦୁଇଟି ବିଭିନ୍ନ ଉପାୟରେ କରାଯାଏ । ପ୍ରଥମ ପାଠକର ବା ସାଧାରଣର ରୁଚି ଅନୁସାରେ ନିଜର ରୁଚିକୁ ଆୟତ୍ତ କରିବା, ଦ୍ୱିତୀୟ ପାଠକର ରୁଚି ବିରୁଦ୍ଧ ଓ ନିଜ ରୁଚି ସମ୍ମତ ବିଷୟକୁ ପାଠକର ଆଗରେ ଏପରି ସୁନ୍ଦର ଓ ସହଜବୋଧ ଯୁକ୍ତିଯୁକ୍ତ ଆକାରରେ ରଖିବାକୁ ହେବ ଯେ, ପାଠକର କୌତୂହଳ ଉଦ୍ଦୀପନ କରି ତାହାର ରୁଚିକୁ ନିଜ ଲେଖା ପ୍ରତି ଆକୃଷ୍ଟ କରିବାକୁ ପଡ଼ିବ । ଇଂରେଜୀ ସାହିତ୍ୟରେ ପୋପ୍ ପ୍ରଭୃତି ପ୍ରଥମ ଉପାୟର ଉଦାହରଣ ଓ ସେଲି, କିଟ୍‌ସ୍, ବ୍ରାଉନିଂ ପ୍ରଭୃତି ଦ୍ୱିତୀୟ ଉପାୟର ନମୁନା । ଆମ ଦେଶରେ ପ୍ରଥମ ଉପାୟର ନମୁନା ଯଥେଷ୍ଟ—କାରଣ ରୁଚି ନ ପାରିବା ହେତୁ ଉପାୟଟା ହୋଇଛି ଆମ ପକ୍ଷରେ ସହଜ । ଆମର ନିଜ ତିଆରି ରୁଚି କିଛି ନାହିଁ । ପରର ରୁଚି ମାଗିଆଣି ଆମେ ରୁଚିବାନ୍ । ଦ୍ୱିତୀୟ ଉପାୟର ଉଦାହରଣ

ଟିକିଏ ବେଶୀ ମାତ୍ରାରେ ବିରଳ । ପାଠକମାନେ ଦେଖୁଥିବେ, ଦୁଇଟି ଉପାୟ ସହଜ-ସାଧ୍ୟ ନୁହେଁ । ଆମ ଦେଶୀ ଲେଖକମାନେ ପ୍ରଥମ ଉପାୟର ଭକ୍ତ ବୋଲି କହି ପାରନ୍ତି; କିନ୍ତୁ ଅନୁକରଣର ସବୁ ପ୍ରଥମ ଉପାୟରେ ନାହିଁ । ଏଥି ନିମନ୍ତେ ନିଜର ଉଦ୍ଦାମ ଉଚ୍ଛୃଙ୍ଖଳ ଭାବରାଶିକୁ ସଂଯତ କରିବାକୁ ପଡ଼େ । ଆଉ ଏପରି ଭାବରେ ସଂଯତ କରିବାକୁ ପଡ଼େ ଯେ, ପାଠକର ମନରେ ସେହି ସଂଯମର ଗନ୍ଧ ପର୍ଯ୍ୟନ୍ତ ବାଜେ ନାହିଁ । କାରଣ ଲେଖା ମଧ୍ୟରେ ସଂଯମର ଟଣାଟଣି ଭାବ ରହିଲେ, ଲେଖାର ସ୍ୱାଧୀନ ଗତି, ଅବ୍ୟାହତ ପ୍ରବାହ ବାଧା ପାଏ । ଆମ ଓଡ଼ିଆ ସାହିତ୍ୟରେ ଏହି ଉପାୟର ପ୍ରଧାନ ଅବଲମ୍ବୀ ରାଧାନାଥ ଲେଖାକୁ ଟିକିଏ ତଳେଇ କରି ଦେଖିଲେ, ଖାଲି ପ୍ରଶଂସା ବା ଖାଲି ନିନ୍ଦାର ସୁଅରେ ଭାସି ନ ଯାଇ ଐତିହାସିକ ପ୍ରଣାଳୀ ଦ୍ୱାରା ତାହାର ସମାଲୋଚନା କଲେ ପ୍ରତ୍ୟେକ ଲୋକ ଦେଖିପାରିବ ଯେ, ତାଙ୍କର ସମସାମୟିକ ଭଞ୍ଜୀୟ ରୁଚି ଓ ତାଙ୍କ ନିଜର ପାଶ୍ଚାତ୍ୟ ଶିକ୍ଷାପ୍ରଣୋଦିତ ଆଧୁନିକ ମଧ୍ୟରେ କିପରି ଚତୁରତାର ସହିତ ସେ ସାମଞ୍ଜସ୍ୟ ରକ୍ଷା କରିଅଛନ୍ତି । ତାଙ୍କର ପୂଜକମାନଙ୍କ ପରି କୌଣସି ସ୍ଥାନରେ ସେ ଭଞ୍ଜୀୟ ରୁଚିକୁ ଗାଳି ଦେଇନାହାନ୍ତି । ଭଞ୍ଜୀୟ ରୁଚି ମଧ୍ୟରୁ ଯେତେ ଦୂର ପାରନ୍ତି, ସାର ଜିନିଷତକ ନିଜ କବିତା 'ଯଯାତି-କେଶରୀ', 'ପାର୍ବତୀ' ଇତ୍ୟାଦି ମଧ୍ୟରେ ରଖି ତାକୁ ଆଧୁନିକ ରୁଚିର ଗୋଟିଏ ପୋଷାକ ପିନ୍ଧାଇ ଦେଇଛନ୍ତି । ଅବଶ୍ୟ ତାଙ୍କର କେତେକ ଲେଖା ମଧ୍ୟରେ ଭଞ୍ଜୀୟ ରୁଚିର ସବୁ ନାହିଁ; କିନ୍ତୁ ସେ ସବୁ ତାଙ୍କ ପରକାଳର ଲେଖା । ଏହି ଉପାୟ ସାହାଯ୍ୟରେ ନିଜ ଆଧୁନିକ ରୁଚି ପାଠକମାନଙ୍କ ମନରେ ଦୃଢ଼ମୂଳ କରିସାରିଲା ପରେ ସେ ଭଞ୍ଜୀୟ ରୁଚିକୁ ଅପ୍ରୟୋଜନୀୟ ପରିଚ୍ଛଦ ଫୋପାଡ଼ି ଦେଲା ପରି ଛାଡ଼ିଦେଇ ନିଜ ରୁଚିରେ ଅବାଧରେ ପହଁରି ଯାଇଛନ୍ତି ।

ଫକୀରମୋହନ ଦ୍ୱିତୀୟ ଉପାୟର ଅବତାର । ତାଙ୍କ ପାଇଁ ରୁଚି ଥିଲା ଗାଉଁଲି ରୂପ କଥା । ତାଙ୍କ ବେଳେ ସଭ୍ୟସମାଜର ରୁଚି ଥିଲା ସହର ଓ ସହରର ଯାବତୀୟ ଆମୋଦ ପ୍ରମୋଦ । ସେ କହିଲେ, "ହଁ, ତୁମେ ସହରରେ ବସି ବାବୁ ହବ ।" ଆଚ୍ଛା ଦେଖାଯାଉ, ମୁଁ ତୁମକୁ ଟାଣି ଓଟାରି ଏ ମଫସଲକୁ ନେଇ ଆସିବି ।'' ଆମର ବ୍ୟାସ-କବି ଥିଲେ ପକ୍କା ମରହଟ୍ଟୀ ମଫସଲିଆ । "ଦେହେ ରାଜା ହେଲେ ମନେ ସେହି ଚଷା ।'' କିମ୍ବଦନ୍ତୀ ଅଛି—ସାହେବ ପାଖକୁ ଯିବା ଅପେକ୍ଷା ନିଜ ପୂର୍ବପୁରୁଷଙ୍କର ଶୁଦ୍ଧ ପୁବର୍ଣ୍ଣ ଜମି ଛାଡ଼ିଦେବାକୁ ବରଂ ସେ ରାଜି ଥିଲେ, ଅବଶ୍ୟ ତାଙ୍କ ପିଲାଦିନେ । ତାଙ୍କ ସରଳ ହୃଦୟର ସମୁଦାୟ ସହାନୁଭୂତି ଥିଲା ସେହି ମଲିମୁଣ୍ଡିଆ ମଫସଲିଆଙ୍କ ପ୍ରତି । ସେ ସମସାମୟିକ ରୁଚିକୁ ତାଙ୍କର ଏହି ରୁଚିଆଡ଼କୁ ଟାଣି ଆଣିଥିଲେ । ସାଧାରଣ ରୁଚିକୁ ଅନୁକରଣ କରି ନୁହେଁ; ମାତ୍ର ସାଧାରଣ ରୁଚି ସହିତ ଯୁଦ୍ଧ କରି ।

ଏମାନଙ୍କର ମଧୁର ଦୃଷ୍ଟାନ୍ତ ଆଗରେ ରଖି ମଧ୍ୟ ଆମ୍ଭମାନଙ୍କର ଆଧୁନିକ ଯୁଗର ଲେଖକମାନେ ନିଜେ ଯେ କଦର୍ଯ୍ୟ ଦୃଷ୍ଟାନ୍ତ ଦେଉଚନ୍ତି, ତାହାର ଉଦାହରଣ ସାଧାରଣ

ସ୍ୱଭାବରେ ବୁଝାଇଦେବ । ମୁଁ ତାହାର ବନ୍ଧୁକୁ ଏ ସ୍ଥଳରେ ସମାଲୋଚନା କରୁନାହିଁ, କାରଣ ଲେଖକମାନେ ନିଜ ନିଜର କାରଣ ବୁଝିନେବେ । ଫକୀରମୋହନଙ୍କ ଲେଖାରେ ଆଦର ଅଛି । ମୁଁ ମଧ୍ୟ ଫକୀରମୋହନଙ୍କ ଲେଖାକୁ ପସନ୍ଦ କରେ । ଅତଏବ, ମୁଁ ଯାହା ଲେଖିବି, ସେ ଫକୀରମୋହନଙ୍କ ଲେଖା ପରି ହେବ । ଅତଏବ, ମୁଁ ଲେଖିଲି ଗାଉଁଲି କଥା, ଚଷାର ଜୀବନ, ଅଥଚ ହୁଏତ ହେଲେ ମୁଁ ଗାଁକୁ ଯାଇନାହିଁ—ହୁଏତ ହେଲେ ଗାଁର ମଳିମୁଣ୍ଡିଆ ଚଷାର ଦୁଃଖରେ ମୋ ହୃଦୟରେ ଏତେ ଟିକିଏ ବ୍ୟଥା ବାଜିନାହିଁ । କୌଣସି କାର୍ଯ୍ୟରେ ଗ୍ରାମକୁ ଯିବାକୁ ବାଧ୍ୟ ହୋଇଥିଲେ ମଧ୍ୟ, ବର୍ଷା ସମୟକୁ କିପରି ସହରକୁ ପଳାଇଆସିବି ତାହାର ଫିକର ଖୋଜିବି । ମୁଁ ଗାଉଁଲି ଲୋକର ଜୀବନୀ ଲେଖି କୃତକାର୍ଯ୍ୟ କିପରି ହେବି, କହନ୍ତୁ ଦେଖି ? ଯେ ଯେଉଁକର, ସେ ସେହିଭଳିରେ ରହିବା ଉଚିତ୍ । ମୋର ଶିକ୍ଷା, ଅବଗୁଣ୍ଠନ ଓ ସ୍ୱଭାବ ଯେତେଦୂର ଯାଇଚି, ମତେ ତାହାର ଅନୁରୂପ କାର୍ଯ୍ୟ କରିବା ଉଚିତ । ମୋର ନିଜକୁ ଚହ୍ନିବା ଉଚିତ । ଅତଏବ, ଏ ସ୍ଥଳରେ ମୁଁ ଆମ ଦେଶର ଉଦୀୟମାନ ଲେଖକମାନଙ୍କୁ ଏତିକି ଅନୁରୋଧ କରୁଚି—ନିଜକୁ ଫୋପାଡ଼ି ଦେଇ ପର ହେବାକୁ ଚେଷ୍ଟା କର ନାହିଁ ।

ସାହିତ୍ୟରେ ଏହି ଆତ୍ମପ୍ରକାଶଟି ପ୍ରଧାନ କଥା, ମୁଁ ଯଦି ହୃଦୟ ମଧ୍ୟରୁ କଥା କହେ, ମୁଁ ଯଦି ପ୍ରକୃତରେ ଯାହା ଅନୁଭବ କରେଁ, ତାହା ହିଁ ଲେଖେଁ, ତା'ହେଲେ ମନୁଷ୍ୟ ତ ଦୂରର, ଈଶ୍ୱର ମଧ୍ୟ ସେ କଥା ଶୁଣିବେ । ଯେ ଭାଷାରେ ଆତ୍ମ ପ୍ରତ୍ୟୟ ନାହିଁ, ଯେ ଲେଖାରେ ଆତ୍ମବିକାଶ ନାହିଁ—ତାହା ଭଣ୍ଡାମି ।

ତା'ହେଲେ ଆମେ ଦେଖିଲୁଁ ଯେ, ସାହିତ୍ୟିକ ଯାହା ଜାଣେ, ତାହାହିଁ ତାହାର ଲେଖିବା ଉଚିତ । ଅନେକ ବୋଧହୁଏ ଭାବିବେ, ମୁଁ ଯାହା ଜାଣେ, ତା' ତ ଅନ୍ୟ-ମାନେ ଜାଣନ୍ତି—ମୁଁ ଆଉ ଲେଖି ଲାଭ କ'ଣ ? ଜଣା କଥା ଲେଖିଲେ ଅନ୍ୟମାନେ ପଢ଼ିବେ କାହିଁ ? ଭୁଲ – ଏପରି ଭାବନା ସମୁଦାୟଟା ହିଁ ଭୁଲ । ନୂଆ କଥା ଲେଖିବାକୁ ଚେଷ୍ଟା କରିବାଠାରୁ ବଡ଼ ରକମ ବୋକାମି ଆଉ ସଂସାରରେ କିଛି ନାହିଁ । ଏ ବୁଢ଼ୀ ଅଥର୍ବୀ ଧରଣୀ ସବୁ କଥା ଦେଖିସାରିଚି, ତାକୁ ଆଉ ନୂଆ ଦେଖାଇବାର ନୂଆ ଶୁଣାଇବାର କିଛି ନାହିଁ । ଆମ ସଂସ୍କୃତରେ ଅଛି—"ବାଣୋଚ୍ଛିଷ୍ଟମିଦଂ ଜଗତ୍ ।" ତା' ବୋଲି କାଦମ୍ବରୀ କାବ୍ୟକୁ ଛାଡ଼ି ଆଉ ସବୁ ଗ୍ରନ୍ଥକୁ ପୋଡ଼ି ଫୋପାଡ଼ି ଦେବାପାଇଁ କେହି କେବେ ଚେଷ୍ଟା କରିନାହାନ୍ତି, ସାହସ କରି ନାହାନ୍ତି, କି ହାତଦେବାକୁ ମନ ବଳାଇନାହାନ୍ତି । ଥରେ ଜଣେ ମଦମତ୍ତ ରାଜା ଏହିପରି କିଛି ଆଲେକଜାଣ୍ଡ୍ରିଆ ପୁସ୍ତକା-ଗାରରେ କରିବା ପାଇଁ ଚେଷ୍ଟା କରିଥିଲେ । କିନ୍ତୁ ତାହାଦ୍ୱାରା ପୁରୁଣା କଥାଗୁଡ଼ାକ ପୋଡ଼ି ତ ଗଲାନାହିଁ, ବରଂ ବଢ଼ିଲା, ଆଉ ସେ ରାଜାଙ୍କର ନାମଧରିବା ପାଇଁ ସାହିତ୍ୟିକମାନେ ଏ ପର୍ଯ୍ୟନ୍ତ ପାପର କଥା ବୋଲି କହନ୍ତି । ଅତଏବ, ନୂଆ କଥା

[କିଛି ଲେଖିବାକୁ ଭାବିବା ଓ ଚେଷ୍ଟା କରିବା କେବଳ ନିଜ ମୂର୍ଖାମିର ପରିଚୟ, ଅଥଚ ଏଥିରେ କ୍ଷତି ବହୁତ ବେଶୀ । ମୁଁ ମୋର ଜଣା କଥା ଲେଖିଲେ, ଲେଖିପାରିଲେ କୃତକାର୍ଯ୍ୟ ହେବାର ସମ୍ଭାବନା ଅଛି । ମାତ୍ର ନୂଆ କଥା]— ମୋର ଅଜଣା କଥା ଲେଖିବାକୁ ଗଲେ ପ୍ରଥମେ ଦୋଷ ହବ ଯେ, ମୁଁ ଯାହାକୁ ନୂଆ ବୋଲି ଲେଖିଲି ସେ ମାନ୍ଧାତା ଅମଳର ପୁରୁଣା । ପୁଣି ତା'ଉପରେ ମୋର ଅଜଣା କଥା ହୋଇଥିବାରୁ ମୋର ଲେଖାଟା ଅସ୍ୱାଭାବିକ ହୋଇଯିବାର ସମ୍ଭାବନା ବହୁତ ବେଶୀ । ଅତଏବ, ପରିଶ୍ରମ କରି ଦନ୍ତ କୁଟିବାର ଫଳ ପାଇବାକୁ ଯିବ କାହିଁକି ? ପ୍ରକୃତ ବିଦ୍ୟାବୁଦ୍ଧି ଓ ସାହିତ୍ୟିକତା ଜଣାପଡ଼େ ପୁରୁଣା କଥାକୁ ନୂଆ ଗ୍ରନ୍ଥରେ ଢାଳିବାରେ, ନୂଆ କଥା ଲେଖିବାରେ ନୁହେଁ । ଅଥବା ଇଂରେଜ କବି ପୋପ୍‌ଙ୍କର ଅନନୁକରଣୀୟ ଭାଷାରେ—

"True wit is nature to advantage drest,
What oft was thought, but ne'er so well exprest."

ପୁରୁଣା ଭାବକୁ ନୂତନ ପ୍ରଣାଳୀରେ ପ୍ରକାଶ କରିବାହିଁ ସାହିତ୍ୟିକତା । ଅତଏବ ଲେଖିବାର ସରଞ୍ଜାମ ଯଥେଷ୍ଟ । ଲେଖକ କି ସରଞ୍ଜାମ ନେଇ ଲେଖିବ—ସେ ତା'ର ଦାୟିତ୍ୱ, ତା'ର ଖୁସି । ସେଥିରେ ସମାଲୋଚକର କିଛି କହିବାର ନାହିଁ । ଲେଖକ କୃତକାର୍ଯ୍ୟ ହୋଇପାରିଲେ ପାଠକର ମଧ୍ୟ କିଛି ଆପତ୍ତି କରିବାର ରହିବ ନାହିଁ । ଆମ ଦେଶ ସମାଲୋଚକମାନଙ୍କର ଗୋଟାଏ ସ୍ୱଭାବ, ସେମାନେ ଲେଖକର ଲେଖାକୁ ସମାଲୋଚନା କରୁ କରୁ ତା'ର ବିଷୟକୁ ଓ ଶେଷରେ ତା'ର ନିଜ ଜୀବନକୁ ମଧ୍ୟ ସମାଲୋଚନା କରିବସନ୍ତି । ଲେଖକ ଗଳ୍ପଟାକୁ ଏପରି ଲେଖି ପାରିଥାନ୍ତେ, ଲେଖକ ଚରିତ୍ରଟାକୁ ଏପରି ବାଗେଇପାରିଥାନ୍ତେ, ଲେଖକଙ୍କର ବିଷୟଟା ଏହା ନ ହୋଇ ତାହା ହୋଇଥାନ୍ତା, ଲେଖକଙ୍କର ନାୟିକ 'ରମା' ନ ହୋଇ 'ଶ୍ୟାମା' ହୋଇଥାନ୍ତା— ଇତ୍ୟାଦି । ଏ ହୋଇଥାନ୍ତାର ଶେଷ ନାହିଁ । ମୋର ନାକଟା ଏତେଟିକିଏ ଲମ୍ବା ନ ହୋଇ ଆଉରି ଟିକିଏ ଶ୍ରେଷ୍ଠ ହୋଇପାରିଥାନ୍ତା, ଭୂମର ମୁଣ୍ଡରେ ଏତିକି ବୁଦ୍ଧି ନ ହୋଇ, ଆଉ ଟିକିଏ ବୁଦ୍ଧି ହୋଇପାରିଥାନ୍ତା । ସତ, ହୋଇପାରିଥାନ୍ତା; କିନ୍ତୁ ଅସଲ କଥାଟା ହୋଇନାହିଁ । ତା' ବୋଲି ତ ମୋ ନାକଟା ମୁଁ କମାରଶାଳରେ ଯାଇ କଟାଇ ଆଣିବି ନାହିଁ । ଅସଲ କଥା, ମୂଳକଥା ମୋ ନାକର ବଙ୍କପଣିଆ ସାଙ୍ଗରେ ମୋ ଦେହର ଅନ୍ୟାନ୍ୟ ଅଙ୍ଗ ସବୁ ଖାପ ଖାଉଛନ୍ତି କି ନା, ତା' ଯଦି ହୋଇଥାଏ, ତା'ହେଲେ ମୁଁ ସୁନ୍ଦର । ମୋର ଆପତ୍ତି କରିବାର କିଛି ନାହିଁ । ସମାଲୋଚକର ମଧ୍ୟ ସେଇଆ ଦେଖିବା ଉଚିତ । ଲେଖକ ତା'ର ବିଷୟ ଠିକ୍ କରିଛି । ସେହି ବିଷୟ ମଧ୍ୟରେ ତାହାର ନାୟକ ନାୟିକାଙ୍କ ସ୍ୱଭାବ, ଚରିତ୍ର ଓ କାର୍ଯ୍ୟପ୍ରଣାଳୀ ସୁବୋଧ୍ୟ ଓ ସୁଯୋଗ୍ୟ ହୋଇଛି କି ନାହିଁ ଓ ବିଷୟର ଭାବ ଲେଖକ ଯଥାର୍ଥ ପ୍ରକାଶ କରିପାରିଛି କି ନାହିଁ—

ଏହାର ବିଶ୍ବର ଶ୍ରେଷ୍ଠ ସମାଲୋଚକ ହୋଇଥିରେ । ମାତ୍ର ଏଥିରୁ ବାହାରେ ଯିବା ସମାଲୋଚକର ଧୃଷ୍ଟତା "ଅନେଇ ଜବରଦସ୍ତି"—ଅଦା ବେପାରୀର ଜାହାଜ ଖବର ନେବା ଭଳି ।

ଜଣେ ଇଂରେଜ କବି ସ୍ୱିନ୍‌ବର୍ଣ୍ଣ ବୋଧହୁଏ—ଥରେ କହିଥିଲେ ଯେ ସମାଲୋଚକର କାର୍ଯ୍ୟ ଗୃହକର୍ତ୍ରୀର କାର୍ଯ୍ୟ ପରି । ସେ ସାଆନ୍ତର ଅର୍ଥାତ୍ ପ୍ରତିଭାଶାଳୀ ଲେଖକର ଆସିବା ଅପେକ୍ଷାରେ ଘରଦ୍ୱାର ଓଳେଇ ସଫା ସୁତୁରା କରୁଥାଏ । ସାଆନ୍ତ ଆସିଗଲେ ସେ ଘରଗୁଣ୍ଡି ପଳାଇବ—ଏହି ପର୍ଯ୍ୟନ୍ତ । ଏଥିରୁ ବେଶୀଦୂରକୁ ଗଲେ, ସାଆନ୍ତର ଘର ଭାଙ୍ଗି ତା ସ୍ଥାନରେ ତା ମନ ମାଫିକ ଘର ତୋଳିବାର ଚେଷ୍ଟାକଲେ, କି ସାଆନ୍ତର ଅନୁଚରମାନଙ୍କ ଉପରେ 'ସମ୍ମାର୍ଜନୀ' ଉଠୁଆଇଲେ, ବୁଝିବାକୁ ହେବ ଯେ, ସେ 'ବାସ୍ତୁଣୀ' ନ ହେଲେ 'ସାଆନ୍ତର ରକ୍ଷିତା ଚେମେଣୀ' । ଆଉ ଏ ଅହଙ୍କାର ତା'ର ନ ଗୁଚିଲେ ଶେଷରେ ସେ ସାଆନ୍ତର କାମକୁ ସମାଲୋଚନା କରିବସେ । ସେ ଯେ କେଡ଼େ ସୁନ୍ଦର—ତାହା ସମସ୍ତେ ଅନୁଭବ କରିପାରୁଥିବେ । ଅତଏବ, ଆମ୍ଭମାନଙ୍କର ଦେଶରେ ସମାଲୋଚକମାନଙ୍କର ନିଜର ଶକ୍ତି ଓ କାର୍ଯ୍ୟ କ୍ଷେତ୍ରରେ ପରିସର ବୁଝି ରଖିବା ଉଚିତ ।

ତା'ହେଲେ ଆମ୍ଭେମାନେ ଦେଖିଲୁ—ସାହିତ୍ୟ ଓ ଉପନ୍ୟାସରେ ଲେଖକ ଲୋକ ରୁଚି ପରିବର୍ତ୍ତନ କରି ତା' ସ୍ଥାନରେ ଆବଶ୍ୟକ ହେଲେ ନିଜର ମାର୍ଜିତ ରୁଚି ସ୍ଥାପନ କରିବାର ଚେଷ୍ଟା କରେ ଓ କରିବା ଉଚିତ୍ । ସାହିତ୍ୟିକ ଶୃଙ୍ଖଳୀର ଅବଧାନ ନୁହେଁ ଓ ସାହିତ୍ୟିକର ଉପାଦାନ ଏହି ଅଥର୍ବୀ ଧରଣୀ ମା'ର ପୁରୁଣା ବିଷୟଗୁଡ଼ାକ । ତାହାର ବାହାଦୁରୀ ଏହି ପୁରୁଣା ବିଷୟ ନୂଆ ଗୁମ୍ଫରେ ତାଳି ପାଠକର ଆଗରେ ଥୋଇବା । ଏହି ପୁରୁଣା ବିଷୟଗୁଡ଼ାକରୁ ସେ କେଉଁ ବିଷୟ ଲେଖିବ; ସେଇଟା ତାହାର ଇଚ୍ଛା, ତାହାର ରୁଚି ଉପରେ ନିର୍ଭର କରେ । ତେବେ ଏ ସ୍ଥାନରେ କେହି କେହି କହିପାରନ୍ତି ଯେ, ଲେଖକର ରୁଚି ଯଦି ଅଶ୍ଳୀଳ ଓ ଅସଭ୍ୟ ହୁଏ ତା'ହେଲେ କ'ଣ ସେ ତା' ଲେଖାରେ ଅଶ୍ଳୀଳ ଓ ଅସଭ୍ୟ ବିଷୟରେ ଅବତାରଣା କଲେ କିଛି ଦୋଷ ବାଛିବାକୁ ହବ ନାହିଁ । ମୁଁ କହେଁ, ନା ହବ ନାହିଁ । ସେ ଯଦି ଏପରି ପ୍ରତିଭାବାନ୍ ବ୍ୟକ୍ତି ହୁଏ ଯେ ତା'ର ଅଶ୍ଳୀଳ ଓ ଅସଭ୍ୟ କଥାଗୁଡ଼ିକୁ ଲୋକପ୍ରିୟ କରିପାରିଲା—ତା'ହେଲେ ତାକୁ ବାରଣ କରିବାର ଅଧିକାର କାହାରି ନାହିଁ । କରିବା ମଧ୍ୟ ନିଷ୍ଫଳ । ଯେ ପ୍ରତିଭାବାନ୍ ସେ ତା'ର ପ୍ରତିଭାର ପ୍ରରୋଚନାରେ ନିଶ୍ଚୟ ଲେଖିବ । ହଜାର ହଜାର ସମାଲୋଚକଙ୍କ 'ସମ୍ମାର୍ଜନୀ', ପ୍ରହାର ତାକୁ ଲେଖିବାରୁ ବନ୍ଦ କରିପାରିବ ନାହିଁ । ଆଉ ସେ ଲେଖା ଯଦି ଲୋକପ୍ରିୟ ହୁଏ, ତା'ହେଲେ ସେ ଲେଖା ନିଶ୍ଚୟ ପ୍ରସାର ଲାଭ କରିବ । ଭଲଟେୟାର, ଗେଟେ, ବାଇରନ, ସେଲି, ଅସ୍କାର ଉଆଇଲ୍‌ଡ ଇତ୍ୟାଦିଙ୍କର ଲେଖା ସେ ଯୁଗରେ ଅଶ୍ଳୀଳ ବୋଲି ଦେଖାଯାଇଥିଲା । ସେମାନେ ସମାଜର ତାଡ଼ନା ସହିଛନ୍ତି,

ସମାଲୋଚକଙ୍କର ମାଡ଼ ଖାଇଚନ୍ତି, ସରକାରଙ୍କର ଅଶ୍ଳୀଳତା ମଧ୍ୟ ଯାହିଁ ଆଲୋକିତ କରିଚନ୍ତି । ତଥାପି ଏ କେତେ ଶହ ବର୍ଷ ହେଲା ସେମାନଙ୍କର ଲେଖା ରହିଚ୍ଛି, ଆଦର ପାଇଛି ଏବଂ ଲୋକରୁଚିରେ ମିଶିଯାଇଛି । ଯଦି ଲେଖକ ପ୍ରତିଭାଶାଳୀ ନ ହୁଏ, ତା' ହେଲେ ତା'ର ଅଶ୍ଳୀଳ ଲେଖା—ଲୋକପ୍ରିୟ ହେବ ନାହିଁ, ଗୁଏଁ ଗୁଏଁ ମରିଯିବ । ଅତଏବ ଦୋଷ ବାଛିବାରେ କିଛି ମାତ୍ର ଲାଭ ନାହିଁ ।

ଦ୍ୱିତୀୟରେ ସାହିତ୍ୟ ଦର୍ଶନଶାସ୍ତ୍ର ନୁହେଁ ନୀତିଶାସ୍ତ୍ର ନୁହେଁ, ସ୍କୁଲଶାଳୀର ପାଠ୍ୟ ପୁସ୍ତକ ନୁହେଁ, ଏହା ସାହିତ୍ୟ-ବସ୍ତୁକ, ପବିତ୍ର ଅନାବିଲ ସାହିତ୍ୟ । ମୁଁ ଇଂରେଜ ରାଜକବି ଟେନିସନ୍‌ଙ୍କ ମତର ପୋଷକତା କରି ବରାବର କହି ଆସିଚି—"ସାହିତ୍ୟ ଅନୈତିକ (Immoral) ।" କବି କବିତ୍ୱର ପାଗଳାମିରେ ଉତ୍କ୍ଷିପ୍ତ ହୋଇ ଯେତେବେଳେ ଲେଖିବସେ, ସେତେବେଳେ ତାକୁ ନୀତି, ଅନୀତି ଭଲ ମନ୍ଦ ବାରିବାକୁ ବେଳ ନ ଥାଏ । ସେତେବେଳେ ସେ ସରସ୍ୱତୀ ଦେବୀଙ୍କର କାଳେସୀ । ଠାକୁରାଣୀ ଉଭା-ହୋଇ ତାକୁ ଯାହା କୁହନ୍ତି, ସେ ସେଇଆ କହେ । ଆଉ ଠାକୁରାଣୀଙ୍କର ପବିତ୍ର ଅଙ୍ଗ ସ୍ପର୍ଶ କରି ତା'ର କଥାଗୁଡ଼ାକ ସ୍ୱର୍ଗର ପାରିଜାତ ସୌରଭରେ ଆମୋଦିତ ହୋଇ ଉଠେ । ପ୍ରତିଭାର କୁହୁକ ବଳରେ ତା'ର ସେ ରୁକ୍ଷ, କୁଦୃଶ୍ୟ ଆମ୍ବ ଟାକୁଆଟି ନବ ପଲ୍ଲବ ଓ ବଉଳ ସୁଶୋଭିତ ହୋଇ ବସନ୍ତ-ସଖା କୋକିଳର ବିଳାସ ସ୍ଥାନ ପାଲଟିଯାଏ । ତାହାର ଅମର ଅନାବିଲ ଆତ୍ମାର ଉଜ୍ଜ୍ୱଳ ଆଲୋକରେ ଉଦ୍‌ଭାସିତ ହୋଇ ପଙ୍କ କାଦୁଅର ସେ ମାନ୍ଧାତା ଅମଳର ଗୋବର ଖାତ ମଧ୍ୟ ସୁନାଖଣି ହୋଇଯାଏ ।

ତୃତୀୟରେ, ପ୍ରତିଭା ଓ ପବିତ୍ରତା ଏକ ପ୍ରକାର ଏକାର୍ଥ-ବୋଧକ ଶବ୍ଦ । ପ୍ରତିଭା-ପ୍ରସୂତ ଯେକୌଣସି ପଦାର୍ଥ ଅପବିତ୍ର ହୋଇପାରେ ନାହିଁ । ସମାଲୋଚକ-ମାନଙ୍କର ମନେରଖିବା ଉଚିତ୍ ଯେ, ତାଙ୍କ ଭଳି ବାମନ ବୁଦ୍ଧି ଯାହାକୁ ଅପବିତ୍ର ବୋଲି କହେ, ସେ ଯଦି ପ୍ରକୃତରେ ଅପବିତ୍ର ହୋଇଥାଏ, ତା'ହେଲେ ପ୍ରତିଭାବାନ୍ କବି ଭଳି ରାକ୍ଷସ ବୁଦ୍ଧି ନିଶ୍ଚୟ ତାକୁ ଅପବିତ୍ର ବୋଲି ଧରିପାରିବ । ଆଉ ସେ ଅପବିତ୍ର ବୋଲି ଜାଣି ପାରିଲେ କଦାପି ସେ ଭାବନା ମନରେ ସ୍ଥାନ ଦେବନାହିଁ ।

ଚତୁର୍ଥରେ, ସାହିତ୍ୟକର ଉପାଦାନ ଭଣ୍ଡାର ପ୍ରକୃତି ଓ ଜୀବନ । "ପ୍ରକୃତି ତ କେବେ ଆମ୍ଭମାନଙ୍କ ଭଳି ଗ୍ରେଟଲେକା କରି ନୀତି ଅନୀତିର କଥା ବାଛିବସେ ନାହିଁ । ପ୍ରକୃତି ତା'ର କାର୍ଯ୍ୟ କରିଯାଉଚି, ଆଉ ସେ କାର୍ଯ୍ୟ ମଧ୍ୟରେ ନୀତି-ଅନୀତି, ଭଲ-ମନ୍ଦ, ଦୟା-ନିଷ୍ଠୁରତା ସବୁ ରହିଚି । ଆଉ ସେସବୁ ପରସ୍ପର ସହିତ ଏପରି ଘନିଷ୍ଠ ଭାବରେ ସଂଶ୍ଳିଷ୍ଟ ଯେ, ଗୋଟିକ ଠାରୁ ଆଉ ଗୋଟିକୁ ପୃଥକ୍ କରି ବସିଲେ ସମୁଦାୟ ଜୀବନପଟ୍ଟ ଅପ୍ରାକୃତିକ ହୋଇଯିବ । ଭାରତବର୍ଷରେ ଭୂମିକମ୍ପଦ୍ୱାରା ଯେ ହଜାର ହଜାର

ଲୋକଙ୍କର ସର୍ବନାଶ ହୋଇଗଲା, ଶସ୍ୟ ଶ୍ୟାମଳା ସ୍ୱର୍ଣ୍ଣପ୍ରସବିନୀ ଧରଣୀ ଯେ ମୃତ୍ୟୁର କରାଳ କ୍ରୀଡ଼ାଭୂମି ହୋଇଗଲା; ନୃତ୍ୟ ଗୀତ ପ୍ରତିଧ୍ୱନିତ ସଙ୍ଗୀତଶାଳା ଯେ ରମଣୀମାନଙ୍କର କାତର କ୍ରନ୍ଦନରେ ଆଲୋଡ଼ିତ ହୋଇଗଲା; ନରନାରୀମାନଙ୍କର ବିହାରସ୍ଥଳୀ ପ୍ରମୋଦ କାନନ ସବୁ ଯେ ଅସ୍ଥି, ମଜ୍ଜା, ରକ୍ତର ଲେପରେ ଉତ୍କଟ ହୋଇଉଠିଲା, ସେସବୁ ପ୍ରକୃତିର କେଉଁ ନୈତିକ କାର୍ଯ୍ୟ ? ଆଉ କେଉଁ କବି, କେଉଁ ସାହିତ୍ୟିକ ପ୍ରକୃତିର ଏହି ଅନୈତିକ କାର୍ଯ୍ୟକଳାପ ଦ୍ୱାରା ବିଚଳିତ ନ ହୋଇ ନୀତିଶାସ୍ତ୍ରକୁ ଜକଟ ମକଟ କରି କୁଣ୍ଢେଇଧରି ରହିପାରିବ ?

ସେହିପରି ଜୀବନ, ଜୀବନର ଅନୈତିକତା ବିଷୟ ପରବର୍ତ୍ତୀ ସଂଖ୍ୟାରେ ଆଲୋଚନା କରିବାର ଆଶା ରହିଲା—ଅବଶ୍ୟ ଯଦି ସମ୍ପାଦକ ମହାଶୟ ତାଙ୍କ ସମ୍ମାର୍ଜନୀ ପାହାର ନ ଉଠାନ୍ତି ।

ଆମ୍ଭେମାନେ ସଭ୍ୟତାର ବେଷ୍ଟନୀ ମଧ୍ୟରେ ମନୁଷ୍ୟ ଜୀବକୁ ନାନାପ୍ରକାର ଆଇନ କାନୁନ୍ ଦ୍ୱାରା ନିୟନ୍ତ୍ରିତ କରିବାକୁ ଚେଷ୍ଟା କଲେ ମଧ୍ୟ ପ୍ରକୃତି ତାହାର ସର୍ବଧ୍ୱଂସୀ ନିଃଶ୍ୱାସ ପବନରେ ଆମ୍ଭମାନଙ୍କର ଏହି ଆଇନ କାନୁନ୍‌ଗୁଡ଼ାକୁ ବୁଢ଼ୀଆଣୀର ଜାଲ ପରି ଉଡ଼ାଇଦେଇ ବେଳେବେଳେ ମନୁଷ୍ୟ ଜୀବନରେ ଗୋଟିଏ ପ୍ରଳୟ ସୂଚନା କରି ବସେ । ମନୁଷ୍ୟର ପ୍ରକୃତି ଓ ବହିର୍ଜଗତର ପ୍ରକୃତି ଉଭୟର କାର୍ଯ୍ୟକଳାପ ମଧ୍ୟରେ ବିଶେଷ କିଛି ପ୍ରଭେଦ ଆମ୍ଭେମାନେ ଦେଖିପାରୁନାହିଁ । ଉଭୟଙ୍କୁ ଆମ୍ଭେମାନେ ଯୁକ୍ତିତର୍କ, ବୁଦ୍ଧି ବିଜ୍ଞାନ ସାହାଯ୍ୟରେ ନିଜର ଆୟତ୍ତରେ ରଖିବାକୁ ଚେଷ୍ଟା କରୁଁ ସତ; ଉଭୟେ କିନ୍ତୁ ତାଙ୍କ ସୁବିଧାରେ ଆମ୍ଭମାନଙ୍କର ଏହି ସୁଚିନ୍ତିତ ଓ ଆପାତତଃ ସୁନିର୍ମିତ ବ୍ୟୂହ ଭେଦକରି ଗୋଟିଏ ତାଣ୍ଡବ ନୃତ୍ୟର ବିଜୟିନୀ ଲଗାଇଦେଇ ଯାଆନ୍ତି । ଉଦାହରଣ ସ୍ୱରୂପ ଦେଖନ୍ତୁ, ଆପଣ ବୁଦ୍ଧି, ଉତ୍ସାହ ଓ ଉଦ୍ୟମରେ ମୋ ଅପେକ୍ଷା ତେର ତଳେ ରହିଥିଲେ ମଧ୍ୟ ଆପଣଙ୍କର ସହଜ ଅର୍ଥ ଓ ପଦମର୍ଯ୍ୟାଦା ବଳରେ ମୋ ଉପରେ ଆପଣ ପ୍ରଭୁତ୍ୱ କରୁଛନ୍ତି । ଆମ୍ଭେମାନେ ଶତମୁଖରେ ବିଦ୍ୟା, ବୁଦ୍ଧି, ଉତ୍ସାହ ଓ ଉଦ୍ୟମର ଜୟକୀର୍ତ୍ତି ଗାନ କଲେ ମଧ୍ୟ ପ୍ରକୃତ ଜୀବନରେ ଅନେକ ସ୍ଥଳରେ ଆମ୍ଭେମାନେ ଦେଖୁଁ ଯେ, ଏ ସମସ୍ତ ଚିର ଘୃଣ୍ୟ ଅର୍ଥର ସମ୍ମୁଖରେ ନତମସ୍ତକ, ସରସ୍ୱତୀ ଲକ୍ଷ୍ମୀଙ୍କ ପାଖରେ ଚିରଦିନ ଅପଦସ୍ଥ ।

ଆଉ ଗୋଟିଏ ଉଦାହରଣ ନିଅନ୍ତୁ—ହରି ଅତି ସୁବୋଧ ବାଳକ, ଇସ୍କୁଲ କଲେଜରେ ତାହାର ବିଦ୍ୟା, ବୁଦ୍ଧି, ଉତ୍ସାହ ଓ ଉଦ୍ୟମର ପ୍ରଶଂସା ଚିରଶ୍ରୁତ । ଯୁକ୍ତି, ତର୍କ, ବିଜ୍ଞାନ, ନୀତିଶାସ୍ତ୍ର ସବୁ କହେ ଯେ, ପରବର୍ତ୍ତୀ ଜୀବନରେ ସେ ଜଣେ ବିଶିଷ୍ଟ ନେତୃସ୍ଥାନୀୟ ଲୋକ ହୋଇଉଠିବ । କିନ୍ତୁ ପରବର୍ତ୍ତୀ ଜୀବନରେ ଦେଖିଲାବେଳକୁ ସେଇ ହରି ଗୋଟିଏ କାମୁକ, ଲମ୍ପଟ, ମଦ୍ୟପ । ଆଉ ଗୋଟିଏ ଏବଂ ଏଇଟି ଶେଷ

ଉଦାହରଣ—ରାମ ଓ ଗୋପାଳ ଏକ ଅବସ୍ଥାର ଲୋକ, ଏକ ଭାବରେ ସେମାନେ ଜୀବନଯାପନ କରିବାକୁ ବାହାରି ପଡ଼ିଲେ । ରାମ ତା'ର ସମସ୍ତ ଅର୍ଥ ଖାଦ୍ୟ ପଦାର୍ଥ ବ୍ୟବସାୟରେ ଦେଲା, ଗୋପାଳ ତା'ର ସମସ୍ତ ଅର୍ଥ ମନୋହରୀ ଦୋକାନରେ ଦେଲା । ହଠାତ୍ ଯୁଦ୍ଧ ଉପସ୍ଥିତ ହୁଏ । ରାମ ଖାଦ୍ୟପଦାର୍ଥ ବ୍ୟବସାୟରେ କୋଟିପତି, ଗୋପାଳ ମନୋହରୀ ବ୍ୟବସାୟରେ ଦେବାଳିଆ—ଦାଣ୍ଡର ଭିଖାରି । ଏହିପରି ଉଦାହରଣ ଆମ୍ଭମାନଙ୍କ ଆଖିରେ ଗଣ୍ଡା ଗଣ୍ଡା । 'ଭାଗ୍ୟ', 'ଆକସ୍ମିକ ଘଟଣା', 'ଆପାରଗତା' ଇତ୍ୟାଦି ନାନା ପ୍ରକାର କଥାରେ ଆମ୍ଭେମାନେ ଏହାର ବ୍ୟାଖ୍ୟା କରିବାକୁ ଯାଉଁ । ଆମ୍ଭମାନଙ୍କର ସମସ୍ତ ବ୍ୟାଖ୍ୟା ଓ ସମସ୍ତ ଉପଦେଶ ପରେ ମଧ୍ୟ ଏହାର ବିରାମ ନାହିଁ । ଏହା କେଉଁ ନୈତିକତାର ଚିହ୍ନ ? ଜଣେ କୋଟିପତିର ଘରେ ଜନ୍ମଲାଭ ସୁନା ଗଦାରେ ଶୋଇବ, ଆଉ ଜଣେ କାଙ୍ଗାଳର ଘରେ ମାଟି କାଦୁଅରେ ସଢ଼ିବ; ଜଣେ ଧନୀ ହୋଇ କାଙ୍ଗାଳ ହେବ, ଆଉ ଜଣେ କାଙ୍ଗାଳର ନରକରୁ ଧନୀର ସ୍ୱର୍ଗ ସିଂହାସନରେ ବସିବ··· । ଏହା ମଧ୍ୟରେ କି ନୈତିକତା ଅଛି ? ଦାର୍ଶନିକର ବିଫଳ କଳ୍ପନା ଓ ବୈଜ୍ଞାନିକର ନିରର୍ଥକ କଳନା ଯାହା ହେଉ ପଛକେ ପ୍ରକୃତ ଜୀବନର ଏହି ଅନୈତିକତା ଅଲଙ୍ଘନୀୟ । ଏହି ହେତୁରୁ, ଏହି ଅନିୟମ, ବିଶୃଙ୍ଖଳା, ଅବିଚାର, ଅନୈତିକତା ହେତୁରୁ ଅସ୍କାର ଉଆଇଲ୍‌ଡଙ୍କର ହୃଦୟ ମନ୍ଥି ସେହି ତୀବ୍ର ହଳାହଳସଦୃଶ କଥା କେତୋଟି ବାହାରି ପଡ଼ିଥିଲା—"Curse God and die" । ଏହି ସବୁରୁ ମନୁଷ୍ୟ ଜାତିକୁ ମୁକ୍ତ କରି ପ୍ରାକୃତିକ, ସ୍ୱାଧୀନ ଜୀବନ ଚଳାଇବାର ଅଧିକାର ଦେବାପାଇଁ ସେଲି ତାଙ୍କର 'Prometheus un-bound' କାବ୍ୟ ଲେଖିଥିଲେ ।

ଅତଏବ, ସାହିତ୍ୟ ଓ ଉପନ୍ୟାସରେ ନୈତିକତାର ନମୁନା ଖୋଜିବା ବିଡ଼ମ୍ବନା । ନୀତିହୀନ ସଂସାରରେ ନୈତିକତାର ଆବରଣ ଘୋଡ଼ିଏ ପାଗଲାମି । ଏହି ହେତୁରୁ କେତେକ ଆଦର୍ଶବାଦୀ ନୈତିକ କବି ଓ ସାହିତ୍ୟିକ କବି ନ୍ୟାୟ ବା Poetic Justice ଅନୁସାରେ ସେମାନଙ୍କ ଲେଖା ଭିତରେ ପାପୀ ବା ଦୋଷୀର ଦଣ୍ଡବିଧାନ କରିଥାନ୍ତି । ଭାବୁକର ସରଳ ଓ ଉଦାର ହୃଦୟ ଭଗବାନଙ୍କର ଏହି ପୂତିଗନ୍ଧମୟ ସୃଷ୍ଟିରେ ସେହି ଭଗବାନଙ୍କ କୃତ ନ୍ୟାୟ ଓ ନୀତିର ଅପଳାପ ଦେଖି ନିଜେ ନିଜର ସୃଷ୍ଟି ତିଆରି କରେ ଏବଂ ସେଥିରେ ନିଜ ହୃଦୟର ଉଦାରତା ଅନୁଯାୟୀ ନ୍ୟାୟ ଓ ନୀତିର ସମନ୍ୱୟ କରି ବସେ । ମୁଁ ଏ ସ୍ଥଳରେ ଯେ ଅନୈତିକତା କଥା କହୁଛି ତାହା ଅଶ୍ଳୀଳତା ନୁହେଁ । ଅନୈତିକତା ଅଶ୍ଳୀଳତାଠାରୁ ବଡ଼ । ମୁଁ ଯଦି ଅନୈତିକତା ବା Immorality ହୁଏ, ତା' ହେଲେ ମୋର ଦଦେଇ ପୁଅ ଭାଇ ବା କକେଇ ପୁଅ ଭାଇର ପୁରୁଷ ହେବ ଅଶ୍ଳୀଳତା । ଅତଏବ, ମୁଁ ଆଗରେ ଯାହା ଯାହା କହିଯାଇଛି, କେତେକ ସାହିତ୍ୟ ଅଶ୍ଳୀଳ ହୋଇପାରେ; କିନ୍ତୁ ସାହିତ୍ୟ ଅନୈତିକ ବୋଲି କହିଲେ ବୁଝିବାକୁ ହେବ ନାହିଁ ଯେ ସବୁ ସାହିତ୍ୟ ଅଶ୍ଳୀଳ ।

ତା'ହେଲେ ଆମ୍ଭେମାନେ ଦେଖିଲୁ ସାହିତ୍ୟ ବା ଉପନ୍ୟାସର ବିଷୟ ବାଛିବା ବିଷୟରେ କୌଣସି ଧରାବନ୍ଧା ନିୟମ ନାହିଁ । ଲୋକଶିକ୍ଷା ସାହିତ୍ୟର ଗୌଣ ଉଦ୍ଦେଶ୍ୟ ହୋଇପାରେ, କିନ୍ତୁ ସାହିତ୍ୟିକ ସେ ଉଦ୍ଦେଶ୍ୟରେ ସାହିତ୍ୟ ଲେଖିବାକୁ ବାଧ୍ୟ ନୁହେଁ କି ଲେଖିପାରେନାହିଁ । ଆମ ଦେଶ ସମାଲୋଚକମାନେ ବେଳେବେଳେ ଗୋଟାଏ ଗୋଟାଏ ସୃଷ୍ଟିଛଡ଼ା ବାହାନା ଧରି ବସନ୍ତି । ଦିନ ଥିଲା—ଯେତେବେଳେ ଉଚ୍ଛ୍ରୀଙ୍ଖ ଅଶ୍ଳୀଳ ସାହିତ୍ୟକୁ ଆମର ସମାଲୋଚକମାନେ ହାତପୋଛା ମାଟିପରି ଦେଖୁଥିଲେ । ବର୍ତ୍ତମାନ କେତେକେ ଗୋଟାଏ ବାହାନା ଧରିଚନ୍ତି ଯେ ଆଧୁନିକ ଓଡ଼ିଆ ଲେଖକମାନେ ବିଦେଶୀ ସାହିତ୍ୟର ଅନୁକରଣରେ ଯେ ଯୌନ ବିଷୟ ହିଡ଼ିର ଅବତାରଣା କରିଛନ୍ତି ତାହା ନିତାନ୍ତ ଅନ୍ୟାୟ । ସତେ ଯେପରି ଯୌନ ବିଷୟ ଛାଡ଼ିଦେଇ ସାହିତ୍ୟ ହୋଇ-ପାରେ । ମୁଁ ଜାଣେନାହିଁ ଯୌନ ଶବ୍ଦଦ୍ୱାରା ସେମାନେ କ'ଣ ବୁଝୁଛନ୍ତି । ଯଦି ତାହାର ଅର୍ଥ ଯୁବକ ଯୁବତୀଙ୍କ ପ୍ରେମ, ସ୍ତ୍ରୀ ପୁରୁଷର ସହବାସ ଅଭିଳାଷ ହୁଏ, ତା' ହେଲେ ସମାଲୋଚକମାନଙ୍କର ବୁଝିବା ଉଚିତ ପ୍ରେମ, ସ୍ତ୍ରୀର ଆଦର, ସୁନ୍ଦରୀର ବିଳାସ ସାଧାରଣ ମନୁଷ୍ୟ ଜୀବନରେ ବୋଧହୁଏ ସର୍ବପ୍ରଥମ ବିଷୟ । ଜଣେ ଜଣେ ଅଦ୍ଭୁତମାନବ ଥାନ୍ତି, ଯେଉଁମାନଙ୍କ ପାଖରେ ପ୍ରେମ, ପ୍ରୀତି, ସ୍ନେହ, ରମଣ ଭଳି କୋମଳ ବୃତ୍ତିଗୁଡ଼ିକ ଦେଖିବାକୁ ମିଳେ ନାହିଁ । ସେମାନଙ୍କ ସଂଖ୍ୟା ଏ ସଂସାରରେ ଏତେ ବିରଳ ଯେ ସେମାନଙ୍କୁ ପ୍ରକୃତିର ନିୟମ ନ କହି ପ୍ରକୃତିର ନିପାତନ କୁହାଯାଇପାରେ ! ସେମାନଙ୍କ ଛଡ଼ା ଆଉ ଯେଉଁମାନେ ସାହିତ୍ୟରେ ଯୌନ ବିଷୟର ଅବତାରଣା ଦେଖି ନାକ ଟେକନ୍ତି, ସେମାନେ ଭଣ୍ଡ ନ ହେଲେ ଅପାଠକ ।

ଦ୍ୱିତୀୟତଃ ବିଦେଶୀ ସାହିତ୍ୟର ଅନୁକରଣ ସବୁବେଳେ ଘୃଣ୍ୟ ନୁହେଁ । ଅନେକ ସମୟରେ ତାହା ଜୀବନୀ ଶକ୍ତିର ପରିଚୟକ । ସାହିତ୍ୟିକର ହୃଦୟ ସବୁଦିନେ ଠିକ୍ କଞ୍ଚା ମାଟି ପରି । ସେଥିରେ ଯେ ଜିନିଷ ଲାଗିବ, ସେହି ଛାପ ତାହା ଉପରେ ରହିଯିବା ଅବଶ୍ୟମ୍ଭାବୀ । କୌଣସି ସାହିତ୍ୟିକ ଯଦି ଅନ୍ୟ ବିଶିଷ୍ଟ ସାହିତ୍ୟିକର ଲେଖା ପଢ଼ି ତାହା ଦ୍ୱାରା ଅନୁପ୍ରାଣିତ ନ ହୁଏ, ତା'ହେଲେ ତା'ର ସାହିତ୍ୟରେ ନାମ କରିବାର ଅଭିଳାଷ ଛାଡ଼ିଦେବା ଉଚିତ । ଆମର ରାଜନୈତିକ, ସାମାଜିକ ବା ଧର୍ମନେତାମାନେ ନିଜ କୂଅ ଘଡ଼ିରେ ମୁହଁ ପୂରାଇ ବାହାରଆଡ଼ର ବିଷୟଗୁଡ଼ିକ ପାଶୋରି ଦେଇପାରନ୍ତି; କିନ୍ତୁ ସାହିତ୍ୟିକ ପାରେ ନାହିଁ । ଆମ ଦେଶର ଯୁବକମାନେ ଯେ ପଢ଼ୁଛନ୍ତି, ତାହା ଆଶାର କଥା । ସେମାନେ ଯେ ବିଦେଶୀ ସାହିତ୍ୟ ପଢ଼ୁଛନ୍ତି, ତାହା ମଧ୍ୟ ଆନନ୍ଦର କଥା । ବିଶେଷତଃ ବିଦେଶୀ ସାହିତ୍ୟ ପଢ଼ି ସେମାନେ ଯେ ଅନୁପ୍ରାଣିତ ହୋଇପାରୁଛନ୍ତି, ତାହା ସେମାନଙ୍କ ପକ୍ଷରେ ଗୌରବର ବିଷୟ । କାରଣ ସେଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ସାହିତ୍ୟର ମାଧୁରୀ ଅନୁଭବ କରିବା ଭଳି ହୃଦୟ ସେମାନଙ୍କର ଅଛି ।

ଅତଏବ, ସାହିତ୍ୟିକ ଖାଲି ନିଜେ ଦେଖି ଓ ଅନୁଭବ କରି ତାହାର ପ୍ରେରଣା ପାଏ ନାହିଁ । ପାରିପାର୍ଶ୍ୱିକ ସାହିତ୍ୟର ଅନୁଶୀଳନ ଦ୍ୱାରା ମଧ୍ୟ ସେ ପ୍ରେରଣା ଲାଭ କରେ ।

ଏ ତ ଗଲା ବିଷୟ ସମ୍ବନ୍ଧରେ । ବର୍ତ୍ତମାନ ସାହିତ୍ୟ ଓ ଉପନ୍ୟାସର ପ୍ରକାର ସମ୍ବନ୍ଧରେ କିଛି ଆଲୋଚନା କରାଯାଉ । କବିତା, ନାଟକ ଇତ୍ୟାଦି ଲେଖିବାର ଯେପରି ଭିନ୍ନ ଭିନ୍ନ ପ୍ରକାର ଅଛି; ଉପନ୍ୟାସ ଲେଖିବାର ମଧ୍ୟ ସେହିପରି ବିଭିନ୍ନ ପ୍ରକାର ଅଛି । ପ୍ରକାର ଭେଦରେ ଉପନ୍ୟାସକୁ ଚାରୋଟି ପ୍ରଧାନ ଭାଗରେ ବିଭକ୍ତ କରାଯାଇପାରେ । —୧ମ ଐତିହାସିକ ପ୍ରଣାଳୀ, ୨ୟ—ଆତ୍ମଜୀବନୀ ପ୍ରଣାଳୀ, ୩ୟ—ସାମାଜିକ କଥାବାର୍ତ୍ତା ପ୍ରଣାଳୀ ଓ ୪ର୍ଥ—ନାଟକୀୟ ପ୍ରଣାଳୀ ।

ପ୍ରଥମେ ଐତିହାସିକ ପ୍ରଣାଳୀର ଅର୍ଥ, ଯେଉଁ ସ୍ଥାନରେ ଔପନ୍ୟାସିକ ନିଜେ ସମୁଦାୟ ବିଷୟ କହିଯାଏ, ଯେପରିକି ସର ଓ୍ୱାଲଟର ସ୍କଟ ଇତ୍ୟାଦିଙ୍କର ଲେଖା । ଏ ପ୍ରଣାଳୀର ଲେଖା ଅପେକ୍ଷାକୃତ ସହଜସାଧ୍ୟ, କିନ୍ତୁ ଏଥିରେ ଏତିକି ଅଭାବ ଯେ କଳା (art) ଦୃଷ୍ଟିରେ ଏହା ସମ୍ପୂର୍ଣ୍ଣାଙ୍ଗ ନୁହେ । ଉପନ୍ୟାସ ଓ ନାଟକ ଇତ୍ୟାଦିର ଲେଖାରେ ଗୋଟାଏ ଜିନିଷ ପ୍ରଚ୍ଛନ୍ନ ରହେ—କୃତ୍ରିମ ଉପାୟରେ ଗୋଟାଏ ନୂଆ ରାଜ୍ୟ ସୃଷ୍ଟିର ଚେଷ୍ଟା । ଲେଖକ ନାନା ଉପାୟରେ ଏହି ବାତାବରଣ ବା (atmosphere)ଟି ସୃଷ୍ଟି କରେ । ତାହା ମଧ୍ୟରେ ନିଜର କଲମ ଚିଜ ଦ୍ୱାରା ପାଠକର ମନକୁ ଉପସ୍ଥାପିତ ବିଷୟର ଭାବରେ ବୁଡ଼ାଇ ରଖିବା ଅନ୍ୟତମ । ଗୋଟିଏ ସାମାନ୍ୟ ଉଦାହରଣ ଦିଏଁ—

ଫକୀରମୋହନବାବୁଙ୍କ 'ମାମୁଁ' ଉପନ୍ୟାସର ପଞ୍ଚଷଷ୍ଟିତମ ପରିଚ୍ଛେଦ ଦେଖନ୍ତୁ । ସେହି ଅଂଶର ବିଷୟ ସେସନ କୋର୍ଟରେ ନାଜରବାବୁ, ରାଘବ ଓ ଚିଜକଲାର ବିଚାର । କୋର୍ଟର କାଠଗଡ଼ାଠାରୁ ଆରମ୍ଭ କରି ପୁଲିସ୍ ଦାରୋଗାଙ୍କ ସଲାମ ପର୍ଯ୍ୟନ୍ତ ସମସ୍ତ ବିଷୟ ଏପରି କଚରିଆ ଓ ଭାଷା ଏପରି କଚରିଆ ଯେ ପାଠକ ପଢ଼ୁ ପଢ଼ୁ ନିଜର ବର୍ତ୍ତମାନ ପରିସ୍ଥିତି ଭୁଲି ଯାଇ ମନେ କରେ ଯେପରି ସେ ପ୍ରକୃତରେ କୌଣସି ସେସନ କୋର୍ଟରେ ଠିଆ ହୋଇ ମକଦ୍ଦମା ବିଚାର ଦେଖୁଛି । ଏହି ଭାବ ଆଣିବାରେ ହିଁ କଳାବିତ୍ଙ୍କର କୃତିତ୍ୱ । ନାଟକରେ ବେଶଭୂଷା, ପଟ୍ଟ ପରିବର୍ତ୍ତନ ଇତ୍ୟାଦି ସାହାଯ୍ୟରେ ଯେ ଭାବ ସୃଷ୍ଟି କରିବାର ପ୍ରୟାସ କରାଯାଏ; ଉପନ୍ୟାସରେ କେବଳ ବର୍ଣ୍ଣନା ଓ ଲେଖନ ଚିଜ ଦ୍ୱାରା ତାହା କରାଯାଇଥାଏ ।

ଲେଖକ ଏହି ପ୍ରଣାଳୀ ଦ୍ୱାରା ଉପନ୍ୟାସ ଲେଖିଲେ ବେଳେବେଳେ ଏହି କୃତ୍ରିମ ଅବସ୍ଥା ସୃଷ୍ଟିର ସୂଚକ ଧରା ପଡ଼ିଯାଏ; ଅତଏବ, କଳା ଭାବରେ ତାହାର ପ୍ରୟୋଜନୀୟତା ଲୁପ୍ତ ହୁଏ । ଉଦାହରଣ ସ୍ୱରୂପ, ସେହି 'ମାମୁଁ' ସପ୍ତଚତ୍ୱାରିଂଶ ପରିଚ୍ଛେଦ ଦେଖନ୍ତୁ । ନଟବର ଦାସେ ଓ ତାଙ୍କର ସ୍ତ୍ରୀ ବିଶାଖା ଦେଇ ନିରୋଳାରେ ବସି ବିଶ୍ରମ୍ଭାଳାପ

କରୁଚନ୍ତି । ସେହି ପରିଚ୍ଛେଦଟି ପଢ଼ିଲାବେଳେ ସ୍ୱତଃ ମନେହୁଏ ନାହିଁ କି, ସ୍ତ୍ରୀ ପୁରୁଷର ବିଶ୍ରମ୍ଭାଳାପର ବିଶ୍ୱାସୀ କଥା ଲେଖକ ଜାଣିଲେ କାହୁଁ ? କପରି ? ଏ ସ୍ଥାନରେ କଳା-ସ୍ୱରୂପର ବାଧା ପଡ଼ିଲା । ଫକୀରମୋହନବାବୁ ଏକଥା ଜାଣିଥିଲେ । ସେଥିପାଇଁ ତାଙ୍କ ଉପନ୍ୟାସଗୁଡ଼ିକ ମଧ୍ୟରେ ଅନେକ ସ୍ଥାନରେ 'ଆମ୍ଭେମାନେ ବିଶ୍ୱସ୍ତ ସୂତ୍ରରୁ ଜାଣିଛୁଁ', 'ଆମ୍ଭେମାନେ ଅନୁମାନ କରୁଛୁଁ' ଇତ୍ୟାଦି ନାନାପ୍ରକାର କୈଫିୟତ୍ ଆମ୍ଭେମାନେ ଦେଖିବାକୁ ପାଉଁ । ସେ ମଧ୍ୟ ଜାଣିଥିଲେ ଯେ ସବୁ କଥାରେ କୈଫିୟତ ଦେଇ ଉପନ୍ୟାସ ଲେଖି କଳାସ୍ୱରୂପ ଅକ୍ଷୁର୍ଣ୍ଣ ରଖିବା ସହଜ ଓ ସମ୍ଭବପର ନୁହେଁ । ସେହି ହେତୁରୁ ସ୍ଥାନେ ସ୍ଥାନେ ପାଠକଙ୍କୁ ଅଜଣାରେ ଭୁଆଁ ଧରାଇଦେବା ପାଇଁ ସେ ଏ କୈଫିୟତ ନ ଦେଇ ପୂର୍ବୋକ୍ତ ପ୍ରକାରେ ସ୍ୱରୂପ ଭଙ୍ଗୀ କରିଅଛନ୍ତି ।

ଦ୍ୱିତୀୟରେ, ଉପନ୍ୟାସ ମଧ୍ୟରେ ଅନେକ ପ୍ରକାର ଚରିତ୍ର ଓ ଦୃଶ୍ୟର ଅବତାରଣା ହୁଏ । ପ୍ରତ୍ୟେକ ଦୃଶ୍ୟ ଅନ୍ୟ ଦୃଶ୍ୟଠାରୁ ଭିନ୍ନ ହୋଇପାରେ । ସବୁ ଚରିତ୍ରର ଶିକ୍ଷା ଓ ସାମାଜିକ ଅବସ୍ଥା ସମାନ ନ ହୋଇପାରେ । ଅତଏବ, ସେହି ସେହି ଦୃଶ୍ୟ ଓ ଚରିତ୍ରର ଉପଯୁକ୍ତ ବର୍ଣ୍ଣନା ଓ କଥୋପକଥନ ଲେଖିବାକୁ ହେଲେ ବିଭିନ୍ନ ପ୍ରଣାଳୀରେ ଭାଷା ଓ ଲେଖା ଛଟା ବ୍ୟବହାର କରିବାକୁ ପଡ଼ିବ । ପାଠକ ଯେତେବେଳେ ଜାଣୁଛି ଯେ ଜଣେ ଲୋକ ଆଉ ସେ ଲୋକ ଜଣକ ଶିକ୍ଷିତ ଲେଖକ ଓ ସେ ଏ ସବୁ ବିଷୟ ଲେଖୁଛନ୍ତି, ସେତେବେଳେ ଲେଖକ ବିଭିନ୍ନ ପ୍ରକାର ଭାଷା ଓ ଲେଖାଛଟା ବ୍ୟବହାର କଲେ ପାଠକ ନିକଟରେ କୃତ୍ରିମତାର କୃତ୍ରିମତା ଧରାପଡ଼ିଯାଏ । କଳାର କୃତ୍ରିମତାକୁ ଲୁଚାଇ ପାଠକ ମନରେ ଅବତାରିତ ବିଷୟରେ ଛାପ ମାରିବା ହିଁ କଳାବିତ୍‌ର ବାହାଦୁରି । ଏହି ଅସୁବିଧାକୁ ପରିହାର କରିବା ନିମନ୍ତେ ଲେଖକ ଯଦି ଏକାବେଳକେ ଏହି ସତ୍ୟର ଛଳନାକୁ ଛାଡ଼ିଦିଏ, ତା'ହେଲେ କଳା ଦୃଷ୍ଟିରେ ସେ ଲେଖାର ମୂଲ୍ୟ କିଛି ନାହିଁ । ଫକୀରମୋହନବାବୁ ଏକଥା ବୁଝିଥିଲେ । ସେଥିପାଇଁ ଗୁରୁତର ପାପରୁ ରକ୍ଷା ପାଇବା ପାଇଁ ଲଘୁତର ପାପର ଆଶ୍ରୟ ନେବାକୁ ବାଧ୍ୟ ହୋଇଥିଲେ । ଉଦାହରଣ ସ୍ୱରୂପ, ସେଇ 'ମାମୁଁ' ବହିର ଅଷ୍ଟାଦଶ ପରିଚ୍ଛେଦ ଓ ଊନବିଂଶ ପରିଚ୍ଛେଦ ଦ୍ରଷ୍ଟବ୍ୟ । ଉଭୟ ପରିଚ୍ଛେଦରେ କଥା ଭାଷା ଓ ଲେଖାଛଟା ଭିନ୍ନ । ମୁଁ ଫକୀରମୋହନବାବୁଙ୍କ ଦୋଷ ଦେଉନାହିଁ । ସେ ଯେ ପ୍ରଣାଳୀ ଅବଲମ୍ବନ କରିଥିଲେ; ସେଥିରେ ଏ ଦୋଷ ଅବଶ୍ୟମ୍ଭାବୀ ଆଉ ତାଙ୍କ ଲେଖାରେ ଯେ ଏ ଦୋଷ ସବୁ ଏତେ କମ୍; ସେ ତାଙ୍କର ବାହାଦୁରି ।

ତୃତୀୟରେ, ଭାବୁକ ଲେଖକ ଉପନ୍ୟାସ ଲେଖିଲାବେଳେ କେତେଗୁଡ଼ିଏ ବିଷୟ ଅବାନ୍ତର ହେଲେ ମଧ୍ୟ ତାହାର ଅନୁଶୀଳନ କରି ବସେ । ସେ ଭାବୁଛି; ଅନୁଭବ କରୁଛି । ସଂସାରରେ ସୁଖ, ଦୁଃଖ ସମ୍ଭୋଗ, ନିର୍ଯ୍ୟାତନ ଇତ୍ୟାଦି ସମ୍ବନ୍ଧରେ ତାହାର କେତେଗୁଡ଼ିଏ ଧାରଣା ଅଛି—ସେଗୁଡ଼ିକ ସେ ତାହାର ଲେଖା ମଧ୍ୟରେ ପ୍ରକାଶ ନ କରି

ରହିପାରେ ନାହିଁ । ଆଜି ମନୁଷ୍ୟ ଜୀବନଚରିତ କଲାବେଳେ ସେହି ସବୁ ବିଷୟରେ ଗୋଟାଏ ବକ୍ତୃତା ଦେବାର ସୁବିଧା ଏତେ ବେଶୀ ମିଳେ ଯେ, ତାହାର ପ୍ରଲୋଭନ ଏଡ଼ି ସେ ମୂକ ହୋଇ ରହିବା ଅପ୍ରାକୃତ ପରି ଜଣାପଡ଼େ । ବେଳେବେଳେ ପୁଣି ଏପରି ବକ୍ତୃତା ମଧ୍ୟ ଦରକାର ହୁଏ । କଳାଗୁରୁଙ୍କ ଦୃଷ୍ଟିରୁ ଦୁଇଟି ଆବେଗକାରୀ ଦୃଶ୍ୟର ବର୍ଣ୍ଣନା ମଧ୍ୟରେ ହାସକୌତୁକ ବା କମିକ୍ ଦୃଶ୍ୟ ଦେବା ଯେପରି ଗୋଟାଏ କଳାଗୁରୁତ୍ୱ, ସେହିପରି ମଝିରେ ମଝିରେ ଗୋଟାଏ ଅଧେ ସାଧାରଣ ବକ୍ତୃତା ମଧ୍ୟ କଳାଗୁରୁତ୍ୱ । ଏ ପ୍ରଣାଳୀର ଉପନ୍ୟାସ ଲେଖିବାବେଳେ ଏପରି ବକ୍ତୃତା ମାତ୍ର ଦୁଇଟି ଉପାୟରେ ଦିଆଯାଇପାରେ—ହୁଏତ କୌଣସି ନାୟକ ନାୟିକାର ମୁହଁରେ ନ ହେଲେ ଲେଖକର ନିଜ ଭାଷାରେ । 'ମାମୁଁ'ରେ ନାଜରବାବୁଙ୍କର ବସ୍ତିର ପୂର୍ବରୁ ହାଜତ ଘରେ ଆତ୍ମସମ୍ଭାଷଣ (soliloguy) ପ୍ରଥମ ପ୍ରକାର ଗୁରୁତ୍ୱ ଏବଂ ଚନ୍ଦ୍ରମଣି ଦେଈଙ୍କ ବୈଧବ୍ୟ ବର୍ଣ୍ଣନାର ପ୍ରାରମ୍ଭ ଭାଷଣ ଦ୍ୱିତୀୟ ପ୍ରକାରର । ଫକୀରମୋହନବାବୁଙ୍କର ଗୋଟାଏ ଗୁଣ ଆମ୍ଭମାନଙ୍କର ଆଧୁନିକ ଲେଖକମାନେ ଅନୁକରଣ କରିପାରିଲେ ସେମାନଙ୍କ ଲେଖାରୁ ଆଠପଣ ଦୋଷ କଟିଯାନ୍ତା । ଫକୀରମୋହନବାବୁ ଏତେ ବଡ଼ ଗଳ୍ପ ସବୁ ଲେଖିଛନ୍ତି; କିନ୍ତୁ କୌଣସିଠାରେ ତାଙ୍କର ଏହି ବକ୍ତୃତା ନୀତି ପ୍ରଖ୍ୟାପନା ଗୋଟିଏ ପୃଷ୍ଠାରୁ ଅଧିକ ସ୍ଥଳ ବ୍ୟାପୀ ଦେଖିବ ନାହିଁ । କିନ୍ତୁ ଆଜିକାଲି ମାସିକ ପତ୍ରିକାରେ ଯେଉଁ ସବୁ କ୍ଷୁଦ୍ର ଗଳ୍ପ ମୁଁ ଦେଖୁଚି, ତା' ମଧ୍ୟରେ ଏହି ନୀତି ପ୍ରଖ୍ୟାପନ । ସାଧାରଣ ପରିଚ୍ଛେଦଗୁଡ଼ାକ ଦୁଇ ସ୍ତମ୍ଭ ନେଲେ ପ୍ରକୃତ ଗଳ୍ପଟି ଦେଢ଼ ସ୍ତମ୍ଭ ବା ଅଢ଼େଇ ସ୍ତମ୍ଭ ହେଉଚି । ଏଥିରେ ଗଳ୍ପର ଭାବ ସମ୍ପ୍ରିତିରେ ତ ବାଧା ପଡ଼ୁଚି, ତା' ଉପରେ ଗଳ୍ପଛଳରେ ତୁମର ଏଇ ଶାଣିତ ଚିନ୍ତା ବା ଅନନୁମୋଦିତ ଭାବନାଗୁଡ଼ିକ ପାଠକକୁ ଶୁଣାଇବାରେ ତୁମେ 'ଠକ ବୃତ୍ତି' ଆଚରୁଚ । ଭାବନାର ଏପରି ଉତ୍ସ ତୁମ ହୃଦୟରେ ଉଠୁଥିଲେ ତୁମେ ଶଶୀବାବୁଙ୍କ ଭଳି 'ବିକ୍ଷିପ୍ତଚିନ୍ତା' ଲେଖିପାର । ଅନ୍ତତଃ ଶଶୀବାବୁଙ୍କଠାରେ ଠକାମି ନାହିଁ ।

ତା'ପରେ ମଧ୍ୟ କଳାଗୁରୁତ୍ୱ ଭାବରେ ଏ ଜିନିଷଟା ବଡ଼ ଭୁଲ । ମୁଁ ନଟବର-ବାବୁଙ୍କ ଆତ୍ମସମ୍ଭାଷଣ ଶୁଣିପାରେ; କିନ୍ତୁ ଫକୀରମୋହନବାବୁଙ୍କ ବକ୍ତୃତା ଶୁଣିବି କିଆଁ ? ସେ କିଏ ? ତୃତୀୟ ପୁରୁଷ ସମ୍ବନ୍ଧରେ ଗଳ୍ପ କଲାବେଳେ ଲେଖକ ନିଜର ବ୍ୟକ୍ତିତ୍ୱଟାକୁ ପାଠକ ଆଗରେ ସବୁବେଳେ ଠେଲପେଲ ଠିଆକରାଇବା ଦ୍ୱାରା ପାଠକର ମନ ଉତ୍ୟକ୍ତ ହୋଇ ଉଠେ । ଉପନ୍ୟାସ ଲେଖକ ତାହାର ଲେଖା ମଧ୍ୟରୁ ନିଜର ବ୍ୟକ୍ତିତ୍ୱ ଯେତେ ଲୁଚେଇ ନେଇପାରେ ସେତେ ତା' ପକ୍ଷରେ ପ୍ରଶଂସାର ବିଷୟ । ଏହି ସବୁ ଅଭାବ ନାଟକରେ ମଧ୍ୟ ପରିଲକ୍ଷିତ ହେଉଥିଲା । ସେଥିପାଇଁ ଲମ୍ବା ଲମ୍ବା ଆତ୍ମସମ୍ଭାଷଣ ଏବଂ ଆଦ୍ୟରେ ଓ ମଝିରେ ସୂତ୍ରଧର, ଭରଣ ଇତ୍ୟାଦିର ଅଭିନୟ ଦରକାର ହେଉଥିଲା । କିନ୍ତୁ ଆଜିକାଲିର ଉନ୍ନତ ସାହିତ୍ୟରେ ଏ ସବୁ ରୁକ୍ଷ-ଗୁରୁତ୍ୱ ବାଦ୍ ଦେବା

ଭଳି ଉପାୟ ଅବଲମ୍ବନ କରାଯାଉଛି । ଉପନ୍ୟାସ ଲେଖିବାରେ; କିନ୍ତୁ ଏ ଧରଣ ପ୍ରଣାଳୀରେ ଏପରି ଦୋଷ ସ୍ଥାନେ ସ୍ଥାନେ ଅବଶ୍ୟମ୍ଭାବୀ ହୋଇପଡ଼େ ।

ତେବେ ଏତିକି ମାତ୍ର କୁହାଯାଇପାରେ ଯେ, ଐତିହାସିକ ଉପନ୍ୟାସ ଲେଖିବାରେ ଏହି ଐତିହାସିକ ପ୍ରଣାଳୀ ହିଁ ବିଶେଷ ଉପଯୋଗୀ । ତାହାର କାରଣ ପାଠକ ବୁଝିବ ଯେ ସେ ଐତିହାସିକ ଉପନ୍ୟାସ ପଢ଼ୁଛି । କେତେ ଶହ ବର୍ଷ ତଳର କଥା, ଲେଖକ ହୁଏତ ତାହାର ପ୍ରତ୍ୟେକ ବିଷୟ ସମ୍ବନ୍ଧରେ କୌଣସି ଲେଖା କୌଣସି ସ୍ଥାନରେ ପାଇ ପାରିଥିବ । ଏସ୍ଥଳରେ ପାଠକର ବିସ୍ମୃତ ଅଜ୍ଞାନତା ହିଁ ଲେଖକର ଏକମାତ୍ର ପରିତ୍ରାଣର ଉପାୟ ।

ଦ୍ୱିତୀୟ—ଆତ୍ମଜୀବନୀ ପ୍ରଣାଳୀ । ଏ ପ୍ରଣାଳୀ ଅନୁସାରେ ଲେଖକ କୌଣସି ନାୟକ ବା ନାୟିକାର ମୁହଁରେ ସମୁଦାୟ ଗଳ୍ପଟି ବିବୃତ କରିଯାଏ । ଏ ପ୍ରଣାଳୀରେ ଉପର୍ଯ୍ୟୁକ୍ତ ପ୍ରଣାଳୀର ଦୋଷ ନ ଥାଏ । କଥକ ଯେତେବେଳେ ନିଜେ ନାୟକ, ସେ ଯାହା ଦେଖିଛି, ଅନୁଭବ କରିଛି, ଅଙ୍ଗେ ନିଭେଇଛି, ସେଇଆ କହୁଛି । ବିଶ୍ରମ୍ଭାଳାପ ହେଉ, ଯୁଦ୍ଧ ବର୍ଣ୍ଣନା ହେଉ, ଖୁସି ଗଳ୍ପ ହେଉ, ସେ ଯାହା ଶୁଣେ ତାହା କହେ; ଅତଏବ, ତାହା ମଧ୍ୟରେ ଅସମ୍ଭବ କିଛି ରହିବାର କଥା ନୁହେଁ ।

ଦ୍ୱିତୀୟରେ ଏ ସ୍ଥାନରେ କଥକକୁ ତାହାର ଜ୍ଞାନ ସମ୍ବନ୍ଧରେ କୌଣସି କୈଫିୟତ୍ ଦେବା ଦରକାର ପଡ଼େ ନାହିଁ । ଅତଏବ, ଗଳ୍ପର କାର୍ଯ୍ୟଗୁଡ଼ାକ ଗୋଟିକ ପରେ ଗୋଟିଏ ଅଖଣ୍ଡ ଭାବରେ ଶୀଘ୍ର ଶୀଘ୍ର ହୋଇଯାଏ ।

ତୃତୀୟରେ ଲେଖକ ଏହି ନାୟକ ମୁଖରେ ତା'ର ସାଧାରଣ କଥନ କହି ଦେଇ ଯାଇପାରେ । ସେ ନାୟକ ବା ନାୟିକାର କଥା । ଅତଏବ, ଅସ୍ଥାନପ୍ରୟୋଗ ଭଳି ଜଣାଯିବ ନାହିଁ । ବିଶେଷତଃ ଲେଖକର ବ୍ୟକ୍ତିତ୍ୱ ସେହି ନାୟକ ବା ନାୟିକାର ବ୍ୟକ୍ତିତ୍ୱ । ସେହି ନାୟକ ବା ନାୟିକାର ବ୍ୟକ୍ତିତ୍ୱ ମଧ୍ୟରେ ମିଶିଯିବାରୁ ପାଠକର ମନରେ କୌଣସି ପ୍ରକାର ବିରକ୍ତି ଜାତ ହେବାର ସମ୍ଭାବନା ନ ଥାଏ ।

ଚତୁର୍ଥରେ ମାନସିକ ବିଶ୍ଳେଷଣର ସୁବିଧା ଏ ପ୍ରଣାଳୀରେ ଯେତେ, ଅନ୍ୟ ପ୍ରଣାଳୀରେ ସେତେ ନାହିଁ । ନାୟକ ବା ନାୟିକା ଯେତେବେଳେ ନିଜେ କହୁଛି, ସେ ତାହାର ଭାବନା ବିଶ୍ଳେଷଣ କରିପାରିବ ତେଣୁ ତାହାର ଆତ୍ମୀୟ ନାୟକ ନାୟିକାମାନଙ୍କର ଭାବନା ବିଶ୍ଳେଷଣ କରିବାର ସୁବିଧା ତାହାର ବେଶୀ ରହିବ ।

ବିଶିଷ୍ଟ ସମାଲୋଚକମାନଙ୍କ ମତରେ ଏହି ପ୍ରଣାଳୀ ହିଁ ଉପନ୍ୟାସ ଲେଖା ସମ୍ବନ୍ଧରେ ଉତ୍କୃଷ୍ଟତମ ପ୍ରଣାଳୀ । କିନ୍ତୁ ଏ ପ୍ରଣାଳୀରେ ସଫଳହସ୍ତ ହେବାକୁ ଇଚ୍ଛା କଲେ କେତେଗୁଡ଼ିଏ ବିଷୟ ମନେରଖିବାକୁ ପଡ଼ିବ । କଥକ ଜଣେ ନାୟକ ବା

ନାୟିକା । ପ୍ରଥମ ପ୍ରଣାଳୀରେ ବହୁ ଚରିତ୍ର ଚିତ୍ରଣ କରିବାରେ ଲେଖକର ଯେ ସୁବିଧା, ଏଥିରେ କଥକର ତାହା ରହିପାରେନାହିଁ । କଥକ ତା'ର ବିଶିଷ୍ଟ ଆତ୍ମୀୟ ବା ଶତ୍ରୁଙ୍କ ଛଡ଼ା ଆଉ କାହାରି କଥା କହିବାକୁ ଗଲେ ତାହା ତାଙ୍କ ପକ୍ଷରେ ଅତି ବେଶୀ ଅସ୍ୱାଭାବିକ ହୋଇପଡ଼ିବ । ଅତଏବ, ଏତାଦୃଶ ପ୍ରଣାଳୀରେ ଉପନ୍ୟାସ ଲେଖିବାକୁ ହେଲେ ଚରିତ୍ରମାନଙ୍କର ସଂଖ୍ୟା ସୀମାବଦ୍ଧ ହେବା ଉଚିତ୍ । ଲେଖକ ତାଙ୍କ କଳ୍ପନା ରଥର ରଶ୍ମି ଯଥେଚ୍ଛା ଭାବରେ ଛାଡ଼ି ଦେଇପାରିବେ ନାହିଁ । ତା'ପରେ କଥକ ଗଳ୍ପର ପରିସର ମଧ୍ୟରେ ଏପରି ଗୋଟିଏ ବ୍ୟକ୍ତି ହେବା ଉଚିତ୍, ଯେପରି ସ୍ୱଚ୍ଛନ୍ଦ ବିହାର, ଅନିବଦ୍ଧ ଭାବନା ଓ ଯଥେଷ୍ଟ ଦେଖାଦେଖିର ସୁବିଧା ତାଙ୍କର ଥାଇପାରେ । ଗଳ୍ପର ପ୍ରଧାନ ନାୟକ ବା ନାୟିକାକୁ କଥକ କରାଯାଇପାରେ କିନ୍ତୁ ସେଥିରେ ଅସୁବିଧା ଏତିକି ଯେ, ସେପରି କଲେ କଥକକୁ ଅଧିକାଂଶ ସମୟ ନିଜର କଥା କହିବାକୁ ପଡ଼ିବ । ଆଉ ମନୁଷ୍ୟ ମନଟା ଏପରି ଗୋଟାଏ ଅକଡ଼ୁଆ ଭାବରେ ତିଆରି ଯେ, କାହାରି ନିଜ କଥା ତା'ଦ୍ୱାରା ସହ୍ୟ ହୁଏନାହିଁ । ମୁଁ ରମା, ଶାମା, ଧୀମାର କଥା କହିପାରେ । ସମସ୍ତେ ମହା ଆନନ୍ଦରେ ଶୁଣିବେ । କିନ୍ତୁ ମୁଁ ମୋ କଥା କହେ—ଲୋକେ କହିବେ ମୁଁ ଆତ୍ମମ୍ଭରି, ହାମ୍‌ବଡ଼ା, ଅହଙ୍କାରୀ । ଅତଏବ, ଲେଖକକୁ ଏ ବିପଦରୁ ଦୂରରେ ରହିବାକୁ ହେବ । କଥକକୁ ଯେପରି ସବୁବେଳେ ମୁଁ ଏପରି କଲି, ମୁଁ ସେପରି କଲି କହିବାକୁ ନ ହୁଏ । କଥକ ଅପେକ୍ଷା ବିଶେଷ ଆଦରଣୀୟ, ବିଶେଷ ପ୍ରଶଂସନୀୟ ଚରିତ୍ର ଗୋଟିଏ ଅନ୍ତତଃ ବହି ମଧ୍ୟରେ ରହିବା ଦରକାର । ଯେପରି କଥକର ବ୍ୟକ୍ତିତ୍ୱ ସେହି ଚରିତ୍ରର ବ୍ୟକ୍ତିତ୍ୱ ଦ୍ୱାରା ଘୋଡ଼େଇ ହୋଇପଡ଼େ ।

ତା'ପରେ ଉପନ୍ୟାସର ଭାଷା କଥକର ଶିକ୍ଷା ଓ ସାମାଜିକ ଅବସ୍ଥା ଦୃଷ୍ଟିରେ ଉପନ୍ୟାସର ପ୍ରଧାନ ଭାଷା ତିଆରିହେବା ଉଚିତ୍ । କଥକକୁ ଗାଉଁଲି ଚଷା ବୋଲି କଳ୍ପନା କରି ତାହା ମୁହଁରେ ଭାଷାକୁ ପଣ୍ଡିତିଆ କଲେ ଅସ୍ୱାଭାବିକ ଭଳି ଦୋଷରେ ଉପନ୍ୟାସଟି ସଢ଼ିଯିବ । ଆଜିକାଲି ଯେ ସବୁ ଉପନ୍ୟାସ ଓ ଗଳ୍ପ ଲେଖାହେଉଛି, ତା' ମଧ୍ୟରୁ ଅଧିକାଂଶରେ ଏହି ଭାଷାଗତ ବ୍ୟବଧାନ ବା ବୈଚିତ୍ର୍ୟ ମୋଟେ ନାହିଁ । ଚରିତ୍ରର ଶିକ୍ଷା ବା ଅବସ୍ଥା ଯାହାହେଉ, ସମସ୍ତଙ୍କ ତୁଣ୍ଡରେ ଗୋଟାଏ ପ୍ରକାର ଭାଷା; ଆଉ ସେ ଭାଷାଟା ପ୍ରାୟ ଲେଖକଙ୍କର ନିଜର । କଳାସୃଷ୍ଟି ଦୃଷ୍ଟିରେ ଏହାଛଡ଼ା ଆଉ ବଡ଼ ରକମ ଅସାମଞ୍ଜସ୍ୟ କିଛି ହୋଇପାରେ ନାହିଁ । ଭାଷାର ବୈଶିଷ୍ଟ୍ୟ ଯେପରି ରଖିବାକୁ ହେବ, ଚରିତ୍ର ବୈଶିଷ୍ଟ୍ୟ ମଧ୍ୟ ସେହିପରି ରଖିବାକୁ ପଡ଼ିବ । କଥକର ଚରିତ୍ର-ଠାରୁ ଅନ୍ୟ ଚରିତ୍ର ଓ ଅନ୍ୟ ଚରିତ୍ରମାନଙ୍କ ମଧ୍ୟରେ ପରସ୍ପର ପରସ୍ପରର ଚରିତ୍ର ଯେତେଦୂର ସମ୍ଭବ ବିଭିନ୍ନ ହେବା ଉଚିତ । କଥାବାର୍ତ୍ତା, ଗୁଲିଚଳନ, ଭାବନା, ଚିନ୍ତା ଏହି କେତୋଟି ଉପାୟଦ୍ୱାରା ଚରିତ୍ରର ବୈଶିଷ୍ଟ୍ୟ ଉତ୍ପାଦନ କରିବା ଉଚିତ୍ ।

ଶେଷରେ ଏହି ପ୍ରଣାଳୀରେ ଆଉ ଗୋଟିଏ ଭିନ୍ନ ପ୍ରକାର ଅଛି । ଏହି ପ୍ରକାରରେ ସମୁଦାୟ ଗଳ୍ପଟି ଜଣେ ଚରିତ୍ରର ମୁହଁରେ କୁହା ନ ଯାଇ ପ୍ରତ୍ୟେକ ଚରିତ୍ର ନିଜ ନିଜର କଥା କହି ଗଳ୍ପଟି ଶେଷ କରନ୍ତି । ଏକ ଚରିତ୍ର କଥକ ପ୍ରଣାଳୀରେ ଯେ ଦୋଷ ଓ ଅସୁବିଧା ଥାଏ, ତାହା ଏ ପ୍ରକାରରେ ସୁଧୁରିଯାଏ ସତ, କିନ୍ତୁ ଗଳ୍ପଟିର ଆକାର ଅପେକ୍ଷାକୃତ ବଡ଼ ହୋଇଯାଏ । କାରଣ ପ୍ରତ୍ୟେକ ଚରିତ୍ର ନିଜ ନିଜର ଗଳ୍ପ କହିବା ଦ୍ୱାରା ଅନେକ ସମୟରେ ଚର୍ବିତ ଚର୍ବଣ ଓ ଅନାବଶ୍ୟକ ଭାଷଣ ଆସିଯାଏ ।

ଦୁଃଖର କଥା, ଏ ଧରଣର ଲେଖା ଆମ୍ଭମାନଙ୍କ ସାହିତ୍ୟରେ ବଡ଼ ବିରଳ, କାରଣ ଏ ଧରଣର ଲେଖା ଅପେକ୍ଷାକୃତ କଷ୍ଟକର । ପ୍ରଥମ ପ୍ରଣାଳୀରେ ଲେଖାରେ କଳାଚାତୁରୀକୁ ଏଣେତେଣେ କରି ପାଠକକୁ ଠକି ଦିଆଯାଇପାରେ । କିନ୍ତୁ ଏ ପ୍ରଣାଳୀରେ ଲେଖିବାକୁ ଗଲେ ଠକାମିଟା ଠିକ୍ କରି ଧରାପଡ଼ିଯିବ । ଯାହାହେଉ ଥରେ ଏ ପ୍ରଣାଳୀ ଆୟତ୍ତ କରିପାରିଲେ ଲେଖକ ଦେଖିବେ, ପାଠକର ମନ ଧରିବା ବିଷୟରେ ଏପରି ସୁବିଧା ପ୍ରଣାଳୀ ଆଉ ନାହିଁ । କାରଣ ପାଠକ ଗୋଟାଏ ପକ୍ଷର କଥା ଶୁଣେ ଏବଂ ଅନ୍ୟ ପକ୍ଷରେ କଥା ସେ ଅନୁମାନ ଦ୍ୱାରା ଠିକ୍ କରେ । ଏହି ଅନୁମାନ ଅନିଶ୍ଚିତ ଜ୍ଞାନ ଏବଂ ଏହି ଅନିଶ୍ଚିତ ଜ୍ଞାନରେ ଉପନ୍ୟାସ ପାଠର ସୌନ୍ଦର୍ଯ୍ୟ ।

ସହକାର—ଫାଲ୍‌ଗୁନ ୧୩୪୧/୧୯୩୪
୧୪ଶ ଭାଗ—୧୧ଶ ସଂଖ୍ୟା
ପୃ. ୯୮୫—୯୯୦
ସହକାର—ଚୈତ୍ର ୧୩୪୧/୧୯୩୪
୧୪ଶ ଭାଗ—୧୨ଶ ସଂଖ୍ୟା
ପୃ. ୧୧୩୯—୧୧୪୪
ସହକାର—ଜ୍ୟେଷ୍ଠ ୧୩୪୨/୧୯୩୪
୧୫ଶ ଭାଗ—୨ୟ ସଂଖ୍ୟା
ପୃ. ୧୨୮—୧୩୫

## ଅସଂପୂର୍ଣ୍ଣ

୧ । ସାମାଜିକ କଥାବାର୍ତ୍ତା ପ୍ରଣାଳୀ
୨ । ନାଟକୀୟ ପ୍ରଣାଳୀ



# କବିତାରେ ବିଷୟବିଚାର

କବି କଳ୍ପିତ ବିଷୟରେ ନିଜର ପୂର୍ଣ୍ଣ ବିଶ୍ୱାସ ସମ୍ବନ୍ଧେ ଆମ୍ଭମାନଙ୍କ ମନରେ ଯଦି ଧ୍ରୁବ ଧାରଣା ଆଣିପାରେ, ତା'ହେଲେ ସେ ଯେକୌଣସି ଉପସଂହାରରେ ଉପନୀତ ହେଉ-ପଛକେ, ସେଥିରେ ବିଶେଷ କିଛି ଯାଏଆସେ ନାହିଁ । କବିର ଧର୍ମ ବଡ଼ କଥା ନୁହେଁ, କିନ୍ତୁ ସେହି ଧର୍ମ ସମ୍ବନ୍ଧରେ ତା' ଦ୍ୱାରା ବିଶ୍ୱାସ ଓ ଅନୁରାଗ କବିତାର ପ୍ରଧାନ ଆଲୋଚ୍ୟ ବିଷୟ । ("We will allow the poets any conclusions they like, so long as we are persuaded of their own imaginative good faith'. We are willing to admit that it is not the creed that matters, but the faith and passion with which it is held."

ଏଇ ହେଲା ବିଲାତରେ ଜଣେ ଆଧୁନିକ ଖ୍ୟାତନାମା ସମାଲୋଚକ (Drink Water)ଙ୍କର ମତ । ମୋର ବିଶ୍ୱାସ, କବିତାର ସମାଲୋଚନା କରିବାକୁ ଗଲାବେଳେ ଏହି ସତ୍ୟଟି ପ୍ରତ୍ୟେକ ସମାଲୋଚକ ମନେରଖିବା ଉଚିତ । କବିକୁ ଧରି ବାନ୍ଧି ତୁମର ନିଜ ମତକୁ ଟାଣିଆଣିବା ଏବଂ ତୁମ୍ଭର ନିଜର ମତ ଓ ରୁଚି ଅନୁସାରେ କବିତାର ସମାଲୋଚନା କରିବା, କେତେଜଣ ସିଦ୍ଧହସ୍ତ ଆଲୋଚକଙ୍କ ପକ୍ଷରେ ସମ୍ଭବ ଓ ସୁନ୍ଦର ହୋଇପାରେ, କିନ୍ତୁ ସେଭଳି ବ୍ୟକ୍ତି ଅଛନ୍ତି କେତେଜଣ ?

ବର୍ତ୍ତମାନ ଓଡ଼ିଆ ସାହିତ୍ୟରେ ଏହି ରୂପ ସମାଲୋଚନାର ବିଶେଷ ପ୍ରାଦୁର୍ଭାବ । କେତେକଙ୍କ ମନରେ ଯେଉଁ କବିତା ବା ଲେଖାରେ 'ଧ୍ୱଂସ', 'ପ୍ରଳୟ', 'ସାମାଜିକ ବିପ୍ଳବ' ଏବଂ 'ଅନ୍ଧବିଶ୍ୱାସର ସଂସ୍କାର ନିମନ୍ତେ ଉଚ୍ଛୃଙ୍ଖଳ ଆହ୍ୱାନ' ନାହିଁ—ତାହା କବିତା ନୁହେଁ । ପୁଣି ଆଉ କେତେକ କହନ୍ତି, ଯାହା ପୁରାତନ, ଯାହା ପରମ୍ପରାଗତ କବି ଜୀବନର ଅବଲମ୍ବନ, ତାହା ହିଁ କବିତା । ଏ ଧାରଣା ଯେ ଭ୍ରାନ୍ତ—ତାହାର ପ୍ରକୃଷ୍ଟ ପ୍ରମାଣ ସାହିତ୍ୟିକମାନେ ପାଇବେ, ସମ୍ପାଦକମାନଙ୍କର ସତ୍ୟର ଗୋପନ ନିମନ୍ତେ ଉଦ୍‌ଭ୍ରାନ୍ତ ପ୍ରଚେଷ୍ଟାରେ ଏବଂ ସହଜବୋଧ ସରଳ ଶବ୍ଦାବଳୀ ଖିଞ୍ଚିଭୁଜି ସେଥିରୁ ଗୋଟାଏ ଅପ୍ରାକୃତ ଅର୍ଥ ବାହାର କରିବାରେ । ମୁଁ ଜାଣେ ମୋର ଏକଥା ମିଥ୍ୟା ବୋଲି ଅନେକ ଚିତ୍କାର କରି ଉଠିବେ, କାରଣ ଅପ୍ରିୟ ସତ୍ୟ କାହାକୁ ଭଲ-ଲାଗେ ? ଓଡ଼ିଆ ସାହିତ୍ୟ ଅନୁନ୍ନତ, ଏ ଅନୁନ୍ନତ ଅବସ୍ଥାରେ ମଧ୍ୟ ଜାତିଗତ, ଦଳଗତ ଓ ରାଜକୀୟ ମତଭେଦଜନିତ ବିଦ୍ୱେଷ ଏତେ ବେଶୀ ପରିମାଣରେ ସାହିତ୍ୟର ଅଙ୍ଗକୁ ଛିନ୍ନଭିନ୍ନ କରିପକାଇଛି ଯେ ତାହାର ସର୍ବାଙ୍ଗସୁନ୍ଦର ସମ୍ପ୍ରସାରଣ ଅଯଥା ବ୍ୟାହତ ହୋଇପଡ଼ିଅଛି । 'ସାହିତ୍ୟ' ସାର୍ବଜନୀନ । ଏଥିରେ ବ୍ୟକ୍ତିଗତ ବିଶ୍ୱାସ, ରୁଚି ଓ ମତର

ଯଥେଷ୍ଟ ସ୍ଥାନ ଅଛି । ବିଶ୍ୱସଂସାରକୁ ଦୁଇ ବାହୁ ଟେକି ହୃଦୟକୁ ଟାଣିନେବା ବିଷୟରେ, ସାହିତ୍ୟ ଏକା ସକ୍ଷମ । ବିଭିନ୍ନ ଦେଶରେ, ବିଭିନ୍ନ ଯୁଗରେ ଏକ ସମୟର ସାହିତ୍ୟିକୁ ନିନ୍ଦା କରିବା ନିମନ୍ତେ ଯେ ସବୁ ଚେଷ୍ଟା କରାଯାଇଛି, ତାହାର ପରିଣାମ ହୋଇଛି— ଜଳ ବୁଦ୍‌ବୁଦ୍ ପରି । ଯଥେଷ୍ଟ ବାଗ୍‌ବିତଣ୍ଡା, ଅପର୍ଯ୍ୟାପ୍ତ ନିନ୍ଦା-ଦୁର୍ନାମ ପରେ ମଧ୍ୟ ମିଲ୍‌ଟନ୍, ପୋପ୍, ଗ୍ରେ, ବାଇରନ୍, ସେଲି, କିଟସ୍, ସ୍ୱିନବର୍ଣ୍ଣ, ଇତ୍ୟାଦି ବର୍ତ୍ତମାନ ଇଂରାଜୀ ସାହିତ୍ୟରେ ଶ୍ରେଷ୍ଠ କବିପଂକ୍ତି । ଜନ୍‌ସନ୍ ରାଜନୈତିକ ମତଭେଦ ହେତୁରୁ ମିଲ୍‌ଟନଙ୍କର କବିତ୍ୱକୁ କୁତ୍ସା କରିଥିଲେ । ଜେଫ୍ରେ ଓ ଅନ୍ୟାନ୍ୟ ସମାଲୋଚକମାନେ ରୁଚିଭେଦ ହେତୁରୁ ଓ୍ୱାର୍ଡସ ଓ୍ୱାର୍ଥ ଓ ସେଲି ପ୍ରଭୃତି କବିମାନଙ୍କୁ କବି ଆଖ୍ୟା ଦେବାକୁ କୁଣ୍ଠିତ ହେଉଥିଲେ । ତଥାପି ଭବିତବ୍ୟ ଯାହାର ଯାହା ପାଉଣା ତାକୁ ତାହା ଦେଇସାରିଛି ।

ବିଷୟ ନେଇ କବିର ତୁଳନା ହୋଇପାରେ ନାହିଁ । ବ୍ୟକ୍ତିମାତ୍ରକେ ଭିନ୍ନ ମତ, ଭିନ୍ନ ମାନସିକ ଅବସ୍ଥା । କେହି ସମାଜର କୁସଂସ୍କାରରେ କବିତ୍ୱର ପ୍ରେରଣା ପାଉଛନ୍ତି; କେହି ଆଧ୍ୟାତ୍ମିକ ପ୍ରେମରେ, କେହି ଆଧିଭୌତିକ ପ୍ରେମରେ, କେହି ପ୍ରକୃତିର ବାହ୍ୟ ସୌନ୍ଦର୍ଯ୍ୟରେ, କେହି ବା ପ୍ରକୃତିର ଆଭ୍ୟନ୍ତରିଣ ପାରମାର୍ଥିକ ତତ୍ତ୍ୱରେ ନିଜ ନିଜ କବି ଜୀବନର ଉନ୍ମେଷ ଅନୁଭବ କରୁଅଛନ୍ତି । ବିଷୟ-କବିତାରେ ଅବାନ୍ତର । ଶିଳ୍ପୀ କେବଳ ଶିଳାରେ ନିଜର ସୌନ୍ଦର୍ଯ୍ୟବୋଧ କଳାଜ୍ଞାନ ଦେଖାଏନାହିଁ । କେହି ଶିଳାରେ, କେହି କାଷ୍ଠ ଖଣ୍ଡରେ, କେହି ଧାତବ ପଦାର୍ଥରେ, କେହି କାଗଜରେ । ଦେଖିବାର କଥା, ଗୃହୀତ ଉପାଦାନରେ ଶିଳ୍ପୀ ନିଜର କଳ୍ପିତ ଭାବ ବିକାଶ କରିବାକୁ କେତେଦୂର କ୍ଷମ ହୋଇଅଛି । କେବଳ ବିଷୟ ନେଇ କବିତାର ସମାଲୋଚନା କଲେ ପୃଥିବୀର କବି ଶ୍ରେଣୀର ଅର୍ଦ୍ଧେକଙ୍କୁ ରସାତଳକୁ ଯିବାକୁ ପଡ଼ିବ । ସେଲି ତାଙ୍କର ରାଜନୈତିକ ଓ ସାମାଜିକ ମତରେ ପୂର୍ଣ୍ଣ ବିପ୍ଳବବାଦୀ । ଯଦି ମହାତ୍ମାଗାନ୍ଧୀଙ୍କର ଶିକ୍ଷା ଓ ଦୀକ୍ଷା ଆମ୍ଭମାନଙ୍କ ଦୃଷ୍ଟିରେ ଗ୍ରହଣୀୟ ହୁଏ, ତା' ହେଲେ ସେଲିଙ୍କର କବିତା ତା'ଠାରୁ ଆହୁରି ବେଶୀ ଭୟପ୍ରଦ ହେବା ଉଚିତ । ତଥାପି ଆମ୍ଭମାନଙ୍କ ଦେଶର କେତେଜଣ ନରମପନ୍ଥୀ ସେଲିଙ୍କର କବିତାକୁ ଆକ୍ଷେପ କରିବାକୁ ସାହସୀ ହେବେ ? ବର୍ଣ୍ଣାଡ଼ଶଙ୍କର କବିତା ସ୍ଥାନେ ସ୍ଥାନେ ବଡ଼ ଅଶ୍ଳୀଳ, ବଡ଼ ଅଧୀର ଏବଂ ବଡ଼ ଅସମ୍ଭ୍ରାନ୍ତ । କିନ୍ତୁ କହିବା ନିଷ୍ପ୍ରୟୋଜନ—ତାଙ୍କର ସେହି କବିତା ମଧ୍ୟରୁ ଅନେକେ ଇଂରେଜୀ ସାହିତ୍ୟର ଶ୍ରେଷ୍ଠ କବିତା ଭାବେ ଗୃହୀତ । ଆନାଟୋଲ ଫ୍ରାଁ ଓ ରୋମାଁ ରୋଲାଁ ନିଜେ ନିଜେ ବଡ଼ ସାଧୁ-ହୃଦୟ, ଋଷିପ୍ରାଣ, କବି ଓ ଔପନ୍ୟାସିକ । ସେମାନଙ୍କର ନୈତିକ ଜୀବନ ସମ୍ବନ୍ଧରେ ଆକ୍ଷେପ କରିବାର ବ୍ୟକ୍ତି ବଡ଼ କମ୍ । ତଥାପି ଯେଉଁମାନେ ଥାୟା ଓ ଜନ୍ କ୍ରିଷ୍ଟୋଫର୍ ପଢ଼ିଥିବେ, ସେମାନେ ଦେଖିଥିବେ ତା'ର ମଧ୍ୟରେ କି ଉଲଙ୍ଗ ସୁବ୍ୟକ୍ତ ଅଶ୍ଳୀଳତା, ପାଶବିକ ପ୍ରେମ ଉପଭୋଗର କି ଜଘନ୍ୟ ଚିତ୍ର ସ୍ଥାନ ପାଇଛି !

ତଥାପି ଆମର ହାମ୍‌ବଡ଼ା ନୈତିକମାନେ କହିପାରିବେ କି ଏହି ଦୁଇଜଣ ଅକବି, ଅଶିଳ୍ପୀ ?

କାବ୍ୟର ବିଷୟ ଯାହାହେଉ, ସେହି ବିଷୟର ଉଦ୍‌ବୋଧର ସଂପ୍ରସାରଣ ଓ ସଂପ୍ରମାଣରେ ହିଁ ପ୍ରକୃତ କବିତ୍ୱ ଶକ୍ତି । କବିତାର ବିଷୟ 'ଯୌବନ'ର ଅବାଧ ସ୍ୱେଚ୍ଛା ହୋଇପାରେ । ଅରୁଣ ଆଲୋକରେ ସାମାଜିକ କୁପ୍ରଥା ଓ ଅଜ୍ଞାନର ଉଚ୍ଛେଦ ସାଧନ ହୋଇପାରେ, କୃଷ୍ଣଲୀଳା ହୋଇପାରେ ବା ଚନ୍ଦ୍ରଭାନୁର ପ୍ରଣୟ-କାହାଣୀ ହୋଇପାରେ, ତା' ସହିତ ସମାଲୋଚନାର ସମ୍ବନ୍ଧ ନାହିଁ, ତାକୁ ଧରି ସମାଲୋଚକ କବିତାକୁ ବାଜେ ବା ଅପାଠ୍ୟ ଆଖ୍ୟା ଦେଇପାରିବେ ନାହିଁ । ଦେଖିବାକୁ ହେବ ଶିଳ୍ପୀର ସୁବିଧାରେ କି କି ଶିଳ୍ପ ସାମଗ୍ରୀ ଉପସ୍ଥିତ ଥିଲା ଏବଂ ସେହି ସାମଗ୍ରୀର ବ୍ୟବହାରରେ କବି କେତେଦୂର ହସ୍ତନୈପୁଣ୍ୟ, କଳାକୁଶଳତା ଦେଖାଇପାରିଅଛନ୍ତି । ଗ୍ରୀସ ଏବଂ ଇଟାଲିର ଶିଳ୍ପୀମାନେ ବଡ଼ ବଡ଼ ପ୍ରସ୍ତର ଖଣ୍ଡର ସାହାଯ୍ୟରେ କୋଣାର୍କ ମନ୍ଦିର ବା ପିରାମିଡ ନିର୍ମାଣ କରିପାରିନାହାନ୍ତି ବୋଲି ସେମାନଙ୍କୁ ଶିଳ୍ପୀ ଶ୍ରେଣୀରୁ ଅନ୍ତରିତ କରିବା ଧୀହୀନତାର ପରିଚୟ ମାତ୍ର ।



'ବାରୁଣୀ'—ପ୍ରଥମବର୍ଷ-ପ୍ରଥମ ସଂଖ୍ୟା, ପୃ. ୯୪ ।

# ସାହିତ୍ୟ ଓ କଳ୍ପନା

ମୁଁ ମୋର ପୂର୍ବ ପ୍ରବନ୍ଧରେ କହିଥିଲି ଗୋଟିଏ ଘର ତିଆରି କରିବାରେ ଯେପରି ପାଞ୍ଚଗୋଟି ସ୍ତର ରହିଅଛି, ସାହିତ୍ୟ ଲେଖିବାର ମଧ୍ୟ ସେହିପରି ପାଞ୍ଚଗୋଟି ସ୍ତର ରହିଅଛି । ପାଞ୍ଚଗୋଟି ସ୍ତରରେ ଲେଖକ ନିଜର କଳ୍ପନାସୌଧଟିକୁ ଦ୍ରବ୍ୟ ଆବରଣରେ ସଜାଡ଼ି ପାଠକର ନୟନ ସମ୍ମୁଖରେ ଠିଆ କରାଇଥାଏ । ପ୍ରଥମେ ଲିଖିତବ୍ୟ ବିଷୟ ଗୋଟିଏର ମୋଟାମୋଟି ମାନଚିତ୍ର ବା Sketch map ଲେଖକ ନିଜ ମାନସପଟରେ ଅଙ୍କିତ କରାଏ । ଲାବଣ୍ୟବତୀର ଭୂମିକା କରିବାକୁ ଯାଇ କବି ନିଶ୍ଚୟ ପ୍ରଥମେ ନାୟକ ନାୟିକାଙ୍କର ବିଷୟ, ଲୋକମୁଖରେ ପରସ୍ପରର ପ୍ରଶଂସା ଶୁଣି ପରସ୍ପର ପ୍ରତି ଆକର୍ଷଣ, ଯୋଗିନୀର ସାହାଯ୍ୟରେ ଉଭୟଙ୍କର ସ୍ୱପ୍ନ, ମିଳନ, ଶିବ ମନ୍ଦିରରେ ପ୍ରଥମ ସାକ୍ଷାତ, ବିବାହ, ବିଚ୍ଛେଦ ଓ ପୁନଃ ମିଳନ; ଏପରି ପ୍ରଧାନ କଥା କେତୋଟିର ଛବି ନିଜ ମନରେ ଗଢ଼ିଥିବେ । ଏହି ଛବିଗୁଡ଼ିକର ଏକତ୍ର ସନ୍ନିବେଶ କଳ୍ପନାସାପେକ୍ଷ । ନାୟକ ନାୟିକା ଏବଂ ସମସ୍ତ ବର୍ଣ୍ଣିତବ୍ୟ ବିଷୟ କବିଙ୍କର ମନଗଢ଼ା ହୋଇପାରେ ଅଥବା କବିର କଳ୍ପନା ପ୍ରାସାଦ କୌଣସି ଐତିହାସିକ ବିଷୟର ଅଥବା ଲୌକିକ ପ୍ରବାଦର ଭିତ୍ତି ଉପରେ ଅବସ୍ଥାପିତ ହୋଇପାରେ । ଉଭୟ କଥା ଓ କଳ୍ପନାର ସାହାଯ୍ୟ ନ ନେଇ ଛବି ଅଙ୍କନ ଅସମ୍ଭବ । କେହି କେହି କହିପାରନ୍ତି, ଐତିହାସିକ ଭିତ୍ତି ଉପରେ ସାହିତ୍ୟ ଲେଖିବାକୁ ଗଲେ ଲେଖକ ତ ଇତିହାସର ଚତୁଃ ସୀମା ମଧ୍ୟରେ ଆବଦ୍ଧ ରହିବେ, ତାଙ୍କ କଳ୍ପନାର ଯୋର ଆଉ ଆସିବ କାହୁଁ ? କିନ୍ତୁ ଆମ୍ଭମାନଙ୍କୁ ମନେରଖିବାକୁ ହେବ ଯେ ଇତିହାସ ଓ ସାହିତ୍ୟ ଗୋଟିଏ ଅଭିନ୍ନ ବସ୍ତୁ ନୁହେଁ । ଚରିତ୍ରବିଶେଷର ବିଶିଷ୍ଟ କାର୍ଯ୍ୟପ୍ରଣାଳୀ ସାଧାରଣଙ୍କର ସମ୍ମୁଖରେ ଉପସ୍ଥାପିତ କରିପାରିଲେ ଐତିହାସିକର କାର୍ଯ୍ୟ ଶେଷ ହେଲା । ଐତିହାସିକ ଚରିତ୍ର ଜୀବନରେ ଯେ ଅନ୍ୟ ବିଭବ ଅଛି ତା'ର ଅନୁଶୀଳନ ଓ ସମର୍ପଣ ଐତିହାସିକର ଅବଶ୍ୟ କର୍ତ୍ତବ୍ୟ ନୁହେଁ । ଔରଙ୍ଗଜେବ୍‌ଙ୍କର ବିଷୟ ଲେଖିବାକୁ ଯାଇ ଐତିହାସିକ ଯଦି କେବଳ ତାଙ୍କ ରାଜତ୍ୱ ବର୍ଣ୍ଣନାରେ ତାଙ୍କର କଥନ ଶେଷ କରନ୍ତି ଏବଂ ଔରଙ୍ଗଜେବଙ୍କର କୁଟୁମ୍ବ ଜଞ୍ଜାଳର ସବିଶେଷ ଚିତ୍ର ନ ଦିଅନ୍ତି, ତା' ହେଲେ ମଧ୍ୟ ସେ ତାଙ୍କର କାର୍ଯ୍ୟ ସମ୍ୟକ୍ ରୂପେ କରିଅଛନ୍ତି ବୋଲି କହିବାକୁ ପଡ଼ିବ । କିନ୍ତୁ ସାହିତ୍ୟରେ ଚରିତ୍ରବିଶେଷର ସାଧାରଣ ଜୀବନ ଯଥେଷ୍ଟ ନୁହେଁ । ସାହିତ୍ୟିକ ଯେ ଚରିତ୍ରର ଭୂମିକା କରେ ସେହି ଚିତ୍ରକୁ ସମ୍ପୂର୍ଣ୍ଣ ଭାବରେ ଜୀବନ୍ତ ଆକାରରେ ପାଠକ ସମ୍ମୁଖରେ ଉପସ୍ଥାପିତ କରାଇବାରେ ହିଁ ତାହାର କୃତିତ୍ୱ । ବିଲାତର ଜଣେ ବିଶିଷ୍ଟ ସମାଲୋଚକ ଥରେ କହିଥିଲେ, "Poetry is the criticism of life." ଅର୍ଥାତ୍ କବିତା ଜୀବନର ସମାଲୋଚନା । କୌଣସି ବିଷୟ ସମାଲୋଚନା କରିବାକୁ

ଗଲେ ତାହାର ଆଦ୍ୟ, ମଧ୍ୟ, ପ୍ରାନ୍ତ, ଅଧଃ ଓ ଊର୍ଦ୍ଧ୍ୱ ସବୁଦିଗରୁ ପୁଙ୍ଖାନୁପୁଙ୍ଖ ଆଲୋଚନା ନ କରି ଗୋଟାଏ ଉପରଠାଉରିଆ ମତପ୍ରକାଶ କରିବା ଯେପରି ସମାଲୋଚନା ବିଜ୍ଞାନର ଅସଦ୍ବ୍ୟବହାର, ସେହିପରି ସାହିତ୍ୟରେ କୌଣସି ଚରିତ୍ରର ଅବତାରଣା କରି ସବୁଦିଗରୁ ତାହାର ଗୋଟିଏ ସମ୍ପୂର୍ଣ୍ଣ ଛବି ଅବସ୍ଥାପିତ ନ କରି ପାରିବା ସାହିତ୍ୟିକ ପକ୍ଷରେ ଦୂଷଣୀୟ ।

ଆମ୍ଭେମାନେ ଆଧୁନିକ ଯୁଗର ଉତ୍କଳୀୟ କବିଗୁରୁ ରାଧାନାଥଙ୍କର 'ଯଯାତି କେଶରୀ' କବିତାଟିକୁ ଅନୁଧ୍ୟାନ କଲେ ଦେଖିବୁ, ଚରିତ୍ରର ଏହି ଅସମ୍ପୂର୍ଣ୍ଣତା ସେଥିରେ ବିଦ୍ୟମାନ ରହିଅଛି । ଯଯାତି ସୁପ୍ରସିଦ୍ଧ କେଶରୀ ବଂଶର ସ୍ଥାପୟିତା, ଭୁବନବିଦିତ ଭୁବନେଶ୍ୱର ମନ୍ଦିରର ଅସୀମ ସୌନ୍ଦର୍ଯ୍ୟ ପ୍ରତିଷ୍ଠାତା; କିନ୍ତୁ କବିବରଙ୍କର ଏହି ସରସ କାବ୍ୟରେ ଆମ୍ଭେମାନେ ତାଙ୍କର କି ପ୍ରକାର ରୂପ ଦେଖିବାକୁ ପାଉଁ ? ରାଜ୍ୟଭ୍ରଷ୍ଟ, ଶ୍ରୀହୀନ, ଶତ୍ରୁପରିବେଷ୍ଟିତ ସେହି ହତଭାଗ୍ୟ କ୍ଷତ୍ରିୟ ଯୁବକ ଗୋଟିଏ ଅନାଘ୍ରାତା ବାଳିକାର ପ୍ରେମରେ ମୁଗ୍ଧ ହୋଇ ନିଜର ଅସହାୟା ଭଗିନୀକୁ ଶ୍ୱାପଦସଙ୍କୁଳ ଜଙ୍ଗଲ ମଧ୍ୟରେ ଛାଡ଼ିଦେଇ ସ୍ୱୈରପରି ମୁଗ୍ଧ ଅବିବେକିନୀ ବାଳିକାର ମାନ ସମ୍ଭ୍ରମ ନଷ୍ଟ କରିବାରେ ଟିକିଏ ମାତ୍ର ଲଜ୍ଜା ସଙ୍କୋଚ ଅନୁଭବ କରି ନ ଥିଲେ । କବିଙ୍କର ଯଯାତି ଛବିରେ ଆଉ ଗୋଟିଏ ମାତ୍ର ତ୍ରୁଟି ରହିଛି, ତାହା—ଶେଷ ମୁହୂର୍ତ୍ତରେ ମଧ୍ୟ ଯଯାତିଙ୍କ ମନରେ ବିମଳାଙ୍କ ଦୁରବସ୍ଥା, ଲଳିତାଙ୍କ ମାନସିକ ବେଦନା, ବୈର ସାଧନାରେ ବୈକଲ୍ୟ ପ୍ରଭୃତି ଅବଶ୍ୟ ଚନ୍ତନୀୟ ବିଷୟଗୁଡ଼ିକ ଆସୁନାହିଁ; ସେ ଯେପରି ତାଙ୍କ ପାପମୟ ଜୀବନର ଯୋଗ୍ୟ ଘାତକ ହସ୍ତରେ ମୃତ୍ୟୁଦଣ୍ଡରୁ ରକ୍ଷାପାଇବାର ଉପାୟ ଭାବିବାରେ ବ୍ୟସ୍ତ । ଦେବୀଙ୍କ ମୁହଁରୁ ଯଯାତିଙ୍କର ଭବିଷ୍ୟତ କୀର୍ତ୍ତିକଲାପ ଶୁଣି ନ ଥିଲେ ପାଠକ ବୋଧହୁଏ କେବେହେଁ କଳ୍ପନା କରିପାରନ୍ତା ନାହିଁ ଯେ, ଏହି ଯଯାତି ଉତ୍କଳ ଇତିହାସର ସେହି ପ୍ରସିଦ୍ଧ ଯଯାତି କେଶରୀ । ବର୍ତ୍ତମାନ ମଧ୍ୟ ପାଠକ ମୁଣ୍ଡରେ ହାତ ଦେଇ ଭାବି ବସେ, ଦେବୀଙ୍କର ଏହି ଭବିଷ୍ୟତ ବାଣୀ ସଫଳ ହୁଏ କିପରି ? କବି କାବ୍ୟର ଏହି ଭୂମିକା ଉଠାଇ କରିସାରି ବୋଧହୁଏ ଅନୁଭବ କରି ପାରିଥିବେ ଯେ, ଚରିତ୍ରଟା ଖାଲି ଅସମ୍ପୂର୍ଣ୍ଣ ତ ନୁହେଁ; ପରନ୍ତୁ ଅସମ୍ଭବ । ସେହି ହେତୁରୁ ସେ ଅକର୍ମ କର୍ମ ଦାୟିକା ମହାଦେବୀ ଶକ୍ତିର ମୁଣ୍ଡରେ ସବୁ ଦୋଷ ଅଜାଡ଼ି ଦେଇ ସମ୍ପୂର୍ଣ୍ଣତାର ପ୍ରୟାସ କରିଅଛନ୍ତି ।

ବର୍ତ୍ତମାନ ପ୍ରଶ୍ନ ହୋଇପାରେ, ସାହିତ୍ୟିକ ତେବେ କ'ଣ ବର୍ଣ୍ଣିତବ୍ୟ ଚରିତ୍ରର ଗୋଟାଏ ଜୀବନୀ ଲେଖିବ ? ଜୀବନୀ ଏବଂ କବିତା ବା ଉପନ୍ୟାସ ମଧ୍ୟରେ ଯଥେଷ୍ଟ ପ୍ରଭେଦ । ସଦ୍ୟ ପ୍ରସ୍ଫୁଟିତ ଜୀବନ୍ତ ଫୁଲ ଓ ନାନା ବର୍ଣ୍ଣରେ ଚିତ୍ରିତ ଜାପାନୀ ହାତକଟା ଫୁଲ, ବାସ୍ତବ ଜଗତର ନରନାରୀ ଏବଂ ବିଜ୍ଞାପନକାରକର ପୁସ୍ତକ ଚିତ୍ରିତ ନରନାରୀ ଛବି, ଅନାବୃତ ଚକ୍ଷୁ-ଦୃଷ୍ଟ ପଦାର୍ଥସମୂହ ଏବଂ ରଙ୍ଗବେରଙ୍ଗ ଚଷମା ଆବୃତ ଚକ୍ଷୁ-

ଦୃଷ୍ଟ ପଦାର୍ଥ ସମୂହ ମଧ୍ୟରେ ଯେ ପ୍ରଭେଦ, ଜୀବନୀ ଏବଂ କବିତା ବା ଉପନ୍ୟାସ ମଧ୍ୟରେ ସେହି ପ୍ରଭେଦ । ଜୀବନୀ-ଲେଖକ ବର୍ଣ୍ଣିତ ବ୍ୟକ୍ତିର କର୍ଯ୍ୟକଳାପ ପ୍ରକୃତରେ ଯେ ରକମ ହୋଇଥାଏ ସେହି ରକମ ଲେଖିବାକୁ ବାଧ୍ୟ । ତାହା ଲୋକମନକୁ ଯେନୁ ବା ନ ଯେନୁ, ପାଠକର ଆଖିକୁ ସୁନ୍ଦର ଦିଶୁ ବା ନ ଦିଶୁ, ସେଥିରେ ଲେଖକର କିଛି ଯାଏ ଆସେ ନାହିଁ । କିନ୍ତୁ କବିତା ବା ଉପନ୍ୟାସରେ ଚରିତ୍ର ସମାବେଶ ପୂର୍ବରୁ ଲେଖକକୁ ପ୍ରଥମେ ସୁବିବେଚନା ଶକ୍ତି ସ୍ୱରୂପ ଅସ୍ତ୍ରଦ୍ୱାରା ଚରିତ୍ରର କୋଣ, ଖାଲ, ଢିପ, ଢଙ୍ଗ ଓ ବେଢଙ୍ଗଗୁଡ଼ିକୁ ବାଗେଇନେବାକୁ ପଡ଼ିବ ଏବଂ ତା'ପରେ କଳ୍ପନାର ତୂଳି କାଠିଦ୍ୱାରା ପ୍ରକୃତର ରଙ୍ଗ ଦେଇ ଚରିତ୍ରର ଗଳିତଗୁଡ଼ାକୁ ଚକ୍ଷୁପ୍ରୀତିକର କରି ନେବାକୁ ପଡ଼ିବ ।

ଯଥାର୍ଥ କେଶରୀ ପରିପୂର୍ଣ୍ଣ କାବ୍ୟରେ ଚରିତ୍ରର ଏହି କ୍ଷୁଣ୍ଣତା ସତ୍ୟ ସୌନ୍ଦର୍ଯ୍ୟପ୍ରିୟ କବି ପକ୍ଷରେ ସ୍ପୃହଣୀୟ ନୁହେଁ । ପୂର୍ଣ୍ଣାଙ୍ଗ କବିତାରେ ପୂର୍ଣ୍ଣ ବିକଶିତ ଚରିତ୍ର ଅବଶ୍ୟ ପ୍ରୟୋଜନୀୟ । ଯେଉଁମାନେ Sir Walter Scotଙ୍କର Mermion ଓ Lady of the lake, Tennysonଙ୍କର Morte, D. Arthur ବା Matthew Arnoldଙ୍କର Sorhab and Rustum ଅଥବା Morisଙ୍କର Proud King ପ୍ରଭୃତି କାବ୍ୟ ପଢ଼ିଥିବେ, ସେମାନେ ମୋର ଏହି ଲେଖାର ସତ୍ୟତା ବେଶ୍ ଉପଲବ୍ଧି କରିପାରିବେ । ଇଂରେଜୀ ସାହିତ୍ୟରୁ ଉଦାହରଣ ଦେଲି ବୋଲି, କେହି ଯେପରି ମନେ ନ କରନ୍ତି ଯେ, ଭାରତୀୟ ସାହିତ୍ୟରେ ଏତାଦୃଶ ପୂର୍ଣ୍ଣକାବ୍ୟର ଉଦାହରଣ ବିରଳ । ଆମ୍ଭମାନଙ୍କ ଦେଶର ପୁରାଣ ସାହିତ୍ୟ ସମାଲୋଚକମାନେ କାବ୍ୟର ଯେଉଁ ସୁନ୍ଦର ଓ ମଧୁର ବିବୃତି ଦେଇଅଛନ୍ତି ତାହା ଅନୁଧ୍ୟାନ କଲେ ଏ କାବ୍ୟର ସତ୍ୟତା ସ୍ପଷ୍ଟ ପ୍ରତିପାଦିତ ହେବ । 'ବାକ୍ୟଂ ରସାତ୍ମକଂ କାବ୍ୟଂ'—ଏହି ରସ ଅର୍ଥାତ୍ ଷଡ଼ରସର ପ୍ରଖ୍ୟାପନରେ କବିତାର ଗରିମା ଏବଂ ଏହି ଷଡ଼ରସର ତପଃତେଜରେ ଜୀବନର ମହିମା । ଆଦି, ବୀର, ବୀଭତ୍ସ, ଶୋକ ଇତ୍ୟାଦି ଏହି ଷଡ଼ରସ ମଧ୍ୟରୁ କୌଣସି ଗୋଟିଏ ରସକୁ ବାଦଦେଇ ମାନବ ଜୀବନର କଳ୍ପନା ଅସମ୍ଭବ । 'ମାନବ' ଶବ୍ଦ ମୁଁ ଯୁକ୍ତିଯୁକ୍ତ ଭାବରେ ପ୍ରୟୋଗ କରିଅଛି । ଅତିମାନବ ଅଥବା ଅମାନବ ପକ୍ଷରେ ରସହୀନ ଜୀବନ ସମ୍ଭବପର ହୋଇପାରେ । କିନ୍ତୁ ଖାଲି ଅତିମାନବ ବା ଅମାନବ ଯେନି କବିତା ଲେଖିବା ଧୃଷ୍ଟତା ମାତ୍ର । Miltonଙ୍କର ମହାକାବ୍ୟ Paradise Lostରେ Lucifur, Gabriel ପ୍ରଭୃତି ଅତିମାନବମାନଙ୍କର ଅତିମାନବୀୟ ଚରିତ୍ର ବର୍ଣ୍ଣିତ ହୋଇଥିବାରୁ Adam ଏବଂ Eveଙ୍କର ମାନବୀୟ ଲୀଳା ଥିଲେ ମଧ୍ୟ ଇଂରାଜୀ ସାହିତ୍ୟର ଅନ୍ୟାନ୍ୟ କାବ୍ୟ ତୁଳନାରେ ଏହି କାବ୍ୟ ସେତେ ଲୋକପ୍ରିୟ ଓ ଆଦରଣୀୟ ହୋଇପାରି ନାହିଁ । ତଥାପି ଏଥିରେ ଷଡ଼ରସ ମଧ୍ୟରୁ କୌଣସି ରସ ଅଭାବ ନାହିଁ । ସଂସ୍କୃତ ସାହିତ୍ୟରେ ନୈଷଧଚରିତଂ, କିରାତାର୍ଜୁନୀୟଂ ଏବଂ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଲାବଣ୍ୟବତୀ, ପ୍ରେମସୁଧାନିଧି ପ୍ରଭୃତି ଏହି ଧରଣର ପୂର୍ଣ୍ଣାଙ୍ଗ

କାବ୍ୟ । ବିଦଗ୍ଧ ଚିନ୍ତାମଣିରେ କବି ପୃଥିବୀର ସର୍ବୋତ୍କୃଷ୍ଟ ଅତିମାନବର ଚିତ୍ର କରିବାକୁ ଯାଇ ତାଙ୍କଠାରେ ମାନବତା ଅର୍ପଣ କରିବାଦ୍ୱାରା ଧର୍ମବାଗୀଶ ଏବଂ ନୀତି ପଣ୍ଡିତ-ମାନଙ୍କ ବିବେଚନାରେ ଯେତେ ଅନ୍ୟାୟ କରିଥାନ୍ତୁ ପଛକେ କାବ୍ୟଟିକୁ ଯେ ପୂର୍ଣ୍ଣାଙ୍ଗ ଓ ମନମୁଗ୍ଧକର କରିପାରିଅଛନ୍ତି, ସେଥିରେ କୌଣସି ସନ୍ଦେହ ନାହିଁ ।

ମୁଁ ଉପରେ ଯାହାସବୁ କହିଗଲି, ସେଥିରୁ କେହି ଯେପରି ନ ଭାବନ୍ତି ଯେ, ସମସ୍ତ ପ୍ରକାର କବିତା ସମ୍ବନ୍ଧରେ ଏହି ନୀତି ପ୍ରଯୁଜ୍ୟ । ଖଣ୍ଡ-କବିତା, ଗୀତି-କବିତା, ଚିତ୍ର-କବିତା ପ୍ରଭୃତିରେ ମାନବଜୀବନ ଚିତ୍ରଣର ଅବକାଶ ଖୁବ୍ କମ୍ । ସେଥିରେ ଜୀବନର ଯେ ସମାଲୋଚନା ତାହା ପ୍ରକୃତିର ରୂପବିଶେଷରେ ମାନବୀୟତାର ଛାୟା ପ୍ରକାଶ । ତାହାହେଲେ ମୋଟ ଉପରେ ଆମ୍ଭେମାନେ ଦେଖିଲୁଁ ଯେ, ସାହିତ୍ୟ ଅର୍ଥାତ୍ କାବ୍ୟ, କବିତା ଓ ଉପନ୍ୟାସ ଲେଖିବା ଆଗରୁ ଲେଖକକୁ ଚରିତ୍ର ବା ବିଷୟର ଗୋଟିଏ ସମ୍ପୂର୍ଣ୍ଣ ପ୍ରତିକୃତି ନିଜ ଆଖି ଆଗରେ ଆଙ୍କି ନେବାକୁ ପଡ଼ିବ । ଏହି ଅଙ୍କନ କୌଣସି କୌଣସି ଲେଖକଙ୍କ ପକ୍ଷରେ ଦୃଶ୍ୟବିଶେଷର ପ୍ରେରଣା ଦ୍ୱାରା, କାହାରି କାହାରି ପକ୍ଷରେ ପ୍ରଗାଢ଼ ଭାବନା ଦ୍ୱାରା ସମାହିତ ହୋଇଥାଏ । ଯେ କୌଣସି ଭାବରେ ହେଉନା କାହିଁକି, ଏଇ ଅବସ୍ଥାକୁ ଆସିବା ନିମନ୍ତେ କଳ୍ପନା ମୁଖ୍ୟତଃ ଦାୟୀ । ଯାହାର କଳ୍ପନା ଶକ୍ତି ଯେତେ ମାର୍ଜିତ, ଶୃଙ୍ଖଳିତ ତାହା ପକ୍ଷରେ ଏହି ଅଙ୍କନର ଗୁରୁତା ସେତେ ବାସ୍ତବ ଓ ସହଜସାଧ୍ୟ ।

ଗୋଟିଏ ଉଦାହରଣ ଦିଏଁ—ଗୋଟିଏ ଘରର ଝରକା ଫାଙ୍କ ଦେଇ ସୂର୍ଯ୍ୟ କିରଣର ଗୋଟିଏ ରେଖା ଘରଭିତରକୁ ଲମ୍ବିଆସିଛି । ସେହି କିରଣ ରେଖା ମଧ୍ୟରେ ଘରର ବାୟୁମଣ୍ଡଳସ୍ଥିତ କ୍ଷୁଦ୍ର ଧୂଳିକଣାଗୁଡ଼ିକ ନାଚି ନାଚି, ଦୋହଲି ଦୋହଲି ଭାସିଯାଉଛି, ଶିଶୁ ଦେଖେ, ଭାବେ ସେଗୁଡ଼ିକ ଜୀବନ୍ତ ପଦାର୍ଥ, ହାତ ଟେକି ଧରି ପକାଇବାକୁ ଚେଷ୍ଟା କରେ । କିନ୍ତୁ ଭାବୁକ କବି ସେଥିରେ ଦେଖେ ଅପ୍‌ସରାର ନୃତ୍ୟ, ମାନବର ଜୀବନସଂଗ୍ରାମ; ଆଉ ସେ ତା'ରି ଉପରେ ଗୋଟିଏ କାବ୍ୟ ଲେଖି ବସେ । ଶିଶୁ ଯେ ସ୍ଥାନରେ ତା'ର ବାଳସୁଲଭ ବୁଦ୍ଧିଦ୍ୱାରା ପ୍ରଲୁବ୍ଧ ହେଲା; କବି ସେହି ସ୍ଥାନରେ କଳ୍ପନାର ପ୍ରେରଣାରେ ଗୋଟିଏ ସ୍ନିଗ୍ଧ, ସୁନ୍ଦର ମନୋହର ସୃଷ୍ଟି ଅଙ୍କନ କରି ବସିଲା । ତାହାହେଲେ ଆମ୍ଭେମାନେ ଦେଖିଲୁ, ସାହିତ୍ୟର ପ୍ରଥମ ସ୍ତରରେ କଳ୍ପନା ଅତି ପ୍ରୟୋଜନୀୟ । ଦ୍ୱିତୀୟରେ ଉପାଦାନ ସଂଗ୍ରହ । ଲିଖିତବ୍ୟ ବିଷୟଟିର ଗୋଟିଏ ମୋଟାମୋଟି ଛବି ତ ତିଆରି ହୋଇଗଲା । ସେହି ଛବିଟିକୁ ଆଖିଦୃଶିଆ କରି ପାଠକ ଆଗରେ ଠିଆ କରାଇବାକୁ ହେଲେ ଯେତେ ଜିନିଷ ଦରକାର ତା'ର ତ ପୁଣି ଗୋଟାଏ ବ୍ୟବସ୍ଥା କରିବାକୁ ହେବ ! କିନ୍ତୁ ଏ ବିଷୟଟି ସ୍ପଷ୍ଟକରି ବୁଝାଇବା ପୂର୍ବରୁ ମୋତେ ପଦେଅଧେ ସାହିତ୍ୟର ପ୍ରକୃତି ସମ୍ବନ୍ଧରେ କହିବାକୁ ପଡ଼ିବ । ସାହିତ୍ୟ ହେଲା ଗୋଟାଏ

କଳା ଓ କଳାର କାର୍ଯ୍ୟ ହେଲା ଅବାସ୍ତବରେ ବାସ୍ତବତାର ଭ୍ରମ । ଅନ୍ୟ ଭାବରେ କହିବାକୁ ଗଲେ ମୃତ ବ୍ୟକ୍ତିତ୍ୱରେ ଜୀବନ ସଞ୍ଚାରଣ, ନିର୍ଜୀବକୁ ଜୀବନଦାନ, ଅପ୍ରତ୍ୟକ୍ଷକୁ ପ୍ରତ୍ୟକ୍ଷୀକରଣ । ଐନ୍ଦ୍ରଜାଲିକ ତା'ର କାଉଁଶ ହାଡ଼ ଖଣ୍ଡକ ଦ୍ୱାରା ଯାହା କରେ ଭାବୁକ ଲେଖକ ତାହାର କାଳି କଲମ ଦ୍ୱାରା ସେହି ରକମ କିଛି କରିଥାଏ । ଏହି ମୁଖ୍ୟରେ ଜୀବନର ଭ୍ରମ, ଜଡ଼ରେ ଜୀବନର ଉତ୍ପ୍ରେକ୍ଷା ଦେବାକୁ ଗଲେ ମୃତକୁ ଜୀବନ୍ତ ଭାବରେ ସଜାଇବାକୁ ପଡ଼ିବ, ଜଡ଼କୁ ସଜୀବର ଛଟା ଦେବାକୁ ହେବ । କଳ୍ପନାର ବଳରେ ଭାବୁକ ଯେ ସଜୀବ ଛବିର ଚଳନ୍ତ ଜୀବନନାଟିକା ନିଜ ହୃଦୟର ପ୍ରତ୍ୟେକ ସ୍ପନ୍ଦନରେ ଅନୁଭବ କରିଅଛି; ତାହାର ଗୋଟିଏ ଅବିକଳ ଜୀବନ୍ତ ଭାବ ପାଠକର ହୃଦୟରେ ଜାଗ୍ରତ କରିବାକୁ ଗଲେ ତାକୁ ଗୋଟିଏ ଜୀବନ୍ତ ଚଳନ୍ତ ସଂସାରର ସୃଷ୍ଟି କରିବାକୁ ପଡ଼ିବ । ତାହାର ଅଙ୍କିତ ଛବିଟି ସୁଦୂର ଅତୀତ ଯୁଗର ହୋଇପାରେ, ବର୍ତ୍ତମାନ ଯୁଗର ମଧ୍ୟ ହୋଇପାରେ; ବେଳେ ବେଳେ ଭବିଷ୍ୟତ ଯୁଗର ମଧ୍ୟ ହେବା ବିଚିତ୍ର ନୁହେଁ । ଅତଏବ ତାହାର ଏହି ଛବିଟିକୁ ଜୀବନ୍ତ କରି ପାଠକ ସମ୍ମୁଖରେ ଉପସ୍ଥାପିତ କରିବା ନିମନ୍ତେ ଦେଶ-କାଳ-ପାତ୍ରର ବିବେଚନା ଓ ପାରିପାର୍ଶ୍ୱିକ ଘଟନାମାନଙ୍କର ଅବଧାରଣା ଏକାନ୍ତ କର୍ତ୍ତବ୍ୟ ।

ଜଣେ ସୁପ୍ରସିଦ୍ଧ ବିଲାତି ଲେଖକ ଗୋଟିଏ କାବ୍ୟର ଉପାଦାନ ସଂଗ୍ରହ କରିବା ନିମନ୍ତେ ସାତବର୍ଷ କାଳ ଘରଦ୍ୱାର ଛାଡ଼ି ରୋମରେ ବାସ କରିଥିଲେ । ଚାର୍ଲସ୍ ରିଡ୍ ବିଲାତର ଜେଲଖାନାମାନଙ୍କର ଦୃଶ୍ୟ ଉପନ୍ୟାସ ଆକାରରେ ଲେଖିବା ନିମନ୍ତେ ବହୁବର୍ଷଧରି ଅକ୍ଳାନ୍ତ ପରିଶ୍ରମ କରି ଅନେକ ଜେଲ୍ ଖାନାରେ ଅନେକ ସମୟ କଟାଇ-ଥିଲେ । ଇଟାଲିର ପ୍ରଧାନ କବି ଦାନ୍ତେ ବିଟ୍ରିସଙ୍କର ପ୍ରେମରେ ଶୈଶବାବଧି ମୁଗ୍ଧ ହୋଇଥିଲେ ମଧ୍ୟ ତାଙ୍କର ସେହି ପ୍ରେମ-ପ୍ରେରିତ ବିଶ୍ୱବିଖ୍ୟାତ Inferno କାବ୍ୟଟିକୁ ଜୀବନର ଶେଷ ସମୟ ପର୍ଯ୍ୟନ୍ତ ଲେଖିପାରି ନ ଥିଲେ । ବିଲାତ ସାହିତ୍ୟର ଏହି ଅର୍ଥକରୀ ଯୁଗରେ ମଧ୍ୟ ମାର୍କିନ୍ ଜୀବନର ଚିତ୍ର ଦେଇ ଉପନ୍ୟାସ ଲେଖିବା ନିମନ୍ତେ ଓଡ୍ ହାଉସ୍ ଏବଂ ଏଡ୍‌ଗାର ୱାଲେସଙ୍କ ଭଳି ଲେଖକମାନଙ୍କୁ କେତେ କଷ୍ଟ ସ୍ୱୀକାର କରି କେତେ ଅର୍ଥ ବ୍ୟୟ କରି କେତେ ଦିନ ଯାଏ ଆମେରିକା ବୁଲିବାକୁ ପଡ଼ୁଥିଲା, ତାହା ପ୍ରାୟ ଅଧିକାଂଶ ଇଂରେଜ ପାଠକଙ୍କୁ ଜଣାଥିବ ।

ଗୋଟିଏ ଉଦାହରଣ ଦିଏ—ଟେନିସନଙ୍କର ମର୍ଟେ-ଡ-ଆର୍ଥର କବି ଲିଖିତବ୍ୟ ବିଷୟଟିର ମୋଟାମୋଟି ଇତିହାସ ମେଲୋରିଙ୍କ ବହିରୁ ତ ପାଇଲେ । ତା'କୁ ପୁଣି କାଟ୍ ଛାଣ୍ଟ କରି ଲୋକପ୍ରିୟ ହେବାଭଳି ଗୋଟିଏ ଛବି ଅଙ୍କାଗଲା । ତା'ପରେ କଥା ପଡ଼ିଲା—କ'ଣ କଲେ ପୂର୍ବ ଐତିହାସିକ ଯୁଗର ଏହି ରାଜା ଆର୍ଥର ଏବଂ ତାଙ୍କ ବୀରମାନଙ୍କୁ ଊନବିଂଶ ଶତାବ୍ଦୀରେ ପାଠକମାନଙ୍କ ସମ୍ମୁଖରେ ଜୀବନ୍ତ ଆକାରରେ ଖେଳାଯାଇପାରେ । ସେଥିପାଇଁ ପ୍ରଥମ କଥା, ଆର୍ଥର୍ ଯେ ବେଷ୍ଟନୀ ମଧ୍ୟରେ

ରହୁଥିଲେ, ଯେପରି କଥାବାର୍ତ୍ତା କରୁଥିଲେ, ଯେପରି ପୋଷାକପତ୍ର ପିନ୍ଧୁଥିଲେ, ତାଙ୍କର ଗ୍ଭଲିଚଲଣ ଯେପରି ଥିଲା, ସେଗୁଡ଼ିକ ସରସ ବର୍ଣ୍ଣନ ଦ୍ୱାରା ଜୀବନ୍ତ ରୂପରେ ଅନୁଭବ କରି ସହଜ ଭାବରେ ଚିତ୍ର କରିବାକୁ ସମ୍ଭବ । ଏଥି ନିମନ୍ତେ ଅନେକ ବହି ପଢ଼ି ସେ କଳ୍ପନାର ବଳରେ ନିଜର ମନକୁ ଏପରି ଭାବରେ ତିଆରି କରିନେଲେ ଯେ ସେହି ସମୟ ନିମନ୍ତେ ସେ ଯେପରି ପୂର୍ବ ଐତିହାସିକ ଯୁଗରେ ବିଚରଣ କରୁଅଛନ୍ତି । ଲେଖକ ନିଜକୁ ନାୟକ ନାୟିକାଙ୍କର ଆସ୍ଥାନଗତ ନ କରି ପାରିଲେ ଲେଖାରେ ଅବଶ୍ୟ ପ୍ରୟୋଜନୀୟ କୃତ୍ରିମ ବାସ୍ତବତା ଆସିପାରେ ନାହିଁ । ଟେନିସନ୍ ତାଙ୍କର ଏହି ଭାବାନ୍ତରତାରେ କେତେଦୂର ସଫଳ ହୋଇପାରିଥିଲେ ତାହାର ନମୁନା ନିମ୍ନୋଦ୍ଧୃତ କତିପୟ ପଂକ୍ତିରୁ ସ୍ପଷ୍ଟ ପ୍ରତୀୟମାନ ହେବ "The coming of Arthur'ର ପ୍ରଥମ ଗ୍ଭରିଧାଡ଼ି ଦେଖନ୍ତୁ—

Leodogran, the king of cameliard,<br>
Had one fair daughter, and none other child,<br>
And she was fairest of all flesh on earth.

ଏହା ସହିତ ତାଙ୍କର In Memoriam A.H.H. ନାମକ ପଦ୍ୟର ଗ୍ଭରିଧାଡ଼ି ତୁଳନା କରନ୍ତୁ—

"Strong son of God, Immortal love,<br>
whom we, that have not seen thyface<br>
By faith and faith alone, embrace,<br>
Believing where we cannot prove."

ଏଇ ଦୁଇ ପଂକ୍ତି ଚତୁଷ୍ଟୟର ତୁଳନା କଲେ ଆମ୍ଭେମାନେ ଦେଖିପାରିବୁ ଯେ, ପ୍ରଥମ ପଂକ୍ତି ଚତୁଷ୍ଟୟରେ ସଭ୍ୟତାର ଜଟିଳତାହୀନ ସରଳତା ଓ ଅନାବିଲତା ନିହିତ ରହିଛି, ଅପରନ୍ତୁ ଦ୍ୱିତୀୟ ପଂକ୍ତି ଚତୁଷ୍ଟୟରେ ଊନବିଂଶ ଶତାବ୍ଦୀର ସମସ୍ତ ଜଟିଳତା, କଠୋରତା ଓ ନୈତିକତା ବିଦ୍ୟମାନ । ଫଳତଃ ଟେନିସନ୍‌ଙ୍କର Idylls of the king ପଢ଼ିଲାବେଳେ ପାଠକ ଭାଷାର ସରଳତା ଓ ଅନାବିଲତା, ବର୍ଣ୍ଣନାରେ ଆଦିମ ଯୁଗ ସୁରଭି, ପ୍ରାଚୀନ ତଥା ଅବ୍ୟବହୃତ ଶବ୍ଦାବଳୀର ସାମୟିକ ପ୍ରୟୋଗ ଦ୍ୱାରା ଏପରି ଅନୁପ୍ରାଣିତ ହୁଏ ଯେ; ସେ ନିଜର ପାରିପାର୍ଶ୍ୱିକ ଅବସ୍ଥା ଭୁଲିଯାଇ ରାଜା ଆର୍ଥର୍‌ଙ୍କର ଆଦିମ ଯୁଗରେ ଯାଇ ପହଞ୍ଚେ । ବିଷୟୋପଯୋଗୀ ଏହି ଉପକରଣଗୁଡ଼ିକର ସଂଗ୍ରହ ଓ ସନ୍ନିବେଶ ନିମନ୍ତେ ରାଜକବିଙ୍କୁ କେତେ ଯେ ପରିଶ୍ରମ ସ୍ୱୀକାର କରିବାକୁ ହୋଇଅଛି, ତାହା ତାଙ୍କର ଜୀବନୀ ପଢ଼ିଥିବା ଲୋକ ମାତ୍ରକେ ଜାଣନ୍ତି । ଆମ ଓଡ଼ିଆ ସାହିତ୍ୟରେ

ଏତାଦୃଶ ଲୌକିକ ପ୍ରଗତିର ଅଭାବ ନାହିଁ । ଉଦାହରଣ ସ୍ୱରୂପ, ବିଦଗ୍ଧଚିନ୍ତାମଣିର ତୃତୀୟ ଛାନ୍ଦରେ ଉଙ୍ଗୀ ବିଷୟରେ—

"ଉଙ୍ଗୀ ବିଷୟରେ କୃଷ୍ଣ ଗଣିଆ,
କାହା କଟିସ୍ଥିତ ଦେଖି ମାଠିଆ,
ବୋଲନ୍ତି ବନ୍ଧୁ ମୁଁ ତୋର ବେଠିଆ,
ପାଣି ଆଣିବାକୁ ମୋତେ ପଠିଆ ଗୋ,
ଶୁଣି ଗୋପୀ ହୋଇ ଠିଆ ଯେ,
ହସିଲା ଭାସିଲା ବଢ଼ିଲାକୁ କାହ୍ନୁ
ଦେଲୁ ଏତେ ଅପାଠିଆରେ ।"

ଏହି ପଦର ସହିତ କୃଷ୍ଣ ଏବଂ ସଖାମାନଙ୍କର ଭାଷଣ—

"ଅମ୍ବୁଜାକ୍ଷ ବୋଲନ୍ତି ଆହେ ମିତ,
ଅନ୍ତର୍ଗତରେ କପଟ ଅଦ୍ଭୁତ !
ଅଛ ଲୁଚାଇ ଏତେ ଶୁଭ କଥା,
ଅବା ଭଣୁଛ କହି ମୋତେ ମିଥ୍ୟା ।
ଅଣନତ ହେଲା ଶୁଣି ବଚନ,
ଅସୁଧର ତ କରିବ ନାଶନ ।*

—୫ମ ଛାନ୍ଦ ଦ୍ରଷ୍ଟବ୍ୟ

ତୁଳନା କଲେ ଆମ୍ଭେମାନେ କ'ଣ ଦେଖୁଁ—ପ୍ରତ୍ୟେକରେ କୃଷ୍ଣଙ୍କ ସହିତ ଅନ୍ୟ କେତେକ ଲୋକଙ୍କର କଥାଭାଷା । ପ୍ରଥମରେ କୃଷ୍ଣଙ୍କ ସହିତ ଗୋପୀମାନଙ୍କର କଥୋପକଥନ । ଗୋପୀ ନିରକ୍ଷର କୁଳବାଳା । ଅତଏବ ସେ ସ୍ଥାନରେ ବାସ୍ତବ ଭାଷା ଯେପରି ସହଜ, ସରଳ ଓ ଗାଉଁଲି ହେବା ଉଚିତ୍, ସେହିପରି ହୋଇଛି । ଦ୍ୱିତୀୟରେ କୃଷ୍ଣଙ୍କ ସହିତ ସମବୟସୀ ଓ ସମପାଠୀ ସଖାମାନଙ୍କର ଉକ୍ତି ପ୍ରତ୍ୟୁକ୍ତି । ଅତଏବ ଭାଷା ଟିକିଏ ଜଟିଳ, ଟିକିଏ ଭାବାପନ୍ନ, ଟିକିଏ ପାଠୁଆ । ଯାହା ହେବା ଉଚିତ ତାହା ହିଁ ହୋଇଛି ।

ଲାବଣ୍ୟବତୀରେ ସେହିପରି ଲାବଣ୍ୟବତୀଙ୍କ ରୂପ ବର୍ଣ୍ଣନା ସହିତ ମାଳିନୀର ରୂପ ବର୍ଣ୍ଣନା । ଫକୀରମୋହନଙ୍କର ଗଦ୍ୟ ଲେଖାରେ ମଧ୍ୟ ଏହାର ଭୂୟସୀ ପ୍ରମାଣ ଆମ୍ଭେମାନେ ପାଇଥାଉ । କିନ୍ତୁ ଦୁଃଖର କଥା—ଆଜିକାଲିର ପଦ୍ୟ ସାହିତ୍ୟରେ କଳାର ପ୍ରଧାନ ଅଙ୍ଗ—ଏ ବିଷୟଟିର ବଡ଼ ଅଭାବ । ଆଜିକାଲିର ପଦ୍ୟ ସାହିତ୍ୟର ପରମଗୁରୁ ରାଧାନାଥ ନିଜେ ଏ ଦିଗରେ ଆଦୌ ଦୃଷ୍ଟି ନ ଦେଇଥିଲେ ପରି ଜଣାପଡ଼େ ।

* ଅସୁଧର—ପ୍ରାଣପବନ ।

ପ୍ରାୟ ଦ୍ୱିସହସ୍ର ଯୁଗର ଯୁଧିଷ୍ଠିରଙ୍କ ମୁହଁରୁ ଯେ ଭାଷା ଆମ୍ଭେମାନେ ଶୁଣିବାକୁ ପାଉ, ପନ୍ଦର ଶହ ବର୍ଷ ତଳର ଯଯାତିଙ୍କ ମୁହଁରୁ ସେହି ଭାଷା, ସାତ ଶହ ବର୍ଷ ତଳର ଶ୍ରୀଲଗଙ୍କ ମୁହଁରୁ ମଧ୍ୟ ସେହି ଭାଷା, ପୁଣି ତିରିଶ-ଚାଳିଶ ବର୍ଷ ତଳର କବିଙ୍କ ମୁହଁରୁ ଚିଲିକା ଓ ଦରବାରରେ ମଧ୍ୟ ସେହି ଭାଷା ଶୁଣିବାକୁ ପାଉ । କବିଙ୍କର ଉକ୍ତି ଛଡ଼ା ନନ୍ଦିକା, ଚିତ୍ରା, ଲଳିତା, ପାର୍ବତୀ, ଦ୍ରୌପଦୀ ପ୍ରଭୃତି ନାୟିକାମାନଙ୍କର ସ୍ୱଭାବ ବେଶଭୂଷା ବା ଭାଷା-ବିନ୍ୟାସ ମଧ୍ୟରେ ଏପରି କିଛି ନାହିଁ ଯହିଁରୁ କି ସେମାନଙ୍କୁ ଆଜି କାଲିର ଶିକ୍ଷିତା, ସମ୍ଭ୍ରାନ୍ତ କନ୍ୟା ନ କହି ସୁଦୂର ଅତୀତର ପ୍ରାଚ୍ୟ ଯୁବତୀ ବୋଲି ଭାବିବା ସମ୍ଭବ ହେବ । ରାଧାନାଥଙ୍କ ସମ୍ବନ୍ଧରେ ଏତିକି ସବୁ କହିଲି ବୋଲି କେହି ଯେପରି ନ ଭାବନ୍ତୁ ଯେ, ମୁଁ ରାଧାନାଥ ଓ ଅନ୍ୟ ପ୍ରାଚୀନତର କବିମାନଙ୍କ ମଧ୍ୟରେ ଗୋଟାଏ ଭାଗମାପ କରି ରାଧାନାଥଙ୍କୁ ଅନ୍ୟ କୌଣସି କବିଠାରୁ ହୀନତର ବୋଲି ପ୍ରମାଣ କରିବାକୁ ଯାଉଅଛି । ଯାହା କହିଛି ତାହା ଦୃଷ୍ଟାନ୍ତ ସ୍ୱରୂପ ମାତ୍ର । କବି କବି ମଧ୍ୟରେ ତୁଳନା କରିବା ସ୍ଥାନ ଏ ନୁହେଁ ଅଥବା ଜଣେ କବି ଅନ୍ୟ କବିଠାରୁ ବିଷୟ ବିଶେଷରେ ପ୍ରଶଂସ୍ୟ ହେଲେ ମଧ୍ୟ ମୋଟଉପରେ ଯେ ପ୍ରଶଂସ୍ୟ ହେବେ ଏପରି ଭାବିବା ବାତୁଳତା ମାତ୍ର ।

ତାହାହେଲେ ଆମ୍ଭେମାନେ ଦେଖିଲୁ, ସାହିତ୍ୟରେ ଉପାଦାନ ସଂଗ୍ରହର ସ୍ଥାନ କେଉଁଠାରେ । ବର୍ତ୍ତମାନ ଦେଖାଯାଉ, ଏହି ଉପାଦାନ ସଂଗ୍ରହରେ କଳ୍ପନାର କାର୍ଯ୍ୟ କେତେଦୂର । ମୁଁ ଆଗରୁ କହିଯାଇଛି, ଏହି ଉପାଦାନ ସଂଗ୍ରହ କରିବା ନିମନ୍ତେ ମାନସିକ ପରିଶ୍ରମ ବହୁତ ବେଶି ପଡ଼େ । ଲେଖକ ପ୍ରଥମେ କଳ୍ପନା ସାହାଯ୍ୟରେ ନିଜକୁ ନେଇ ନାୟକ, ନାୟିକାଙ୍କର ସ୍ଥାନରେ ଆରୂଢ଼ କରାଇପାରିଲେ, ମାୟାଯୋଗିନୀ କଳ୍ପନାର ଯୋଗମାୟା ବଳରେ ନିଜକୁ ନାୟକର ବ୍ୟକ୍ତିତ୍ୱ ସହିତ ମିଶାଇ ଦେଇ-ପାରିଲେ, ତା'ପରେ ଭାବିବ, ସେ କି ଉପାୟରେ ନାୟକର ବ୍ୟକ୍ତିତ୍ୱ ପାଠକର ସମ୍ମୁଖରେ ଉପହାର ଦେଇପାରେ । ସେଥିନିମନ୍ତେ ତାକୁ ବୋଧହୁଏ ବହୁ ବିସ୍ତୃତ ଅଧ୍ୟୟନ, ଗଭୀର ଅନୁଧ୍ୟାନ, ବହୁ ଦେଶ ଭ୍ରମଣ ଇତ୍ୟାଦି କରିବାକୁ ପଡ଼ିବ । କିନ୍ତୁ ପ୍ରଥମ କଥା ହେଲା କଳ୍ପନା ।

ତୃତୀୟରେ ଉପାଦାନ ସନ୍ନିବେଶ । ଅର୍ଥାତ୍ ମୂର୍ତ୍ତିଗଢ଼ା ହେଲା । ଅଳଙ୍କାରପର୍ବ ଆସିଲା । ବର୍ତ୍ତମାନ ଦରକାର ପଡ଼ୁଛି ଅଳଙ୍କାରମାନଙ୍କ ମଧ୍ୟରୁ କାହାକୁ କେଉଁ ସ୍ଥାନରେ, କିପରି ଭାବରେ ଲଗାଇଦେଲେ ମୂର୍ତ୍ତିଟି ପୂର୍ଣ୍ଣାଙ୍ଗ ଓ ସୁଦୃଶ୍ୟ ହେବ । ମୁଁ ପ୍ରାଚୀନର କଥା ଲେଖୁଛି । ଅତଏବ, ପ୍ରାଚୀନର ବେଷ୍ଟନୀ ମୋତେ ତିଆରି କରିବାକୁ ପଡ଼ିବ । ଏହା ବୋଲି ମୁଁ ଯଦି ପାଠକର ରୁଚି ଏବଂ ପ୍ରାଚୀନତା ଜ୍ଞାନର ବିସ୍ତୃତ ପ୍ରତି ଦୃଷ୍ଟି ନ ଦେଇ ସମୁଦାୟ ଲେଖାଟି କେବଳ ପ୍ରାଚୀନତାରେ ହିଁ ପୂର୍ତ୍ତି କରେ, ତା' ହେଲେ ବହୁ ଲୌକିକତା ଦୋଷରୁ ମୋର ଲେଖାଟି ଅପାଠ୍ୟ ହୋଇଯିବ । ଖାଲି

ଅଳଙ୍କାର ଅଛି ବୋଲି ମୁଁ ଯଦି ମୋର କନ୍ୟାକୁ ଗୋଡ଼ ନଖଠାରୁ ମୁଣ୍ଡବାଳ ପର୍ଯ୍ୟନ୍ତ-ଗୁଡ଼ାଏ ଅଳଙ୍କାର ଲଦିରୁଦିବାଦିରୁ କରି ପିନ୍ଧାଇଦିଏ, ତା' ହେଲେ ସେ ଯେପରି ଗୋଟାଏ କଦାକାର, କିମ୍ଭୂତ, କଂଦର୍ଶ୍ୟ ହେବ, ମୋର ଲେଖାଟି ମଧ୍ୟ ସେହିପରି ଶ୍ରୁତିକଟୁ ଓ ଦୃଷ୍ଟିକଟୁ ହୋଇଯିବ । ଯେଉଁମାନେ Sir Walter Scotଙ୍କ Ivanhoe ବା Redgauntlet ସହିତ ତାଙ୍କର Rob Roy ପ୍ରଭୃତି ଉପନ୍ୟାସ ପଢ଼ିଥିବେ ସେମାନେ ମୋର ଏ ଉକ୍ତିର ସତ୍ୟତା ସ୍ପଷ୍ଟ ଉପଲବ୍ଧି କରିପାରିବେ । ଅଳଙ୍କାର ନିର୍ବାଚନରେ ଯେପରି, ବର୍ଣ୍ଣିତବ୍ୟ ବିଷୟଗୁଡ଼ିକ ସମ୍ବନ୍ଧରେ ମଧ୍ୟ ସେହିପରି ସନ୍ନିବେଶ ପ୍ରଣାଳୀ ବଡ଼ ଉପାଦେୟ । ତେଣୁ କେଉଁ ଅଳଙ୍କାରଟି କେଉଁ ସ୍ଥାନରେ ଖଞ୍ଜିଲେ ସୁନ୍ଦର ଦିଶିବ, ବର୍ଣ୍ଣିତବ୍ୟ ବିଷୟ ବିଭାଗମାନଙ୍କ ମଧ୍ୟରୁ କେଉଁ ବିଭାଗକୁ କାହା ପାଖେ ସଜାଇଲେ ଠିକ୍ ଯୋଡ଼ ମିଳିବ, ଏହାର ବିଗୃର ଏବଂ ଏହାର ଯଥାଯଥ ସନ୍ନିବେଶ ସାହିତ୍ୟ ଲେଖିବାର ଗୋଟିଏ ପ୍ରଧାନ ଗୁରୁଭା । ବିଷୟଟିର କଠିନତା, ବୁଝିବାରେ ନାହିଁ କିନ୍ତୁ କାର୍ଯ୍ୟରେ ପରିଣତ କରିବାରେ । ତେବେ ଆମ୍ଭ ଦେଶ ସମାଲୋଚକ-ମାନଙ୍କର ଯେ ଅବସ୍ଥା ସେଥିରେ ଏ ସହଜବୋଧ ବିଷୟ ସମ୍ବନ୍ଧରେ ମଧ୍ୟ ପଦେଅଧେ କହିବା ଦରକାର ପଡ଼ିଲା । ଗୋଟିଏ ଉଦାହରଣ ଦିଏଁ —

ଗୋଟିଏ ସମ୍ଭ୍ରାନ୍ତବଂଶୀୟା ଯୁବତୀ ଶ୍ୱଶୁର ଘରର ନିର୍ଯ୍ୟାତନାରେ ନିଷ୍ପୀଡ଼ିତା ହୋଇ ଘରତ୍ୟାଗ କଲି । ଘଟଣାର ଚକ୍ରାନ୍ତରେ ସେ ଶେଷରେ ବେଶ୍ୟା ହେଲି । ଏହି ସ୍ଥାନରେ ଆମ୍ଭ ଦେଶର ଜଣେ କୃତବିଦ୍ୟ ସମାଲୋଚକ କହିଥିଲେ, ସେ ବେଶ୍ୟା ଯୁବତୀକୁ କୁଳନାରୀ ଭଳି ବ୍ୟବହାର କରିବେ । ଅର୍ଥାତ୍ ଶ୍ୱଶୁର ଘରେ ଥିଲାବେଳେ ତାଙ୍କର ଗୃଲଚଳନ, ମତିଗତି ଯେପରି ଥିଲା ବେଶ୍ୟା ହେଲା ପରେ ମଧ୍ୟ ସେଗୁଡ଼ିକ ସେହିପରି ଥାଆନ୍ତା । ତେବେ କହ ତ ବାବୁ, Timon of Atheans ତାଙ୍କର ଧନିକ ଅବସ୍ଥାରେ ଯେପରି ମୁକ୍ତପ୍ରାଣ, ସଦାଶୟ ବ୍ୟକ୍ତି ଥିଲେ, ଧନହୀନ ଭାବରେ ଉପକୃତ ବନ୍ଧୁମାନଙ୍କଠାରୁ ତାଚ୍ଛଲ୍ୟ ଏବଂ ଅପମାନ ସହ୍ୟ କଲେ ମଧ୍ୟ ତାଙ୍କର ସେହିପରି ମତିଗତି ରହିବ ? ଅତଏବ, ଶେଷରେ ମାନବବିଦ୍ୱେଷୀ ବୋଲି ତାଙ୍କୁ ଚିତ୍ର କରିବା ଦ୍ୱାରା Shakespeare ଏକ ମସ୍ତବଡ଼ ଭୁଲ କରିଛନ୍ତି । ଦୁର୍ବୁଦ୍ଧି ଆଉ କେତେଦୂର ଯାଇପାରେ ? Timonଙ୍କ ଜୀବନରେ ତିନୋଟି ବିଭାଗ । ପ୍ରଥମ ତାଙ୍କର ଧନିକ ଅବସ୍ଥା, ଦ୍ୱିତୀୟରେ ତାଙ୍କର ଦରିଦ୍ର ଅବସ୍ଥା, ତୃତୀୟ ତାଙ୍କ ବୈରାଗ୍ୟ ଅବସ୍ଥା । ଏହି ତିନି ଅବସ୍ଥା ମଧ୍ୟରେ ସେ ଅନେକ ଭଲ ମନ୍ଦ କାମ କରି ଯାଇଅଛନ୍ତି । ସେହି କାମ-ଗୁଡ଼ିକୁ ପଚିଶ ପ୍ରକାର କରି ସଜାଇ ରଖାଯାଇପାରେ । କିନ୍ତୁ କିପରି ଭାବରେ ସଜାଇଲେ ସମୁଦାୟ ବିଷୟଟି ସଜୀବ ରହିବ ଅଥଚ ପାଠକର ମନରେ ନିରବିଳ ଆନନ୍ଦ ଦେଇପାରିବ; ତାହାର ପ୍ରକୃଷ୍ଟ ପନ୍ଥା Shakespeare ଦେଖାଇଯାଇଚନ୍ତି । ଅଥବା ତାଙ୍କର Hamlet ନାଟକଟି ଦେଖନ୍ତୁ । ସେଥିରେ 'To be or not

to be' ଇତ୍ୟାଦି ସୁପ୍ରସିଦ୍ଧ ବଚନିକାଟିକୁ ମନେରଖନ୍ତୁ । ସେଥିରେ ଯେ କଥାଗୁଡ଼ାକ କୁହାଯାଇଛି ତାହା, କର୍ମକୁଣ୍ଠୀ-ଅସନ୍ତୁଷ୍ଟ ଜୀବନର ସାଧାରଣ ବିଷୟ । ନାଟକର ଆରମ୍ଭରେ Hamletଙ୍କ ମୁହଁରେ ସେ କଥା କେତୋଟି କୁହାଇଥିଲେ, Hamlet ଚରିତ୍ରର କିଛି ହାନି ହୋଇ ନ ଥାନ୍ତା କିନ୍ତୁ ନାଟକଟି ଅପେକ୍ଷାକୃତ ଅସୁନ୍ଦର ହୋଇ-ଥାନ୍ତା । ପିତୃବ୍ୟ ପିତାକୁ ମାରିଛି । ମାତା ପିତୃହନ୍ତା ପିତୃବ୍ୟଙ୍କୁ ବିବାହ କରିଛନ୍ତି । ପିତୃହନ୍ତା ପିତୃବ୍ୟ ଅଜି ତାଙ୍କର ସିଂହାସନରେ । ହୃଦୟ ଘାଣ୍ଟିଗୋଳେଇ ହୋଇ-ଯାଇଛି । ମସ୍ତିଷ୍କର ରକ୍ତ ଗରମ ହୋଇଉଠୁଛି । ପ୍ରତିଶୋଧ ନେବା ନିମନ୍ତେ ପ୍ରବୃତ୍ତି ଡାକପକାଇଛି । କିନ୍ତୁ ଉପାୟ ନାହିଁ । ପ୍ରକୃତି ଯେ ନିଶ୍ଚେଷ୍ଟତାର ଶାଙ୍କୋଳି ଗୋଡ଼ରେ ଦେଇ ପଛଆଡ଼କୁ ଟିଙ୍କୁଛି ! ଆଗେଇବାର ଇଚ୍ଛା ଅଛି କିନ୍ତୁ ଆଗେଇପାରୁନାହିଁ । କ'ଣ କରିବ ? ଏ କଷ୍ଟ, ଦୁଃଖ, ଅପମାନ, ଯନ୍ତ୍ରଣା ସହି ମୁଣ୍ଡପୋତି ପଡ଼ିବ ନା ଅଣ୍ଟା ଭିଡ଼ି ବାହାରିପଡ଼ିବ ? ମରେ ଅବା ସରେଁ, ଏହି ସ୍ଥାନରେ କହନ୍ତୁ ଦେଖି 'କ'ଣ କରିବି' ବୋଲି ଏହି ଯେ ପଞ୍ଚାକ୍ଷର ଭାବନା ଏହାର ଯଥାଯୋଗ୍ୟ ସ୍ଥାନ କେଉଁଠାରେ ?

ଉତ୍ତରଟା ବଡ଼ ସହଜ । କାରଣ ସେକ୍ସପିୟର୍ ଦେଖାଇଯାଇଅଛନ୍ତି ତାହାର ସର୍ବୋତ୍କୃଷ୍ଟ ସୁନ୍ଦର ସ୍ଥାନ କେଉଁଠାରେ ? କିନ୍ତୁ କଲମ୍ବସ୍‌ଙ୍କର ଅଣ୍ଡା ଭାଙ୍ଗିଲି ଗପ ପରି ନ କରି ସାଧୁ ଭାବରେ ବିବେଚନା କଲେ ଆମ୍ଭେମାନେ ଦେଖିପାରିବୁଁ ବିଷୟଟା ବଡ଼ ସହଜସାଧ୍ୟ ନୁହେଁ । ଲେଖା ଦେହର ପ୍ରତ୍ୟେକ ଅଂଶଟିକୁ ଆଗରୁ କଳ୍ପନା କରି-ନେଇ ନିଜର ବିବେକିତା ଓ ସୌନ୍ଦର୍ଯ୍ୟବୋଧ ଦ୍ୱାରା କେଉଁ ଅଂଶକୁ କେଉଁ ସ୍ଥାନରେ ସ୍ଥାପନ କରିବାକୁ ହେବ ଏବଂ କେଉଁ ଅଂଶକୁ କେତେ ସ୍ଥାନ ଦେବାକୁ ହେବ, ତାହା ସୁଲେଖକ ବିଚାର କରିନିଅନ୍ତି । ଆଜିକାଲି ଓଡ଼ିଆ ମାସିକ ପତ୍ରିକାମାନଙ୍କର ଯେତେ ଛୋଟ ଗଳ୍ପ ବାହାରୁଛି, ତାହା ମଧ୍ୟରୁ ଅଧିକାଂଶରେ ନାଁ ଅଛି ମାପଚୂପ, ନା ଅଛି— ସୌନ୍ଦର୍ଯ୍ୟବୋଧ । ସେଦିନ ଗୋଟିଏ ଖ୍ୟାତନାମା ମାସିକ ପତ୍ରିକାରେ ଜଣେ ଖ୍ୟାତନାମ୍ନୀ ଲେଖିକାଙ୍କର ଗୋଟିଏ କ୍ଷୁଦ୍ରଗଳ୍ପ ପଢୁଥିଲି । ଗଳ୍ପଟି ଯେପରି ଭାବରେ ଲେଖା ହୋଇଛି, ସେଥିରୁ ଜଣାପଡ଼େ, ତାହା ଜଣେ ପେନ୍‌ସନ୍‌ପ୍ରାପ୍ତ ଡାକପିଅନର କରୁଣ କାହାଣୀ । କିନ୍ତୁ ଗଳ୍ପର ଆରମ୍ଭରୁ ପ୍ରାୟ ତିନି ସ୍ତମ୍ଭ ଡାକବାବୁଙ୍କର ଅନୂଢ଼ା ଝିଅଙ୍କ ସମ୍ବନ୍ଧରେ ଦିଆଯାଇଛି । ଏହି ଝିଅଟିର ଗଳ୍ପ ମଧ୍ୟରେ ଆବଶ୍ୟକତା ଏତିକି ମାତ୍ର ଯେ, ବିବାହ ପରେ ଶ୍ୱଶୁର ଘରୁ ତାଙ୍କର ଖବର କିଛି ନ ପାଇ ଡାକବାବୁ ଡାକପିଅନର ଅଗ୍ରହାତିଶଯ୍ୟ ଅନୁଭବ କରି ପାରିଥିଲେ । ଆଶାକରିଥିଲି, ଶୋଭା ସମ୍ପଦମୟୀ ନାରୀ ଲେଖିକାଙ୍କର ଏହି କ୍ଷୁଦ୍ର ଦନ୍ତାନିଟି ସର୍ବାଙ୍ଗ-ସୁନ୍ଦର ଏବଂ ସମାନୁପାତାବୟବା ହେବ । ମୋର ଦୁର୍ଭାଗ୍ୟ ଆଜି ମୋ ମାତୃସାହିତ୍ୟର ସ୍ୱାନାବସ୍ଥା ଏହି ସମାନୁପାତ ଏବଂ ସର୍ବାଙ୍ଗ-ସୁନ୍ଦର ସୌନ୍ଦର୍ଯ୍ୟ ଅଣିବା ନିମନ୍ତେ ଲେଖକ ଲେଖିକା ଆଗରୁ ଟିକିଏ କଳ୍ପନାର ସାହାଯ୍ୟ ନେବା ପ୍ରୟୋଜନ ମନେକଲେ ନାହିଁ ।

ଏ ପର୍ଯ୍ୟନ୍ତ ତାହାହେଲେ, ଆମ୍ଭେମାନେ ଦେଖିଲୁ, କଳ୍ପନାର ସାହାଯ୍ୟ ନ ନେଇ ସାହିତ୍ୟ ଅର୍ଥାତ୍ କବିତା, ଉପନ୍ୟାସ ଇତ୍ୟାଦି ଆରମ୍ଭ କରାଯାଇପାରେ ନାହିଁ । ଉପର୍ଯ୍ୟୁକ୍ତ ବିଷୟଗୁଡ଼ିକ କଳ୍ପନାର ସାହାଯ୍ୟରେ ଯଥାବିଧି ଶୃଙ୍ଖଳିତ ହୋଇ ସାରିଲା ପରେ ଆସିବ ଚତୁର୍ଥ ଓ ପଞ୍ଚମ ସ୍ତର । ଅର୍ଥାତ୍ ଉପାଦାନ, ବିନ୍ୟାସ ଏବଂ ଉପସଂହାର । ଏଥି ନିମନ୍ତେ କଳ୍ପନାର ଯେତେ ପ୍ରୟୋଜନ ନାହିଁ, ତାହାଠାରୁ ଅଧିକ ପ୍ରୟୋଜନ ଲେଖକର ଭାଷା ଓ ଯୁକ୍ତିତର୍କ ଉପରେ ଦଖଲ । ଏହି ହେତୁରୁ ମୁଁ ପୂର୍ବ ପ୍ରବନ୍ଧରେ କହିଥିଲି, କଳ୍ପନାରେ ସାହିତ୍ୟର ଆରମ୍ଭ ଏବଂ ଯୁକ୍ତିରେ ତା'ର ଶେଷ ।

ଶେଷରେ ମୁଁ ସ୍ତର ସ୍ତର କରି ସାହିତ୍ୟର ପ୍ରକାରଗୁଡ଼ିକର ବିଶ୍ଳେଷଣ କରି ବୋଲି କେହି ଯେପରି ନ ଭାବନ୍ତି ଯେ, ଲେଖକ ଏହିପରି ଭାବରେ ସ୍ତର ସ୍ତର କରି ତା'ର କାର୍ଯ୍ୟ ଆରମ୍ଭ କରେ । ଯେଉଁମାନେ ଜନ୍ମଲେଖକ ସେମାନଙ୍କ ପକ୍ଷରେ ଏହି-ସବୁ ସ୍ତରଗୁଡ଼ିକ ଚଳଚ୍ଚିତ୍ରର ଦୃଶ୍ୟାବଳୀ ପରି ମୁହୂର୍ତ୍ତିକ ମଧ୍ୟରେ ଉପସ୍ଥାପିତ ହୋଇଯାଏ । କଥାରେ କହନ୍ତି—Sir Walter Scot ଅଳ୍ପ କିଛିଦିନ ମଧ୍ୟରେ Quentine Durward ଭଳିଆ ବଡ଼ ବଡ଼ ଉପନ୍ୟାସଗୁଡ଼ାକ ଡାକିଯାଉଥିଲେ । କିନ୍ତୁ Scotଙ୍କର ଜୀବନୀ ଯେଉଁମାନେ ଅନୁଧ୍ୟାନ କରିଥିବେ, ସେମାନେ ଦେଖିଥିବେ Ivanhoe, Kenilworth, Red Gauntlet ପ୍ରଭୃତି ପ୍ରାଥମିକ ଉପନ୍ୟାସଗୁଡ଼ିକ ଲେଖିବା ନିମନ୍ତେ ତାଙ୍କୁ କେତେ ବର୍ଷ ଧରି ପ୍ରସ୍ତୁତହେବାକୁ ପଡ଼ିଥିଲା । ପ୍ରତ୍ୟେକ ଲେଖକକୁ ତାହାର ପ୍ରାଥମିକ ଲେଖାଗୁଡ଼ିକ ସକାଶେ ଯଥାସାଧ୍ୟ ପରିଶ୍ରମ କରିବାକୁ ହେବ, ତା'ପରେ ଅଭ୍ୟାସବଶରୁ ପଟୁତା ଆସିଗଲେ ସେ କଲମଧରିଲା ମାତ୍ରକେ ଲେଖିଯାଇପାରନ୍ତି । କିନ୍ତୁ କ୍ଷଣିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ଅଥବା ନିଜର ବିଶ୍ୱବିଦ୍ୟାଳୟ ଉପାଧିର ଆଡମ୍ବର କରି କଲମ ଧରୁଧରୁ ଜନ୍ମକବି ବା ପୁରୁଣା ଲେଖକର ଅହମିକାରେ ଭାସିଯିବା ମାତୃଭାଷା ଏବଂ ପାଠକବର୍ଗଙ୍କ ପାଖରେ ଗୋଟିଏ ବଡ଼ ରକମ ବିଶ୍ୱାସଘାତକତା । ମୁଁ ନବୀନ ଲେଖକମାନଙ୍କୁ ନିରୁତ୍ସାହିତ କରୁନାହିଁ । ସେମାନଙ୍କର ଅସନ୍ଦିଗ୍ଧ ପାଣ୍ଡିତ୍ୟ ଏବଂ ପ୍ରଶଂସ୍ୟ ଉଦ୍ୟମ ନିକଟରେ କେତେକ ଜଣାଶୁଣା କଥାର ନିବେଦନ କରୁଛି ମାତ୍ର ।

ନବଭାରତ - ପ୍ରଥମଖଣ୍ଡ, ଷଷ୍ଠ ସଂଖ୍ୟା
ବିଷୁ—୧୩୪୧/୧୯୩୪, ନଭେମ୍ବର,
ପୃ. ୪୫୩



# ସାହିତ୍ୟରେ ନ୍ୟାୟ

ବିରାଡ଼ି ମୁହଁରେ ଗୋଟାଏ ଗଳ୍ପ ଶୁଣି ଜଣେ ଓଡ଼ିଆ ସମାଲୋଚକ ଏପରି ବିବ୍ରତ ହୋଇ ଉଠିଲେ ଯେ, କ'ଣ କହି ସେ ଲେଖାଟାକୁ ଗାଳିଦେବେ ଖୋଜି ପାଇଲେ ନାହିଁ । ବିରାଡ଼ି ମୁହଁରେ ଗପ ! କି ଅସୁନ୍ଦର !! କି ଅଯୌକ୍ତିକ !!! ପ୍ରକୃତରେ ନ୍ୟାୟଶାସ୍ତ୍ରର ଦିଗରୁ ଦେଖିଲେ ବିରାଡ଼ି ମୁହଁରେ ମଣିଷ କଥା ନିଶ୍ଚୟ ଉଦ୍‌ଭଟ ହେବ । କିନ୍ତୁ ସାହିତ୍ୟ ନ୍ୟାୟଶାସ୍ତ୍ର ନୁହେଁ । ବିଷ୍ଣୁଶର୍ମା, ଏସପ୍, ଗ୍ରୀମ୍, ମେଟରଲିଙ୍କ୍, ଆନାତୋଲେ ଫ୍ରାନ୍ସ ଓ ଓଡ୍‌ହାଉସ୍ ପ୍ରଭୃତି ସମାଲୋଚକଙ୍କ ଗୁରୁଙ୍କର ପରମଗୁରୁଶ୍ରେଣୀୟ ଲେଖକ ଓ ମନୀଷୀମାନେ କୁକୁର, ମାଙ୍କଡ଼, ବାଘ, ବିରାଡ଼ି ପ୍ରଭୃତି ମୂକ ଜୀବଜନ୍ତୁମାନଙ୍କୁ ନିଜର ଅମର ପ୍ରତିଭା ଓ ସ୍ୱାଧୀନ କଳ୍ପନାର ବଳରେ ବାଗ୍ମୀ କରି କି ଅମୂଲ୍ୟ ସମ୍ପଦ ଆମ୍ଭମାନଙ୍କ ପାଇଁ ରଖିଯାଇନାହାନ୍ତି ! ଏପରିକି ପୃଥିବୀର ଏକମାତ୍ର ନ୍ୟାୟଶାସ୍ତ୍ରୀ କବି ମିଲ୍‌ଟନ୍ ମଧ୍ୟ ସାପ ମୁହଁରେ କଥା କୁହାଇ ତାଙ୍କର ସ୍ୱନାମଧନ୍ୟ ମହାକାବ୍ୟର ଅବତାରଣିକା କରିଅଛନ୍ତି । କାହିଁକି ? ଏମାନେ କ'ଣ ପାଗଳ ଥିଲେ, ନା ଅଗୁଆଁ ର ଥିଲେ ଯେ, ଏପରି କରିବାକୁ ଗଲେ ? ତା'ର କାରଣ ସାହିତ୍ୟ ନ୍ୟାୟଶାସ୍ତ୍ର ନୁହେଁ । ସାହିତ୍ୟ ବୋଇଲେ ଅବଶ୍ୟ କାବ୍ୟ, କବିତା, ଗଳ୍ପ, ଉପନ୍ୟାସ, ନାଟକ, ପ୍ରହସନ ଇତ୍ୟାଦି ବୁଝିବାକୁ ହେବ ।

ତେବେ ଏ ସ୍ଥଳରେ ପ୍ରଶ୍ନ ହୋଇପାରେ, ଯାହା ଅଯୌକ୍ତିକ, ତାହା ଜଣେ ବିଦ୍ୱାନ୍ ଲେଖିପାରେ କିପରି ଏବଂ ଆଉ ଜଣେ ବିଦ୍ୱାନ୍ ପଢ଼ି ମୁଗ୍‌ଧ ହୁଏ କିପରି ? କଥାଟା ବଡ଼ ସହଜ । ଯୁକ୍ତି, ତର୍କ, ନ୍ୟାୟ ଏସବୁ ବୁଦ୍ଧି ବିବେଚନା ଶକ୍ତିର କାମ । ସାହିତ୍ୟ କଳ୍ପନାର ବସ୍ତୁ । ମନସ୍ତତ୍ତ୍ୱବିତ୍‌ମାନେ ଏହି ବୁଦ୍ଧି ଓ କଳ୍ପନାର ପ୍ରଭେଦ ବିଶେଷ ଭାବରେ ବୁଝାଇପାରନ୍ତି । ମୁଁ ମନୋବିଜ୍ଞାନ ପଢ଼ିଥିଲେ ବୁଝାଇପାରିଥାନ୍ତି । ସେ ମଧ୍ୟ ମୋର ଗୋଟାଏ ଦୋଷ—ସମାଲୋଚକ ମହାଶୟ କହିବେ । ମୁଁ ଗୋଟିଏ ସାମାନ୍ୟ ଉଦାହରଣଦ୍ୱାରା ବିଷୟଟି ପ୍ରାଞ୍ଜଳକରାଇବାକୁ ଚେଷ୍ଟାକରିବି । ମୋ ସାମନାରେ 'କ', 'ଖ' ଓ 'ଗ' ଏହି ତିନି ପ୍ରକାର ରସାୟନ ଥୁଆହୋଇଛି । ଏ ପ୍ରତ୍ୟେକର କ୍ରିୟା କ'ଣ ତା ମୁଁ ଜାଣିଲି, ଜ୍ଞାନ ବଳରେ । 'କ' 'ଗ' ର ରସାୟନକୁ 'ଖ' ରସାୟନ ସହିତ ସଂଯୁକ୍ତ କଲେ ଧୂଆଁ ହେବ ଏବଂ କ, ଖ, ଗ, ତିନିଙ୍କି ସଂଯୁକ୍ତ କଲେ ବୋମାଫୁଟିବ—ଏକଥା ମୁଁ ଜାଣିଲି ବୁଦ୍ଧି ବଳରେ । କ ଓ ଗ କୁ ସଂଯୁକ୍ତ କରୁ କରୁ ଯେ ନିଆଁ ବାହାରିବ, ସେଥିରେ ମୁଁ ପୋଡ଼ିହୋଇ ମରିଯାଇପାରେ, ଏ ଘରଦ୍ୱାର ପୋଡ଼ି ଛାରଖାର ହୋଇଯାଇପାରେ; ଏ କଥାଗୁଡ଼ାକ ମୁଁ ଉପଲବ୍ଧି କରିବି କଳ୍ପନା ବଳରେ । ଆଉ ଗୋଟିଏ ଉଦାହରଣ ଦିଏଁ - ମୁଁ ଜଣେ ଗରିବ

ବ୍ରାହ୍ମଣ । ଛିଣ୍ଡା ମସିଣାଖଣ୍ଡିକ ଉପରେ କାଠର ପିଢ଼ାଟିଏ ମୁଣ୍ଡରେ ଦେଇ ମୁଁ ସ୍ୱପ୍ନ ଦେଖୁଛି—ଜଣେ ଅପରୂପ-ରୂପବତୀ ରାଜକନ୍ୟା ମୋର ପାଦ ମଳାଉଛନ୍ତି । ମୁଁ ଦୁଗ୍ଧ-ଫେନ ନିଭ ସୁକୋମଳ ପୁଷ୍ପଶଯ୍ୟାରେ ଶୋଇଛି । ମୋର ପନ୍ଦରଟା ମଟର, କୋଡ଼ିଏଟା ହାତୀ, ବ୍ୟାଙ୍କ୍‌ରେ ଦଶ ପନ୍ଦରକୋଟି ଟଙ୍କା, ଏସବୁ କଳ୍ପନା । କିନ୍ତୁ ଏସବୁ ଯେ ମୋର ପ୍ରକୃତରେ ନାହିଁ, ଏହି ଉପଲବ୍‌ଧି ହେଲା ଜ୍ଞାନ, ଆଉ ଏପରି ଅଳସ କଳ୍ପନାରେ ବୁଡ଼ିରହି ନିଷ୍କର୍ମା ହୋଇପଡ଼ି ରହିଲେ ଯେ ଆଉ ବେଳାଏ ପେଟରେ ଓଦାକନା ଦେବାକୁ ପଡ଼ିବ, ଏହି ଉପଲବ୍‌ଧି ହେଲା ବୁଦ୍ଧି । ଶୂନ୍ୟରୁ ଗୋଟାଏ ସଂସାର ନିର୍ମାଣ କରିବା ହେଲା କଳ୍ପନା-ଭାବୁକ, ସାହିତ୍ୟିକର ସମ୍ବଳ ଏହି କଳ୍ପନା । ଭାବୁକ କଳ୍ପନା ବଳରେ ଯେ ସ୍ୱପ୍ନ ଦେଖେ, ଯେ ସ୍ୱପ୍ନ ଦେଖି ତନ୍ମୟ ହୋଇଉଠେ ଏବଂ ସେହି ତନ୍ମୟ ଭାବର ପ୍ରେରଣାରେ ସେ ଯାହା କହେ ବା ଲେଖେ, ତାକୁ ତର୍କଶାସ୍ତ୍ରର ସେର ତରାଜୁ ନେଇ ମାପିବାକୁ ଚେଷ୍ଟାକରିବା ଯାହା, ସ୍ୱପ୍ନକୁ ସତ୍ୟ ବୋଲି ବିଶ୍ୱାସ-କରିବା ମଧ୍ୟ ତାହା ।

ମହାକବି ସେକସପିୟରଙ୍କ 'ମିଡ୍ ସମର୍ ନାଇଟସ୍ ଡ୍ରିମ୍' ନାମକ ନାଟକରେ ଟିଟିଆନା, ପକ୍ ପ୍ରଭୃତି ଫେୟାରିମାନଙ୍କର ଲୀଳା ପଢ଼ି କେତେକ ସମାଲୋଚକ କହିଥିଲେ ଯେ, ନାଟକୀୟ ବିଷୟଟା ନିତାନ୍ତ ଅସ୍ୱାଭାବିକ—ଅର୍ଥାତ୍ ଉଦ୍‌ଭଟ । ସେମାନେ ଆମର ଏହି ବିଚକ୍ଷଣ ଓଡ଼ିଆ-ସମାଲୋଚକଙ୍କ ଭଳି ନ୍ୟାୟଶାସ୍ତ୍ରାଭିଜ୍ଞ । ସେମାନଙ୍କ ନ୍ୟାୟଶାସ୍ତ୍ରର ହିନସ୍ଥା ସେକ୍‌ପିୟର ସାହିତ୍ୟ ଯେଉଁମାନେ ପଢ଼ିଥିବେ ବୁଝିପାରୁଥିବେ । କବି ସ୍ୱପ୍ନ ଦେଖେ, କଳ୍ପନାର ଉଜ୍ଜ୍ୱଳ ସୁରଞ୍ଜିତ ତୀବ୍ର ବେଗ, ପାରସ ଶିଞ୍ଜିନୀ-ସଂଯୁକ୍ତ ପୁଷ୍ପକ ବିମାନରେ ବସି ବୈଚିତ୍ର୍ୟମୟ ଏହି ଅନନ୍ତ ବିଶ୍ୱବ୍ରହ୍ମାଣ୍ଡର ଗଭୀର ଉର୍ମିରାଜିପୂର୍ଣ୍ଣ କୁହେଳି ଭେଦ କରି ଯାଉଁ ଯାଉଁ ତା'ର କଳ୍ପନା ଚକ୍ଷୁରେ କେତେ ଜିନିଷ, କେତେ ଅପାର୍ଥିବ ପଦାର୍ଥ ଯେ ପଡ଼ିଥାଏ, ତାହାର ହିସାବ ରଖିବା ତୁମ ଆମ ଭଳି ସଂସାର ଶାଙ୍ଖୋଳ ପିନ୍ଧିଥିବା ନ୍ୟାୟଶାସ୍ତ୍ରର ରଙ୍ଗୀନ୍-ଚଷମାରେ ସୃଷ୍ଟିଟାକୁ ଦେଖୁଥିବା ସାମାନ୍ୟ ମନୁଷ୍ୟ କାହୁଁ ବୁଝିବ ? ସେକ୍‌ସପିୟର ତାଙ୍କର ବିଶ୍ୱବିଖ୍ୟାତ ଚରିତ୍ର ହାମ୍‌ଲେଟ୍‌ଙ୍କ ମୁହଁରେ ତାଙ୍କର ସମାଲୋଚକମାନଙ୍କୁ ଉପଯୁକ୍ତ ଜବାବ୍ ଦେଇଯାଇଛନ୍ତି—"ଏ ସ୍ୱର୍ଗ ମର୍ତ୍ତ୍ୟରେ ଅନେକ ଜିନିଷ ଅଛି, ହୋରେସିଓ, ଯାହା ତୁମର ନ୍ୟାୟଶାସ୍ତ୍ର କଳନା କରିପାରିବ ନାହିଁ ।"

ଭାବୁକ ଜୀବନରେ ଏହି କଳ୍ପନା ଯେ କେଡ଼େ ବଡ଼ ଜିନିଷ ତାହା ଆନାତୋଲେ ଫ୍ରାନ୍‌ସଙ୍କ 'ସିଲ୍‌ଭେଷ୍ଟର ବାର୍ଣ୍ଣାଡ଼୍' ନାମକ ଗଦ୍ୟ କାବ୍ୟ ଗ୍ରନ୍ଥରେ ଫେୟାରୀ ତୁଣ୍ଡରେ ଏହି ଉକ୍ତିରୁ ସ୍ପଷ୍ଟ ପ୍ରତୀୟମାନ ହେବ—

"ଜାଣିବା କିଛି ନୁହେଁ । କଳ୍ପନା କରିବା ହିଁ ସବୁ । ଯାହା କଳ୍ପିତ ନୁହେଁ, ତାହା ଜୀବନ୍ତ ନୁହେଁ । ମୁଁ କାଳ୍ପନିକ । ଏହା ହିଁ ବିଶ୍ୱରହିବ । ଲୋକେ ମୋତେ ସ୍ୱପ୍ନ

ଦେଖନ୍ତି । ଆଉ ମୁଁ ଆସି ସେମାନଙ୍କ ଆଗରେ ଠିଆହୁଏ । ଏହି ସଂସାର କେବଳ ସ୍ୱପ୍ନ । ତୁମକୁ କେହି ସ୍ୱପ୍ନ ଦେଖେନାହିଁ । ସୁତରାଂ ତୁମେ ଜୀବନ୍ତ ନୁହଁ । ମୁଁ ଏ ବିଶ୍ୱ ସଂସାରକୁ ମୁଗ୍ଧ କରି ରଖିଛି. ମୁଁ ସବୁଠାରେ ଅଛି—ଚନ୍ଦ୍ରର କିରଣ କଣିକାରେ, ଗୁପ୍ତ ନିର୍ଝରଣୀର କଳଧ୍ୱନିରେ, ଯେ ସବୁ ପଦାର୍ଥ ମରମର ଶବ୍ଦରେ କଥା କହେ, ସେମାନଙ୍କ ଚଳନରେ, ଶୂନ୍ୟ ପ୍ରାନ୍ତରରୁ ସଦ୍ୟ ସକାଳରେ ଉଠୁଥିବା ଶ୍ୱେତ ବାଷ୍ପରେ, କଣ୍ଟକିତ ଲତାକୁଞ୍ଜରେ ସବୁ ଜାଗାରେ ମତେ ସମସ୍ତେ ଦେଖନ୍ତି, ଆଉ ଭଲପା'ନ୍ତି । ମୁଁ ମଳି ପଡରରେ ଜୀବନ ସଞ୍ଚାର କରିଗଲାବେଳେ ଯେଉଁମାନେ ମୋ ପାଦର ଲଘୁ ଚିହ୍ନ ଅନୁସରଣ କରନ୍ତି, ସେମାନେ କେତେ ନ ଯେ ଦୀର୍ଘଶ୍ୱାସ ପକାନ୍ତି, କେତେ ଅନନୁଭୂତ ଆନନ୍ଦର କମ୍ପନ ଅନୁଭବ କରନ୍ତି ! ମୁଁ କ୍ଷୁଦ୍ର ଶିଶୁମାନଙ୍କ ମୁହଁରେ ହସ ଆଣେ । ଯେ ବୋକା ତାକୁ ବୁଦ୍ଧି ଦିଏ । ଦୋଳା ଉପରେ ଆଉଜିପଡ଼ି ମୁଁ ଖେଳେ, ସାନ୍ତ୍ୱନା ଦିଏ । ଗୀତ ଗାଇ ଗାଇ ଶୁଆଇ ପକାଏ । ଆଉ ତୁମେ ସନ୍ଦେହ କରୁଛ—ମୁଁ ଜୀବନ୍ତ ନୁହେ ବୋଲି । ସିଲଭେଷ୍ଟର ବାର୍ଣ୍ଣାର୍ଡ଼ ! ତୁମର ପୁରୁଣା ଗନ୍ତାଡଲେ ଗୋଟାଏ ଗଧର ଚମଡ଼ା ରହିଛି ।''

ମୁଁ ଏହି କଥାଗୁଡ଼ାକ ଏତେ ଲମ୍ବା କରି ଦେଲି, ମୋ ଉପରେ ରାଗ କରିବେ ନାହିଁ । କଳ୍ପନାର ଏପରି ସାରଗର୍ଭ ଜୀବନ୍ତ ବର୍ଣ୍ଣନା ଗଦ୍ୟ ସାହିତ୍ୟରେ ବିରଳ । ସେଥିପାଇଁ ଦେଲି । ଭାବୁକର ପ୍ରେୟସୀ ଏହି କଳ୍ପନା ଖାଲି ସୁଖର ସଙ୍ଗିନୀ ନୁହେ । ଏ ବଡ଼ ନିଷ୍ଠୁର ସ୍ୱାଧୀନଭର୍ତ୍ତୃକା । ତା'ର ଭ୍ରୁକୁଞ୍ଚନି ପାହାରରେ, ଖଡ଼୍‌ଗମୁସାରେ, ବାକ୍ୟ ବାଣରେ ଭାବୁକ ପାଗଳ ପରି ହୋଇଥାଏ । ଗୋଟିଏ ଉଦାହରଣ ଦେବି—

ସେଲି ଏହି ଖଣ୍ଡାଖାଇ ନିଆଁଗିଲୀ ପ୍ରେୟସୀର କବଳରେ ପଡ଼ି ସ୍ୱପ୍ନ ଦେଖିଲେ—ଧନୀର ଦରିଦ୍ର ଉପରେ, ଶକ୍ତିଶାଳୀ ଲୋକର ନିଃସହାୟ ବ୍ୟକ୍ତି ଉପରେ ଓ ଅନ୍ୟାୟୀର ନ୍ୟାୟୀ ଉପରେ ଦାରୁଣ ଅତ୍ୟାଚାର । ଦୁଃଖୀ, ରଙ୍କୀ, ଦରିଦ୍ର, ନିଃସହାୟ ଅତ୍ୟାଚାର ହାତରୁ ମୁକ୍ତି ପାଉଛନ୍ତି କେବେ ?

ପ୍ରବଳପ୍ରତାପୀ ମହାରାଜା ରାମଚନ୍ଦ୍ରଙ୍କର ଅସହାୟା ଅବଳା ସୀତାଙ୍କ ଉପରେ ଅତ୍ୟାଚାରଠାରୁ ଆରମ୍ଭ କରି ଆଜିକାଲି ଯୁଗରେ ଜମିଦାରଙ୍କର ପ୍ରଜାମାନଙ୍କ ପ୍ରତି ଜୁଲୁମ ପର୍ଯ୍ୟନ୍ତ—ଏ ଅତ୍ୟାଚାର ତ ଚିରଦିନ ଚାଲିଆସୁଛି । ଆଉ ମନୁଷ୍ୟ ଦେବତା ନ ହେବା ପର୍ଯ୍ୟନ୍ତ ଚାଲିବ । ମନୁଷ୍ୟ ସମାଜର ବର୍ତ୍ତମାନ ଅବସ୍ଥିତିରେ ଏହିପରି ଅତ୍ୟାଚାରର ଉଦାହରଣ ଗୋଟେ ଅଧେ ଅବଶ୍ୟମ୍ଭାବୀ । କିନ୍ତୁ ଏହା ବୋଲି ତ କେହି କହିବ ନାହିଁ ଯେ, ଏ ଅତ୍ୟାଚାର ସର୍ବବ୍ୟାପୀ । ଶକ୍ତିଶାଳୀ ପୁରୁଷମାନଙ୍କ ମଧ୍ୟରେ ଅତ୍ୟାଚାରୀ ଯେପରି ଅଛନ୍ତି, ସାଧୁ ହୃଦୟବାନ ମଧ୍ୟ ସେହିପରି ଅଛନ୍ତି । ପ୍ରକୃତ ତାର୍କିକ, ବୁଦ୍ଧିମାନ୍ ନୈୟାୟିକ ସମାଜର ଏ ଉଭୟ ଦିଗ ଦେଖି ବିଚାର କରି ସହଜ ସରଳ ପ୍ରାକୃତିକ

ଜୀବନ ଚଳାଇନବ । କିନ୍ତୁ ସେଇ ପାରିଲେ ନାହିଁ । ସେ ଯେତେବେଳେ ଗୋଟାଏ ଯୋଡ଼ାଏ ନୂହ ଅତ୍ୟାଚାରର ଦୃଷ୍ଟାନ୍ତ ଦେଖିଲେ ସେତେବେଳେ ଯଦି କଳ୍ପନାର ହାବୁଡ଼କୁ ପଳାଇ ଯାଇପାରିଥାନ୍ତେ, ତା'ହେଲେ ପାରିଥାନ୍ତେ । କିନ୍ତୁ କଳ୍ପନା ତାଙ୍କୁ ଧରିଥିଲା ଦୃଢ଼ତର ଆଲିଙ୍ଗନରେ । ଅସହାୟ କବି ଶକ୍ତିମୟୀ କଳ୍ପନାର ତାଡ଼ନାରେ ଉତ୍କ୍ଷିପ୍ତ ପ୍ରାୟ ହୋଇଉଠିଲେ । ଘର ଛାଡ଼ିଲେ; ରାଜ୍ୟ ଛାଡ଼ିଲେ । ଭାଇବନ୍ଧୁ ଛାଡ଼ିଲେ । ତଥାପି କଳ୍ପନାର ମୋହ ଛାଡ଼ିପାରିଲେ ନାହିଁ । ତା'ର ଫଳ ହେଲା "Prometheus Unbound". ଏପରି ସ୍ଥଳେ ଯଦି ନ୍ୟାୟଶାସ୍ତ୍ରର ଦୋହାଇ ଦେଇ ତାଙ୍କର କାବ୍ୟଟିକୁ ଉଦ୍‌ଭଟ ଓ Rubbish ବୋଲି କେହି ସମାଲୋଚକ କାଟି ଦିଅନ୍ତି, ତା'ହେଲେ ତାଙ୍କୁ କହିବାକୁ ହେବ "ସମାଲୋଚକ—ତୁମର ଏଇ ପୁରୁଣା ଗନ୍ଧା ତଳେ ଗଧର ଚମଡ଼ା ।"

ତେବେ ଗୋଟାଏ କଥା ମୁଁ ଏହି ସ୍ଥାନରେ କହି ରଖେଁ—ସାହିତ୍ୟରେ କଳ୍ପନାର ପ୍ରଭାବ କଥା କହିଗଲି ବୋଲି ଯେପରି କେହି ନ ଭାବନ୍ତି ଯେ, ସାହିତ୍ୟରେ ଯୁକ୍ତିତର୍କର ସ୍ଥାନ ନାହିଁ । ସାହିତ୍ୟର ସବୁ ଅଂଶଗୁଡ଼ାକ ଅଯୌକ୍ତିକ । ସାହିତ୍ୟ କଳ୍ପନାରେ ଆରମ୍ଭ ଏବଂ ନ୍ୟାୟରେ ଶେଷ । ଭାବୁକ କଳ୍ପନାର କଷାଘାତରେ ଯେ ପ୍ରତିମୂର୍ତ୍ତିର ଉପସ୍ଥାପନା କରେ, ତାହାକୁ ନ୍ୟାୟ ସାହାଯ୍ୟରେ ଜୀବନ୍ତ କରି ପାଠକ ଓ ସମାଲୋଚକ ସମ୍ମୁଖରେ ଠିଆ କରାଏ । ଏ ସ୍ଥଳରେ କେହି କେହି କହିପାରନ୍ତି ଯେ, ଲେଖକମାନେ ଅନେକ ସମୟରେ କୌଣସି ସତ୍ୟ ଘଟଣା ବା ଐତିହାସିକ ବର୍ଣ୍ଣନାର ଆଶ୍ରୟରେ ନିଜର କବିତା ବା ଗଳ୍ପ ଲେଖିଥାନ୍ତି । ଏପରି ସ୍ଥଳରେ ସାହିତ୍ୟ କଳ୍ପନାରେ ଆରମ୍ଭ କରିବା ଅଯୌକ୍ତିକ ।

କିନ୍ତୁ ପ୍ରକୃତରେ ଏହି ସତ୍ୟ ଘଟଣା ବା ଐତିହାସିକ ବର୍ଣ୍ଣନା ସହିତ ସାହିତ୍ୟିକର ସମ୍ବନ୍ଧ କୁମ୍ଭାରର ମାଟି ସହିତ ସମ୍ବନ୍ଧ ପରି । ମାଟି ରହିଚି, ତୁମେ ଦେଖୁଚ, ମୁଁ ଦେଖୁଚି, କୁମ୍ଭାର ଦେଖୁଚି । କିନ୍ତୁ ମାଟିକୁ ଦଳି ସେଥିରୁ ଏତେ ପ୍ରକାର ଜିନିଷ ଯେ କରାଯାଇପାରେ, ତାହାର କଳ୍ପନା କୁମ୍ଭାରର । କୁମ୍ଭାରର ଶିଳ୍ପ ସେହି କଳ୍ପନାରେ । ସେହିପରି ଖାରବେଳର ଇତିହାସ, ଶକୁନ୍ତଳାଙ୍କର ବିଳାସ ଅଥବା ଯୁଧିଷ୍ଠିରଙ୍କର ସ୍ୱର୍ଗ-ଯାତ୍ରା ସମସ୍ତଙ୍କର ସମ୍ପତ୍ତି । ଲକ୍ଷ ଲକ୍ଷ ଲୋକ ତାହା ଜାଣନ୍ତି । କାହାରି ମନରେ କବିଙ୍କର ସେହି ଚିତ୍ର କେବେ କବିଙ୍କ ଆଗରୁ ଲାଗିଚି ? ଗୋଟାଏ ଶବ୍ଦ, ଗୋଟାଏ ଗଳ୍ପ, ଗୋଟାଏ ଘଟଣା, ଶୁଭ ମୁହୂର୍ତ୍ତରେ କବିର କାନରେ ପଡ଼ିଯାଇ ଚଳାବାଣରେ ନିଆଁ ଝୁଲ ପଡ଼ି ନାନା ବର୍ଣ୍ଣର ଫୁଲ ସୃଷ୍ଟି କଲା ପରି କେତେ ପ୍ରକାର ଚିତ୍ର, କେତେ ଅଭିନବ ଲୀଳା, କେତେ ଗୁପ୍ତ ରହସ୍ୟର ଚଳଚ୍ଚିତ୍ର ଯେ ତାଙ୍କ ମନ ମଧ୍ୟରେ ଖେଳାଇନେଇଯାଏ, ସେସବୁ କଳ୍ପନାର କାର୍ଯ୍ୟ । ସେହି କଳ୍ପନାର ବଳରେ ଭାବୁକ ଯେ ସୌନ୍ଦର୍ଯ୍ୟ ଅନୁଭବ କରେ, ଅନ୍ତରର ପ୍ରେରଣା ବଳରେ ସେ ତାକୁ ଭାଷାରେ ପ୍ରକାଶ କଲେ ସେହି ଗୋଟିକ ସାହିତ୍ୟ ହୋଇଗଲା । ଅତଏବ, ସାହିତ୍ୟର ଆରମ୍ଭ କଳ୍ପନାରେ ।

କିନ୍ତୁ ଭାବୁକ ଯଦି କେବଳ ଏହି କଳ୍ପନାର ଚଳଚ୍ଚିତ୍ରଗୁଡ଼ିକୁ ଯେପରି ପାଇଲା ସେହିପରି ଲିପିବଦ୍ଧ କରନ୍ତା, ତା' ହେଲେ ସେ ଛବି ଅଯତ୍ନବର୍ଦ୍ଧିତ କଣ୍ଟକମୟ ଜଙ୍ଗଲର ବର୍ଣ୍ଣବହୁଳ କୁସୁମସମ୍ଭାର ପରି ଦୃଷ୍ଟିପ୍ରୀତିକର ହେଲେହେଁ, ମନ ରୁଚିକର ହୁଅନ୍ତା ନାହିଁ । ମନୁଷ୍ୟର ମନ ସାଧାରଣତଃ ଚାହେଁ ଶୃଙ୍ଖଳା । ଭଲ କର, ମନ୍ଦ କର, ସୁଶୃଙ୍ଖଳିତ । ନହେଲେ ତୁମେ ନିନ୍ଦାର ପାତ୍ର । ଚୋର ଯଦି ଶୃଙ୍ଖଳାର ସହିତ ଚୋରିକରେ, ତା'ହେଲେ ସେ ତା'ର ଚୋରିମାଲ ଭୋଗିବାର ସୁବିଧା ପାଇବ । ଯଦି ଦୈବବଶରୁ ଧରାପଡ଼େ, ତା'ହେଲେ ଅନ୍ତତଃ ଲୋକେ ତାକୁ ବୁଦ୍ଧିମାନ୍ ବୋଲି କହିବେ । କିନ୍ତୁ ଯଦି ସେ ସେହି କାର୍ଯ୍ୟ ଯିମିତି ପାରେ ସିମିତି କରିଯାଏ, ତା'ହେଲେ ସେ ଧରା ତ ପଡ଼ିବ, ତା'ଉପରେ ଲୋକେ ତାକୁ ବୋକା ବୋଲି କହିବେ, ସେହିପରି ଭଲ କାର୍ଯ୍ୟରେ ମଧ୍ୟ । ସେହିପରି ସାହିତ୍ୟରେ ମଧ୍ୟ । ଯେକୌଣସି ମତେ ସାହିତ୍ୟର ବିଷୟକୁ ସାହିତ୍ୟର ସୌନ୍ଦର୍ଯ୍ୟଗୁଡ଼ାକୁ ପାଠକ ସମ୍ମୁଖରେ ଉପସ୍ଥାପିତ କରି ପାରିଲେ ପାଠକ ମୁଗ୍ଧ ହେବ ନାହିଁ, ସାହିତ୍ୟ ସୁନ୍ଦର ହେବ ନାହିଁ । ଅବଶ୍ୟ ମିଲ୍ଟନ୍ 'with ruin upon ruin rout on rout, confusion worse confounded'' ରେ ଗୋଟାଏ ସୌନ୍ଦର୍ଯ୍ୟ, ଗୋଟାଏ ଗାମ୍ଭୀର୍ଯ୍ୟ ଦେଖିପାରିଥିଲେ । କିନ୍ତୁ ସେ ସୁନ୍ଦର ଓ ଗମ୍ଭୀର ହୋଇଥିଲେ ତାଙ୍କ କାବ୍ୟର ସାଧାରଣ ଶୃଙ୍ଖଳାର ତୁଳନାରେ । ଅବଶ୍ୟ ସୁବେଶା ସୁନ୍ଦରୀ ଅଙ୍କବିଳାସୀ ଦୁଷ୍ମନ୍ତ ମହାରାଜାଙ୍କ ଚକ୍ଷୁରେ ଶକୁନ୍ତଳାଙ୍କର ଅଯତ୍ନବିନ୍ୟସ୍ତ ରୂପ ସୁନ୍ଦରତର ଦିଶିଥିଲା, କିନ୍ତୁ ସେ ମଧ୍ୟ ତୁଳନାର ବୈଷମ୍ୟରେ । ସେହିପରି ଲବଣ୍ୟବତୀଙ୍କର ମଧୁଶଯ୍ୟା ପ୍ରତ୍ୟାଗମନ ସମୟର ଶିଥିଳ କୁନ୍ତଳ, ଦନ୍ତକ୍ଷତାଙ୍କିତ ବଦନ ମଣ୍ଡଳ ଇତ୍ୟାଦି ଭଞ୍ଜଙ୍କ ଦୃଷ୍ଟିରେ ସୁନ୍ଦର । କିନ୍ତୁ ସେ ସୌନ୍ଦର୍ଯ୍ୟ ଏହି ବିଶୃଙ୍ଖଳ ବେଶଭୂଷା ପାଇଁ ନୁହେଁ । ଏହି ବିଶୃଙ୍ଖଳତାର ପଛରେ ଯେ ଭାବ, ଯେ ଉତ୍ସାହ ଓ ଯେ ଆମୋଦ, ତାହାର ସ୍ମୃତିରେ । ସବୁବେଳେ ଶୃଙ୍ଖଳାବଦ୍ଧ ରହି ବେଳେବେଳେ ସ୍ୱାଧୀନ ଭାବରେ ମୁକ୍ତ ବାୟୁରେ ବୁଲିବାକୁ ମନହୁଏ । ଏହି ଭାବ କାରଣରୁ ବେଳେ ବେଳେ ଅଯତ୍ନ ବିନ୍ୟସ୍ତ ସୌନ୍ଦର୍ଯ୍ୟ ଦରକାର ହେଲେ ମଧ୍ୟ, ସାଧାରଣତଃ ଶୃଙ୍ଖଳା ହିଁ ମନୁଷ୍ୟର ପ୍ରୟୋଜନୀୟ । ସାହିତ୍ୟରେ ଏହି ଶୃଙ୍ଖଳା ଆଣିବାରେ ନ୍ୟାୟ ଅତ୍ୟନ୍ତ ଆବଶ୍ୟକ । କିପରି ଭାବରେ ସଜାଇ ବିଷୟଗୁଡ଼ିକୁ ଲେଖିଗଲେ ତାହା ପାଠକର ଅନୁମୋଦନ ଲାଭ କରିପାରିବ ବା ଲେଖକର ଉଦ୍ଦେଶ୍ୟ ସିଦ୍ଧି ହୋଇପାରିବ, ତାହାର ବିଚାର ନ୍ୟାୟଶାସ୍ତ୍ର ସାହାଯ୍ୟରେ କରିବାକୁ ପଡ଼େ । ଯେ ସ୍ଥାନରେ ଏହି ନ୍ୟାୟ ବିଚାରର ଅଭାବ ବା ଯେ ସ୍ଥାନରେ ଲେଖକର ମନ ନ୍ୟାୟଶାସ୍ତ୍ର ଗଠିତ ନୁହେଁ, ସେ ସ୍ଥାନରେ ଲେଖା ଯେତେ ସୁନ୍ଦର ଓ ଭାବପ୍ରବଣ ହେଲେ ମଧ୍ୟ ସୁନ୍ଦର ଓ ସଫଳକର୍ମା ହେବ ନାହିଁ । ଏହି କାରଣରୁ ସେଲିଙ୍କ Prometheus unbound ଅପେକ୍ଷା ଟେନିସନ୍‌ଙ୍କର In memorium ବେଶୀ ସୁନ୍ଦର । ପ୍ରକୃତ ପକ୍ଷରେ ଭାବୁକ ସାହିତ୍ୟିକ କ'ଣ ବା ଲେଖେ ? ଗୋଟାଏ ଭାବ,

ଗୋଟାଏ ଶବ୍ଦର ପ୍ରେରଣାରେ ସେ ଏକ ମହାଗ୍ରନ୍ଥ ଲେଖିବାକୁ ପ୍ରୟାସ କରେ, ପିନା ! ଗେଟେ ଥରେ କହିଥିଲେ "Poetry is all very well for those, who have nothing to say'' ଯେଉଁମାନଙ୍କର କିଛି କହିବାକୁ ନାହିଁ ସେମାନଙ୍କୁ କବିତା ବେଶ୍ ସାଜେ । ଶୂନ୍ୟରୁ କଳ୍ପନାର ମୋହନ ମନ୍ତ୍ରରେ ସ୍ୱର୍ଗର ନନ୍ଦନକାନନ ସୃଷ୍ଟିକରିବାର ଚେଷ୍ଟା କଲେ ନ୍ୟାସ୍ତର ଟିକିଏ ସାହାଯ୍ୟ ଅବଶ୍ୟ ଦରକାର । ତେବେ ମୁଁ ଆଗରୁ ଯାହା ସବୁ କହିଯାଇଛି, ସେଥିରୁ ସ୍ପଷ୍ଟ ଜଣାପିବ ଯେ କଳ୍ପନା ସାହିତ୍ୟର ମୂଳ ଏବଂ ନ୍ୟାସ୍ତ କେବଳ ନିମିତ୍ତ ମାତ୍ର । ଉଭୟର ସମ୍ମିଳନରେ ଗୋଟିଏ ସୁନ୍ଦର ପ୍ରାସାଦ ନିର୍ମିତ ହୋଇପାରେ; କିନ୍ତୁ ମୁଁ ଯଦି କହେ ଯେ ଇଟା, ଚୁନ ବା ବାଲି ପ୍ରାସାଦଟି ତିଆରି କରିଚି, ତା' ହେଲେ ମୁଁ ଭୁଲ କହିବି, କରିଚି ବିନ୍ଧାଣି । ଇଟା, ପଥର, ଚୁନ, ବାଲି, କାଠ, ବିନ୍ଧାଣିର କୌଶଳ—ଏସବୁ ନିମିତ୍ତ ମାତ୍ର । ବିଷ୍ଣୁ ସୃଷ୍ଟିର କଳ୍ପନା କଲେ, ବିଶ୍ୱକର୍ମା ସୃଷ୍ଟିଟିକୁ ରୂପ ଦେଲେ ମାତ୍ର । ଏ ସ୍ଥଳରେ ସୃଷ୍ଟି ଅବସ୍ଥିତରେ ବିଶ୍ୱକର୍ମାଙ୍କୁ ଗୋଟାଏ ବିଶିଷ୍ଟ ଆସନ ଦେବା ଯେପରି ଭୁଲ, ସାହିତ୍ୟର ସମାଲୋଚନା କରିବାକୁ ଯାଇ ନ୍ୟାସ୍ତ ଉପରେ କେବଳ ନିର୍ଭର କରି ଲିଖିତ ବିଷୟକୁ Rubbish ବା ଛିଦ୍‌ଭଟ କହିବା ମଧ୍ୟ ସେହିପରି ଭୁଲ । ସମାଲୋଚକର ମନେରଖିବା ଉଚିତ୍, କବି ବା ଭାବୁକ କଳ୍ପନାର କେତେ କଷାଘାତ ଖାଇ, ଜୀବନର କେତେ ନିର୍ଯାତନା ଅନୁଭବ କରି ଗୋଟିଏ କଥା ଲେଖିଚି । ସେ କଥାଟି ଶିଶୁର ପ୍ରଥମ ଉଦ୍ଭେଟି ବାକ୍ୟ ପରି ହୋଇ-ପାରେ, ଖନାର ତରଟଣ୍ଡିଆ ଆବେଗଭରା ଉଚ୍ଚାରଣ ହୋଇପାରେ ବା ଭରତ ମୁନିଙ୍କର ସୁଗାୟନ ହୋଇପାରେ । ଯେକୌଣସି ଦୃଷ୍ଟିରେ ତାହା ସମାଲୋଚକର ସମ୍ମାନ, ଅନୁଧାବନ ଓ ଅନୁଶୀଳନର ଯୋଗ୍ୟ । ଖାଲି ଥରକ ପଢ଼ାରେ ନିଜର ଖାମ-ଖିଆଲ ରୁଚି ଅନୁସାରେ କୌଣସି ଲେଖାକୁ ଫୋପାଡ଼ି ଦେଇ ଯାହା ଇଚ୍ଛା ତାହା ଗୋଟାଏ ମତପ୍ରକାଶ କରି ବସିବା ସମାଲୋଚନାର ଅପବ୍ୟବହାର । ପ୍ରତ୍ୟେକ ସମାଲୋଚକ ରୋମେନ୍ ରୋଲାଣ୍ଡଙ୍କର (ରୋମାଁ ରୋଲାଁ—ଏପରି ମାଗି ଆଣିଲି ଗୁଣିଙ୍କର ପକ୍ଷପାତୀ ମୁଁ ନୁହେଁ; ଫରାସୀ ଭାଷା ମୁଁ ଭଲ ଜାଣେନାହିଁ । ତାର ଉଚ୍ଚାରଣ ରୀତି ମଧ୍ୟ ଜାଣେ ନାହିଁ । ଯାହା ପଢ଼ିଲି ତାହା ଲେଖିଲି ମାତ୍ର) ଚିର ସତ୍ୟ କଥା କେତୋଟି ମନେରଖିବା ଉଚିତ—"A great soul struggles all its lifelong in sorrow to divert your idleness for an hour.'' (ତୁମେ କର୍ମବିରତ, ଅଳସ ଥିବା-ବେଳେ ଘଣ୍ଟାଏ ଖଣ୍ଡେ ତୁମକୁ ଆମୋଦ ଦେବା ସକାଶେ ଜଣେ ମହାମାନବ ଜୀବନତମାମ ଦୁଃଖରେ ଖଟିଛି ।)

ତା' ହେଲେ ମୁଁ ବୋଧହୁଏ ଏ ପର୍ଯ୍ୟନ୍ତ ଯାହା କହିଲି ସେ ସ୍ପଷ୍ଟ ହୋଇଚି । କଳ୍ପନା ସାହିତ୍ୟର ମୂଳ, କଳ୍ପନା ସାହିତ୍ୟର କାରକ । ନ୍ୟାସ୍ତ-ନିମିତ୍ତ କାରଣ ମାତ୍ର ।

ତେବେ ବର୍ତ୍ତମାନ ଦେଖାଯାଉ ସାହିତ୍ୟରେ କଳ୍ପନା କେତେ ଜାଗା ଅଧିକାର କରିପାରେ ଏବଂ ନ୍ୟାୟ କେତେ ଅଂଶ ପାଇଁ ଦାୟୀ ହୋଇପାରେ । ଗୋଟାଏ ଘର ତିଆରି କରିବାକୁ ହେଲେ ଆମ୍ଭମାନଙ୍କର ଦରକାର ହୁଏ କ'ଣ ? ପ୍ରଥମରେ ଘରର plan ବା ମାନଚିତ୍ର ତିଆରି, ଦ୍ୱିତୀୟରେ ଉପାଦାନ ସଂଗ୍ରହ, ତୃତୀୟରେ ଉପାଦାନମାନଙ୍କର ଯଥାବିଧି ସଂଯୋଗ ନିମନ୍ତେ ଉପାୟ ଉଦ୍ଭାବନ, ଚତୁର୍ଥରେ ଉପାଦାନ ସଂଯୋଗ ଓ ପଞ୍ଚମରେ ରୂପମଣ୍ଡନ । ଏହିମାନଙ୍କ ମଧ୍ୟରୁ କିଏ ମୁଖ୍ୟ ଓ ମୂଳ କହିବା ନିଷ୍ପ୍ରୟୋଜନ ।



ନବଭାରତ
୧୯୩୪, ଫିଂକ୍ସ-୧୩୪୧
୧ମ ଖଣ୍ଡ-୩ୟ ସଂଖ୍ୟା
ପୃଷ୍ଠା-୧୬୯

# ଅରସିକ

## ଶ୍ରୀ ଗୋବିନ୍ଦଚନ୍ଦ୍ର ତ୍ରିପାଠୀ, ଏମ୍. ଏ.

କବି କହିଗଲେ ଅରସିକ ପାଖରେ ରସ କଥା କହିବ ନାହିଁ, କାହିଁକନା ସେ ବୁଝିପାରିବ ନାହିଁ, କଥାଟାର ଗୋଟାଏ ଟୀକା ଟିପ୍ପଣୀ ଦରକାର । ଏ ଯେ ପୁରୁଣାକାଳିଆ କବି ଏମିତି କଥାଟା ଲେଖିଗଲେ, ସେଇଟା ଅଧାବଧା ରହିଗଲା । ତା'ଠାରୁ ଆମ ଦେଶୁଆଙ୍କ ଭାଷାରେ 'କାଳୀ ଆଗରେ ମୂଳା ଖେଳାଇବା' ବେଶୀ ସୁନ୍ଦର ଓ ପୂର୍ଣ୍ଣ । ଏଇ ଧରନା, ମତେ ଭାତ ରସ ଅର୍ଥାତ୍ ପେଜ ବା ତୋରାଣି ଭଲଲାଗେ, ଆଉ ହରିଶ୍‌ବାବୁଙ୍କୁ ମାଉଁସ ରସ ବା ସୁପ୍ ଓ ଝୋଳ ଭଲଲାଗେ । ମୁଁ ଯେବେ ସୁପ୍ ଓ ଝୋଳ ଭଲ ନ ପାଇଲି, ତା'ହେଲେ ହରିଶ୍‌ବାବୁ ମୋତେ କହିବେ ଅରସିକ । ଆଉ ହରିଶ୍‌ବାବୁ ପେଜ ବା ତୋରାଣିକୁ ଭଲ ନ ପାଇଲେ, ତାଙ୍କୁ ଅରସିକ କହିବାର ହକ୍ କଣ ମୋର ନାହିଁ ? ଅବଶ୍ୟ ଟେଷ୍ଟ୍‌ଟ୍ୟୁବ୍ ଧରି ଲାବୋରେଟରିର ବିଜୁଳି ପଙ୍ଖା ହାଉଆ ତଳେ ବସି ପରୀକ୍ଷା କରି ଦେଖିଲେ କଣ ହେବ କହିପାରୁ ନାହିଁ । କିନ୍ତୁ ମୁଁ ମୁହେଁ ମୁହେଁ ପଖାଳ ଭାତର ବା ପେଜ ସୋଡ଼ପାର ଓ ମାଉଁସ ସୋରୁଆ ଓ ଝୋଳର ଦୋଷଗୁଣ ବିଷୟରେ ଇମିତି ପାଞ୍ଚପଚିଶ ଲେଖି ଦେଇପାରେ । ଟେଷ୍ଟଟ୍ୟୁବରେ ମାଉଁସ ସୁରୁଆଟା ସରସ ହୋଇପାରେ । କିନ୍ତୁ ଭେକଲି ମଣିଷ ତ ଆଉ ଟେଷ୍ଟଟ୍ୟୁବ୍ ଧରି ଭାଇଟାମିନ୍ ବାହାର କରି ଖାଇବାକୁ ବେଲ ପାଇବ ନାହିଁ । ଭୋକରେ ହାଇଁ ହାଇଁ ହଉଚି ଗୋଟିଏ ଲୋକ । ତାକୁ ତୁମେ ବାଢ଼ିଦେଲ ସୁପ୍, ଫ୍ରାଇ, ରୋଷ୍ଟ, ଟୋଷ୍ଟ, ପୁଡିଙ୍ଗ, ଚପ୍, କଟଲେଟ୍, ପଖାଳଭାତ, ଶୁଖୁଆ ଭଜା, ବାଇଗଣ ପୋଡ଼ା, ଶାଗ ଖରଡ଼ା, ପରିବା ସନ୍ତୁଳା । ସେ ସୁପ୍, ରୋଷ୍ଟ୍ କେବେ ଖାଇନାହିଁ, ସେ କଣ କରିବ ? ସେ ପଖାଳ ଭାତ ଖାଇ ଆସିଚି, ପଖାଳକୁ ହିଁ ଚହ୍ନେ । ସେ ତାକୁ ହିଁ ଗେଫି ଦେଇଯିବ । ଯା ବୋଲି ସେ କଣ ହବ ଅରସିକ, ବା ଯେ ବାଢି ବସିଲେ ସେ ହେବେ ଅରସିକ ? କାଳନ୍ଦୀବାବୁ ଚଡ଼ଚଡ଼ି, ଘଣ୍ଟ, ଝୋଳ, ଝାଲ୍ ଭଲ ପାଆନ୍ତି । ତାଙ୍କ ପୁଷ୍ଟାଶ୍ୱ ଯଦି ତାଙ୍କ ପାଇଁ ସିଝା ମାଉଁସ (Boiled), ଭଜା କୁକୁଡ଼ା (Roast fowl) ଇତ୍ୟାଦି ଠିଆରି କରି ବସେ, ତା'ହେଲେ ସେ କଣ କହିବେ ତାଙ୍କ ପୁଷ୍ଟାଶ୍ୱଟା ରସିକ ? ମୋଟ ଉପରେ କଥାଟା ହେଉଚ୍ଛି ରସିକ କଥାଟାକୁ ଜଣକ ପକ୍ଷରୁ ଦେଖିଲେ ଚଳିବ ନାହିଁ । ରସ କଥା କହିବ ଜଣେ ଆଉ ବୁଝିବ ଓ ଶୁଣିବ ଆଉ ଜଣେ । ଯାହାପାଇଁ ରସକଥାଟା କୁହାଗଲା ସେ ବୁଝିପାରିବା ଭଳି ଭାଷାରେ ଓ ଭାବରେ ଯେବେ କୁହାଯାଏ ତଥାପି ଯେବେ ସେ ବୁଝି ନ ପାରେ ତା'ହେଲେ ତୁମେ

ତାକୁ ଅରସିକ ବୋଲି ଗାଳିଦେଲେ, ଗାଳିଟା ଠିକ୍ ଖାଟିବ । କିନ୍ତୁ ତୁମେ ଯଦି 'କାଳି ଆଗରେ ମୂଳା ଶ୍ଳେଵାଇଲି' ପରି ଗ୍ରାମ ପଧାନ ଆଗରେ ମୂଳ ସଂସ୍କୃତ ଶକୁନ୍ତଳା ନାଟକ ପଢ଼ି ବସ, ଆଉ ସେ ଯେବେ ତାର ରସ ନ ବୁଝିପାରେ, ତା'ହେଲେ ଅରସିକ ହେବ କିଏ ? ତୁମେ ନା ଗ୍ରାମ ପ୍ରଧାନ ?

ପଣ୍ଡିତେ ମାଛ ହାଟକୁ ଗଲେ ମାଛ କିଣିବା ପାଇଁ । ଦେଖିଲେ କେଉଟୁଣୀ ପସରା ମେଲେଇ ବସିଛି । ପଣ୍ଡିତେ ରସିକତା କରି ପଚାରିଲେ, ''ଅୟି ଧୀବର ସୁନ୍ଦରୀ, ଆମ୍ଭେ ତୁମ୍ଭ ଶ୍ରୀହସ୍ତ କମଳରୁ କିଞ୍ଚିତ୍ ମୁଦ୍ରା ବିନିମୟେ, କିଞ୍ଚିତ ମତ୍ସ୍ୟ କ୍ରୟ କରିବା ନିମନ୍ତେ ଅଭିଳାଷୀ ଅଛୁଁ ।'' ଏଥିରୁ କେଉଟୁଣୀ ଯଦି ଭାବେ ଯେ, ଗୋସେଇଁ-ଖିଆ ଗାଡପଶା ବ୍ରାହ୍ମଣଟା ତାକୁ ଗାଳି ଦଉଚି, କି ଅପମାନ କରୁଚି ବୋଲି, ଆଉ ସେଇଆ ଭାବି, ସେ ଯେବେ ଖଣ୍ଡମୂଷା, ନଇଲେ ପନିକ ପାହାର ଉଠାଏ, ତା'ହେଲେ ସେ ହବ ଅରସିକା, ନା ପଣ୍ଡିତେ ହେବେ ଅରସିକ ?

କବି ଓ ଲେଖକ ମନଇଚ୍ଛା ଲେଖିଗଲେ ଚଳିବ ନାହିଁ । ଅବଶ୍ୟ ଯେ ଜନ୍ମକବି, ସେ ଗାଇବ, ଗାଇବା ତାର ସ୍ୱଭାବ, ତାର ଜୀବନ; ଯେତେବେଳେ କବିତା ନିଶା ତାକୁ ଲାଗେ, ସେତେବେଳେ ସେ ମଦୁଆଙ୍କ ପରି ଗୁଡ଼ାଏ ବକି ଯାଏ । ଆଉ ଯାହା ବକେ, ତାହା ହୁଏ ଅସଲ କବିତା । କିନ୍ତୁ ଏଇ କବିତାର ନିଶା ତା ମୁଣ୍ଡରେ ପଶେ କିମିତି ? ଆସେ କାହୁଁ ? କିଏ ଦିଏ ? କବିତାର ନିଶା ପାଣିପବନରେ ଭାସିବୁଲେ ନାହିଁ ଯେ ବିନା କାରଣରେ ଅଜଣାଅଶୁଣା କବି ମୁଣ୍ଡ ଭିତରେ ପଶି ତାକୁ ମାତାଲ୍ କରିଦେବ । ତା'ହେଲେ ଯେ କବି ସେ ସବୁବେଳେ ଭଲ କବିତା ଲେଖିପାରୁଥାନ୍ତା । ଦିନେ ଜଣେ ସାଙ୍ଗ ମୋର ଗପ କରୁଥିଲେ, ରବୀନ୍ଦ୍ରନାଥଙ୍କର ଭଲ କବିତା ଲେଖା ହୁଏ ଗାଡ଼ିରେ ବସି ବୁଲିଲାବେଳେ । କଥାଟା ସତ କି ମିଛ ମୁଁ ଜାଣେନାହିଁ, ତେବେ ତା ଭିତରେ ଗୋଟାଏ ବଡ଼ ସତ ଅଛି । କବିର ମନଟା ବଡ଼ ଭାବବିନୋଦିଆ, ତାର ସେ କଅଁଳ ଶ୍ରେଷ୍ଠ ମନଟି ଭାବ ସମୁଦ୍ରରେ ଥର ଥର ହୋଇ ଭାସି ବୁଲୁଛି । ସେ ଯୋଗ ନିଦ୍ରାରେ ଭାବୁଚି, ଆହା, କି ମଧୁର, କି ସୁନ୍ଦର । ବେଶ୍ ଲାଗୁଚି ତ, ଭଲପାଇବାର ଜିନିଷ ଏକା । ଏହାର ଭିତର ଏପରି, ଦେଖେଁ ଏ ଜିନିଷଟା କିପରି । ମନପୁରା ସ୍ନେହ ସହାନୁଭୂତି ଦେଇ ସେ ଆଖି ମେଲି ଏ ସଂସାରକୁ ଚାହେଁ, କିନ୍ତୁ ଦେଖେ କଣ ? ଏ ସଂସାରଟା ଯେ ଗଢ଼ିଥିଲେ, ତାଙ୍କର ପ୍ରକୃତରେ ସୌନ୍ଦର୍ଯ୍ୟଜ୍ଞାନ ଥିଲା । ଏ ଗଛ, ପକ୍ଷୀ, ଫଳ, ଫୁଲ, ବସନ୍ତ ପବନ, ଚନ୍ଦ୍ରମାରାତି ସବୁ ସୁନ୍ଦର । ଏ ସବୁ ସୁନ୍ଦର ଭିତରେ ଗୋଟିଏ ଗୋଟିଏ ନିତାନ୍ତ ଅସୁନ୍ଦର ଜିନିଷ ରହିଯାଇଚି—ସେ ଏହି ମଣିଷ ଜାତିଟା, ଆଉ ଏଇ ମଣିଷ ଜାତିଟା ମଧ୍ୟରେ ନିତାନ୍ତ ଅସୁନ୍ଦର ଏଇ ରାଜା ଜାତିଟା । ସେଲିଙ୍କ ଆଖିରେ ଏଇ କଥାଟା ଜୋର୍‌ରେ ଆସିଲା । ଏ

ସୌନ୍ଦର୍ଯ୍ୟ ଭଣ୍ଡାର ଭିତରେ ଏ ମଣିଷ ପୋକଗୁଡ଼ାକ ଯେ କିପରି ଘାଲୁଛୁ ବାଲୁଛୁ ହୋଇ ତାକୁ ଅସୁନ୍ଦର କରିପକାଉଛନ୍ତି, ତାହା ଦେଖି ତାଙ୍କ ମନରେ ବଡ଼ ଆଘାତ ଲାଗିଲା । ସେ ମଣିଷଠାରୁ ଯେ ସ୍ନେହ ପ୍ରୀତି ପାଇବାର ଆଶା କରିଥିଲେ ତାହା ପାଇଲେ ନାହିଁ । କେବଳ ଦେଖିଲେ ମଣିଷଙ୍କ ଭିତରେ ଅତ୍ୟାଚାର, ବ୍ୟଭିଚାର, ଘୃଣା ଈର୍ଷା । ଏଇ ହେଲା ତାଙ୍କର ଭାବ ଆଉ ଏଇ ଭାବ ଉପରେ ତାଙ୍କର କବିତା ଗଢ଼ା । ଓ୍ୱାର୍ଡସ୍‌ଓ୍ୱାର୍ଥ ମଧ୍ୟ ସେଇଆ ଦେଖିଲେ । ନଈ କୁଳୁ କୁଳୁ ହୋଇ ବହିଯାଉଚି, ଥିର ବସନ୍ତ ପବନରେ ଫୁଲଗୁଡ଼ିକ ଡାଳେ ଡାଳେ ନାଚିଉଠୁଚି, କହୁ ଗଛର ଛୁପୁଲି ପରଦା ତଳେ ସୁନ୍ଦର ଶ୍ରେଷ୍ଠ ଶ୍ରେଷ୍ଠ ଚଢ଼େଇଗୁଡ଼ିକ କେତେପ୍ରକାର ନାଟତାମସା ଲଗେଇଚନ୍ତି, ପ୍ରକୃତି ହସୁଚି, ପ୍ରାଣପୂର୍ଣ୍ଣ ରୂପ, ମନପୂର୍ଣ୍ଣ ଆନନ୍ଦ । କିନ୍ତୁ ହାୟ ମଣିଷ ମଣିଷକୁ କଣ ନ କରିଚି ? ଦେବତାର କଳା ନେଇ ଜନ୍ମ ହୋଇ ଯେ ସଂସାରର ଅମର ଶିଶୁ, ସେ ମଣିଷମାନଙ୍କର ଏଇ କଂଶ ନିଃଶ୍ୱାସରେ କିପରି ଶୁଖିଶୁଖି କଳାକାଠ ପଡ଼ିଯାଉଛି । ଏଇ ହେଲା ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କର ଭାବ ଏବଂ ଏଇ ଭାବ ଉପରେ ତାଙ୍କ କବିତା ଘର ତିଆରି ।

ପ୍ରକୃତିର ଓ ପୁରୁଷର କୋଟି କୋଟି ଲୀଳା ମଧ୍ୟରୁ କେଉଁ ଲୀଳାଟା ଯେ କବି ନଜରରେ ସବା ଆଗେ ପଡ଼ିବ, ଆଉ ପଡ଼ିଲେ କବି ଯେ ତାକୁ କି ପ୍ରକାରରେ ଦେଖିବ, ତାହା କହି ହୁଏ ନାହିଁ । କିନ୍ତୁ ଗୋଟାଏ ଲୀଳା ଯେ ତା ଆଖିରେ ପଡ଼ିବ, ଆଉ ସେଇଥିରୁ କବି ତାର ଭାବ ନେଇ ମଉଆଲ ହୋଇ ଉଠିବ, ତାହା ନିଶ୍ଚୟ । ଥରେ ଗୋଟାଏ ଭାବ ନେଇ ମଉଆଲ ହୋଇଗଲେ, କବି ଭାବେ ଯେ ସେ ଜଣେ ଆଗକୁହା; ତାର ଅନେକ କଥା ଏ ବିଷୟରେ ସଂସାରର ଲୋକଙ୍କୁ କହିବାକୁ ଅଛି । ସେ ବୁଝାଇ କହିଲେ ବୋଧହୁଏ ଲୋକ ବୁଝିବେ, ଏ ଅନ୍ୟାୟ, ଅତ୍ୟାଚାରର ଗୋଟାଏ ମୀମାଂସା କରି ନେବେ । ସେହି ହେତୁରୁ ସେ ଗାଏ ବା ଲେଖେ । କବିତା କବିତା ପାଇଁ ଲେଖା ହୁଏ—ସେଇଟା ମୂଳ କଥା । କିନ୍ତୁ ମଣିଷମାନଙ୍କୁ ଭଲ କରିବାକୁ ବା ଆନନ୍ଦ ଦେବାକୁ ଯେ ସେ ଲେଖାହୁଏ—ଏ ମଧ୍ୟ ଗୌଣ କାରଣ । କବିର ମଣିଷ ଜାତିକୁ କହିବା ପାଇଁ ଅନେକ କଥା ଥାଏ, ସେହି ହେତୁରୁ ସେ କହେ । ଋଷିମାନେ ମଣିଷଙ୍କ ଭିତରେ ଧର୍ମଭାବ ଆଣିବା ପାଇଁ ଯେପରି ଧର୍ମ ସଙ୍ଗୀତ ଓ ଧର୍ମ ଦର୍ଶନ ଗାଇଯାନ୍ତି, କବି ମଧ୍ୟ ମଣିଷ ମନରେ ଆନନ୍ଦ ଦେବା ପାଇଁ ଓ ତାକୁ ଆହୁରି ଟିକିଏ ଭଲ କରିବା ପାଇଁ ଗାଇଯାଏ । ମଣିଷ ବୋଇଲେ ତ ଏ ସଂସାର ଗୋଟାକଯାକର ମଣିଷ । କିନ୍ତୁ ନଟରାଜଙ୍କର ଏକରଙ୍ଗିଆ ସଂସାରରେ ଏପରି ଏତେ ଭାଷାର ଓ ଏତେ ପ୍ରକାରର ମଣିଷ ଅଛନ୍ତି ଯେ ସମସ୍ତଙ୍କ ପାଇଁ କବି ଲେଖି ପାରିବ ନାହିଁ । ଲେଖିବା ଏକାବେଳେକେ ଅସମ୍ଭବ । ତା ଉପରେ ପୁଣି ମୋ ଜାତି, ମୋ ଦେଶ ବୋଲି ଗୋଟାଏ ମାୟା ଅଛି । ଅବଶ୍ୟ କବି ବା ଭାବୁକ ପକ୍ଷରେ ଜାତି, ଦେଶ, ଗୋଷ୍ଠୀର ମାୟା ରହିବା ଉଚିତ୍

ନୁହେଁ । କବି ଦୃଷ୍ଟିରେ ସବୁ ଜାତି, ସବୁ ଦେଶ, ସବୁ ଗୋଷ୍ଠୀ ଏକ, ଏକ ମଣିଷଙ୍କର ଗୋବର ଖାତ, ନଇଲେ ସ୍ୱର୍ଗପୁଷ୍ପ । କିନ୍ତୁ ସେ ହୁଏନାହିଁ । ରବୀନ୍ଦ୍ରଙ୍କ ଆଖିରେ ଓଡ଼ିଆ ଜାତିଟା ହୀନ, ସେକସ୍‌ପିୟରଙ୍କ ଆଖିରେ ବିଲାତଟା ହିଁ ପୃଥିବୀର ମଉଡ଼ମଣି, ହବା ମଧ୍ୟ ସ୍ୱାଭାବିକ । କବି କବି ହେଲେ ମଧ୍ୟ ରକ୍ତ ମାଉଁସର ଦାନ୍ତଧର ଜନ୍ମ ଲଭେ । ଏଇ ମଣିଷ ସମାଜ ଭିତରେ ବଢ଼ି, ଏଇ ମଣିଷ ସମାଜର ଅଳିଆ ଗଦା ଭିତରୁ ଅନେକ କାଠି-କୁଟା ଗୋଟାଇ ନିଏ । ସେହିହେତୁରୁ କବି ଲେଖେ ନିଜ ଭାଷାରେ ନିଜ ଜାତିର ଲୋକଙ୍କ ପାଇଁ, ତାଙ୍କୁ ବଡ଼ କରିବାକୁ ତାଙ୍କୁ ଟିକିଏ ଅଧିକ ଆନନ୍ଦ ଦବାକୁ । ସେ ଭାଷା ତାର ସ୍ୱାଭାବିକ ଭାଷା । ସେଥିରେ ସେ ଯେପରି ସହଜରେ ଓ ସ୍ୱଚ୍ଛନ୍ଦଭାବରେ ନିଜର ଭାବ, ନିଜର ମନକଥା, ହୃଦୟର ବେଦନା, ପ୍ରାଣର ଆବେଗ କହିପାରିବ, ଅନ୍ୟ ଶିଖା ଭାଷାରେ ସେ ତାହା କରିପାରିବ ନାହିଁ । କୌଣସି କବି, କୌଣସି ଲେଖକ ନିଜ ଭାଷାକୁ ଛାଡ଼ି ଅନ୍ୟ ଭାଷାରେ ଲେଖି ସେ ଭାଷାରେ ନା ଅର୍ଜିନାହାନ୍ତି । ଏହି ହେତୁରୁ କାଳିନ୍ଦୀ ବାବୁଙ୍କର 'ଓଡ଼ିଆରେ ଲେଖିବି କାହିଁକି' ପ୍ରବନ୍ଧଟି ପଢ଼ି ମନକୁ ବଡ଼ ବାଧିଲା । ଭାବିଥିଲି କାଳିନ୍ଦୀବାବୁ ଜନ୍ମକବି । କବିତା ଲେଖିବା ତାଙ୍କର ସ୍ୱଭାବ ଓ ଜୀବନ । ଫଳରେ ଆଶା ରଖିଥିଲି ଯେ ସେ ଓଡ଼ିଆରେ ନ ଲେଖି ରହିପାରିବେ ନାହିଁ, କିନ୍ତୁ ତାଙ୍କର ସେ ପ୍ରବନ୍ଧଟା ଯେବେ ପ୍ରକୃତରେ ତାଙ୍କ ମନକଥା ହୋଇଥାଏ, ସେଇଟା ଯେବେ ସେ ଗୋଟାଏ ମୁହୂର୍ତ୍ତର ପାଗଳାମିରେ ନ ଲେଖିଥାନ୍ତି, 'ତାହେଲେ ଦେଖୁଛି ସେ ପଇସା ପେଇଁ ଲେଖିଥିଲେ, କବିତା ପାଇଁ ନୁହେଁ । ହତଭାଗିନୀ ଓଡ଼ିଶା ପକ୍ଷରେ ଏ କମ ଦୁଃଖ ଓ ଅପମାନର କଥା ନୁହେଁ । ଅବଶ୍ୟ କବି ବଞ୍ଚିବ, କବିର ଗୋଟାଏ ପେଟ ଅଛି । ସେ ପେଟଟା ପୂରିବା ଦରକାର । ତାର ପିଲା ମାଇପ ଅଛନ୍ତି, ସେମାନଙ୍କର ପେଟ ମଧ୍ୟ ପୂରିବା ଦରକାର । କିନ୍ତୁ କବିତା ମଦ ଯେ ପିଇଛି, ତାର ସେ ନିଶାବୋଳା ଆଖିରେ ଏଗୁଡ଼ାକ ବଡ଼ ଜିନିଷ ବୋଲି ଦିଶେନାହିଁ । କି ଜନ୍ମ କବିଟା କେବେ ଦୋତାଲା ତେତାଲା କୋଠା ଉପରେ ଶୋଇ ପ୍ରଣୟିନୀର ଫୁଲଶେଯରେ ଅତର ମହକରେ ପୋଇଲା ପରିବାରଙ୍କ ଗୀତରେ ନିଜକୁ ଭୁଲାଇପାରିଛି ? କାଳିଦାସ ମରିଥିଲେ ବେଶ୍ୟାର ପିଣ୍ଡାରେ, ଓମାର ଜୀବନ ଗୋଟାକଯାକ କଟାଇ ମଲେ ଜଣେ ସାଙ୍ଗର ଭିକ୍ଷା ଉପରେ ନିର୍ଭର କରି, କୀଟସ ମରିଥିଲେ ସୁଦୂର ବିଦେଶରେ ଓମୁଁଅ ପାଣି ଟିକିଏ ନ ପାଇ, ସେଲି ଯେତେଦିନ ବଞ୍ଚିଥିଲେ କୌଣସି ମତେ ଦୁଃଖ କଷ୍ଟ ସାଙ୍ଗ ସାଥିଙ୍କ ଦାନ ଉପରେ ନିର୍ଭର କରି ବିଦେଶରେ ପଡ଼ି ରହିଥିଲେ, ଗୋଲ୍‌ଡସ୍ମିଥ୍ ମଲାବେଳକୁ ତାଙ୍କ ପାଖରେ ପାଞ୍ଚଟା ଟଙ୍କା ମଧ୍ୟ ନ ଥିଲା, ଦୀନକୃଷ୍ଣ ମରିଥିଲେ ଦାରିଦ୍ର୍ୟ ପଞ୍ଚାକ୍ଷର ମନ୍ତ୍ର ଜପ କରି, କବିସୂର୍ଯ୍ୟ ଗାଇଥିଲେ "ଲକ୍ଷ ଯାଚିଥିଲେ କାଞ୍ଚନ କେତେ କି ପାଞ୍ଚପାଣ୍ଡୁ ରାଜା ସୁତେ ହେ. ଆଡ଼ କେ କି କଲି କହ, କାହା କାମକୁମ୍ଭ ନ ପୂରିଛି ତୁମ୍ଭ ଅହେତୁକ ଅନୁଗ୍ରହ ହେ" । ଲେଖି ବସିଲେ ଗୋଟିଏ ପୋଥି ହବ । ଅବଶ୍ୟ କବି ପଇସାର

ଆଶା କରେ, ଭଲ ଖାଇବ, ଭଲ ପିନ୍ଧିବ ବୋଲି ଇଚ୍ଛା କରେ, କିନ୍ତୁ ନ ପାଇଲା ବୋଲି ଅଭିମାନରେ ଲେଖା ସ୍ତବ୍ଧ ହଏ ନାହିଁ, ଓଲଟି ସେ ଯେତିକି ନ ପାଏ, ତାର କବିତା ସେତିକି ଅଭାବର ଶାଣରେ ମାଜି ହୋଇ ଦାଉ ଦାଉ କରି ଜଳିଉଠେ । ସେ ସେତିକି ମନ ଫୁଲାଣିଆ ଗାଏ । କଥାଟା କହିଲାବେଳେ ସେଲିଙ୍କର "Peter Bell the third" ଗୀତଟା ମନେପଡ଼ି ଯାଉଛି । କାଳିନ୍ଦୀ ବାବୁ ଥରେ ସେ ଗୀତଟା ପଢ଼ିବେ କି ?

ତାହେଲେ ଆମେ ଦେଖିଲୁଁ ଯେ ଜନ୍ମ କବି, ସେ ଯେତେବେଳେ ଲେଖେ, ସେ ଲେଖେ ନିଜ ଭାଷାରେ, ଖାଣ୍ଟି ଭାଷାରେ, ହୃଦୟର ପ୍ରାଣର ଭାଷାରେ । କୌଣସି ଚିଆରି ଅସ୍ୱାଭାବିକ ଭାଷାରେ ନୁହେଁ । ତାକୁ କଡ଼ାଗଣ୍ଡା କରି କେତେ ଓଡ଼ିଆ ହବ, କେତେକ ବଙ୍ଗଳା ହବ ବା କେତେ ଅମୁକ ଭାଷା ହବ—ତାର ହିସାବ କରିବା ଦରକାର ପଡ଼େନାହିଁ ସତ, କିନ୍ତୁ ଖାଣ୍ଟି ଓଡ଼ିଆ ଭାଷା ତା ପେଟରୁ, ମନରୁ, ହୃଦୟରୁ ସ୍ୱୟଁ ସ୍ୱୟଁ ବାହାରି ପଡ଼େ । ଗାଳି ମାରିବାର ବୃତ୍ତି ତ ବଡ଼ ଓସାରିଆ । କିନ୍ତୁ ଗାଳିର ସ୍ଥାନ ଏଠାରେ ନାହିଁ । ମୁଁ ତଳେ ଇଂରେଜୀ ଭାଷାରୁ କେତୋଟି ଛନ୍ଦ, ପୁରୁଣା ଓଡ଼ିଆରୁ କେତୋଟି ଛନ୍ଦ, ଆଜିକାଲିକାର ଓଡ଼ିଆରୁ କେତୋଟି ଛନ୍ଦ ନେଇ ତାକୁ କଟାକଟି ହିସାବପତ୍ର କରି ମୋ କଥାଟା ବୁଝେଇ ଦଉଚି । ପାଠକମାନେ ବିଚାର କରନ୍ତୁ ମୁଁ ମିଛୁଆ କି ସତିଆ ।

ମୁଁ ପ୍ରଥମରେ ସେଲିଙ୍କ ଗୀତରୁ ପଦେ ନଉଚି । ସେଲି କାହିଁକି ? ସେଲି ଥିଲେ ଇଂରେଜୀ Romantic କବିତାର ପୁରୋହିତ ଆଉ Mysticismର ଆଗବୋଲା । ଆଜିକାଲି ଓଡ଼ିଆ ସାହିତ୍ୟରେ ଏଇ Romanticism ବା Mysticismର ଗୁଣ ବହୁତ ପଡ଼ୁଚି । ସେହି ହେତୁରୁ ।

(୧) (୨) (୩)
The Fountains mingle with the river
(୪) (୫)
and the rivers with the ocean
The winds of heaven mix forever
(୬)
With a sweet emotion
Nothing in the world is single,

(୭)
All things by a law divine
(୮) (୯)
In one spirit meet and mingle,
Why not I with thine ?

ଏ ପଦଟିରେ ୪୬ଟି ଶବ୍ଦ ଅଛି । ସେଥିରୁ ଚିହ୍ନ ଦିଆ ହୋଇଥିବା ୯ଟି ବିଦେଶୀ ଶବ୍ଦରୁ ଉଧାର ଶବ୍ଦ । ସେ ନ'ଟିରୁ ପୁଣି ୩ଟି ଯଥା ୨ଟି River ଓ ଗୋଟିଏ Spirit ଦେଶୀ ଭାଷା ସହିତ ଏପରି ମିଶି ଯାଇଛି ଯେ ତାକୁ ଦେଶୀ ଶବ୍ଦ କହିବାହିଁ ଉଚିତ । ଦେଶି ଅର୍ଥରେ Anglo Saxon ଶବ୍ଦ ବା Anglo Saxon ଶବ୍ଦରୁ ଉଧାର ଶବ୍ଦ । ତା ହେଲେ ପ୍ରକୃତରେ ବିଦେଶୀ ଧାତୁରୁ ଉଧାର ଶବ୍ଦ ମାତ୍ର ୬ଟି । ୪୬ ରେ ୬ ।

ପୁରୁଣା ଓଡ଼ିଆ ଛନ୍ଦ ବର୍ତ୍ତମାନ ଦେଖାଯାଉ

(୧) (୨) (୩) (୪)
ଦୂତି କର ଧରି ହରି ବୋଇଲେ କଣୋଣି—
(୫) (୬)
ମିତ୍ର ପୂଜ ଆସିଥିଲି ଗଲି ତ ପାସୋରି ।
(୭) (୮)
ଦୂତି ଗୋ, କହିବୁ ବନ୍ଧୁକୁ—
(୯) (୧୦) (୧୧)
କି ଦୋଷରେ ଫିଙ୍ଗିଦେଲି ମଦନ ସିନ୍ଧୁକୁ ।

ଏଥିରେ ୨୧ଟି ଶବ୍ଦ ଅଛି । ଏକୋଇଶିରୁ ୧୧ଟି ସଂସ୍କୃତ ଶବ୍ଦରୁ ଉଧାର ଶବ୍ଦ । କିନ୍ତୁ ଏ ୧୧ଟି ମଧ୍ୟରୁ ୨ଟି ଦୂତି, ୧ ହରି, ୧ ପୂଜ, ୧ ବନ୍ଧୁକୁ, ୧ ଦୋଷରେ ଏହିପରି ୬ଟି ଶବ୍ଦ ଖାଣ୍ଟି ଓଡ଼ିଆ ଭାଷା ସାଙ୍ଗରେ ଏପରି ମିଳି ଯାଇଛି ଯେ ତାକୁ ଖାଣ୍ଟି ଓଡ଼ିଆ ବୋଲି ଧରି ନେବାକୁ ହବ । ଖାଣ୍ଟି ଓଡ଼ିଆ ବୋଇଲେ ଯେ ଭାଷା ଆମେ ଘରେ ଓ ବାହାରେ ମୂଲିଆ ମଜଦୂରମାନଙ୍କ ସଙ୍ଗରେ କଥାବାର୍ତ୍ତା ହେଉଁ । ତା ହେଲେ ପ୍ରକୃତରେ ସଂସ୍କୃତ ଶବ୍ଦ ୨୧ଟି ମଧ୍ୟରୁ ୫ଟି ।

ଆଜିକାଲିର କବିତା ଏଥର ଦିଆଯାଉ

(୧) (୨) (୩)
ଆସିଛି ଭୁବନ ପରେ ଯୌବନ ସରସା
(୪) (୫) (୬)
ଘନ ଗୌରବ ନବ ବରଷା

(୭) (୮) (୯)
ଚହଦଗେ ଉଡ଼ଇ ତା ଘନ ମାଳ ଉରସା ।
(୧୦) (୧୧) (୧୨) (୧୩)
ବଜ୍ର-ତଡ଼ିତ ସୁରେ ମେଘେ ମେଘେ ସଞ୍ଚର
(୧୪) (୧୫) (୧୬)
ଗୁରୁ ଗୁରୁ ଗର୍ଜନେ
(୧୭)
ଦୁରୁ ଦୁରୁ ବର୍ଷଣେ
(୧୮) (୧୯) (୨୦) (୨୧)
କମ୍ପିଲ ଚନ୍ଦ୍ର ମନ ହରଷା ।
(ମାନମାସ୍ଟ ଲେଖକ ମହୋଦୟଙ୍କୁ କୋଟି କୋଟି ସଲାମ)

ଏ ପଦରେ ଅଛି ୩୧ଟି ଶବ୍ଦ । ତା' ମଧ୍ୟରୁ ୨୧ଟି ବିଦେଶୀ ଶବ୍ଦ ଅର୍ଥାତ୍ ୧୮ଟି ସଂସ୍କୃତ ଓ ୩ଟି ବଙ୍ଗଳା । ଏମାନଙ୍କ ଭିତରୁ ୧-ଯୌବନ, ୨-ଗୌରବ, ୩-ନବ, ୪-ମାଳ, ୫-ବର୍ଷଣେ, ୬-ଚନ୍ଦ୍ର, ୭-ମନ ଏପରି ସାତଟି ସଂସ୍କୃତ ଶବ୍ଦକୁ ଜଣାଶୁଣା ଶବ୍ଦ ବୋଲି ଧରିନେଲେ ବାକି ୧୪ଟି ଖାଣ୍ଟି ସଂସ୍କୃତ ଓ ବଙ୍ଗଳା ଶବ୍ଦ—ଯାହାର ଅର୍ଥ ଓଡ଼ିଆ ସାଧାରଣ ବୁଝିପାରିବେ ନାହିଁ । ଅର୍ଥାତ୍ ୩୧ଟି ଭିତରୁ ୧୪ଟି ସଂସ୍କୃତ ଓ ବଙ୍ଗଳା । ଖାଲି ସେତିକି ନୁହେଁ । ଲେଖାରେ ଶବ୍ଦର ସରଳତା ଯଥେଷ୍ଟ ନୁହେଁ । ଲେଖିବାର ଢଙ୍ଗ ମଧ୍ୟ ବଡ଼ ଦରକାର । ପ୍ରତ୍ୟେକ ଜାତିର କହିବାର ଢଙ୍ଗ ଓ ଭାଷା ଅଲଗା । ଆଜିକାଲି ଲେଖାରେ ଲେଖିବା ଢଙ୍ଗଟା ଏକାବେଳେକେ ଓଡ଼ିଆ ନୁହେଁ । ଏଇ ଦୁଇଟି ପଦକୁ ବଙ୍ଗଳାରେ ଅନୁବାଦ କରିବାକୁ ଚେଷ୍ଟା କଲେ ଆପଣମାନେ ଠିକ୍ ବୁଝିପାରିବେ । ଅଭିମନ୍ୟୁଙ୍କ ଲେଖା ଓଡ଼ିଆ । ତାକୁ ବଙ୍ଗଳାରେ ଅନୁବାଦ କରିବା ସହଜ ନୁହେଁ । କିନ୍ତୁ ଆଉ ଗୀତଟି—ସେ ତ ବଙ୍ଗଳା ହିଁ ଅଛି । କବିଙ୍କର ମହାନ୍ ଦୟା ଯେ ସେ ଅନୁଗ୍ରହ କରି 'ଆସିଛି' ଓ 'ଉଡ଼ାଇ' ଏଇ ଯୋଡ଼ିକ ଓଡ଼ିଆ ଭାଷାର ଶବ୍ଦ ଯାହା ବ୍ୟବହାର କରିଛନ୍ତି । ଏ ଲେଖା ଯେବେ ଓଡ଼ିଆ ନ ବୁଝେ, ତାହା ହେଲେ ଓଡ଼ିଆଗୁଡ଼ାକ ଅରସିକ କି ଯେ ଲେଖିଚନ୍ତି ସେ ଅରସିକ ? ମୁଁ କହୁ ନାହିଁ ଯେ କବି ଯେତେବେଳେ ଓଡ଼ିଆରେ ଲେଖି ବସିବେ, ସେତେବେଳେ କଡ଼ାଗଣ୍ଡା ହିସାବ ଲଗେଇ ଏତେ ଭାଗ ଓଡ଼ିଆ ଶବ୍ଦ ରହିବ ବୋଲି ହିସାବ କରି ଲେଖିବେ । ମୁଁ ଖାଲି କହୁଚି ଏତିକି ଯେ ଯେଉଁମାନେ ଓଡ଼ିଆରେ ଲେଖୁଚନ୍ତି ସେମାନେ ଓଡ଼ିଆ ସାହିତ୍ୟ ବୋଲି ଯାହା ଅଛି ତାକୁ ଟିକିଏ ଭଲକରି ପଢ଼ନ୍ତୁ, ଓଡ଼ିଆ ସାହିତ୍ୟର ଢଙ୍ଗ ଓ ଭାଷା ବୁଝିଆଡ଼େ ତାକୁ ଟିକିଏ ଦୟା କରି ଆସ୍ୱାଦ କରନ୍ତୁ, ସଭ୍ୟତାରୁ ଉଚ୍ଚ ପାହାଆରୁ ଟିକିଏ ନଇଁପଡ଼ି ଏ ପଖାଳଖିଆ ଓଡ଼ିଆଗୁଡ଼ାକ କିମିତି

ପୋକଜୋକଙ୍କ ପରି ସାଲୁବୁବାଲୁବୁ ହରିହଚନ୍ଦ୍ର ତାକୁ ଦେଖନ୍ତୁ, ଏ ପୋକଜୋକ-ଗୁଡ଼ାକ ଯେପରି ତାଙ୍କ ଶ୍ରୀମୁଖର ସରସ କଥାଗୁଡ଼ାକ ବୁଝିବେ ତା'ର ଗୋଟାଏ କିଛି ବ୍ୟବସ୍ଥା କରନ୍ତୁ; ତା' ନ ହେଲେ ସେ ଆଦର ପାଇବେ କୁଆଁ ଆଉ ପଇସା ବା ପାଇବେ କେଉଁଠାରୁ ? ଆମେ ଶବ୍ଦ ଲେଖିବୁଁ ସଂସ୍କୃତ, ଆମ ଲେଖାର ଢାଞ୍ଚା ହେବ ବଙ୍ଗଳା, ଆଉ ଲେଖାର ବିଷୟ ହେବ ? ସେ ବହୁଦୂର ବିଲାତର କଥା । ଧରନ୍ତୁ, ସେଦିନ ମୁଁ ଖଣ୍ଡିଏ ମାସିକ ପତ୍ରିକାରେ ଗୋଟାଏ ସାମାଜିକ ନାଟକର ଭୂତ ଦେଖିଥିଲି । ଘଇତା ମାଇପିଙ୍କ କଥା । ଘଇତା ହେଲେ ଖୁବ୍ ଆଧୁନିକ, ଆଉ ମାଇପ କୁଆଡ଼େ ପୁରୁଣା କାଳିଆ ମରହଟ୍ଟି ମହିଳା । ଘଇତା ମାଇପଙ୍କୁ କହିଲେ ଘୃଣା କରି ଅବଶ୍ୟ, ଯେ ତାଙ୍କର ବେଶ ଖରାପ, ଭୂଷା ଖରାପ, ସେ କଥା କହି ଜାଣନ୍ତି ନାହିଁ, ଭଦ୍ର-ଭାବରେ ବ୍ୟବହାର କରି ଜାଣନ୍ତି ନାହିଁ ଇତ୍ୟାଦି ଇତ୍ୟାଦି ଅନେକ କଥା । ଆଉ ମାଇପ—ସେଇ ମରହଟ୍ଟି ମାଇପ ସେ ଅଣ୍ଟାଭିଡ଼ି ବସିଗଲେ ଘଇତାଙ୍କ ସାଙ୍ଗରେ ଯୁକ୍ତିତର୍କ କରିବା ପାଇଁ । ମୁଁ ଆଧୁନିକ କି ମରହଟ୍ଟି କାଳିଆ କହିପାରୁ ନାହିଁ । ତେବେ ଲେଖକଙ୍କଠାରୁ ମୁଁ ୧୫ ବର୍ଷ ବଡ଼ । ଅତଏବ ତାଙ୍କ ଆଖିରେ ମୁଁ ନିଶ୍ଚୟ ମରହଟ୍ଟି । ମୁଁ ଦେଖିଛି ମୋ ମାଇପକୁ ମୁଁ ଯଦି ଏହିସବୁ କଥାର ପଦେ କହିଥାନ୍ତି, ତା' ହେଲେ ସେଦିନ ମା' ଗଙ୍ଗା ଗଦ ଗଦ କରି ବୋହି ଆସି ମୋର ପସରା କେଉଁ ଅତଳ ସମୁଦ୍ରକୁ ଭସାଇ ନେଇ ଯାଇଥାନ୍ତେ, ସବୁ ଯୁକ୍ତିତର୍କ ସେଇଠାରେ ଶେଷ ପାଇଥାନ୍ତା । କାରଣ ନାହିଁ ପାଠପଢ଼ୁଆ ଷୋଡ଼ଶୀ ବୋହୂ ମନର କାଇଦା କଟକଣା ଯାଠାରୁ ଅଲଗା କି ନୁହେଁ । ନିଜର ବ୍ୟକ୍ତିଗତ ଜ୍ଞାନ କିଛି ନାହିଁ । କିନ୍ତୁ କେତେଗୁଡ଼ାଏ ଏଣ୍ଟୁତେଣ୍ଟୁ ପଢ଼ିଛି ଇଂରେଜିରେ, ଫ୍ରେଞ୍ଚରେ, ବଙ୍ଗଳାରେ ଓ ହିନ୍ଦିରେ । କୌଣସିଠାରେ କିନ୍ତୁ ଏପରି କଥାଟିଏ ପଢ଼ିନାହିଁ । ଫଳରେ ଏ କଥାଟାରେ ରସ ମୁଁ ବୁଝିପାରିଲି ନାହିଁ । ରସିକ କିଏ ଓ ବେରସିକ କିଏ—ଆପଣମାନେ ହିଁ ବୁଝିନିଅନ୍ତୁ । ତା' ହେଲେ ସଂସ୍କୃତ ଶବ୍ଦ, ବଙ୍ଗଳା ଢାଞ୍ଚା ଓ ବିଲାତି କଥା—ଏ ତ୍ରିନାଥ ମେଳାର ରସ ବଗୁର ଓଡ଼ିଆ ବୁଝେ କିପରି ? ଆଉ ଏ ଲେଖାର ଉଦ୍ଦେଶ୍ୟ କ'ଣ ? ଲୋକଙ୍କୁ ଉନ୍ନତ କରିବା, ଲୋକଙ୍କ ମନରେ ଭଲ ରୁଚି ଓ ବିଶୁଦ୍ଧ ଆନନ୍ଦ ଆଣିଦେବା ତ ? କିନ୍ତୁ ସେ ଯେବେ ଲୋକଙ୍କ ଭାଷାରେ ନ ହେଲା, ତା' ହେଲେ ସେ ଉଦ୍ଦେଶ୍ୟ ପୂର୍ଣ୍ଣ ହେବ କିପରି ? ଯଦି ଲେଖାର ଉଦ୍ଦେଶ୍ୟ ପଇସା ରୋଜଗାର କରିବା ହୁଏ, ତା' ହେଲେ ପଇସା ବା ଆସିବ କୁଆଡ଼ୁ ? ରମେଶର ଦୋକାନ ସଜେଇଛନ୍ତି । ଓଡ଼ିଆ ଲୋକଙ୍କର ମୋଟା ଖଦୀ ଅଳ୍ପ ପଇସାରେ ଦରକାର, ସେ ଯେବେ ତାକୁ ନ ରଖି ଖାଲି ସୂକ୍ଷ୍ମ ଲୁଗାଗୁଡ଼ାଏ ଘିନି ବସନ୍ତି—ତା' ହେଲେ ତାଙ୍କର ଲାଭ ଆସେ କେଉଁଠାରୁ ? ଲୋକେ ଯଦି ପସନ୍ଦ ନ କରି ଅନ୍ୟ ଦୋକାନକୁ ଯାନ୍ତି, ଆଉ ସେଥିରେ ଯଦି ତାଙ୍କର କ୍ଷତି ହୁଏ, ତା' ହେଲେ ସେଥିପାଇଁ ଦାୟୀ କିଏ—ତାଙ୍କ ବୋକାମି, ନା ଲୋକଙ୍କ ଦାରିଦ୍ର୍ୟ ?

ଆଉ ଗୋଟାଏ କଥା ବଡ଼ ବେଶୀ ଶୁଣାଯାଏ ଆଜକାଲି । ସେ ମହାଭାରତ ଜାତୀୟତା । ଭାରତର ସବୁ ଜାତି ଏକା ଭାଇ । ଅତଏବ ଏ ଦେଶ, ସେ ଦେଶ, ଏ ଭାଷା, ସେ ଭାଷାର କଥା ଉଠାଇବା ଶ୍ଳେଷ୍ଟଲୋକର ଚିନ୍ତା । ରାଜନୀତିରେ ଏ ଭାବ କେତେଦୂର ଦରକାର ଓ ମଙ୍ଗଳ, ତା' ରାଜନୀତିବାଲାମାନେ ଜାଣିଥିବେ । ଏ ଲେଖାଗୁଡ଼ାକ ସାହିତ୍ୟ ବିଷୟରେ । ରାଜନୀତି ପାଇଁ ନୁହେଁ । ତେବେ ଏଇ ମହାଭାରତ ଜାତୀୟତା କଥାଟା ଶୁଣିଲା ବେଳେ ମୋର ପିଲାଦିନଶିଖା ଗୋଟାଏ ଗୀତ ମନେପଡ଼ିଯାଏ ।

ତୁ ବୋଲୁ ଥାଉ ମୋର ମୋର,
ସେ ନ ବୋଲେ ମୋର
ତୁ ଶେଯୁଥାଉ ପୀରତି ଲତା,
ସେ କାଟୁଥାଏ ଚେର ।

କିନ୍ତୁ ଓଡ଼ିଆ ଭାଷା ଓ ଓଡ଼ିଆ ସାହିତ୍ୟର କଥା ପଡ଼ିଲାବେଳେ ରାଜନୀତିର କଥା ତା ଭିତରକୁ ପଶିବ କିଆଁ ? ତା' ଘୁଇ ବା ମାଡ଼ିବ କିଆଁ ? ଅବଶ୍ୟ ସାଧାରଣ କେତେଟା ଘଟଣାରୁ ଓଡ଼ିଶାରେ ଏ ବିଷ ଯେ ପଶିଲାଣି ତାହା ମୁଁ ବୁଝିପାରୁଚି । ସାହିତ୍ୟ ସମସ୍ତଙ୍କ ପାଇଁ । ଜାତିର ସବୁ ଦଳ ସେଥିରେ ପଶିପାରିବା ଉଚିତ । ଯେଉଁ-ମାନେ ସାହିତ୍ୟ ଭିତରେ ଦଳଗତ ଓ ଜାତିଗତ ସମସ୍ୟା ଆଣୁଛନ୍ତି—ସେମାନେ ସମସ୍ତେ ବଡ଼ ଲୋକ, ମାନ୍ୟଗଣ୍ୟ ଲୋକ, ପୃଥିବୀ ସାହିତ୍ୟର ଇତିହାସ ଜାଣନ୍ତି ବୋଧହୁଏ; ଅତଏବ ସେମାନଙ୍କ କଥାରେ କଥା କହିବା ମୋ ଭଳି କ୍ଷୁଦ୍ରଜୀବ ପକ୍ଷରେ ବୋଧହୁଏ ଅନେଇ ଜବରଦସ୍ତି । ମୁଁ ଦି' ଚାରି ଅକ୍ଷର ପଢ଼ିଚି କି ନା ? ସେଇ ହେତୁରୁ ନ କହି ରହିପାରୁ ନାହିଁ । ଏ ବଡ଼ ଲୋକମାନଙ୍କ ହାତରେ ଗୁଣ୍ଟ ଅଛି । ଗୁଣ୍ଟ ଯାହା ହାତରେ ଅଛି, ସେ କିଛି ନ ଜାଣିଥିଲେ ମହାପଣ୍ଡିତ, ତା'ର ଘରେ ଖୁଦକଣିଟିଏ ନ ଥିଲେ ମଧ୍ୟ ବଡ଼ ଧନୀ । ଗୁଣ୍ଟ ମାଡ଼ରେ ମୋ ପିଠି ଫଟାଇପାରନ୍ତି । କିନ୍ତୁ ପିଠି ଫଟା ଭୟରେ ଯାହା ସତ ବୋଲି ଭାବେ, ତାକୁ ମିଛ ବୋଲି କହିବ, ଯାହା ଅନ୍ୟାୟ ବୋଲି ଭାବେ, ତାକୁ ନ୍ୟାୟ କହିବ—ସେ ଉଚ୍ଚ ପାହିଆକୁ ମୁଁ ଏ ପର୍ଯ୍ୟନ୍ତ ଆସିନାହିଁ । କଥା ହେଉଚି କୌଣସି ଦେଶରେ ଓ କୌଣସି ଜାତିରେ ସାହିତ୍ୟଟା ଦଳଗତ ରାଜନୀତିର ବିଷୟ ହୋଇପାରେ ନାହିଁ, କି ଦଳଗତ ବିଷୟ ହୋଇ ସାହିତ୍ୟ କୌଣସି ଯୁଗରେ ଉନ୍ନତି କରିପାରେ ନାହିଁ, ଅବଶ୍ୟ ଡ୍ରାଇଡେନ ତାଙ୍କ ରାଜନୀତି ଦଳର ହୋଇ କେତେଗୁଡ଼ାଏ କଳା ସାହିତ୍ୟ ଲେଖିଚନ୍ତି । କିନ୍ତୁ ସେଗୁଡ଼ିକ ଇଂରେଜ ସାହିତ୍ୟରେ ସେପରି ଉଚ୍ଚ ସ୍ଥାନ ପାଇନାହିଁ କି ସେ ଯୁଗରେ ଉଚ୍ଚ ସାହିତ୍ୟ ମଧ୍ୟ ହୋଇନାହିଁ । ୟୁଭେନାଲ, ଭଲ୍‌ଟେଆର, ସ୍ୱିଫ୍ଟ, ଆଡ଼ିସନ, ଷ୍ଟିଲ୍, ସେଲି, ବାଇରନ୍, ମଣ୍ଟେସ୍କିଅରେ, ଅସ୍କାର ଓ୍ୱାଇଲ୍ଡ ପ୍ରଭୃତି ସାହିତ୍ୟ ଲେଖି ତାଙ୍କ ସାହିତ୍ୟଗତ ମତ ଲାଗି ଦେଶରେ

ବହୁତ ନିନ୍ଦା ପାଇଥିଲେ, ଜେଲ ଯାଇଚନ୍ତି, ଦେଶରୁ ତଡ଼ା ପାଇଚନ୍ତି । କିନ୍ତୁ ସେ ଦଳଗତ ଲେଖା ନୁହେଁ । କୌଣସି ଦଳ ବିଶେଷର ବିରୋଧରେ ତାହା ଲେଖା ହୋଇପାରିଥାଏ, କିନ୍ତୁ କୌଣସି ଦଳବିଶେଷର ସପକ୍ଷରେ ତାହା ଲେଖା ହୋଇ ନାହିଁ । ସେମାନେ ରାଜନୀତି ନେଇ ଲେଖି ନାହାନ୍ତି । ତାଙ୍କ କାଳର ମନୁଷ୍ୟ ସମାଜ ଭିତରେ ଯୁସବୁ ଅଲିଆ ପୋତରା ଜିନିଷ ଥିଲା, ତାହାକୁ ନେଇ ଲେଖିଚନ୍ତି । ତାଙ୍କର ମତ ଭୁଲ ହୋଇପାରେ; ସେ ଯୁ ପନ୍ଥା ଦେଖେଇଚନ୍ତି ସେ ଠିକ୍ ନ ହୋଇପାରେ; କିନ୍ତୁ ସେମାନେ ଯେ ଭଲ କବିତା ଲେଖିଚନ୍ତି ଆଉ ସେଥିପାଇଁ ଯେ ସେମାନେ ପୂଜ୍ୟ, ଏ ବିଷୟରେ କୌଣସି ଦଳଗତ ମତଭେଦ ନାହିଁ ।

## ଅରସିକ

### ( ପୂର୍ବାନୁବୃତ୍ତି )

ଏହି ସ୍ଥାନରେ ଲୋକପ୍ରିୟ ସାହିତ୍ୟ, ଲୋକପ୍ରିୟ ଆଳମାଳିକା ଓ ବହୁବିକା ସାହିତ୍ୟ ମଧ୍ୟରେ କ'ଣ କ'ଣ ପ୍ରଭେଦ କହିବା ଉଚିତ । ଭାବିଥିଲି ଏ ସହଜ କଥାର ଟିକା ଟିପ୍‌ପଣୀ ଦରକାର ହବ ନାହିଁ । କିନ୍ତୁ ଦେଖୁଚି ଦରକାର । ଆମେ ଶୁଣିଥିଲୁଁ ଏକା ଧବଳେଶ୍ୱର କଳାକୁ ଧଳା କରିପାରିଥିଲେ । ପରେ ପୁଣି ଶୁଣିଲି ଯେ ଆମ ଓକିଲ-ବାବୁମାନେ ଯୁକ୍ତିତର୍କ ବଳରେ କଳାକୁ ଧଳା କରିପାରନ୍ତି । ଏବେ ଦେଖୁଚୁ ଆମ ସାହିତ୍ୟ ସମାଲୋଚକମାନେ ମଧ୍ୟ ଅର୍ଥରେ ଅନର୍ଥ ଘଟାଇ ପାରନ୍ତି । ମୁଁ "ମିଛ କଥା"ରେ କହିଥିଲି ଲୋକପ୍ରିୟ ସାହିତ୍ୟ ଓ ଲୋକପ୍ରିୟ ଆଳମାଳିକା ମଧ୍ୟରେ ବହୁତ ପ୍ରଭେଦ । ଆଉ ସେ ପ୍ରଭେଦ ବିଷୟ ନେଇ, ଭାଷା ନେଇ ନୁହେଁ । ସହଜ, ସରଳ, ସାଧାରଣ ବୋଧ ଭାଷାରେ ଯେଁ ସାହିତ୍ୟ ଲେଖାଯାଇ ପାରେ ତାହାର ଉଦାହରଣ ଫକୀର ମୋହନ, ଗୋପବନ୍ଧୁ, ଗୋଦାବରୀଶ, ଗୋପାଳଚନ୍ଦ୍ର, ଲକ୍ଷ୍ମୀକାନ୍ତ ଇତ୍ୟାଦି ।

କେହି କେହି ପଚାରନ୍ତି ସହଜ ଓଡ଼ିଆ ଭାଷା କ'ଣ ? ଏଇ ତ ସହଜ ସରଳ ଓଡ଼ିଆ ଭାଷା । ଭାଗବତର ନିଗୂଢ଼ ତତ୍ତ୍ୱ କଥାଠାରୁ ଆରମ୍ଭ କରି ଉପନ୍ୟାସ, ଗଳ୍ପ, ଦେଶପ୍ରିୟର ଗୀତ ସବୁ ଏ ଭାଷାରେ ଲେଖାଯାଇ ପାରେ । ଆଉ ଏ ସାହିତ୍ୟ ଯେ ଲୋକପ୍ରିୟ ସାହିତ୍ୟ ତାହା ଓଡ଼ିଶାର ସବୁ ଶ୍ରେଣୀର ପାଠକ ମାନିଚନ୍ତି । ବୈଷ୍ଣବ ପାଣି, କୃଷ୍ଣବାବୁ ଇତ୍ୟାଦିଙ୍କ ଲେଖା ଲୋକପ୍ରିୟ ଆଳମାଳିକା । କାରଣ ଏଥିରେ ନାହିଁ ସାହିତ୍ୟର ଉନ୍ନତ ଭାବ, ହୃଦୟର ସ୍ପନ୍ଦନ, ଅନୁଭୂତିର କମ୍ପନ । ଉଭୟ ଭାଷା ଏକା ହୋଇପାରେ, କିନ୍ତୁ ଭାବ ଓ ବିଷୟ ନେଇ ଗୋଟାଏ ଆଳମାଳିକା ଓ ଗୋଟାଏ

ସାହିତ୍ୟ । ସେହିପରି ବହୁବିକା ସାହିତ୍ୟ ଓ ଲୋକପ୍ରିୟ ସାହିତ୍ୟ ମଧ୍ୟରେ ପ୍ରଭେଦ ରହିଛି । ଧରନ୍ତୁ ଇଂରାଜୀରେ Edgar Wallace, Philip Oppenheim, Sapper ଇତ୍ୟାଦିଙ୍କ ଲେଖା । ସେ ହେଲା ବହୁବିକା ସାହିତ୍ୟ । ସେଥିରେ ଉଚ୍ଚଧରଣର କଳ୍ପନା, ଅନୁଭୂତିର ସ୍ପନ୍ଦନ ବା ସତ୍‌ଭାବର ଆବେଗ ନାହିଁ । ରହିବା ପାଇଁ ଲେଖକ ମଧ୍ୟ ଚେଷ୍ଟା କରିନାହାନ୍ତି । ତାଙ୍କର ଉଦ୍ଦେଶ୍ୟ ହେଉଛି, ପାଠକର ମୁଣ୍ଡ କାମ କରି କରି ଯେତେ-ବେଳେ ହାଲିଆ ହୋଇ ପଡ଼େ, ସେତେବେଳେ ସହଜ ଭାଷା ଓ ବିଷୟ ଗୋଟାଏ କିଛି ପଢ଼ି ମନକୁ ଆନମନା କରିନେବା, ବିଷୟର ଉତ୍ତେଜନାରେ ତାକୁ ମୁହୂର୍ତ୍ତିକ ପାଇଁ ଭୁଲାଇ ରଖିବା । ଏ ଜାତୀୟ ସାହିତ୍ୟ ପଇସା ପାଇଁ ଲେଖା ହୁଏ । ସବୁଦିନିଆ ସାହିତ୍ୟ ଭିତରେ ଏହାର ସ୍ଥାନ ନାହିଁ । ଏ ବହିର କାଟତି ବେଶୀ ହେବା ସ୍ୱାଭାବିକ । କିନ୍ତୁ ସ୍ତା ବୋଲି ତାକୁ କେହି ଲୋକପ୍ରିୟ ସାହିତ୍ୟ କହିବା ଠିକ୍ ହେବ ନାହିଁ । Milton ଲୋକପ୍ରିୟ କବି; ସେହିପରି ଟେନିସନ୍ ଓ ଅନ୍ୟାନ୍ୟ କବିମାନେ । ଏମାନଙ୍କ ଲେଖାର କାଟ୍‌ତି ସେତେ ନୁହେଁ । ହୋଇପାରେ ନାହିଁ । ସ୍ତାଙ୍କର କାଟ୍‌ତି ବେଶୀ ନାହିଁ ବୋଲି ଏମାନେ ଲୋକପ୍ରିୟ ସାହିତ୍ୟିକ ନୁହନ୍ତି ବୋଲି କହିବା ବିଡ଼ମ୍ବନା । ସେମାନଙ୍କର କାଟ୍‌ତି ନ ହୋଇପାରେ, ସେମାନଙ୍କୁ ଯେ ପଢ଼ିଛି ସେ ମୁଗ୍‌ଧ ହେଉଛି । ଏଇ ହେଲା ଲୋକପ୍ରିୟ ସାହିତ୍ୟର ମାପକାଠି । ଆମର ନୂଆ ଲେଖାଳିମାନେ ଉଦାହରଣ ଦେଇ ବସିବେ—ଆମ ଲେଖା କରେ ପସନ୍ଦ କରିଥିଲେ, ଆଗ୍ନେୟ ପସନ୍ଦ କରନ୍ତି, ମହାପାତ୍ରେ ଭଲପାଆନ୍ତି, ରାଉତରାଏ ପ୍ରଶଂସା କରନ୍ତି । ତା' ହେଲେ ଆମ ସାହିତ୍ୟକୁ ଲୋକପ୍ରିୟ କୁହା ନ ଯିବ କାହିଁକି ? କିନ୍ତୁ ବୁଝିବା ଉଚିତ, କରେ, ଆଗ୍ନେୟ, ମହାପାତ୍ରେ ଓ ରାଉତରାଏଙ୍କ ଛଡ଼ା ଏ ଦେଶରେ ହଜାର ହଜାର ପାଠୁଆ ଅଛନ୍ତି, ଯେଉଁମାନେ ସଂସ୍କୃତରେ, ଇଂରାଜୀରେ, ବଙ୍ଗଳାରେ, ହିନ୍ଦିରେ ଯେ ଭଲ ଭଲ ସାହିତ୍ୟ ଲେଖା ହଉଛି ତାକୁ ବୁଝନ୍ତି, ପଢ଼ନ୍ତି ଓ କୃତ୍ୟାକୃତ୍ୟ ହୁଅନ୍ତି । ସେମାନେ ଯେବେ ଆଜିକାଲିକା ଓଡ଼ିଆ ଲେଖାରୁ ଆନନ୍ଦ ନ ପାଆନ୍ତି ତା' ହେଲେ ସେଥିପାଇଁ କ'ଣ ଦୋଷୀ ସେଇମାନେ ? ତା' ହେଲେ ମଧ୍ୟ କ'ଣ ଆଜି କାଲିର ଲେଖାକୁ ଲୋକପ୍ରିୟ କହିବାକୁ ହବ ? ଅବଶ୍ୟ ଆଜିକାଲି ଲେଖା ଭିତରୁ ଗୋଟାଏ ଅଧେ କାହିଁ କଦବା ଯେ ଭଲ ଲେଖା ନ ବାହାରୁଛି ସେ କଥା ମୁଁ ଅସ୍ୱୀକାର କରୁନାହିଁ । ଆଜିକାଲି ଲେଖାର ଅନେକ ଭଲ ଗୁଣ ଅଛି । ସେ କଥା ମାନୁଛି । ସେଥିରେ ଅଛି ମାର୍ଜିତ ରୁଚି, କାନକୁ ଭଲ ଲାଗିଲା ଭଳି ପଦ ଓ ପାଦ, ସୁନ୍ଦର ଭାବ ଇତ୍ୟାଦି ଇତ୍ୟାଦି । କିନ୍ତୁ ପ୍ରାଣ ଯାହା ଦରକାର କରେ ତାହା ସେଥିରେ ନାହିଁ, ଅନ୍ତତଃ ପନ୍ଦର ପଣରେ ନାହିଁ । ସୁନ୍ଦର କରି ସଜେଇ ରଖି କୁଣ୍ଢେଇଟିଏ ନେଇ କେହି ଚିର ଜୀବନ ସନ୍ତୁଷ୍ଟ ରହିପାରେ ନାହିଁ । ଦଣ୍ଡିକର ଖେଳ ସାଥି ସେ ହୋଇପାରେ, କିନ୍ତୁ ଲୋଡ଼ା ପ୍ରାଣ, ଜୀବନ । ମୋର ଦରକାର, ମୋର ଖେଳର ସାଥି ମୋ ସାଙ୍ଗରେ ଖେଳିବ, ମୋ ସୁଖ ଦୁଃଖରେ ଭାଗୀ

ହେବ, ମୁଁ ଗୀତ ଗାଇଲେ ସେ ପାଳଧରିବ, ମୁଁ କାନ୍ଦିଲେ ସେ ବାହୁନା ଧରିବ । ଆଜି-କାଲି ସାହିତ୍ୟରେ ଏପରି ଖେଳର ସାଥି କେତେ ମିଳେ ? ଭାବ ଅଛି, ରୁଚି ଅଛି, ସଭ୍ୟତା ଅଛି, ଲାଳିତ୍ୟ ଅଛି, ଛନ୍ଦ ଅଛି-ସବୁ ଅଛି, ତଥାପି ଲୋକଙ୍କୁ ଏ କବିତା ବା ଲେଖା ନିର୍ଜୀବ ପରି ଲାଗେ କାହିଁକି ? ତାହାର କାରଣ, ଏଥିରେ ନାହିଁ ସହୃଦୟତା, ନାହିଁ ଓଡ଼ିଆର ସୁଖ ଦୁଃଖରେ ସମବେଦନା । ଏ ଯେପରି ଖେଳକାଳ ପେଟ ଗଣିବ ଓଡ଼ିଆଙ୍କୁ ବଙ୍ଗାଳିବାବୁଙ୍କର ଦରୋଟି ଓଡ଼ିଆରେ ଆଶ୍ୱାସନା, କିମ୍ବା ସାହେବଙ୍କ ଟୁଣ୍ଡା ଓଡ଼ିଆରେ ସମ୍ବର୍ଦ୍ଧନା । ସେଥିରେ ଓଡ଼ିଆର କି ଲାଭ ? ଓଡ଼ିଆ ସେଥିରେ କ'ଣ ବୁଝିବ ? କି ଆଶ୍ୱାସନା ପାଇବ ?

ଆମର ଲେଖକମାନେ କହନ୍ତି ଏବର ଓଡ଼ିଆ ଜାତି ଅଶିକ୍ଷିତ, ସେଇ ହେତୁରୁ ତାଙ୍କ ଲେଖାର ସୌନ୍ଦର୍ଯ୍ୟ ସେମାନେ ବୁଝିପାରୁନାହାନ୍ତି । ଭବିଷ୍ୟତରେ ଓଡ଼ିଆ ଜାତି ଯେ ହେବ ସେ ବୁଝିବେ । ଏତେ ବଡ଼ କଥାଟାଏ କିପରି ଯେ ଏପରି ପାଠୁଆଙ୍କ ତୁଣ୍ଡରୁ ଓ ମୁଣ୍ଡରୁ ବାହାରିପାରେ, ତାହା ମୁଁ ଏପର୍ଯ୍ୟନ୍ତ ବୁଝିପାରିଲି ନାହିଁ । ଭବିଷ୍ୟତରେ ଠିକ୍ କ'ଣ ହବ କେହି ବୋଧହୁଏ କହିପାରିବ ନାହିଁ । ତେବେ ବର୍ତ୍ତମାନ ଯେପରି ଅତୀତ ଉପରେ ତିଆରି, ଭବିଷ୍ୟତ ସେହିପରି ବର୍ତ୍ତମାନ ଉପରେ ଗଢ଼ା । ବର୍ତ୍ତମାନର ରତ୍ନଚୀରି, ଭବିଷ୍ୟତର ମହାନଦୀ । ଭବିଷ୍ୟତକୁ ଯେ ଗୋଟାଏ ନୂଆ ଓଡ଼ିଆ ଜାତି କୁଆଡ଼ୁ ସ୍ୱର୍ଗରୁ ଖସିପଡ଼ିବେ—ଏ ଆଶା କରିବା ବିଡ଼ମ୍ବନା । ଏଇ ଓଡ଼ିଆ ଜାତି ବଢ଼ି ବଢ଼ି ଭବିଷ୍ୟତରେ ହାତୀ ହୋଇପାରନ୍ତି, ନ ହେଲେ ଛୁଞ୍ଚି ଛୁଞ୍ଚି ମୂଷା ହୋଇପାରନ୍ତି । ଚସରଙ୍କ ସମୟର ଇଂରେଜ ଜାତି ଓ ସେମାନଙ୍କ ସମୟର ଇଂରେଜ ଜାତି—ଉଭୟ ମଧ୍ୟରେ କିଛି ମାତ୍ର ପ୍ରଭେଦ ଅଛି କି ? ଅବଶ୍ୟ ବାହାର ରୁଚି, ପୋଷାକପତ୍ର, ରଙ୍ଗଢଙ୍ଗରେ ପ୍ରଭେଦ ଅଛି ଓ ହବ । କିନ୍ତୁ ଭିତରର ଅସଲ ଜିନିଷଟା ଯାହାଥିଲା ସେଇଆ ଅଛି । ସେହିପରି ଖୁଲୁରୁ ଖୁଜୁରିଆ, ସେହିପରି କୌଣସି କଥାରେ ଶାନ୍ତ ନାହିଁ, ସେହିପରି ଗୋଟାଏ କଥାକୁ ଧରିଲେ, ତାକୁ ସହଜରେ ଛାଡ଼ିବେ ନାହିଁ । ସେହିପରି ବିଦେଶୀଙ୍କ ପ୍ରତି ସନ୍ଦେହ—ସବୁ ସେହିପରି ଅଛି । ଟିକିଏ ମୁଣ୍ଡ ଭିତରଟା ଉଖାରି ଭାବିଲେ, ଯେ କେହି ବୁଝିପାରିବ ଯେ ଭବିଷ୍ୟତର ଓଡ଼ିଆ ଜାତି ଆଜିକାଲି ଲେଖକଙ୍କର ସ୍ୱର୍ଗଧାମ ହୋଇ ପାରେନାହିଁ । ଭବିଷ୍ୟତର ଓଡ଼ିଆ ଏଇ ତୁମ ମୋ ପରି ଗୁଡ଼ାଏ ପାଠ ପଢ଼ିବେ ତ ? ଆଜିକାଲି କମ୍ ଲୋକ ପଢ଼ୁଥିଲେ, ସେତେବେଳେ ଅବା ବେଶୀ ଲୋକପଢ଼ିବେ । କିନ୍ତୁ ଏଇ ପାଠ ତ ? ଯୁ ଇଂରେଜ ଓ ବଙ୍ଗଳା ସାହିତ୍ୟ ପଢ଼ି ଆଜିକାଲିକା ଲେଖକମାନେ ଆଜିକାଲିକା ଲେଖାକୁ ନାହିଁ-ନଥିବାର କହୁଚନ୍ତି, ସେଇ ଇଂରେଜ ଓ ବଙ୍ଗଳା ସାହିତ୍ୟ ପଢ଼ି ପୁଣି ପଞ୍ଚାଏ ଆଜି-କାଲି ସାହିତ୍ୟକୁ ଭାଷା ଦିଗରୁ ନାପସନ୍ଦ କରୁଚନ୍ତି । ଆଉ ସେଇ ଇଂରେଜ ଓ ବଙ୍ଗଳା ସାହିତ୍ୟ ପଢ଼ି ଯେ ଭବିଷ୍ୟତ ଓଡ଼ିଆ ତିଆରିହେବେ, ସେ ମଧ୍ୟ ଏହିପରି

କରିବେ । ପଞ୍ଚାଏ ଏ ସାହିତ୍ୟକୁ ପସନ୍ଦ କଲେ, ଆଉ ପଞ୍ଚାଏ ତାକୁ ନାକ ଟେକିବେ । ତା'ପରେ ପୁଣି ତାଙ୍କ ଯୁଗର ନିଜର ସାହିତ୍ୟ ତ ରହିବ । ସେଥିକି ମଧ୍ୟ ପଞ୍ଚାଏ ବାହାରିପଡ଼ିବେ । ଫଳରେ ଏ ସାହିତ୍ୟ ଯେ ଭବିଷ୍ୟତ ଓଡ଼ିଆ ଜାତିକୁ ବାଇଆ କରିଦେବ—ଏ କଥାଟା ଅରସିକ କବିର ଅଳସ ସ୍ୱପ୍ନ ହୋଇପାରେ କିନ୍ତୁ ନ୍ୟାୟ-ସଙ୍ଗତ ବୋଲି ମନେହେଉନାହିଁ ।

ତା'ପରେ ଯେ ପ୍ରକୃତ ଉଚ୍ଚଦରର ସାହିତ୍ୟ, ସେ କୌଣସି ଗୋଟାଏ ଯୁଗ ପାଇଁ ନୁହେଁ, ସେ ସବୁ ଯୁଗ ପାଇଁ, ସବୁଦେଶ ପାଇଁ, ସବୁ ଜାତି ପାଇଁ । ମନୁଷ୍ୟର ଅନ୍ତରତମ ବେଦନା ବା ଆନନ୍ଦ ଯେତେବେଳେ କବି ହୃଦୟବୀଣାରେ ଝଙ୍କାର ଦେଇଉଠେ, ସେତେବେଳେ ସେ ଝଙ୍କାର ମନୁଷ୍ୟ ମାତ୍ରକୁ ହିଁ ବାଇଆ କରିପକାଏ । ସେ ସ୍ୱର୍ଗର ଅପ୍‌ସରା ସଙ୍ଗୀତ । ସେଥିରେ ବିଶ୍ୱବାସୀ ମୁଗ୍‌ଧ । ଏ ଯୁଗର ଲୋକେ ଆମର କବିତା ବା ଲେଖା ବୁଝିପାରିବେ ନାହିଁ ବୋଲି କହିବା ମନୁଷ୍ୟ ଜାତି ପ୍ରତି ଅବମାନନା । ଜାତିର ଅନେକ ଦୋଷ ଥାଇପାରେ, କିନ୍ତୁ ଜାତିର ମନୁଷ୍ୟଗୁଡ଼ାକ, ଆମ ତୁମଙ୍କ ଭଳି ମନୁଷ୍ୟ—ମହତ୍, ଉଦାର, ସ୍ୱର୍ଗୀୟ । ସେ ଯେତେ ଅପାଠୁଆ ହେଉ, ଯେତେ ଅସଭ୍ୟ ହେଉ, ଯାହା ସୁନ୍ଦର ତାକୁ ବାଛିନେବାର ଶକ୍ତି ତା'ର ବରାବର ରହିଛି । Kipling କହିଛନ୍ତି—

Though our smoke may hide
the heavens from our eyes;
It will vanish and the stars
will shine again,
Because, for all our power
and weight and size,
We are nothing more than
children of your Brain.

(The secret of machines. Divinity affirmed)

ଆମେ ଆମ ଶିକ୍ଷା ଓ ସଭ୍ୟତାର ମୋହରେ ଅନ୍ୟମାନଙ୍କୁ ହେୟଜ୍ଞାନ କରିପାରୁଁ; କିନ୍ତୁ ଏ ମୋହ ଯେତେବେଳେ ଅପସରି ଯିବ, ସେତେବେଳେ ଆମ୍ଭେ-ମାନେ ଦେଖିବୁ ସମସ୍ତେ, ଏପରିକି ଏଇ ଯୁଗର ଏଇ ଅଶିକ୍ଷିତ ମଳାମୁଣ୍ଡିଆ ଓଡ଼ିଆଗୁଡ଼ାକ ମଧ୍ୟ ସେ ସ୍ୱର୍ଗର ଜୀବ । ଏ ଓଡ଼ିଆ ଜାତି ଯେ କବିତାର ରସ ବୁଝିପାରେ, ତାହାର ଉଦାହରଣ ପୁରୁଣା ସାହିତ୍ୟରେ ଅନେକ । ଅବଶ୍ୟ ପୁରୁଣା ସାହିତ୍ୟରେ ଅନେକ ଅଳିଆ ଅଛି, କିନ୍ତୁ ଲୋକ ସାଧାରଣ ପୁରୁଣା ସାହିତ୍ୟର ଅଳିଆକୁ ବାଦ ଦେଇଛନ୍ତି ଅତି କଠୋର ଭାବରେ । 'ଧିରେ ଯେନ କାନନରେ କୃଷ୍ଣ ବିଳମ୍ବିତ',

'ଶ୍ରୀରାଧା ବାଉଳୀ', 'ଦୃଢ କର ଧର ହର', 'ଧିରେ ରାଧା କର ଧର' ଇତ୍ୟାଦି ଛାନ୍ଦମାନ ହିଁ ଲୋକେ ଜାଣନ୍ତି, ଗାଆନ୍ତି, ବୁଝନ୍ତି ଓ ଆନନ୍ଦରେ ଆଦରରେ ଖେଳ ହୁଅନ୍ତି । ଏ ସବୁ ଛାନ୍ଦରେ ପ୍ରେମରସ ଅଛି କିନ୍ତୁ ଅଶ୍ଳୀଳତା ନାହିଁ । ଅନୈତିକତା ଅଛି, କିନ୍ତୁ ଅଭଦ୍ରତା ନାହିଁ । କିନ୍ତୁ ସାହିତ୍ୟ ନୀତିଶାସ୍ତ୍ର ନୁହେଁ । ସାହିତ୍ୟ ବା କଳା ହୃଦୟର ବେଦନା ବା ଆନନ୍ଦ ପ୍ରକାଶ କରେ । ତାହାର କାର୍ଯ୍ୟ ମନୁଷ୍ୟର ଅନୁଭୂତି ଉପରେ । ମନୁଷ୍ୟର ଅନୁଭୂତି ଗୃହଶାଳୀ ପିଲାର ପାଠ୍ୟ ନ ହୋଇପାରେ, ଭଦ୍ର ସମାଜରେ ବୈଠକଖାନାର ଖୁସି (?) ଗପ ନ ହୋଇପାରେ, କିନ୍ତୁ ତାହା ସାହିତ୍ୟର ପ୍ରଧାନ ଜିନିଷ । ଆଉ ସେହି ଅନୁଭୂତି ଯଦି ଅନୈତିକ ହୁଏ, ତା' ହେଲେ ସେଥିରେ ସାହିତ୍ୟର ମାନମର୍ଯ୍ୟାଦା ହାନି ହୁଏ ନାହିଁ । ଜଣେ ଇଂରେଜ ସମାଲୋଚକ କହିଚନ୍ତି—

"Art has no more to do with morality than with intellect. It speaks to something in us, that is older than either; that existed in Eden before the fall. Morality is not feeling like poetry, but willing. Art may move the feelings as the sex does, but is no more an evil, the evil is in the wiil, not in the emotions. Where there is no knowledge there may be no innocense, there is no morality"

— Rudiments of criticism by E.A. Gruning Lamborn.

ଓଡ଼ିଆ ଜାତି ସବୁ ମଣିଷ ଜାତଙ୍କ ପରି ଏହି କଥାଟି ବୁଝେ । ସେହି ହେତୁରୁ ନରଙ୍କର ଓଡ଼ିଆ ଜାତି ଭିତରେ କଳାମାଣିକର ଆଦର ଅଛି, କିନ୍ତୁ ଲାବଣ୍ୟବତୀଙ୍କର ମଧୁଶଯ୍ୟା ଘର କେଳରେ ଆଦର ନାହିଁ । ମା' ବାପଙ୍କର ହଜିଲା ପୁଅ ପାଇଁ ଦୁଃଖ, ସ୍ତ୍ରୀର ବିଦେଶୀ ସ୍ୱାମୀ ବିରହରେ କାତରତା—ଓଡ଼ିଆ ବୁଝେ, ତା'ର ବୁଝିବା ଭଳି ଭାଷାରେ ଲେଖା ହେଲେ ସେ ନୂଆ ହେଉ, ପୁରୁଣା ହେଉ ସେ ଲେଖାକୁ ଆଦର କରିବ । ଆଜି କାଲି ଲେଖାର ବିଷୟ ଏହା ବା ଏହାର ପରି ହୋଇପାରେ । କିନ୍ତୁ ଲେଖିବାର ଢାଞ୍ଚା ଏପରି ଯେ ଓଡ଼ିଆ ପ୍ରାଣରେ ତାହା ଲାଗେ ନାହିଁ, ଓଡ଼ିଆର ବୁଦ୍ଧିରେ ତାହା ଢୁକେ ନାହିଁ । ସେଥିପାଇଁ ଓଡ଼ିଆ ଜାତିଟା ଅରସିକ ନୁହେଁ । ଅରସିକ ସେଇମାନେ, ଯେଉଁମାନେ ଏପରି ଲେଖନ୍ତି । ଟେନିସନ ଥରେ କହିଥିଲେ "It does not matter what we say if people know but it matters everything how we say it."

ଲୋକେ ଜାଣିବା କଥା ଲେଖିବାକୁ ହବ । ସେ କଥା ଯାହା ଇଚ୍ଛା ତା' ହଉ ସେଥିଲାଗି ଭାବିବାର କିଛି ନାହିଁ । କିନ୍ତୁ ସେ କଥାଟା କିପରି କହିବାକୁ ହବ, କିପରି ଲେଖିବାକୁ ହବ—ଏଇ ହେଲା ବଡ଼ କଥା ।

ଅବଶ୍ୟ ଆଜକାଲିକା ଓଡ଼ିଆ ଲେଖକଙ୍କର ବିଦ୍ୟା ଓ ବୁଦ୍ଧି ସାଧାରଣ ଓଡ଼ିଆଙ୍କଠାରୁ ବହୁତ ବେଶୀ । ତାଙ୍କ ଲେଖାରେ ବହୁତ ପାଣ୍ଡିତ୍ୟ ଅଛି । ବୋଧହୁଏ ଏଇ ପାଣ୍ଡିତ୍ୟଟା ଭବିଷ୍ୟତର ଓଡ଼ିଆ ବୁଝିବେ ଓ ବୁଝି ତାଙ୍କୁ ମୁଣ୍ଡ ଉପରେ ନେଇ ଥୋଇବେ ବୋଲି ଆମର ଲେଖକମାନେ ଆଶା କରୁଚନ୍ତି । କିନ୍ତୁ ପାଣ୍ଡିତ୍ୟ ସାଙ୍ଗରେ, ବୁଦ୍ଧି ସାଙ୍ଗରେ କବିତାର ବେଶୀ କିଛି ସମ୍ପର୍କ ନାହିଁ । କବିତା ହୃଦୟର କଥା, ମୁଣ୍ଡର କଥା ନୁହେଁ । କିଟ୍‌ସଙ୍କ କଥାରେ—

Oh, fret not after knowledge,
I have none
And yet, my song comes native
with the warmth.
Oh, fret not after knowledge;
I have none,
And yet the evening listens.

ଆଉ ଗୋଟିଏ କଥା ବେଶୀ ଶୁଣିବାକୁ ମିଳେ ଯେ ନୂଆ ଭାବ ଓ ନୂଆ ଛନ୍ଦ ଲାଗି ନୂଆ ଭାଷା ଦରକାର । ସାହିତ୍ୟ ଉଦ୍ୟାନରେ ଏପରି କି ନୂଆ କଥା ଆସିପାରେ, ଯାହା ଗୋଟାଏ ବହୁଦିନର ତିଆରି ଭାଷାରେ ପ୍ରକାଶ କରାଯାଇ ନ ପାରେ—ମୁଁ ଏକଥାଟା ଏପର୍ଯ୍ୟନ୍ତ ବୁଝିପାରିଲି ନାହିଁ । ଅବଶ୍ୟ ବିଜ୍ଞାନ, ଦର୍ଶନ ଇତ୍ୟାଦି ପଣ୍ଡିତିଆ ବିଷୟଗୁଡ଼ାକ ପାଇଁ ନୂଆ ନୂଆ ଶବ୍ଦ ଓ ଶବ୍ଦ ଯୋଜନା ଦରକାର ହୋଇପାରେ । କିନ୍ତୁ କବିତା, ଉପନ୍ୟାସ, ଗଳ୍ପ, ନାଟକ ଇତ୍ୟାଦି ଯୁ ବିଷୟଗୁଡ଼ାକ ପ୍ରଧାନ ସାହିତ୍ୟ, ସେଥିରେ ଏପରି ଅଭାବ ପଡ଼ିବାର କାରଣ ମୁଁ ଦେଖିପାରୁନାହିଁ । ଯଦି ବା କିଛି ଦରକାର ପଡ଼େ, ସେତିକ କାଁ ଜାଁ; ତା' ଲାଗି ଗୋଟାଏ ଅଧେ ଶବ୍ଦ ତିଆରି କରାଯାଇପାରେ ବା ଅନ୍ୟ ଭାଷାରୁ ଆମଦାନୀ କରାଯାଇପାରେ; କିନ୍ତୁ ଗୋଟାଏ ଭାଷାକୁ ଏକାବେଳେକେ ଭାଙ୍ଗିଭୁଙ୍ଗି ଗୋଟାଏ ନୂଆ ଭାଷା ତା' ଜାଗାରେ ଠିଆ କରିବାର ଚେଷ୍ଟା କାହିଁକି ? ଛନ୍ଦ ଲାଗି ଗୋଟାଏ ନୂଆ ଭାଷା ? ଛନ୍ଦ ଭାଷାରେ ତିଆରି ହୁଏ, ନା ଭାଷା ଛନ୍ଦ ପାଇଁ ତିଆରି ହୋଇଚି ? ଛନ୍ଦ ସାହିତ୍ୟ ନୁହେଁ, ସାହିତ୍ୟର ପ୍ରଧାନ ଅଙ୍ଗ ମଧ୍ୟ ନୁହେଁ; ତାହା ସାହିତ୍ୟର ସହସ୍ର ଅଲଙ୍କାର ମଧ୍ୟରୁ ଗୋଟାଏ ଅଲଙ୍କାର ମାତ୍ର । ଖଣ୍ଡିଏ ଅଲଙ୍କାର ଲାଗି ଗୋଟାଏ ଭାଷାକୁ ବିକଳାଙ୍ଗ କରି ଥୋଇବା କ'ଣ ରସିକତା ? ମୁଁ ବଜାରକୁ ବୁଲିଗଲି । ଦେଖିଲି ବଣିଆ ଦୋକାନରେ କେତେ ସୁନ୍ଦର ବାଲା ହଳିଏ ଥୁଆ ହୋଇଚି, ମନହେଲା ମୋର ପ୍ରଣୟିନୀଙ୍କୁ ସେ ବାଲା ହଳକ ପିନ୍ଧାନ୍ତି । ମାଧି ଦେଖିଲି—ସେ ବାଲା ପିନ୍ଧିବାକୁ ପଡ଼ିଲେ, ମୋ ପ୍ରଣୟିନୀଙ୍କି ଆଉ ଗୁଡ଼ିଏ ଆଙ୍ଗୁଳ ମୋଟା କରିବା ଦରକାର । ମୁଁ ଯାଇ ପ୍ରଣୟିନୀଙ୍କି ଖୁବ୍ ଖୁଆଇଲି,

ମୋଟା ହେବାକୁ ଓମୁଅ ଦେଲି । କେତେ ମାସ ପରେ ପ୍ରଣୟିନୀ ମୋର ଯେତେବେଳେ ବାଲି ହେଲକ ପିନ୍ଧିବାକୁ ଉପଯୁକ୍ତ ମୋଟା ହୋଇଗଲେ, ସେତେବେଳେ ଦେଖିଲି ତାଙ୍କର ଯେ ପିଠି ଦେଖିପରି ସୁନା ଦହଣି ଦେଖି ମୁଁ ମଜିଥିଲି, ସେ ନାହିଁ, ସେ ବର୍ତ୍ତମାନ ଗୋଟିଏ ମସ୍ତବଡ଼ ଗୁଲା ଗଦା । ଏ ଅରସିକତା କି ସହବା କାନପ ? ଯେ ରସିକ, ସେ ପ୍ରଣୟିନୀର ଦହକୁ ଗୁହିଁ ଅଳଙ୍କାର ଗଢ଼ିବ, ଅଳଙ୍କାରକୁ ଗୁହିଁ ଦହ ଗଢ଼ିବ ନାହିଁ । ଭାଷାକୁ ଗୁହିଁ ଛନ୍ଦ ତିଆର ହବା ଉଚିତ, ଛନ୍ଦକୁ ଗୁହିଁ ଭାଷା ତିଆଣ କରିବା ଏକ ବିଚିତ୍ର କଳ୍ପନା ! ଇଂରେଜୀ ସାହିତ୍ୟରେ ମଧ୍ୟ ଏହିପରି ଗୋଟାଏ ଦିନ ଆସିଥିଲି । ଡ୍ରାଇଡେନ୍‌ଙ୍କଠାରୁ ଆରମ୍ଭ କରି ପୋପ୍‌ଙ୍କ ପର୍ଯ୍ୟନ୍ତ—ସମସ୍ତେ ଏଇ ମୋହରେ ପଡ଼ି, ଲେଖାଗୁଡ଼ାକୁ ଛନ୍ଦୋମୟ, ସୁଶ୍ରାବ୍ୟ, ଲଳିତ କରିବା ପାଇଁ ପ୍ରକୃତ କବିତାକୁ ବାଦ ଦେଇଥିଲେ । ଭାଷାକୁ ମଧୁର କରିଥିଲେ । କିନ୍ତୁ ଇଂରେଜୀ ଜାତି ସେ ସାହିତ୍ୟକୁ ଆଦର କରିନାହିଁ । ସେମାନଙ୍କର ମରିବା ପରେ ପରେ ସ୍ପେନସର୍ ଓ ସେକ୍‌ସପିୟର୍‌ଙ୍କର ସେଇ ପୁରୁଣା ଢାଞ୍ଚାକୁ ଇଂରେଜୀ ସାହିତ୍ୟ ଗଢ଼ିଯାଇଥିଲି । ଆଜି ସେଇ ଢାଞ୍ଚା ବରାବର ଇଂରେଜୀ ସାହିତ୍ୟରେ ଆଦର ପାଇଆସିଛି ।

ବର୍କ ଓ ଗିବ୍‌ବନ ଆଜି ଇଂରେଜୀ ଭାଷାର ଆଦର୍ଶ ହୁହନ୍ତି । ବଙ୍ଗଳା ସାହିତ୍ୟରେ ମାଇକେଲ ମଧୁସୂଦନ, ନବୀନଚନ୍ଦ୍ର ଇତ୍ୟାଦି ସେହିପରି ବଙ୍ଗ ଭାଷାଟାକୁ ଗୋଟାଏ ନୂଆ ମସ୍ତ୍ର,ତିଆ ଗୁଞ୍ଚରେ ତାଳି ନୂଆ କବିତା ଲେଖିବାକୁ ଚେଷ୍ଟା କରିଥିଲେ, କିନ୍ତୁ ବଙ୍ଗ ଜାତି ମଧ୍ୟ ସେମାନଙ୍କୁ ସହ୍ୟ କରିପାରିନାହିଁ । ଏମାନଙ୍କ ଭାଷା ସାଙ୍ଗରେ ଆଜିକାଲି ବଙ୍ଗୀୟ ସାହିତ୍ୟ ଭାଷା ତୁଳନା କଲେ ଦେଖିବ, ଏମାନେ ବିଦ୍ୟାପତି ଓ ଚଣ୍ଡୀଦାସଙ୍କୁ ଯେତେ ଗୁଡ଼ିଥିଲେ, ଆଜିକାଲିର ବଙ୍ଗ ଲେଖକମାନେ ତାଙ୍କ ଆଡ଼କୁ ସେତିକ ମାଡ଼ି ଗୁଲିଛନ୍ତି । ଭାଷା ଓ ବିଷୟରେ ଆଜିକାଲି ବଙ୍ଗୀୟ ସାହିତ୍ୟର ପୁରୁଣା ବଙ୍ଗ ସାହିତ୍ୟ ସଙ୍ଗେ ଯେତେ ମେଳ ଖାଏ, ନବୀନଚନ୍ଦ୍ର ଯୁଗସାହିତ୍ୟ ସଙ୍ଗରେ ସେତେ ନାହିଁ । ଏପରିକି ରବୀନ୍ଦ୍ରଙ୍କ Mysticism ଓ ବିଦ୍ୟାପତିଙ୍କ Mysticism ମଧ୍ୟରେ ବିଶେଷ କିଛି ପ୍ରଭେଦ ଦେଖିବାକୁ ମିଳେନାହିଁ । ଅବଶ୍ୟ ରବୀନ୍ଦ୍ରଙ୍କ ଭାଷାର ରୂପ ବିଦ୍ୟାପତିଙ୍କ ଭାଷାର ରୂପଠାରୁ ଭିନ୍ନ ହବା ଏକାବେଳକେ ସ୍ୱାଭାବିକ । କିନ୍ତୁ ଉଭୟର ପ୍ରକୃତି ଏକ, ଏ ବିଷୟଟା ମୁଁ ଉଦାହରଣ ଦେଇ ଦେଖାଇପାରୁନାହିଁ । କିନ୍ତୁ ଯାହାର କୁତୂହଳ ହବ—ସେ ଦେଖିନେଇପାରନ୍ତି ।

ତା'ପରେ ଛନ୍ଦୋମୟୀ ଭାଷା ସାହିତ୍ୟରେ କେତେ ? ଛନ୍ଦ କେବଳ ପଦ୍ୟର ଅଳଙ୍କାର । ପୁଣି ପଦ୍ୟରେ ଛନ୍ଦ ଭାବସାପେକ୍ଷ । ଭାବ ନେଇ ଛନ୍ଦ ହବା ଉଚିତ । ଯେ ଛନ୍ଦ ବୀରରସ ପ୍ରକାଶ କରିବାରେ ଦରକାର, ସେଇ ଛନ୍ଦ ଆଦିରସ ପ୍ରକାଶରେ ଉପଯୋଗୀ ନୁହେଁ । ପ୍ରତ୍ୟେକ କଳାବିଦ୍ ଏହା ଜାଣେ, କାରଣ ପ୍ରତ୍ୟେକ କଳାବିଦ୍‌ର ଛନ୍ଦ ଗୋଟାଏ Back ground ବା ପ୍ରଷ୍ଠ । କେତେବେଳେ କେଉଁ ଭାବ ପ୍ରକାଶ

କରିବା ପାଇଁ ଗୋଟାଏ ଅଧେ ଛନ୍ଦର ଦରକାର ହେବ ବୋଲି ସମୁଦାୟ ଭାଷାଟାକୁ ଭାଙ୍ଗିଭୁଙ୍ଗି ଗୋଟାଏ ନୂଆ ଭାଷାରେ ପହଞ୍ଚାଇବା କେଉଁ ରସିକତାର ବାହାଦୂରି ? ବିଶେଷତଃ ଛନ୍ଦ ନାମରେ ଉପନ୍ୟାସ, ଗଳ୍ପ ଓ ନାଟକର ଭାଷା ସରଳ ସହଜ ସାଧାରଣ ବୋଧ ଭାଷା ନ ହବ କିଆଁ ?

ବେଳେବେଳେ ଗୋଟାଏ ଯୁକ୍ତି କରାଯାଏ ଯେ ଲୋକବୋଧ ଭାଷା କିଏ ? ବାଲେଶ୍ୱରର ଭାଷା ସମ୍ବଲପୁରର ଭାଷାଠାରୁ ଭିନ୍ନ, ସମ୍ବଲପୁରର ଭାଷା ପୁରୀ ଭାଷା-ଠାରୁ ଭିନ୍ନ । ଆମେ ତା' ହେଲେ କାହା ଭାଷାରେ ଲେଖିବୁଁ ଯେ ତାହା ସହଜ-ବୋଧ ହେବ ? କଥାଟା ଏକାବେଳକେ ଅଗୁଆଁର ମୁହଁରେ ଶୋଭାପାଏ । ଯେ ପ୍ରକୃତରେ ଓଡ଼ିଶାର ଭିନ୍ନ ଭିନ୍ନ ଜିଲ୍ଲାର ଲୋକମାନଙ୍କ ସାଙ୍ଗରେ ମିଶିଚି ଓ ଭିନ୍ନ ଭିନ୍ନ ଜିଲ୍ଲାର ଭାଷାକୁ ଆୟତ୍ତ କରିବାର ଚେଷ୍ଟା କରିଚି—ସେ ଦେଖିଚି ଯେ ଭିନ୍ନ ଭିନ୍ନ ଜିଲ୍ଲାର ଭାଷା ଭିତରେ ମେଳ ଖାପ ଯେତେ ବେଶୀ, ଗୁଡ଼ବାଡ଼ ସେଥିରୁ ଶହେ ଭାଗରୁ ଭାଗେ ହବ କି ନାହିଁ । କେତେଟା ଅବ୍ୟୟ ଓ କ୍ରିୟାର ପ୍ରକୃତି ଛାଡ଼ିଦେଲେ ସାଧାରଣ ଭାବପ୍ରକାଶକ ଶବ୍ଦମାନଙ୍କ ମଧ୍ୟରେ ଗୁଡ଼ବାଡ଼ ବେଶୀ କିଛି ନାହିଁ । ଆମେ ସମ୍ବଲପୁରୀ ଭାଷା ବୁଝିବାକୁ କଷ୍ଟ ପାଉ. ତା'ର କାରଣ ଭାଷାର ପ୍ରଭେଦ ନୁହେଁ, କହିବାର ଛାଞ୍ଚ ଓ ଉଚ୍ଚାରଣ । କହିବାର ଛାଞ୍ଚ ଓ ଉଚ୍ଚାରଣ ତ ଲେଖା-ଭାଷାରେ ରହିବ ନାହିଁ । ଅତଏବ, ପ୍ରକୃତ ଅଭାବଟା ଯେ କେଉଁଠି ତାହା ମୁଁ ଏପର୍ଯ୍ୟନ୍ତ ବୁଝିପାରୁ ନାହିଁ ।

ଅବଶ୍ୟ ବିଶୁଦ୍ଧ ଓଡ଼ିଆ ଭାଷାର ସଂକଳନ ପାଇଁ ଏଯାଏଁ କୌଣସି ବିଧିବଦ୍ଧ ଭାବରେ ଉଦ୍ୟମ କରାଯାଇନାହିଁ । କିନ୍ତୁ ସେ ଦୋଷ ତ ଆମ ସାହିତ୍ୟିକମାନଙ୍କର । ମୁଁ ତ ବରାବର ସେଇ କଥାଟି ହିଁ କହିଆସୁଚି । ଆମ ଦେଶର ଭାଷାକୁ ଆୟତ୍ତ କରିବାକୁ ଚେଷ୍ଟା କରି ସାହିତ୍ୟ ଲେଖିବାକୁ ଅଣ୍ଟାଭିଡ଼ି ବାହାରିପଡ଼ିବାଟା ଠିକ ହେଉନାହିଁ । ଭାଷାଟିକୁ ଆୟତ୍ତ କଲେ, ସେଥିରୁ ସୌନ୍ଦର୍ଯ୍ୟ ବାହାରକରିବାକୁ କଷ୍ଟ ହେବ ନାହିଁ । ଭାଷାକୁ ଆୟତ୍ତ ନକରି ସାହିତ୍ୟ ଲେଖିଲେ, ନୂଆ ଭାବ ପ୍ରକାଶ କରିବା ପାଇଁ ବାଧ୍ୟ ହୋଇ ସଂସ୍କୃତ, ବଙ୍ଗଳା, ହିନ୍ଦି ପ୍ରଭୃତି ଭାଷାର ଆଶ୍ରୟ ନେବାକୁ ପଡ଼ିବ । ଖାଲି ସେତିକି ନୁହେଁ, ଭାଷାର ତୁଳନାତ୍ମକ ଆଲୋଚନା ଜାତିର ଇତିହାସ ଲେଖାରେ ଅନେକ ସାହାଯ୍ୟ କରେ । ଫ୍ରିମାନ୍ ସାହେବ ଏ ବିଷୟରେ କହିଛନ୍ତି—"In no other case—so at last it strikes me—can the application of the comparative method be so clear and simple, so utterly beyond doubt or cavil, as it is in the case of languages. In the case of language the method is self convincing. It is hard to conceive that the doctrine of the relations of language,

if once clearly stated to a mind of ordinary intelligence, can fail to be received at once, (Comparative Politics, by Edward. E. Freeman, M.A. Hon. D.C.L. Page-3.)

ଜାତିର ଇତିହାସ ବୁଝିବା ପାଇଁ ଯେତେ ତୁଳନାତ୍ମକ ଉପାୟ ଅଛି, ତା ମଧ୍ୟରେ ଭାଷାର ତୁଳନା ଅତି ସହଜ, ସୁବୋଧ୍ୟ ଏବଂ ନିଃସନ୍ଦେହ । ଭାଷାର ତୁଳନା କଲେ ଧାରଣା ଖୁବ୍ ସ୍ପଷ୍ଟ ହୋଇପଡ଼େ । ଯଦି ଦୁଇଟା ଭାଷାର ତୁଳନା କରି ସେଥିରୁ ଯାହା ଫଳ ମିଳିଲା ତାହା କୌଣସି ସାଧାରଣ ବୁଦ୍ଧିବିଶିଷ୍ଟ ଲୋକକୁ ବୁଝାଇଦିଆଯାଏ, ତା' ହେଲେ ସେ ତାକୁ ଖୁବ୍ ଶୀଘ୍ର ବୁଝିପାରିବ । କଥାଟା ମୁଁ ଉଦାହରଣ ଦେଇ ବୁଝାଇ ଦିଏ । ଦକ୍ଷିଣ ବିହାର ପ୍ରଦେଶ ହିନ୍ଦି ଦେଶ । ଏଠାରେ ସରକାରଙ୍କ କଚେରୀ ଭାଷା ହିନ୍ଦି, ଲୋକ ସାଧାରଣ ହିନ୍ଦିରେ କଥାବାର୍ତ୍ତା ହୁଅନ୍ତି । କିନ୍ତୁ ଛୋଟନାଗପୁର ଡିଭିଜନର ଗାଉଁଲି କଥା ସାଙ୍ଗରେ ଓଡ଼ିଶା ଦେଶର ଗାଉଁଲି ଲୋକଙ୍କ କଥା ତୁଳନା କଲେ ଏତେ ସାମଞ୍ଜସ୍ୟ ଆମ୍ଭେମାନେ ପାଉଁ ଯେ ମନେହୁଏ, ଯେପରି ଏ ଦୁଇଟା ପ୍ରଦେଶ ଦିନେ ଗୋଟାଏ ଦେଶ ଥିଲା, ଗୋଟାଏ ଜାତିର ଭାଷା ଏ ଉଭୟ ଦେଶରେ ଚଳୁଥିଲା, ଗୋଟାଏ ଜାତିର ରୀତିଚଳନ, ଅଲଙ୍କାର ପନ୍ଥ, ଖାଇବା ପିଇବା ଉଭୟ ଦେଶର ଲୋକେ ମାନୁଥିଲେ । ଏଇ କେତୋଟି ଶବ୍ଦରୁ କଥାର ଅର୍ଥଟା ବୁଝାଯିବ ।

| ଛୋଟନାଗପୁରୀ ଭାଷା | ଓଡ଼ିଆ ଭାଷା |
|---|---|
| ଖେତା | ହେତା |
| ଖପରା | ଖପରା |
| ଡିହ | ଡିହ (ଗାଁ) |
| ଚୁହାଡ଼ | ଚୁହାଡ଼ |
| କରଥା | କରଥା |
| ବଟୁ | ବଟୁଆ |
| ଖଡ଼ପା | ଖୋଡ଼ପା |
| ରସୁଣିଆ | ରସୁଣିଆ |
| ହଁସୁଲି | ହଁସୁଲି |
| ଗୁନ୍ଦୋଆମାଳ | ଗୁନ୍ଦମାଳ |
| ତାର | ତାଡ଼ |
| ପସୁର | ପାହୁଡ଼ |
| ବେସର | ବେସର (ଅଳଙ୍କାର—ବିଶେଷ) |
| ଝୁଟିଆ | ଝୁଣ୍ଟିଆ |

ମୁଁ ଯେତେଗୁଡ଼ାଏ ଏହିପରି ଉଭୟ ଭାଷାରେ ସମାନ ବା ସମାନ ଉତ୍ପନ୍ନ ଶବ୍ଦ ପାଇଛି, ଏହି ଭିତରେ ସେସବୁ ହିସାବ କଲେ ବୋଧହୁଏ ୫୦୦ ଖଣ୍ଡେ ଶବ୍ଦ ହେବ। ଅବଶ୍ୟ ଗାଁ ଗହଳରେ ପଶି ଲୋକଙ୍କ ସାଙ୍ଗରେ ମିଶି ରହିବାର ସୁବିଧା ମୋର ଏପର୍ଯ୍ୟନ୍ତ ହୋଇନାହିଁ। ମାତ୍ର ଗାଉଁଲି ଲୋକଙ୍କ କେତେ ଜମାନବନ୍ଦୀରୁ ମୁଁ ଯାହା ପାଇଛି, ଆପଣମାନେ ଦେଖିବେ ଏସବୁ ଦେଶଜ ଶବ୍ଦ, ସଂସ୍କୃତରୁ ଅପଭ୍ରଂଶ ଶବ୍ଦଗୁଡ଼ାକ ଓଡ଼ିଆ, ବଙ୍ଗଳା, ହିନ୍ଦି ସବୁଥିରେ ତ ସମାନ ବା ସମାନ ପ୍ରାୟ। କିନ୍ତୁ ଯେଉଁ ଦୁଇ ଦେଶ ମଧ୍ୟରେ ଦେଶଜ ଶବ୍ଦଗୁଡ଼ିକ ପ୍ରାୟ ସମାନ—ସେ ଦୁଇ ଦେଶ ଯେ କେତେବେଳେ ହେଲେ ଏକ ରାଜନୈତିକ ଓ ସାମାଜିକ ଗଣ୍ଡି ମଧ୍ୟରେ ପେଷା ହେଉଥିଲେ, ଏ କଥାଟା ସ୍ୱତଃସିଦ୍ଧ ହୋଇପାରେ।

ଯାଉ, ମୁଁ ଇତିହାସ ଲେଖିବସିନାହିଁ। ଖାଲି କଥାରେ କଥାରେ କହିଦେଲି। ଅନ୍ୟାନ୍ୟ ଜାତିର ଭାଷା ସହିତ ଆମ ଭାଷାର ମିଳାମିଶା ଦେଖିଲେ କ'ଣ ଜଣାପଡ଼େ? ପ୍ରଥମରେ ଆମର ଭାଷା ସେହି ଦେଶର ଭାଷାଠାରୁ ଉତ୍ପନ୍ନ ବା ତାହା ଦ୍ୱାରା ପ୍ରଭାବିତ ଅଥବା ଦ୍ୱିତୀୟରେ ସେ ଦେଶର ଭାଷା ଆମ ଦେଶର ଭାଷାଠାରୁ ଉତ୍ପନ୍ନ ବା ତାହା ଦ୍ୱାରା ପ୍ରଭାବିତ। ଆଉ ସେ ଉତ୍ପାଦନ ବା ପ୍ରଭାବ ବହୁଦିନର ଓ ସ୍ୱାଭାବିକ। ଏହିପରି ଭାବରେ କିରୂପା ଓଡ଼ିଆ ଭାଷାର ଗୋଟିଏ ଇତିହାସ ଲେଖାଯାଇପାରେ ଏବଂ ସେହିଥିରୁ କିରୂପା ଓଡ଼ିଆ ଭାଷାର ଗୋଟାଏ ଆଦର୍ଶ ମିଳିପାରେ। ଆଉରି ଗୋଟାଏ କଥା, ତାହାହେଲେ ଆମେ ଇମିତି ଅନେକ ଶବ୍ଦ ପାଇବୁ ଯାହାକୁ କି ଆମେ ଜିଲ୍ଲା ବା ସ୍ଥାନବିଶେଷର ଲୋକଗତ ଶବ୍ଦ ବୋଲି କହୁ। ସେହି ଶବ୍ଦ ଯେବେ ବିଦେଶରୁ ମିଳେ ତା' ହେଲେ ସେ ଶବ୍ଦ ଯେ କିରୂପା ଓଡ଼ିଆ ଶବ୍ଦ ଏହା ଠିକ୍ କରି ହୋଇ-ପାରିବ। ଧରନ୍ତୁ 'ଝାଉଁ ମାରିଯିବା' ଶବ୍ଦଟା। ଯାକୁ କଟକ ଲୋକ କହିପାରନ୍ତି ଯେ ଏହା ପୁରୀର ଲୋକଗତ ଶବ୍ଦ। କିନ୍ତୁ ଛୋଟନାଗପୁର ଲୋକଙ୍କ ମୁହଁରୁ 'ଝାଉଁ ମାରିଗଲା' ଠିକ୍ ସେହି ଅର୍ଥରେ ଆପଣ ଶୁଣିବାକୁ ପାଇବେ। ତା' ହେଲେ କ'ଣ ବୁଝାଯିବ? ପ୍ରଥମରେ ପୁରୀର ଅଧିବାସୀମାନେ ଛୋଟନାଗପୁରରୁ ଯାଇଥିଲେ, ନ ହେଲେ ପୁରୀର ଲୋକେ ଛୋଟନାଗପୁରରେ ଆସି ଉପନିବେଶ ସ୍ଥାପନ କରିଥିଲେ। ଦୁଇଟାଯାକ ବର୍ତ୍ତମାନ ଇତିହାସର ବିରୋଧୀ। କିନ୍ତୁ ଛୋଟନାଗପୁରର ଜଣା ଇତିହାସ ଓ ଛୋଟନାଗପୁର ଇଲାକାରେ ବର୍ତ୍ତମାନ ସୁଦ୍ଧା ସାନ୍ତ, ପାନ, ପାଇକ, ଓଡ଼ିଆ ପ୍ରଭୃତି ଜାତିମାନେ ଥିବାରୁ ଆମ୍ଭେମାନେ ସ୍ପଷ୍ଟ ଅନୁମାନ କରିପାରୁଁ ଯେ ଯେଉଁ ଅଜଣା ଅଜ୍ଞାତ ଯୁଗରେ ଓଡ଼ିଶାର ଲୋକମାନେ ଆସି ଛୋଟନାଗପୁରରେ ରହିଥିଲେ ଓ ସେମାନଙ୍କର ପ୍ରଭାବ ଏ ସ୍ଥାନର ଆଦିମ ଅଧିବାସୀମାନଙ୍କ ଉପରେ ଏତେ ଥିଲା ଯେ ସେମାନଙ୍କ ଭାଷା ମଧ୍ୟ ଏ ଦେଶର ଭାଷା ସାଙ୍ଗରେ ମିଶିଯାଇଛି। ତା' ମାନେ ଏଇ 'ଝାଉଁ ମାରିଯିବା' କଥାଟା କୌଣସି ଜିଲ୍ଲାର ଲୋକଗତ କଥା ନ ହୋଇ ଖାଣ୍ଟି ଓଡ଼ିଆ

କଥା ବୋଲି ଧରିନବାକୁ ହବ । ଏହିପରି ଭାବରେ ଅନେକ ଶବ୍ଦର ଇତିହାସ, ପ୍ରକୃତି ଓ ଉତ୍ପତ୍ତି ଆମ୍ଭେମାନେ ଜାଣିପାରନ୍ତୁ । କିନ୍ତୁ ସେ ଦିଗରେ କାହାରି ଦୃଷ୍ଟି ନାହିଁ । ଭାଷାର ଗୋଟାଏ ସ୍ୱରୂପ ଠିକ୍ କରିବାର ଉଦ୍ୟମ ଏପର୍ଯ୍ୟନ୍ତ ହେଉନାହିଁ । ଫଳରେ ଏଇଆ ହଉଚି—ଆମର ପିଲାମାନେ ଘରଦ୍ୱାର ଛାଡ଼ି ଆସି ସହରରେ ପାଠପଢ଼ିଲେ । ସହରିଆ ବର୍ଣ୍ଣ-ଶଙ୍କର ଭାଷା ଶିଖିଲେ । ଆଜିକାଲିକାର ଲେଖାରୁ ମଧ୍ୟ ପାଇଲେ ସେଇ ବର୍ଣ୍ଣ-ଶଙ୍କର ଭାଷା । ନିଜର ଭାଷା ଭୁଲିଗଲେ । ଫଳ ହେଲା, ଆମେ ଆସ୍ତେ ଆସ୍ତେ ଗାଁର ଲୋକଙ୍କଠାରୁ ଦୂରକୁ ଘୁଞ୍ଚିଗଲୁଁ । ତାଙ୍କର ସ୍ନେହ ସହାନୁଭୂତି ହରେଇଲୁଁ । ତାଙ୍କର ଦୁଃଖ ସୁଖରେ ଆମେ ଏକ ହୋଇପାରିଲୁଁ ନାହିଁ । ଆମେ ଯାହା ଲେଖିଲୁ ସେ କେବଳ ଆମ ଦଳଙ୍କର କଥା—ଯାହା କୋଟିଏ ପ୍ରଜାଙ୍କ ଭିତରୁ ଶହେ ଖଣ୍ଡେ ଲୋକଙ୍କ କାନକୁ ମନକୁ, ହୃଦୟକୁ ଭଲଲାଗିବ । ଅଥଚ ଗର୍ଜନ କରି କହିଲୁଁ ଏ ଜାତୀୟ ସାହିତ୍ୟ । ଆଉ ସେ ଗର୍ଜନ ଶୁଣି ଯଦି କେହି ମୁଣ୍ଡ ନଟୁଙ୍ଗାରିଲା, ତାହେଲେ କହିଲୁଁ ସେ ଲୋକଟା ନିର୍ବୁଦ୍ଧିଆ, ଅଂହକାରୀ ଇତ୍ୟାଦି । ଆମ ଭଳି ଅନ୍ଧ ଏ ଜଗତରେ କିଏ ଅଛି ? ଆମେ ଆଖି ଆଗରେ ଦେଖିଲୁ, ସରକାର କହୁଚନ୍ତି—ଗାଁକୁ ଯାଅ, ଗାଁ ଲୋକଙ୍କ ସାଙ୍ଗରେ ମିଶ, ଗାଁ ଲୋକଙ୍କ କଥା ବୁଝ । ଗାନ୍ଧିଜୀ କହୁଚନ୍ତି ଗାଁକୁ ଯାଅ, ଗାଁ କଥା ବୁଝ । କିନ୍ତୁ ନା, ଏଗୁଡ଼ାକ ଆମକୁ ପୋଷାଏ ନାହିଁ, ଆମେ ଗାଁ ଭାଷା କହିବୁ ନାହିଁ, ଗାଁ ଲୋକର ଦୁଃଖ ସୁଖ ବୁଝିବୁ ନାହିଁ । ଆମେ ଆମ ହାତରେ ଚୌଦ ପା; ସାରୁଗଛ ମୂଳରେ ବେଙ୍ଗୁଲି ରଜା ।

ଆମ ଦେଶରେ ଅନୁଷ୍ଠାନର ଅଭାବ ନାହିଁ । ସାହିତ୍ୟ ସମାଜ, ସବୁଜ ସାହିତ୍ୟ ସମିତି, ତରୁଣ ସାହିତ୍ୟ ସଙ୍ଘ, ନବଯୁଗ ସାହିତ୍ୟ ପରିଷଦ୍, କବି ସମ୍ମିଳନୀ ଇତ୍ୟାଦି ଅନେକ ଅନେକ ଅଛି । ସମସ୍ତଙ୍କର ଉଦ୍ଦେଶ୍ୟ ହେଲା ଆମେ ଲେଖିବା ଓ ସାହିତ୍ୟିକ ବୋଲାଇବା, ଯାହା ପୁରୁଣା ଥିଲା ତାକୁ ଭାଙ୍ଗିବା ଓ ମନଇଚ୍ଛା ଗୋଟାଏ ନୂଆ କିଛି ଗଢ଼ିବା । ଘର ପୁରୁଣା ହେଲେ ତାକୁ ଭାଙ୍ଗିବାକୁ ହିଁ ପଡ଼ିବ । ବାପ ଅଜାଙ୍କର ରୁଚି ଯାହା ଥିଲା, ସେ ରୁଚି ଆମର ନ ହୋଇପାରେ । ଆମେ ନୂଆ ରୁଚିରେ ଘର ତୋଳି-ପାରିବା । କିନ୍ତୁ ତାଲାଗି ନିଜର ଡିଅ ଖଣ୍ଡିକ ପର୍ଯ୍ୟନ୍ତ ଖୋଲା ସମୁଦ୍ରରେ ମେଲେଇ-ଦବା ଓ ପୁରୁଣା କାଠ ଲଦିନରୁ ଯାହା କାମରେ ଆସିବା ଭଳି ଅଛି ତାକୁ ନିଆଁରେ ପକାଇ ପୋଡ଼ିଦେବାରେ କି ହୃଦୟର ମହତ୍ତ୍ୱ ଓ ଉଦାରତା ଜଣାପଡ଼େ ? ପୁରୁଣା ସାହିତ୍ୟରେ ଅନେକ ଅଳିଆ ଅଛି । ଏ କଥାଟାକୁ ସେଇ ଗାଉଁଲି ଲୋକ ଜାଣିଚନ୍ତି ଓ ଜାଣି ତାକୁ ଫିଙ୍ଗିଦେଇଚନ୍ତି । କିନ୍ତୁ ସେଥିରେ କିଛି ସୁନ୍ଦର ମଧ୍ୟ ଅଛି । ବିଶେଷତଃ ସେ ସବୁ ରାଜା, ମହାରାଜାଙ୍କ କଥା, ଋଷି ଦେବତାଙ୍କ କଥା ନେଇ ଲେଖା ହୋଇଥିଲେ ମଧ୍ୟ ସେଥିରେ ନିଜ ଜାତିର ରଙ୍ଗ ଢଙ୍ଗ, ଚାଲିଚଳନ ମୋଟ ଉପରେ ଜାତିର ପ୍ରାଣ ପ୍ରତି ସହାନୁଭୂତି ଅଛି । ତାରି ଭାଷା ସ୍ଥାନେ ସ୍ଥାନେ ସଂସ୍କୃତବହୁଳ ହୋଇଥିଲେ ମଧ୍ୟ ଓଡ଼ିଆ ଭାଷାର ବୈଶିଷ୍ଟ୍ୟ ରକ୍ଷା କରିଅଛି । ଓଡ଼ିଆ ପ୍ରାଣର ଯାତନା, ଓଡ଼ିଆ

ହୃଦସ୍ଥର ସୁଖ ସେଥିରେ ପୂର୍ଣ୍ଣ ହୋଇ ରହିଚ । ସେ ଆମ ଆଖିରେ ଆଙ୍ଗୁଠି ଗେଞ୍ଜି ଦେଖେଇଦିଏ, ଓଡ଼ିଆ ସାହିତ୍ୟ କେଉଁ ଦିଗରେ ଗଢ଼ କରିବା ଉଚିତ । କିନ୍ତୁ ଆମେ ଶୁଣିବୁ ନାହିଁ, ବୁଝିବୁ ନାହିଁ । କାରଣ ସେ ପୁରୁଣା ଓ ଆଜି ଆମେ ନୂଆ । ନୂଆର ଏଇ ଅଂହଙ୍କାର ଓ ଆତ୍ମସମ୍ପୂର୍ଣ୍ଣତା ଜାତି ପକ୍ଷରେ ବଡ଼ ଆପଦ । ଇଂରେଜୀ ସାହିତ୍ୟର ସୁପରିଚିତ ଲେଖକ ଚେଷ୍ଟର-ଟନ୍ କହିଛନ୍ତି—

"Now it has appeared to me unfair that humanity should be engaged perpetually in calling all those things bad, which have been good enough to make other things better in everlastingly kicking down the ladder by which it has climbed".

ନୂଆ ଭାବ, ନୂଆ ଧାରଣା, ନୂଆ କଥା, ନୂଆ ସୃଷ୍ଟିପର ଲୋକମାନଙ୍କୁ ମଜ୍ଜେଇ ଦିଏ । ଲୋକର ମୁଣ୍ଡ ଆପେ ଆପେ ନୂଆର ସମ୍ମୁଖରେ ନଇଁପଡ଼େ । କିନ୍ତୁ ସେ ନୂଆ ପୁରୁଣାକୁ ନଚ୍ଛାଡ଼ିଦେଇଥିବା ନୂଆ । ଝଡ଼ ତୋଫାନ ପରେ ନୂଆ ସୂର୍ଯ୍ୟକୁ ଦେଖି ଆମେ ମଜ୍ଜୁ, କାରଣ ସେ ସୂର୍ଯ୍ୟ ଆମର ସେଇ ପୁରୁଣା ଜଣା ସୂର୍ଯ୍ୟ ଆସିଚ, ନୂଆ ଆଲୋକ, ନୂଆ ତେଜ ନେଇ । କିନ୍ତୁ ପୁରୁଣାର ଅଜଣା ନୂଆ ଜିନିଷ ଦେଖିଲେ ଭକ୍ତି ହବ ନାହିଁ, ଭୟ ହବ, ଶ୍ରଦ୍ଧା ହବ ନାହିଁ, ବିରକ୍ତି ହବ । ଆମେ ଆମ ନୂଆ ଲେଖକ-ମାନଙ୍କୁ ଶ୍ରଦ୍ଧା କରିବାକୁ ଚାହୁଁ, ଭକ୍ତି କରିବାକୁ ଚାହୁଁ, ଭୟ କରିବାକୁ ଚାହୁଁ ନାହିଁ । ସେଇ ହେତୁରୁ ନୂଆ ସୃଷ୍ଟିର ନୂଆ ତେଜରେ ଆଖି ଝାପ୍‌ସା ହୋଇ ଯେତେବେଳେ ସେମାନେ ଅମଡ଼ାମଡ଼ା ଚାଲନ୍ତି, ତାଙ୍କୁ ଟିକିଏ ହାତ ଓଠ ଧରି ବାଟକୁ କାଢ଼ି ଆଣିବାକୁ ଚେଷ୍ଟା କରୁ । ନୂଆ ଲେଖକମାନେ ନୂଆ ଲେଖାର ହିଡ଼ସଢ଼ଣିଆ ତେଜରେ ଏ ଜଗତକୁ ଅମୃତମୟ କରନ୍ତୁ, ତାଙ୍କର ସେ ଅମୃତ ଝର ଏ କଳିଯୁଗକୁ ପବିତ୍ର କରୁ ଓ ଭବିଷ୍ୟତରେ ସତ୍ୟଯୁଗକୁ ଆନନ୍ଦ ଦେଉ—ଏହାହିଁ ଦେଶବାସୀଙ୍କର ଇଚ୍ଛା । ଏଇ ଇଚ୍ଛା ଦାଉରେ ମାତ୍ର ମୁଁ ଏତେ କଥା ଲେଖିଗଲି ଓ ମୋ ଆଗରୁ ଅନେକ ଆଉରି ସୁନ୍ଦର ଓ ପ୍ରବଳ ଭାବରେ ଏଇ କଥା ଲେଖିଯାଇଛନ୍ତି ଓ ନୂଆ ଲେଖକମାନଙ୍କ ଭିତରୁ ଯେଉଁମାନେ ଅମଡ଼ା ଚାଲିଚନ୍ତି ସେମାନେ ବାଟକୁ ନ ଆସିବାଯାଏ ଆଉରି ଅନେକ ଲେଖା ହେବ । ଏହା କାହାରି ମନ ଭାଙ୍ଗିବା ପାଇଁ ନୁହେଁ । ଆମର ରସିକ ଲେଖକମାନଙ୍କୁ ରସ ଚହ୍ଲାଇବା ପାଇଁ ଓ ତାଙ୍କର ଲେଖାକୁ ଆହୁରି ରସୁଆଳ କରିବାପାଇଁ ମାତ୍ର । ଯେ ପ୍ରକୃତ କବି, ପ୍ରକୃତ ସାହିତ୍ୟିକ, ସେ କେବଳ ସମାଲୋଚନା ଭୟରେ ମୁହଁ ବଙ୍କା କରି ବସେ ନାହିଁ; ବସି ପାରେନାହିଁ । ତାହାର ରସ କାହାର କଥାରେ ଶୁଖିଯାଏ ନାହିଁ; ଯାଇପାରେ ନାହିଁ । ଗପ ଅଛି, ସମାଲୋଚନା ଦାଉରେ କିଟସ୍‌ଙ୍କର ଛାତି ଫାଟିଯାଇ ସେ ମରିଯାଇଥିଲେ । କଥାଟା ମାତ୍ର ଗପ । ଅଳସ ଈର୍ଷାର ଫଳ । ତା ସମସ୍ତେ ଜାଣନ୍ତି । ଆମ ଦେଶରେ ମଧ୍ୟ ଗୋଟାଏ ଗପ ଅଛି, କାମପାଳ ମିଶ୍ରେ ସୀତା ବିବାହର

ସମାଲୋଚନା ପଢ଼ି ବାଇଆ ହୋଇଯାଇଥିଲେ । ସେଇଟା ମଧ୍ୟ ଗପ, ଅଜବ ମିଛ ଗପ । ବରଂ ଅନ୍ଧ ପ୍ରଶଂସା ସାହିତ୍ୟିକର ମୁଣ୍ଡ ବିଗାଡ଼ିଦିଏ, ତାର ରସ ଭଣ୍ଡାରରେ ପୋକ ପକାଇଦିଏ । ଗେଟେ ଥରେ କହିଥିଲେ—

When a writer has attracted attention by a good piece of work, the public tries to prevent his producing another......... The brooding talent is dragged out to the hurly burly of the world, inspite of itself, because every one thinks, he would be able to appropriate a part of it.

ଥରେ ଯଦି ଗୋଟିଏ କିଏ ଭଲ କବିତା ଲେଖିଦେଲା, ତାହେଲେ ଲୋକେ ତାର ମୁଣ୍ଡ ବିକ ଖାଇ ବସନ୍ତି । ତାକୁ ସଂସାରର ଏ ଘନଗହ୍ଵଳକୁ ଟାଣିଆଣି ସମସ୍ତେ ତାର ମାଉଁସରୁ ଫୁଲାଏ ଫୁଲାଏ ଖାଇବାକୁ ଇଚ୍ଛା କରନ୍ତି । ଅନ୍ୟ ପକ୍ଷରେ ସମାଲୋଚନା ଅନେକ ସମୟରେ ସାହିତ୍ୟିକକୁ ପ୍ରାଣ ଦିଏ । ସାହେବମାନଙ୍କ ଦେଶରେ କିଏ ଗୋଟାଏ କିଛି ଲେଖିଲେ ସମାଲୋଚନାକୁ ଚାହିଁବସେ । ସମାଲୋଚନା ପ୍ରଶଂସାତ୍ମକ ହେଉ ବା ନିନ୍ଦାତ୍ମକ ହେଉ—ସେଥିରୁ ସେ ନିଜର ବାଟ ଦେଖିନିଏ । ସେମାନେ ଆମ ନୂଆ ଲେଖକଙ୍କ ପରି ସମାଲୋଚନା ଖିରୁ ଲୁହନ୍ତି । ମୋର ଜଣେ ବନ୍ଧୁଙ୍କ ଭାଷାରେ ବେଳେ-ବେଳେ ସମାଲୋଚନାର 'ଧାତ୍ରିକା ମାଡ଼' ସାହିତ୍ୟିକର ଭିତରୁ ଅସଲ ରସ ନିଗାଡ଼ି ଆଣେ । ଇଂରେଜୀ ସାହିତ୍ୟରେ ଯେତେବେଳେ ଡ୍ରାଇଡେନ୍, ପୋପ୍, ଆଡ଼ିସନ୍, ଷ୍ଟିଲ୍, ଜନ୍‌ସନ୍ ଇତ୍ୟାଦିଙ୍କ ଭାଷା, ବନ୍ଧ, ଛନ୍ଦ ଭିତରେ କବିତା ମଲପ୍ରାୟ, ସେତେବେଳେ ବାଇରନ୍, ସେଲି, କିଟସ୍ ପ୍ରଭୃତି ଏ ବନ୍ଧନ ଛିଣ୍ଡାଇ ସାହିତ୍ୟକୁ ସ୍ୱାଭାବିକ ଓ ଜୀବନ୍ତ କରିବାକୁ ଅଣ୍ଟାଭିଡ଼ି ବାହାରିପଡ଼ିଲେ । ଏ ନୂଆ ବିଦ୍ରୋହିର ନୂଆ ନିଶାରେ ବିଭୋର ହୋଇ ସେମାନେ ଯେତେବେଳେ ଅମଡ଼ା ଗୁଳିବାକୁ ଆରମ୍ଭ କଲେ, ସେତେବେଳେ ସମାଲୋଚକ ତାର ଝୋପଡ଼ା ପାହାର ଘେନି ବାହାରିପଡ଼ିଲେ । ବାହାରିନଥିଲେ ଇଂରାଜୀ ସାହିତ୍ୟର ଅବସ୍ଥା କୁହାଯାଇ ନଥାନ୍ତା । ବାହାରିଥିଲେ ବୋଲି ତାଙ୍କ ପରେ ପରେ ଟେନିସନ୍, ବ୍ରାଉନିଂ ପ୍ରଭୃତି ସମ୍ଭବ ହେଲେ ।

ସାହିତ୍ୟରେ ସମାଲୋଚନାର ସ୍ଥାନ ଅଛି; ଆଉ ସେ ସ୍ଥାନ ସିଲରଙ୍କ ଭାଷାରେ ଝାଡ଼ୁଦାରର 'Serving wench'ର ସ୍ଥାନ ହେଲେ ମଧ୍ୟ, ସେ ଝାଡ଼ୁଦାର ଅତି ହେଇ; ତାର କାର୍ଯ୍ୟ ଅତି ମହତ୍ । ସେ କାହାରିକୁ ଶ୍ରେଷ୍ଠ କରିବାକୁ ଯାଏନାହିଁ, କେବଳ ସାହିତ୍ୟ ମନ୍ଦିରରୁ ବୁଢ଼ୀଆଣି ଜାଲ, ଅଳିଆ, ମଳିଆ, ପୋକ, ଜୋକ ଓଲେଇ ପୋଲେଇ ଫିଙ୍ଗିଦିଏ, ଘରଟିକୁ ଚକ୍‌କଣ ଝକଣ କରି ରଖେ ସରସ୍ୱତୀଙ୍କ ଆଗମନ ପାଇଁ । ସରସ୍ୱତୀ ଯେତେବେଳେ ଆସନ୍ତି, ସେତେବେଳେ ସେ ଆପେ ଛୁଇଁ ମୁଣ୍ଡିଆ ଗୋଟିଏ ମାରି ପଛେଇଯାଏ । □

# ଇଂରେଜୀ ସାହିତ୍ୟର ଉପାଦେୟତା

## ୧ — ସାହିତ୍ୟର ରୂପ

ଜାତିର ସାହିତ୍ୟ, ଜାତିର ଭାବଧାରା ବା ଅନୁଭୂତିର ଲିଖିତ ବିକାଶ ମାତ୍ର । ଭାବୁକମାନେ ଯାହା ଭାବନ୍ତି ବା ଅନୁଭବନ୍ତି, ତାକୁ ଯେତେବେଳେ ସେମାନେ ଲେଖିପକାନ୍ତି, ସେତେବେଳେ ସେସବୁ ସାହିତ୍ୟ ହୁଏ । ଏପରି ହିସାବରେ ଦେଖିଲେ ବିଜ୍ଞାନ, ଦର୍ଶନ, ଇତିହାସ ସବୁ ସାହିତ୍ୟ; କିନ୍ତୁ ଯାହାକୁ ପ୍ରକୃତିରେ ସାହିତ୍ୟ ବୋଲି ଆମେ କହୁଁ, ତାହାର ଓ ସାଧାରଣ ସାହିତ୍ୟ ଭିତରେ ଏତିକି ପାର୍ଥକ୍ୟ ଯେ, ସେହି ଲେଖାର ଛାଞ୍ଚ ଅଲଗା । ସାହିତ୍ୟିକ ତା'ର ସୌନ୍ଦର୍ଯ୍ୟବୋଧର ଅନୁରୂପ ବେଶଭୂଷା ପିନ୍ଧାଇ ପାଠକର ଆଗରେ ଠିଆ କରାଏ ଏପରି ଭାବରେ ଯେ, ପାଠକର ମନ ଭିତରେ ଯେ ସୁପ୍ତ ସୌନ୍ଦର୍ଯ୍ୟବୋଧ ଲୁଚିକରି ଥାଏ, ତାହା ଲେଖକର ସୌନ୍ଦର୍ଯ୍ୟବୋଧ ଆହ୍ୱାନରେ, ଭୀମଙ୍କ ଆହ୍ୱାନରେ, ଦୁର୍ଯ୍ୟୋଧନ ମାନସରୋବର ଭିତରୁ ବାହାରିପଡ଼ିଲା ପରି ଉଦ୍‌ବୁଦ୍ଧ ହୋଇଉଠେ । ଏଇ ଯେ ବେଶଭୂଷା, ତାହାକୁ ଭାଷା ଓ ଶୈଳୀ ବୋଲି କୁହାଯାଏ । ଅତଏବ, ସାହିତ୍ୟ ବୋଇଲେ ଭାବନା ବା ଅନୁଭୂତି ଓ ଭାଷା ଏବଂ ଶୈଳୀ ଉଭୟକୁ ବୁଝାଏ ।

## ୨ — ଇଂରେଜୀ ସାହିତ୍ୟର ରୂପ

ଇଂରେଜୀ ସାହିତ୍ୟର ଉପାଦେୟତା ବୁଝିବାକୁ ହେଲେ, ତାହାର ଏଇ ବିଶିଷ୍ଟ ଜୀବନଟିକୁ ବୁଝିବାକୁ ପଡ଼ିବ । ମୁଁ ଆଗରୁ କହିଚି, ଭାବ ବା ଅନୁଭୂତି ସାହିତ୍ୟର ପ୍ରାଣ । ଇଂରେଜୀ ସାହିତ୍ୟର ପ୍ରାଣ—ଭାବ । ଆମ ସାହିତ୍ୟର ପ୍ରାଣ—ଅନୁଭୂତି । ଇଂରେଜୀ ସାହିତ୍ୟ ଭାବୁକର ବୁଦ୍ଧି ଦେଇ ଫୁଟିଉଠେ । ଆମର ଦେଶୀୟ ସାହିତ୍ୟ ଲେଖକର ଅନୁଭୂତି ନେଇ ଖେଳେ, ଯାହାକୁ ଆମେ 'ରସ' ବୋଲି କହୁଁ । ମୁଁ ସ୍ୱା' ବୋଲି କହିବାକୁ ଯାଉନି ଯେ, ଇଂରେଜୀ ସାହିତ୍ୟରେ ରସ ବା ଅନୁଭୂତି ନାହିଁ । ଅଛି; କିନ୍ତୁ ସେଥିରେ ଭାବନା ବା ଚିନ୍ତା ହିଁ ପ୍ରବଳ ପ୍ରାଣ । ଆମ ସାହିତ୍ୟରେ ସେହିପରି ବୁଦ୍ଧିର ଫଳ, ଭାବନା ବା ଚିନ୍ତା ଅଛି । କିନ୍ତୁ ସେ କେବଳ ଅନୁଭୂତି ରସର ପରଦା ଦେହରେ ଯଥାଯୋଗ୍ୟ ଭୂଷଣ କାମ ମାତ୍ର । ଆମ ସାହିତ୍ୟ କହିଲାବେଳେ ମୁଁ ଆମର ଚିରନ୍ତନ ସାହିତ୍ୟ କଥା କହୁଚି, ଏଇ ଋତୁଜୀବୀ ଗରମ ଘର ଫୁଲର କଥା କହୁନାହିଁ । ଇଂରେଜୀ ସାହିତ୍ୟର ଏହି ନିରବଚ୍ଛିନ୍ନ ବିକାଶଧାରା, ଏଇ ଗଥିକ (gothic) ମୂଳଦୁଆ ଉପରେ ଷଷ୍ଠ ଜର୍ଜଙ୍କ ଅମଳର ଘରତୋଳା—ଇଂରେଜୀ ସାହିତ୍ୟର ଗୋଟିଏ ବଡ଼-ରକମ ବିଶେଷତ୍ୱ । ଆଉ ଏଇ ବିଶେଷତ୍ୱଟିକ ସେ ରଖିପାରିଚି ବୋଲି ତା'ର ଆଦର ଓ ଆଗ୍ରହ ଏତେ । ତାହାର ଏହି ଉପାଦେୟତାଟି ଆମର ଶିକ୍ଷଣୀୟ । ଏସବୁ ବିଷୟକୁ

ଉଦାହରଣ ଦେଇ ବୁଝାଇଦେବାର ଅବସର ଏଠାରେ ନାହିଁ, ସୁତରାଂ ପାଠକେ କ୍ଷମା କରିବେ ।

ଦ୍ୱିତୀୟରେ ଇଂରେଜୀ ସାହିତ୍ୟର ଭାଷା । ଏ ଭାଷା କେତେ ସ୍ତରରେ ଗଢ଼ା ହୋଇଛି । ଟିଉଟନିକ୍ ଭାଷାର ମୂଳଦୁଆ ଉପରେ ଗ୍ରୀକ୍, ରୋମାନ୍, ଡେନିସ୍, କେଲଟିକ୍ ଇତ୍ୟାଦି ଭାଷାର ସ୍ତର ସବୁ ପଡ଼ି ପଡ଼ି ତା' ଉପରେ ଯେ ପ୍ରକାଣ୍ଡ ଓକ୍ ଗଛଟି ସାର ଖାଇ ବଢ଼ିଚାଲିଛି, ତା'ର ଡାଳ ଓ ଚେର ପଶ୍ଚିମରେ ମାର୍କିନ୍ ଦେଶଠାରୁ, ପୂର୍ବରେ ଅଷ୍ଟ୍ରେଲିଆ ପର୍ଯ୍ୟନ୍ତ ମାଡ଼ିଯାଇଛି, ରୂପକଥାଠାରୁ ଆରମ୍ଭ କରି ବିଜ୍ଞାନ ପର୍ଯ୍ୟନ୍ତ ସବୁ ଭାବନାର ରାଜ୍ୟକୁ ଛାଇ ଦେଇପାରିଛି ।

ଇଂରେଜୀ ସାହିତ୍ୟିକମାନେ ଭାବର ବିକାଶଲାଗି ସାହିତ୍ୟ ତିଆରି କରିଥିଲେ । ସେହି ହେତୁରୁ ଯେ କୌଣସି ଯୁଗରେ ଆସୁ, ତାହାର ବିକାଶ ଓ ପ୍ରକାଶନ ଲାଗି ଇଂରେଜ ଭାଷାଭିଜ୍ଞଙ୍କୁ କଷ୍ଟ ପାଇବାକୁ ପଡ଼ିନାହିଁ ।

### ୩—ଏହି ରୂପର ବାହାଦୁରୀ

(କ) ସାଧାରଣ—

ଇଂରେଜ ସାହିତ୍ୟର ଏହି ରୂପର ଏଇ ବାହାଦୁରି ଯେ, ଯୁଗୋଚିତ ଭାବନା ଓ ଚିନ୍ତାଧାରାର ବିକାଶ ଏ ଭାଷାରେ ସହଜତର । ଯୁଗେ ଯୁଗେ ଚିନ୍ତା ଓ ଭାବନାର ପରିବର୍ଦ୍ଧନ ଓ ପର୍ଯ୍ୟାବର୍ତ୍ତନ ଚାଲିଛି । ବିଶ୍ୱସଭ୍ୟତା ଆଗେଇ ଚାଲିଛି । ବିଶ୍ୱସନ୍ତାନ ପ୍ରତି-ଯୁଗରେ ନୂଆ ନୂଆ କଥା ଦେଖୁନି—ଦେଖି ମୁଗ୍ଧ ହେଉଛି । ଆଉରି ନୂଆ କଥା ପାଇବ ବୋଲି ଆଶା କରି କଣ୍ଟାବୁଦା, ବାଟ ଅବାଟ ମାଡ଼ି ଚାଲିଛି । ସେ ଯେତିକି ଦେଖୁଛି, ସେତିକି ଲେଖୁଛି ଭାବନାରେ ଉଦ୍‌ବୁଦ୍ଧ ହୋଇ ଅଥବା ଅନୁଭୂତିରେ ମୁଗ୍ଧ ହୋଇ । ଯେ ଯାହା ବିଭାବ ଯେଉଁ ସେ ଭାଷା ତିଆରି କରିଯାଉଛି । ଭାବ-ବିକାଶର ଭାଷା, ଅନୁଭୂତି-ବିକାଶର ଭାଷା ସହିତ ସମାନ ହୋଇ ନପାରେ । ଭାବର ଭାଷା ଅନୁଭୂତିର ପ୍ରତ୍ୟେକ ମୂର୍ଚ୍ଛନାର ବିକାଶ କରି ନପାରେ । ସେହିପରି ଅନୁଭୂତିର ଭାଷା ଭାବର ପ୍ରତ୍ୟେକ କଳିକାକୁ ଫୁଟାଇ ନପାରେ । ଭାବ ଓ ଅନୁଭୂତି ମଧ୍ୟରେ ବଡ଼ କିଏ, ଶ୍ରେଷ୍ଠ କିଏ କହି ହେବନି । ଉଭୟର ସ୍ଥାନ ସଭ୍ୟତାର ଅଗ୍ରଗତିରେ ବଡ଼ ଉପାଦେୟ । ଅତଏବ ସଭ୍ୟର ସ୍ୱଦେଶ ସଭ୍ୟ ଭାବ-ଦେଶର ଭାଷା ଓ ସାହିତ୍ୟ ପଢ଼ିବା ଉଚିତ, ସଭ୍ୟତାର ଭାବ ବୁଝିବା ପାଇଁ ସେ ସାହିତ୍ୟ ତାହାର ନିତାନ୍ତ ଉପାଦେୟ ।

(ଖ) ବ୍ୟାବହାରିକ—

ପାଶ୍ଚାତ୍ୟ ଜଗତରେ ଗୋଟିଏ କଥା ଅଛି—ଗୀତ ଗାଇବ ଇଟାଲୀ ଭାଷାରେ, ପ୍ରେମ କରିବ ଫରାସୀ ଭାଷାରେ ଓ ବ୍ୟବସାୟ କରିବ ଇଂରେଜୀ ଭାଷାରେ । ବ୍ୟବସାୟରେ ଭାବର ପ୍ରକାଶହିଁ ପ୍ରଧାନ ଗୁଣ । ଯେ ନିଜ ମାଲର ବଢ଼େଇ ସମସ୍ତଙ୍କ ର

ବୁଝିପାରିବା ଭଳି ଭାଷାରେ ଯେତେ କହିପାରିବ, ତା' କାମରେ ସେତିକି କାଟତି ବଢ଼ିବ । ଇଂରେଜୀ ଭାଷାରେ ଏହା ସମ୍ଭବ ଅତି ସହଜରେ । ଦ୍ୱିତୀୟରେ, ଇଂରେଜୀ ଭାଷା ପୃଥିବୀର ପ୍ରାୟ ଅର୍ଦ୍ଧେ ଲୋକ ବ୍ୟବହାର କରନ୍ତି । ସମୁଦାୟ ମାର୍କିନ୍ ଦେଶ ଓ କାନାଡ଼ା, ସମୁଦାୟ ଦକ୍ଷିଣ ଆଫ୍ରିକା, ସମୁଦାୟ ଭାରତବର୍ଷ, ପୂର୍ବ ଓ ପଶ୍ଚିମ ଭାରତୀୟ ଦ୍ୱୀପପୁଞ୍ଜ ଏବଂ ଅଷ୍ଟ୍ରେଲିଆ ମହାଦେଶ ଉପରେ ଇଂରେଜୀ ଭାଷାର ପ୍ରଭାବ ସମ୍ପୂର୍ଣ୍ଣ । ଇଂଲଣ୍ଡ ନିଜେ ଗୋଟିଏ ବଡ଼ ରକମ ବ୍ୟବସାୟ ଓ କଳକାରଖାନାର ଦେଶ । ଅତଏବ, ବ୍ୟବସାୟ କରିବାକୁ ଗଲେ, ପ୍ରତିପଦରେ ଇଂରେଜ ଭାଷାଭାଷୀ ଲୋକଙ୍କ ସହିତ ସହଯୋଗ ଦରକାର ପଡ଼େ । ସେଥିଲାଗି ବ୍ୟବସାୟୀ ଶାସକ ଦଳ ଇଂରେଜୀ ଶିଖିବା ଦରକାର । ଅବଶ୍ୟ ଏଠାରେ ଯୁକ୍ତି କରାଯାଇପାରେ ଯେ, ଇଂରେଜୀ ସାହିତ୍ୟ ନପଢ଼ି କେବଳ ବେସିକ୍ ଇଂରେଜୀ (basic English) ଶିଖିଲେ ତ ଏ କାମ ଚଳିବ । ତା' ହେଲେ ଇଂରେଜୀ ସାହିତ୍ୟର ଉପାଦେୟତା ରହିଲା କେଉଁଠି ? ଏ ଗୋଟିଏ ସ୍ଥୂଳ ବୁଦ୍ଧିଆ କଥା । ଯେଉଁମାନେ ମାନ୍ଦ୍ରାଜର ଝିଟକାବାଲାଙ୍କ ଇଂରେଜୀ କହି ତାଙ୍କରି ଭଳି ବ୍ୟବସ୍ଥାୟ କରିବାର ଉଚ୍ଚ ଆକାଂକ୍ଷା ରଖନ୍ତି, ତାଙ୍କ ମୁହଁରେ ଏହା ସୁନ୍ଦର ହୋଇ-ପାରେ । ମାତ୍ର ଯେଉଁମାନେ ଆନ୍ତର୍ଜାତୀୟ ବାଣିଜ୍ୟ ବ୍ୟବସାୟ କରିବାକୁ ଇଚ୍ଛା କରନ୍ତି, ସେମାନଙ୍କୁ ଇଂରେଜମାନଙ୍କ ସହିତ ଇଂରେଜ ଭଳି ସାମାଜିକ ଚାଲିଚଳଣ ଓ କଥା-ବାର୍ତ୍ତାର ବାହାଦୁରି ଦେଖାଇ କାମ ହାସଲ କରିବାକୁ ହେବ । ଆମେ ଭୁଲିଯାଉଁ, ବଡ଼ ବଡ଼ ଇଂରେଜ ବ୍ୟବସାୟୀମାନେ ସାଧାରଣତଃ ଅତି ଉଚ୍ଚଶିକ୍ଷିତ ଓ ସୁସଂସ୍କୃତ । ସେମାନଙ୍କ ସହିତ ବ୍ୟବସାୟ କରି ସେମାନଙ୍କଠାରୁ କାମ ଆଦାୟ କରିବାକୁ ହେଲେ ସେମାନଙ୍କୁ ସେମାନଙ୍କ ଭାଷାରେ ଓ ଭାବରେ ଆପ୍ୟାୟିତ କରିବା ଦରକାର । ସେଥି-ଲାଗି ଇଂରେଜୀ ସାହିତ୍ୟର ଜ୍ଞାନ ପ୍ରୟୋଜନୀୟ । ଶାସନ ସମ୍ପର୍କରେ ମଧ୍ୟ ସେହି କଥାଟି ଆଉ ଟିକିଏ ଗୁରୁତର ଭାବରେ ଧରିନେବାକୁ ପଡ଼ିବ ।

(ଗ) ସାଂସ୍କୃତିକ—

ସମାଜର ଓ ଦେଶର ସଭ୍ୟତା, ସଂସ୍କୃତି ବଢ଼ାଇବାକୁ ଗଲେ ବିଶ୍ୱସାହିତ୍ୟର ଚିନ୍ତାଧାରା ସହିତ ଆମକୁ ସଂଶ୍ଳିଷ୍ଟ ରହିବାକୁ ପଡ଼ିବ । ବିଶ୍ୱସାହିତ୍ୟର ଚିନ୍ତାଧାରା ବହୁ ଭାଷାରେ ବିକଶିତ । ଯେଉଁ ଭାବ ଓ ଶୈଳୀ ଗେଟେଙ୍କ ପାଖରେ ଥିଲା ତାହା ସେକ୍ସପିୟରଙ୍କ ଠାରେ ନଥିଲା । ଯାହା ଦାନ୍ତେ ବା ମାଇକେଲ ଆଞ୍ଜେଲୋଙ୍କ ପାଖରେ ଥିଲା, ତାହା ମିଲ୍‌ଟନ୍ ବା ରସ୍କିନ୍‌ଙ୍କ ପାଖରେ ନଥିଲା । ଅଥଚ ଏମାନେ ସମସ୍ତେ ବିଶ୍ୱ-ସଭ୍ୟତା ଓ ସଂସ୍କୃତିର ଜଣେ ଜଣେ ପ୍ରଚାରକ ଓ ଉଦ୍‌ବୋଧକ । ଏ ସମସ୍ତଙ୍କ ଲେଖା ପଢ଼ିବାକୁ ଗଲେ ଆମର ଇଂରେଜୀ, ଫରାସୀ, ରୋମାନ୍, ଜର୍ମନ୍, ଋଷିଆନ୍ ଇତ୍ୟାଦି ବହୁତ ଭାଷାର ସାହିତ୍ୟ ପଢ଼ିବା ଦରକାର । ଯାହା କାହାରି ଜୀବନରେ ସମ୍ଭବ ନୁହେଁ । ସେଥିପାଇଁ ହୁଏତ ଏ ସବୁ ଭାବୁକମାନଙ୍କର ଲେଖା ଆମ ଭାଷାରେ ଅନୁବାଦ କରିବାର

ବନ୍ଦୋବସ୍ତ ଅମଳ କରିବାକୁ ପଡ଼ିବ । ନହେଲେ ଏପରି ଏକ ସାହିତ୍ୟ ଅମଳ ପୋଷ୍ୟ କରି ନବାକୁ ହେବ, ଯେଉଁଥିରେ ଏସବୁ ବିଶ୍ୱସାଂସ୍କୃତିକମାନଙ୍କ ସନ୍ଦେଶ ଅନୁବାଦିତ ହୋଇ ରହାଯାଇଛି । ମୁଁ ଯେତେଦୂର ଜାଣେ, ଇଂରେଜୀ ସାହିତ୍ୟ ଛଡ଼ା ଏପରି ଦ୍ୱିତୀୟ ସାହିତ୍ୟ ନାହିଁ । କେଡ୍‌ମନ୍‌ଙ୍କ ଠାରୁ ଆରମ୍ଭ କରି ବେଲକ୍‌ଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକ ଇଂରେଜ ସାହିତ୍ୟିକ ଅନ୍ୟ କୌଣସି ଭାଷାରେ ଖଣ୍ଡିଏ ସୁନ୍ଦର ଲେଖା ଦେଖିଲେ, ତାକୁ ସାଙ୍ଗେ ସାଙ୍ଗେ ଇଂରେଜୀ ଭାଷାରେ ଅନୁବାଦ କରି ପକାଉଥିଲେ । ସେହି ହେତୁରୁ ଇଂରେଜୀ ସାହିତ୍ୟ ଏତେ ଉଚ୍ଚ, ସମୃଦ୍ଧ ଓ ଲୋକପ୍ରିୟ । ଏ ଦିଗରୁ ଦେଖିଲେ ମଧ୍ୟ ଇଂରେଜୀ ସାହିତ୍ୟର ଉପାଦେୟତା ଅତି ମହାନ୍ ।

(ଘ) ଜାତୀୟତା—

ଇଂରେଜୀ ସାହିତ୍ୟର ଏହି ସାର୍ବଜନୀନତା ସାଙ୍ଗେ ସାଙ୍ଗେ ଜାତୀୟତାର ଉନ୍ମାଦନାପୂର୍ଣ୍ଣ ନିଶା ବଡ଼ ପ୍ରତ୍ୟକ୍ଷ ଭାବରେ ମିଳେ । ସେକ୍‌ସପିୟରଙ୍କର Richard II ରେ John of Gaunt ଙ୍କର ଅଗ୍ନିଗର୍ଭ ବକ୍ତୃତା—

"I his royal throne of kings
this sculptered Isle.
This earth of majesty
this seat of mars."

ରବର୍ଟ ବର୍ଣ୍ଣସ୍ ( Robert Burnss )ଙ୍କର 'Scots wha Hal' ନାମକ ପଦ୍ୟ—

"Wha will be a traitor knove ?
wha can fill a cowards grave.
wha so base as be a slave.
let him turn and flee."

ଅଥବା William Blakeଙ୍କର Miltonରେ

"And did these feet in ancient time.
Walk upon England's mountain green.
And was the holy lamb of God.
On England's pleasant pastures seen."

ଇତ୍ୟାଦି କବିତାଗୁଡ଼ିକ ତାହାର ଜ୍ୱଳନ୍ତ ଉଦାହରଣ, ଯେଉଁମାନେ ଇଂରେଜୀ ସାହିତ୍ୟର ଲୋକପ୍ରିୟ ଉପନ୍ୟାସ ଓ ଗଳ୍ପସବୁ ପଢ଼ିଥିବେ, ସେମାନେ ଅନୁଭବ କରିଥିବେ ଯେ, ଗଳ୍ପ ବା ଉପନ୍ୟାସରେ ଯେତେକ ଦୁଷ୍ଟ ପ୍ରକୃତିର ଲୋକ, ସମସ୍ତେ ଅଣଇଂରେଜ ଓ ଯେତେକ ବୀର, ଶୂର ଓ ଗୌରବମୟ ପୁରୁଷ ସେ ସମସ୍ତ ଇଂରେଜ । ବିଶେଷତଃ

ପିଲମାନଙ୍କ ପାଇଁ ଯେତେ ଗପବହି ଲେଖାଯାଏ, ସେଗୁଡ଼ିକରେ ଏହି ଧରଣର ଚରିତ୍ର ଚିତ୍ରଣ ବଡ଼ ସାଧାରଣ । ଏ ଜାତୀୟ ସଙ୍କୀର୍ଣ୍ଣତା'କୁ ଆମ ଦେଶର ଲୋକେ ପସନ୍ଦ କରନ୍ତି ନାହିଁ; କିନ୍ତୁ ଏ ଭାବନା ବା ଚିନ୍ତାରଧାର ବୁଦ୍ଧିପ୍ରସୂତ—ଏହା ଉଦାମ ହୃଦୟର ଉଚ୍ଛଳ ଅନୁଭୂତି ନୁହେଁ, ଇଂଲଣ୍ଡ ବିଶ୍ୱ ଭିତରେ ଗୋଟିଏ ବଶିଷ୍ଟ ବ୍ୟକ୍ତି । ତା'ର ବିଶ୍ୱ ପ୍ରତି ଯେତେ କର୍ତ୍ତବ୍ୟ ଅଛି, ନିଜ ପ୍ରତି ମଧ୍ୟ ସେହିପରି ବା ତା'ଠାରୁ ବଳି କର୍ତ୍ତବ୍ୟ ଅଛି । ଇଂଲଣ୍ଡ ଶକ୍ତିଶାଳୀ ହେଲେ ପୃଥିବୀ ଶାନ୍ତି ଭୋଗ କରିବ; ଏହାର ଅର୍ଥ ନୁହେଁ ଯେ ଇଂଲଣ୍ଡ ସମସ୍ତଙ୍କୁ ଜୟ କରି ନିଜ ବାହୁଛାୟା ତଳେ ରଖିବ । ଏହାର ଅର୍ଥ ଏଇଆ ଯେ ବିଶ୍ୱର ପ୍ରତ୍ୟେକ ଅବୟବ ପୂର୍ଣ୍ଣ ଶକ୍ତିଶାଳୀ ନ ହେଲେ ବିଶ୍ୱରେ ଶାନ୍ତି ଆସି ପାରିବ ନାହିଁ । ସେହି ହେତୁରୁ ଜାତୀୟ ଭାବର ପ୍ରୟୋଜନ ପ୍ରତ୍ୟେକ ଦେଶରେ ରହିଛି ଓ ରହିବ । ଆମର ସାହିତ୍ୟିକମାନଙ୍କର ଏ ଆଦର୍ଶଆଡ଼କୁ ଟିକିଏ ନଜର ଦେବା ଉଚିତ । ନିଜର ଦେଶକୁ ଦୁର୍ବଳ କରି ତୁମେ ବିଶ୍ୱର ମଙ୍ଗଳ କାମନା କଲେ ପେଟମରି ରୋଗ ପାଇଁ ଶକ୍ତି-ରସାୟନ ଖାଇବା ଭଳି ହେବ ।

(ଙ) ଭବିଷ୍ୟତ ବାଦ—

ଇଂରେଜ ସାହିତ୍ୟର ଆଉ ଗୋଟିଏ ବିଶିଷ୍ଟ ଗୁଣ ଦେଖିବାକୁ ମିଳେ । ଏ ସାହିତ୍ୟର ଆରମ୍ଭଠାରୁ ଏହା ଲୋକମତ ତିଆରି କରିଚାଲିଛି । ଆଜି ସାହିତ୍ୟ ଯାହା କହୁଚି, କାଲି ସମାଜର ସେଇଆ ହେଉଚି । ଇଂରେଜୀ ସାହିତ୍ୟ ଇଂରେଜ ରାଜନୀତିର ତାପମାନ ଯନ୍ତ୍ର ଭଳି କାମ କରି ଆସିଚି । Spensor, Bacon ଓ Shakespere ଇତ୍ୟାଦିଙ୍କ ଲେଖା ପରେ ପରେ ବା ସଙ୍ଗେ ସଙ୍ଗେ ରାଣୀ ଏଲିଜାବେଥଙ୍କର ଗୌରବମୟ କାଳ, Spanish Armada ପରାଜୟ ଓ ସମୁଦ୍ର ଉପରେ ଇଂଲଣ୍ଡର ପ୍ରଭାବ ସ୍ଥାପନ । ରାଜ୍ୟ ଆସିବା ସାଙ୍ଗେ ସାଙ୍ଗେ, ସାମ୍ରାଜ୍ୟର ମୂଳଦୁଆ ଦେବା ସାଙ୍ଗେ ସାଙ୍ଗେ ଦେଶର ଯେ ଶିଥିଳତା ଓ ରାଜନୈତିକ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହେଲା ତାହାର ପ୍ରକାଶ Ben Jonson ଙ୍କ ଠାରୁ ଡ୍ରାଇଡେନଙ୍କ ମଧ୍ୟରେ । କ୍ରମୱେଲଙ୍କର ନିଷ୍ଠୁର ଧର୍ମ ରାଜ୍ୟର ଅସହଣିକ ଭାବଧାରାର ବିକାଶ Milton ଙ୍କ ଲେଖାରେ । ଏସବୁ ବିଷୟର ପୁଙ୍ଖାନୁପୁଙ୍ଖ ଉଦାହରଣ ଦେଇ ବୁଝାଇବା ଭଳି ପରିସର ଏ କ୍ଷୁଦ୍ର ପ୍ରବନ୍ଧ ମଧ୍ୟରେ ନାହିଁ । କିନ୍ତୁ କଥା ହେଉଚି ଯେ, ଇଂଲଣ୍ଡର ସାହିତ୍ୟ ଇଂଲଣ୍ଡର ଲୋକମାନଙ୍କର କ୍ଷଣିକ ମନୋବିନୋଦନ ପାଇଁ ଲେଖା ଯାଉନଥିଲା । ସେଠାକାର ସାହିତ୍ୟିକମାନେ ସୃଷ୍ଟିଆଡ଼ୁ ଯେ ନୂଆ ନୂଆ ଭାବଧାରା ବହିଆସେ, ସେ ସବୁକୁ ଗୋଟିଏ ଗୋଟିଏ ହ୍ରଦ ବା ନଦୀ, ଝରଣାରେ ଭର୍ତ୍ତିକରି ରାଜ୍ୟର ଲୋକଙ୍କୁ ଗାଧୋଇବାକୁ ଦିଅନ୍ତି ଓ ତାହାର ଉଷ୍ଣ ପାଣିରେ ଗାଧୋଇ ଶୀତଶିଥିଳ ଇଂରେଜ ଜାତି ଉଦ୍‌ବୁଦ୍ଧ ଓ ଉତ୍କ୍ଷିପ୍ତ ହୋଇଉଠେ । ସେମାନେ ଏହା କିପରି କରିଛନ୍ତି—ସେ କଥା ତାଙ୍କର ସାହିତ୍ୟ ନ ପଢ଼ିଲେ ଆମ୍ଭେମାନେ ବୁଝିପାରିବୁ ନାହିଁ । କୋନାନ୍ ଡୟେଲ, ଓ୍ୱେଲସ ଇତ୍ୟାଦି

ବୈଜ୍ଞାନିକମାନେ ବିଜ୍ଞାନର ଗମ୍ଭୀରତତ୍ତ୍ୱ ଲୋକପାଠ୍ୟ ସାହିତ୍ୟ ଆକାରରେ ଲେଖି-ଯାଇଛନ୍ତି । ହକ୍‌ସଲି, ରସେଲ ଓ ବର୍ଣ୍ଣାଡ଼୍‌ଶ ପ୍ରଭୃତି ଲେଖକମାନେ ଅର୍ଥନୀତି ଓ ରାଜନୀତିର ଗମ୍ଭୀରତତ୍ତ୍ୱ ସବୁ ଗଳ୍ପ ଓ ଉପନ୍ୟାସ ଦ୍ୱାରରେ ଏପରି ଭାବରେ ଗୁନ୍ଥିଦେଇ ଯାଇଛନ୍ତି ଯେ ସେମାନଙ୍କ ଗପ ପଢ଼ି ମନ ବହିଲେଇବା ସାଙ୍ଗେ ସାଙ୍ଗେ ପାଠକ ବିଜ୍ଞାନ, ରାଜନୀତି ଇତ୍ୟାଦି ଶିଖିଯାଉଛି । ଏ ଶୈଳୀ ବଡ଼ ଉପାଦେୟ ଓ ଆମ୍ଭମାନଙ୍କର ପ୍ରଣିଧାନଯୋଗ୍ୟ ।

ଅବଶ୍ୟ ଆମ ଦେଶର ଆଜକାଲିକାର ସାହିତ୍ୟରେ ଓଡ଼ିଶାର ଅତୀତ ଗୌରବକୁ ହିଲୁଗୁଣା ଦେଇ ବାହୁନିବାର ଅନେକ କିଛି ଶୁଣାଯାଏ । ଅନ୍ୟ ପକ୍ଷରେ ମଧ୍ୟ ଦେଶର ପୂର୍ବ ଗୌରବ ପ୍ରତି ଅଶ୍ରଦ୍ଧା ଓ ଅସହିଷ୍ଣୁତା ଅନେକ ବକ୍ତବର ଦେଖାଇଥାନ୍ତି । ଉଭୟ ପନ୍ଥାର ମୂଳରେ ଭାବନାର ଦାରିଦ୍ର୍ୟ ବରାବର ଦେଖିବାକୁ ମିଳେ । ଏ କେବଳ ଗମ୍ଭୀର ଭାବନା, ସମାଲୋଚନା ମୂଳକ ପାଠ ଓ ସୂକ୍ଷ୍ମ ଅନୁକରଣ ଦ୍ୱାରା ହୋଇପାରେ । ସାହିତ୍ୟ ଲେଖିବାଟାକୁ ଏପରି ସହଜ କାମଟାଏ ବୋଲି ଧରି-ନେବାଠାରୁ ବଡ଼ ବିପଦ ଜାତିପକ୍ଷରେ ଆଉ କିଛି ହୋଇ ନପାରେ ।

ଏହି ରୂପ ଉପଯୋଗିତା ଏ ସାହିତ୍ୟର ଅନେକ ଅଛି—ସେସବୁ ଏହି କ୍ଷୁଦ୍ର ପ୍ରବନ୍ଧଟି ଭିତରେ କହିବା ସମ୍ଭବପର ନୁହେଁ ।

## ୪—ଉପସଂହାର

ଆମ ଦେଶରେ କେତେକ ସୁଧୀ, ଇଂରେଜ ସାମ୍ରାଜ୍ୟର ଅସ୍ତ ସଙ୍ଗେ ସଙ୍ଗେ ଇଂରେଜୀ ସାହିତ୍ୟର ଅସ୍ତ ମଧ୍ୟ ଦେଖିବାକୁ ଚାହୁଁଛନ୍ତି ଏ ଦେଶରୁ । ଦୀର୍ଘ ଏକ ଶହ ବର୍ଷର ରାଜନୈତିକ ଦାସତ୍ୱ ପରେ ଏପରି ଗୋଟିଏ ପ୍ରତିହିଂସା ପ୍ରଣୋଦିତ ଭାବ-ମନରେ ଆସିବା ସ୍ୱାଭାବିକ । କିନ୍ତୁ ସ୍ୱଭାବ ସତ୍ୟ ନୁହେଁ । ସ୍ୱଭାବ ମଧ୍ୟ ସବୁବେଳେ ସ୍ୱାର୍ଥାନୁକୂଳ ନୁହେଁ । ରାଜନୀତିକ ସ୍ୱାଧୀନତା ପାଇସାରିବା ପରେ ବିଶ୍ୱ-ସଭ୍ୟତାର ଅନୁକୂଳ ପନ୍ଥା ଆମକୁ ଧରିବାକୁ ପଡ଼ିବ । ଆମର ବ୍ୟବସାୟ ବାଣିଜ୍ୟ ବଢ଼ାଇବା ଦରକାର, ଆମର ସଂସ୍କୃତିକୁ ମାର୍ଜିତ କରିବା ଦରକାର, ଆମର ଭାବନା ଓ ଚିନ୍ତାଧାରା ପ୍ରସାରିତ ହେବା ଦରକାର । ଆମର ଭାବନା ଓ ସାହିତ୍ୟକୁ ଯୁଗୋଚିତ ଭାବରାଶିର ପ୍ରଖ୍ୟାପନ ଲାଗି ଶକ୍ତ କରିବା ଦରକାର । ଏସବୁ ଲାଗି ଆମ ସାହିତ୍ୟ ଓ ଭାଷା ଛଡ଼ା ଆଉ ଗୋଟିଏ ସମୃଦ୍ଧ ସାହିତ୍ୟ ଓ ଭାବ-ଦ୍ୟୋତକ ଭାଷା ଆମର ନିତାନ୍ତ ଲୋଡ଼ା । ଦୀର୍ଘ ଦେଢ଼ଶହ ବର୍ଷ ହେଲା ଆମେ ଇଂରେଜୀ ଭାଷା ଓ ସାହିତ୍ୟ ସହିତ ଅତି ପରିଚିତ ହୋଇଆସିଛୁ । ଆମ ପକ୍ଷରେ ସେଇ ଭାଷା ଓ ସାହିତ୍ୟର ଜରିଆରେ ଆମର ଆନ୍ତର୍ଜାତିକ ଉନ୍ନତି କରିବା ଯେତେ ସମ୍ଭବ, ତାହା ଅନ୍ୟ ଭାଷାର ସାହିତ୍ୟ ଜରିଆରେ ହୋଇ ନ ପାରେ । କେତେକ କହନ୍ତି ଯେ ଇଂରେଜୀ ଭାଷା ଓ ସାହିତ୍ୟ ସହିତ ସମ୍ବନ୍ଧ

ରଖିଲେ ଆମର ସାଂସ୍କୃତିକ ଅବନତି ଘଟିବ; ସେମାନଙ୍କର ଏପରି ଭାବନା ଆମ ଇତିହାସ ଶିକ୍ଷାର ବିରୁଦ୍ଧ । ଭାରତୀୟ ସଂସ୍କୃତି କୌଣସି ଦିନ ଆବଦ୍ଧ ବା ବର୍ମାବୃତ ନଥିଲା । ଖୋଲା ମେଲା ଆକାଶ ତଳେ ରହି ଶକ, ତୁର୍କ, ରୋମାନ୍, ଚୀନା, ଗ୍ରୀକ୍, ମୁସ୍‌ଲମ୍ ଓ ଖ୍ରୀଷ୍ଟିୟାନ୍ ଇତ୍ୟାଦି ନାନାପ୍ରକାର ହାୱା ଖାଇ ଖାଇ ଏ ସଂସ୍କୃତି ଏହାକୁ ତଳକୁ ଟାଣିନେଇ ନ ପାରେ । ବହୁ ଧର୍ମ ଓ ବହୁ ସଭ୍ୟତାର ସମନ୍ୱୟ ଭାରତ ସଂସ୍କୃତି ଏକା ମୁକ୍ତବକ୍ଷର ହାୱାରେ ଉତ୍‌ଫୁଲ୍ଲ, ଉଦ୍‌ବୁଦ୍ଧ ଓ ଉଦ୍‌ଗାମୀ ହୋଇପାରିବ ।

ସମାଜ—ଏକବିଂଶତି ବାର୍ଷିକ ଶ୍ରାଦ୍ଧ ଦିବସ ।
ମିଥୁନ ୩ ଦିନ, ୧୩୫୬ ସାଲ
୨୭ ଜାନୁଆରୀ-୧୯୪୯
(ପୃ-୧୦୩-୧୦୭)



# କବି-ପ୍ରେୟସୀ

'କବି' ମାନେ କଣ ବୁଝୁଚନା ? 'କବି' ମାନେ ଯେ କବିତା ଲେଖନ୍ତି, ସେଇ ଏକା ନୁହନ୍ତି; 'କବିତା'ମାନେ-ଛନ୍ଦ ପକାଇ ପଦମିଳାଇ ଯାହା ଲେଖାଯାଏ ସେଇଆକୁ କହୁଚି । ପ୍ରକୃତରେ କବିତା ଗଦ୍ୟରେ ହୋଇପାରେ, ପଦ୍ୟରେ ବି ହୋଇପାରେ, କାଗଜ କଲମରେ ହୋଇପାରେ, ଲିହଣ, ମୁଗୁର ଓ ରଙ୍ଗତୂଳୀରେ ମଧ୍ୟ ହୋଇପାରେ । କୋଣାର୍କର ନଟଗୃହ ଯେପରି ମଧୁର କବିତା, 'କାଦମ୍ବରୀ'ର ଗଦ୍ୟ ମଧ୍ୟ ସେହିପରି କବିତା । 'ଶକୁନ୍ତଳା'ର କବିତାଠାରୁ ଏମାନେ କୁଣିପିମତେ ହୀନତର ନୁହନ୍ତି । ତାଜମହଲର କଳ୍ପନା ଯାହାଙ୍କ ମୁଣ୍ଡରୁ ବାହାରିଥିଲା ଓ ଯାହାଙ୍କ ପର୍ଯ୍ୟବେକ୍ଷଣରେ ତାଜମହଲ ତିଆରି ହୋଇଥିଲା, ସେ ଫର୍ଦୁସିଙ୍କ ଭଳି କବି ଥିଲେ ଓ ତାଜମହଲ ମଧ୍ୟ ଓମରଖୈୟାମଙ୍କ ଗୀତାବଳୀ ଭଳି ଉଚ୍ଚଦରର କବିତା । 'କବି' କହିଲାବେଳେ ମୁଁ ଏହିପରି 'କବି'ଙ୍କୁ କହୁଚି, ଖାଲି ପଦ୍ୟଲେଖା କବିଙ୍କୁ କହୁନି ।

ଏହି ଅସଲି କବି ଜାତିଙ୍କ ଭିତରେ ପୁଣି କେତେଗୁଡ଼ିଏ ବେଅସଲି କବି ନିଜ ପ୍ରକୃତ ରୂପକୁ ଲୁଚାଇ ମୁଖାପିନ୍ଧି ବସିଥାନ୍ତି—ସେମାନଙ୍କୁ ବାଛିନେବା ଦରକାର । ଯେମିତି ଧାନ ଭିତରେ ବାଲୁଙ୍ଗା କି ଅସଲି ଗ୍ରୁପାମବି ଯୋଗିଷ ତେଲ ଟିଣ ଭିତରେ ନକଲି ବାଦାମ ତେଲ । ବାଛି ନ ପାରି ଖାଇଚ ତ ପେଟ ବିଥେଇବ । ଏ ନକଲି କବିଙ୍କ ବାହାଦୂରୀ କିନ୍ତୁ ଖୁବ୍ ବେଶୀ । ଏମାନେ ପ୍ରକୃତରେ କବି ନୁହନ୍ତି । ସତ କହିଲେ ଏମାନେ ମନେ ମନେ ସବୁ କବିତା ଓ କବିଙ୍କୁ ବେକାର ଧନ୍ଦା ଓ ଅଳସୁଆ ପାଗଳ ବୋଲି ଘୃଣା ବି କରନ୍ତି । କିନ୍ତୁ ପଇସା କମାଇବାର ଗୋଟାଏ ପନ୍ଥା, ନା' କରିବାର ଗୋଟାଏ ଶସ୍ତା ଉପାୟ, ଅଥବା ଅନୁସରଣିଆଙ୍କଠାରୁ ବାହା'ବା ନବାର ଫିକିରି ଖିବରେ ସେମାନେ କବିତା କରିବାର ଛଳନା କରନ୍ତି । ପଇସାଳେଖି କି ତା'ଲାଗି ପରିଶ୍ରମ କରିବାକୁ ହୁଏ ଢେର । ବେଳେବେଳେ କେବଳ ନିଜ ପରିଶ୍ରମ ଓ ବୁଦ୍ଧିର ଜୋର୍‌ରେ ସେମାନେ ଭଲଭଲିଆଙ୍କୁ ମଧ୍ୟ ଭଣ୍ଡାଇପାରନ୍ତି, ପାରିଚନ୍ତି ବି । ମୁଁ ଆମ-ଦେଶର ଉଦାହରଣ ଦେବିନି । କାରଣ ସେ ଖାଲି ମାଡ଼ ମୂଲେଇବା କଥା । ଏ ନକଲି କବି ତ ଥିଲେ ଓ ଅଛନ୍ତି ଆମ ଦେଶରେ ପଣପଣ । କିନ୍ତୁ ବୁଦ୍ଧିଆ କି ନା, ତାଙ୍କୁ ଧଇଲେ ଏମିତି ପେଞ୍ଚ ଲଗେଇଦେବେ ଯେ, ହେଲେ ଅନ୍ଧାର ମାଡ଼, ନହେଲେ ବାପ ଅଜା ଚଉଦପୁରୁଷ ଗାଳି । ସେହି ହେତୁରୁ ବିଦେଶୀ ଉଦାହରଣ ଗୋଟାଏ ଅଧେ ଦେବି । ମରି ହଜଗଲେଣି ସେମାନେ ବୁ ଦିନଠୁଁ । କରିବେ କ'ଣ ମୋର ? ତାଙ୍କ ଭୂତଗୁଡ଼ାକ ଅପି ଟିକିଏ କଳକଳା ରବ କରିପାରନ୍ତି । ଆମେ ବି ପକ୍‌କା ଗୁଣିଆ । ଗାରେଡ଼୍ ମନ୍ତ୍ର ଅଛି, ତାକୁ ବୋଲି ପୁଞ୍ଜେ ଯୋଗିଷ ଫୋପାଡ଼ି ଦେଲେ ତାଙ୍କ ଉପରକୁ,

କୁଆଡ଼େ ପଡ଼ିବେ ଶୋଇ ତାଙ୍କ କବର ଭିତରେ ମହାତ୍ମା ପିଟରଙ୍କ ତୂରୀ ବାଜିବାଯାଏ । ସେମାନେ ଯେ ନରକକୁ ଯିବେ, ସେ କଥା ବାଇବଲ୍ ଆଗରୁ ଠିକ୍ କରି କହିସାରିଛନ୍ତି । ଯିଶୁ ଖ୍ରୀଷ୍ଟଙ୍କର ଖାସ୍ ଅବତାର ପୋପ୍ ମହାରାଜ ଯୁଠି ଆସ୍ଥାନ ଜମାଇ ବସିଛନ୍ତି, ସେଇ ରୋମ୍‌ରେ ଜନ୍ମଲଭି ଯେ ଭର୍ଜିଲ୍ ଜିଅସ୍, ଏଥିନି, ମର୍କରି ଇତ୍ୟାଦି ମିଛ ଦେବତା ଓ ଅପଦେବତାମାନଙ୍କ ଗାଥାଣି ଗାଇଗଲେ ତାଙ୍କ 'ଇଲିଆଡ୍'ରେ ଅନ୍ଧାରି ସମୟରେ ଜଙ୍ଗଲି ଦେଶର ଅନ୍ଧ ହୋମରଙ୍କ 'ଇଲିଆଡ୍'ର ବାନ୍ଦରାମି କରି । ସେ ନର୍କକୁ ଯିବେନି ତ ଆଉ ବିରତି ପାଇବେ ସେ ? ତାପରେ ଖାଣ୍ଟି ବିଲାତି ସାଇବ ଗିଲ୍‌ଟନ—ସେଇ ଅଣ କରିସ୍ତାନ ରୋମ ସାମ୍ରାଜ୍ୟ ଉପରେ ଗୋଟାଏ ବହି ଲେଖିପକାଇଲେ, କେତେ ଯତ୍ନ କରି ଓ କେତେ ପରିଶ୍ରମରେ ସାତ ସାତଟା ବର୍ଷ ଧରି । ଭଲା କି ଦରକାର ଥିଲା ଏତେ ପରିଶ୍ରମରେ ? ଆଉ ଯୁ'ଦି ଜାତିଟା ଅଛନ୍ତି ତାଙ୍କ କଥା ତ କହିଲେ ନ ସରେ । ଏମାନଙ୍କର ପଇସା ଅଛି । ପଇସା ଦେଇ ଅସଲି କବିଙ୍କୁ କିଣିନିଅନ୍ତି, ନିଜ ନାଁ'ରେ ତାଙ୍କ ଲେଖାବହିଗୁଡ଼ିକ ଛପାଇ ପୁରୁଷାର୍ଥ ନିଅନ୍ତି ଏମାନେ । ସ୍ୱେ ତ ପଣପଣ । ରଥେ କାବ୍ୟ ଲେଖିଲେ ଛପାହେଲା ଦେବବର୍ମା ନାଁରେ । ଗଣ୍ଡା ଗଣ୍ଡା ପ୍ରଶଂସା ପତ୍ର ଦେଶ ବିଦେଶରୁ ଆସି ପହଞ୍ଚିଲା । ଦେବବର୍ମା ବନିଗଲେ ଜଣେ ବଡ଼ କବି । ନିରେ ଗୋଟାଏ ସାମ୍ରାଜ୍ୟର ମାଲିକ । ତାଙ୍କର ଇଚ୍ଛାହେଲା ସେ ଗୀତ ଗାଇ ଗାଇ ପୃଥିବୀଟାକୁ ଚମକେଇ ଦେବେ । ଏଡ଼େ ବଡ଼ ପେଟ ଭିତରୁ ସେଇ ବେକ ମୋଟା ଗଳା ଭିଜେଇ ବାହାରି ଆସୁଥିଲା ଯେ ରସଭସର ତାରି ଦଡ଼ାଇ ଦେଖାଇବାପାଇଁ ବାହାରିଲେ ଦିଗ୍‌ବିଜୟ କରି ଗ୍ରୀସ୍ ପର୍ଯ୍ୟନ୍ତ । ଲକ୍ଷ, ପ୍ରଭୁତ୍ୱ ଓ ଧମକରେ ଗୋଟାଏ ଅଧେ ବରଣମାଳା ଯେ ମିଳିଲାନି ତା' ନୁହେଁ; କିନ୍ତୁ ଜଗତ ହସିଲା, ମୁହଁରେ ଲୁଗାଦେଇ । ଜାଣି ପାରିଲେ ସେ କିଛି କିଛି । କଲେ କ'ଣ ନା, ଦେଲେ ନିଆଁ ଲଗେଇ ରୋମ ସହରରେ । ଆଉ ସହର ଯେତେବେଳେ ହୁ ହୁ ହୋଇ ଜଳିଉଠିଲା, ଲୋକେ ଯେତେବେଳେ ହା, ହୁରରେ ଆକାଶ ଫଟେଇପକେଇଲେ, ସେତେବେଳେ କବିବର ଦୋତାଲା କୋଠା ଉପରେ ବସି ବେହେଲା ବଜାଇ ବଜାଇ ଲୋକଙ୍କର ଉତ୍କଟ ଭ୍ରୂକୁଟି, ଅଗ୍ନି ଦେବତାଙ୍କର ବିକଟ ଭ୍ରୂକୁଟି ଦେଖି ଦେଖି ମନରେ ମହାଶାନ୍ତି ଲାଭ କରିବାକୁ ଲାଗିଲେ । ଏଇ ଜାତିକା ଯେ ନକଲି କବି ତାଙ୍କୁ ଦୂରୁ ଜୁହାର । ଚିହ୍ନି ରଖିବ । ମାୟା କୁହୁକରେ ଭୁଲିଯିବନି !

ଆଉ ଅସଲି କବି ! ତାଙ୍କଠୁ ଶହେ ହାତ ଦୂରରେ ରହିବ ଜୁହାର କର ବା ନକର । ସେଇକଥାଟି ତୁମକୁ କହେଇଦେବି ବୋଲି ଯାଉଚି । ମୁଁ ତୁମକୁ ଖୁବ ଭଲପାଏ କି ନା, ତୁମ ଦେହରେ ଆଞ୍ଚ ହେଇ ଟିକିଏ କ'ଣ ଲାଗିଗଲେ ମୋ ହୃଦୟଟାରେ ଗାଣ୍ଠି ହୋଇଯାଏ । ତୁମକୁ ମିଛ ମତେ ସତ, ମୋ ଭଳି ଉପକାରୀ ବନ୍ଧୁ ତୁମର ଆଉ କେହି ନାହିଁ । ତୁମକୁ ଏଇ କବିଗୁଡ଼ାଙ୍କ ହାତରୁ ରକ୍ଷାକରିବା ପାଇଁ ତ ମୋର ଏତେ ପରିଶ୍ରମ । ଏ କବିଗୁଡ଼ାଙ୍କର କଲମ ମୁନ ଖୁବ ଦାଢ଼ୁଆ । ସେମାନେ ହୁଏତ ଏଇଥିଲାଗି

ମତେ ତାଙ୍କ ମୁନରେ ଅଣ୍ଟେ ଅଣ୍ଟେ କରି ଗୁହ୍ଣ ପକାଇବେ । କିନ୍ତୁ ମୁଁ ତଥାପି ଲୋକ ନୁହେଁ । କିଏ କଷ୍ଟ ହେବ, କିଏ ଜଳାପୋଡ଼ା ହେବ, ତା ଲାଗି ମୁଁ ଚରମ ପ୍ରିତ ମୋର ପ୍ରେମର କର୍ତ୍ତବ୍ୟ କି ଭୁଲିଯାଇପାରେ ? କହୁଥିଲି—ତୁମେ ଜୀବନଟା ଅଭିଆଡ଼ୀ ରହିଯିବ ପଛକେ, ଏ କବିଗୁଡ଼ାଙ୍କୁ କେବେହେଲେ ବାହାହବନି । ତାଙ୍କର ପ୍ରେୟସୀ, ମାନସୀ-ପ୍ରତିମା, ନାଗରମଣୀ—ଏମିତି କିଛି ବନି ଯାଇପାରି, ଯେତେଦିନ ତାଙ୍କ ଲେଖାର ଟୁଙ୍କ ତୁମ ଆଡ଼କୁ ରହିଯିବ । କିନ୍ତୁ ବାହାକୁଡ଼ା ହୋଇ ସ୍ୱାଙ୍କ ସାଙ୍ଗରେ ଘର ସଂସାର କଲାଭଳି ସମ୍ବନ୍ଧ କେବେହେଲେ କରିବନି । ସେ କବିଚନ୍ଦ୍ର, କେହି ସୁଖୀ ହୋଇପାରି ନାହାନ୍ତି; ତାଙ୍କର ସଂସାର ସୁଖ ସ୍ୱପ୍ନ ଭାଙ୍ଗିଯାଇ ଜୀବନଟା ଖାଲି ଡହକ ଯନ୍ତ୍ରଣା ହୋଇ ଯାଇଚି । ମିଛ କହୁଚି ? ଏଇ ଦେଖ ସେଲି—ବିଗ୍ରଶ୍ନ ମୀରହା ପଢ଼ିଲା ଟୋକୀଟା, ସଂସାରର ସେ ଜାଣିଥିଲା କ'ଣ ? ତାକୁ ଫୁସୁଲେଇ ବାହା ହୋଇପଡ଼ିଲେ ସେ । କି କଲି ବଳିଟା ନକଲେ ତାକୁ ! ଲୁହ ନ କାନ୍ଦି ରକ୍ତ କାନ୍ଦିଲା ବିଗ୍ରଶ୍ନ । ଶେଷରେ ବିବାହର କେଇଟା ଦିନ ପରେ ତାକୁ ଗ୍ରୁଡ଼ି ପଳାଇଗଲେ ଦେଶପାରି । ଏଇ ପୁଣି ଦେଖ କାଳିଦାସଙ୍କୁ । ବାହା ତ ହେଲେ ରଜା ଝିଅ । ଏତେ ସୁନ୍ଦର ଦେବୀ ପ୍ରତିମା ଭଳି ଅଲଅଲି ଝିଅ । ତାକୁ କନ୍ଦେଇ କନ୍ଦେଇ ମାଇଲ, ଶେଷକୁ ମଲ ସାମାନ୍ୟ ଗୋଟାଏ ବେଶ୍ୟାର ଦୁଆରେ । ବାଇରନଙ୍କ କଥା ତ କହିଲେ ନ ସରେ । ବିହରେ ତୁମ ଯେତେ ମାଇକିନା କବିଚନ୍ଦ୍ର ସେତିକି । ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କୁ ତ ମାଇପ ମିଳିଲାନି ଦରବୁଢ଼ୀ ହବାଯାଏ । ଟେନିସନ୍ ଗୋଟାଏ ଟୋକୀକୁ ଦଶବର୍ଷ କାଳ ଭୁଆଁ ବୁଲେଇ ବୁଲେଇ ଖସିବାର ଅନ୍ୟ ଉପାୟ ନପାଇ ବାହା ହୋଇପଡ଼ିଲେ । ବ୍ରାଉନିଂ ବାହାହେଲେ ତାଙ୍କର ଭଳି ଗୋଟିଏ ପାଗଳି କବିଙ୍କୁ । ସେ ଦିହେଁଙ୍କର ଖୁବ୍ ଥିଲା ବେଶ୍, କାହିଁକି ନା, ଇଏ ପାଗଳକୁ ସେ ପାଗେଳୀ । ସେ ଯୁଆଡ଼େ ଗୁହିଁଲା ସେ ସେଇଆଡ଼େ । ଛଅମାସ ବର୍ଷକେ ଥରେ କାଣିଆ କପିଳା ଭେଟ । ସେକ୍‌ସପିଅର ତ ବାହାହୋଇଥିଲେ ଗୋଟାଏ ଦରବୁଢ଼ୀକୁ, ସେ କି ତାଙ୍କଠୁ ମଧ୍ୟ ୭/୮ ବର୍ଷ ବଡ଼ ବୟସରେ । ତାଙ୍କ ଜୀବନର ଭିତରି ରହସ୍ୟ ବିଶେଷ କିଛି ଜଣାଯାଇନି, କାରଣ ସେ ଥିଲେ ଅନ୍ଧାର ସମୟର କବି । କିନ୍ତୁ ସେ ଯୁ ସବୁ ରସରସିଆ ଚଉଦପଦି ସଙ୍ଗୀତ ଲେଖିଯାଇଚନ୍ତି, ସେ ଯେ ନିଶ୍ଚୟ ତାଙ୍କର ସେହି ଦରବୁଢ଼ୀ ପ୍ରେୟସୀଙ୍କ ପାଇଁ ନୁହେଁ, ଏକଥା ବୁଝିବା ଲାଗି ବେଶୀ ବୁଦ୍ଧି ବୃତ୍ତିର ଦରକାର ହୁଏନି । ବୁଢ଼ୀକୁ ଘରେ ବସେଇ ଟୋକୀଙ୍କ ସାଙ୍ଗରେ ପ୍ରେମ କରିବାରେ ବୁଢ଼ୀଙ୍କ ମନର ଅବସ୍ଥା ବେଶ୍ ଅନୁମାନ କରିପାରୁଥିବ । ଏମିତି ଗୋଟି ଗୋଟି କରି ଗଣି ବସିଲେ ଗୋଟିଏ ମହାଭାରତ ହେବ । ଆଉ ଜଣେ ମଜାଦାର କବି ଥିଲେ ଦାନ୍ତେ । ତାଙ୍କୁ ତ ବାହା ହବାକୁ ମାଇପ ମିଳିଲେନି । ବେଆଟ୍ରିସ୍ ବୋଲି ଗୋଟିଏ କୁ ଟୋକୀକୁ କୁଆଡ଼େ ସେ ଭଲପାଉଥିଲେ ଅଯୌନ ଭାବରେ । ଭଲା ଏ ଗୋଟାଏ କଥାର କଥା । ଟୋକା ଟୋକୀର ପ୍ରେମ, ସେଥିରେ ପୁଣି ଅଯୌନ ଭାବ ଆସିବ

କେମିତି ? ଏତେବଡ଼ କଥା ଗୋଟାଏ ଭଲ ତୁମେ ବିଶ୍ବାସ କରିବ ? ଆମ ଦେଶରେ ତ କୁ ଟୋକା ଯେବେ କୁ ଟୋକୀକୁ ଗୃହି ଟିକିଏ ହସିଦେଲା, କି ପଦେ ଅଧେ କଥା କହିଦେଲା, ତା'ହେଲେ ଆମେ କହୁଁ—ଏ ଦହେଁଯାକ ଯୌନଭାବରେ ମଜ୍ଜିଗଲେଣି । ତାପରେ ତାଙ୍କ ନାଁରେ କେତେ କଥା ଯେ ଆମେ ବାହାର କରି ବସୁ । ଆଉ ଟୋକୀ ତୁମେଇ କହନା ? କେହି ଯେବେ ତୁମକୁ ପ୍ରେମ କଲି ବୋଲି କହିଲା, ତୁମେ କଣ ଭାବିବ ? ଭାବିବନି ସେ ତୁମର ଯୌବନ ଗୃହେଁ ବୋଲି ? ତୁମେ ଭଲ କେବେହେଲେ କୋଉ ପ୍ରୌଢ଼କୁ ବା ବୁଢ଼ାକୁ ଭଲ ପାଇପାରିଚ ! ମାନେ ଏଇ ବାପ-କକେଇ-ଭାଇଛଡ଼ା ! ସେ ତ ଆଉ ଭଲପାଇବା ନୁହେଁ । ଭଲ ପାଇବାର ଗୋଟାଏ ମାୟା ଦେଖେଇ ତାଙ୍କଠୁ କିଛି ଛାଙ୍କି ନେବାର ଉଦ୍ଦେଶ୍ୟ । ଯାହା ତମ ଭାଷାରେ ତୁମେ ଶ୍ରଦ୍ଧା, ଭକ୍ତି ବା ଆଉ କିଛି । ତୁମେବି ତ ଗୃହଁ ଗୋଟିଏ ଟୋକାକୁ ବା ଦଶଟି ଟୋକାଙ୍କୁ ପ୍ରେମ କରିବା ପାଇଁ, ତା ମାନେ କଣ ? କେବଳ ଯୌନ ପ୍ରେମ ହିଁ ପ୍ରେମ, ନୁହେଁ, ଆଉ ସବୁ ମିଛ କଥା । ଏଇଆ ନା ? ଯେ ପ୍ରେମ କରି ଯୌନ ମର୍ଯ୍ୟାଦା ରଖି ନ ପାରିଲା ତାକୁ ତୁମେ କ'ଣ କହିବ ? କହିବ ନପୁଂସକ, ଘୃଣା କରିବ, ଉପହାସ କରିବ । ସତ ନା ମିଛ ? ତା' ହେଲେ ଦାନ୍ତେ ଏଇ ଯେ ଅଯୌନ ପ୍ରେମ କଥା କହିଲେ, ସେ କେବଳ ନପୁଂସକର ମାୟା ଛଳନା ନୁହେଁ ?

ଏମିତି ସମସ୍ତେ । ଏ କବିଗୁଡ଼ାଙ୍କୁ ଘେନି ଦେଖୁଚ, କେହି ସୁଖୀ ହୋଇପାରେନି, ପାରିନି । ତୁମେ ପଗ୍ଭରିପାର, କାହିଁକି ? କବି ହେଲେ-ବି ତ ସେମାନେ ମନୁଷ୍ୟ । ସବୁ ମନୁଷ୍ୟ ଯେବେ ସ୍ତ୍ରୀ ସନ୍ତାନ ଘେନି ଘର କରନ୍ତି ଓ ସୁଖୀ ହୋଇପାରନ୍ତି ସ୍ବାଙ୍କଠି ସେଉଟା କାହିଁକି ଖଟିବନି ? ତୁମେ ଜାଣନି ଏ କବିଗୁଡ଼ାକ ପାଗଳ । ଏଇଟା ହେଲା ପ୍ରଥମ କଥା । ସ୍ବାଙ୍କ ମନ କୁଆଡ଼େ ନାଇଁ କୁଆଡ଼େ ଉଡ଼ୁଥିବ । ପ୍ରଜାପତିଟିଏ ଉଡ଼ି-ଯିବାର ଦେଖିଲେ ସ୍ବାଙ୍କୁ ଲାଗିବ ଯେମିତି ପରୀଟିଏ ଉଡ଼ିଉଡ଼ି ଯାଉଚି, ଦପଦପ ଯୌବନା, ଅନିନ୍ଦ୍ୟ ସୁନ୍ଦରୀ, ଚଞ୍ଚଳ ଜୀବନଧାରା ଦେଖିଲେ, ଭାବିଲେ, ଆଉ ସାଙ୍ଗେ ସାଙ୍ଗେ ତାଙ୍କ ମନ ତା'ରି ପଛରେ ଗୋଡ଼ାଇଲା କୁ ମାୟାପୁରୀକୁ । କୁ ଠି ଫୁଲଟିଏ ତା ଡାଳରେ ବସି ପବନରେ ହଲୁଚି, ଦୋଳୁଚି । କବି ଦେଖିଲେ, ତାଙ୍କୁ ଦିଶିଲା ଏ ଯେପରି ସ୍ୱର୍ଗ ଗନ୍ଧର୍ବମାନଙ୍କର ଅପୂର୍ବ ନାଚ । ଦୌଡ଼ିଲା ତାଙ୍କ ମନ ସେଇ ମନଗଢ଼ା ସ୍ୱର୍ଗପୁରୀକୁ ତାଲେ ତାଲେ ନାଚି ନାଚି ସେଇ ଫୁଲଟି ଭଳି, ଭାସି ଭାସି ସେଇ ପବନ ସମାନ । କବାଟ ଫାଙ୍କ ଦେଇ ଦିନର ଆଲୁଅ ଧାର ବାନ୍ଧି ଅନ୍ଧାର ଘରକୁ ଝୁଙ୍କି ପଡ଼ୁଚି । କବିଙ୍କୁ ଦିଶିଲା ଯେ ଯେପରି ସ୍ୱର୍ଗରୁ ନିଶୁଣି ପକେଇ ବାମନ ଋଷିଗୁଡ଼ିକ ମର୍ତ୍ତ୍ୟପୁରକୁ ଓହ୍ଲାଇଆସୁଚନ୍ତି ଶଙ୍ଖୋଳିବା ପାଇଁ । ଭଲ ଏ କୁ କଥା ! ଫୁଲଟାଏ, ଚଢ଼େଇଟାଏ, ଧୂଳିକଣାଗୁଡ଼ାଏ—ଏ ସବୁରେ ଦେଖିବେ ସ୍ୱର୍ଗ ଅପସରୀ, ଗନ୍ଧର୍ବ ଆଉ ବାମନ । କିନ୍ତୁ ତୁମପରି ସାକ୍ଷାତ୍ ଅପସରୀ ତାଙ୍କ ପାଖରେ ବସିଥିବେ, କଥା କହୁଥିବେ, ହସୁଥିବେ, ସେ

ସବୁ କିଛି ନୁହେଁ । ଘରଣୀ ଭାତ ବାଢ଼ି ଡାକ ପକାଉଥିବେ—ଆସ ହେ ଖାଇବ, ଭାତ ଥଣ୍ଡାକ ଫେଣା ଶୁଖିଲା ହୋଇଗଲା । ଶୁଣୁଚ କିଏ । କବି ତ ଜାଆପୋକର ବାଟ ଦରଣ୍ଡା ଦେଖିବାରେ ଭୋଳ । ତୁମେ ଆସିଲ ଘରର ହାଲ ହଉକତ ଜଣାଇବା ପାଇଁ, ପଦେ ଅଧେ ଦୁଃଖ ସୁଖ ହେବାପାଇଁ । କଥା ମଝିରେ କବିଙ୍କ ମନ ହେଲାଣି ଦୌଡ଼ କୁ ଭୂତ ସ୍ୱପ୍ନ ପଛରେ । ତୁମେ ତାଙ୍କୁ ତୁମପାଇଁ ଗହଣା ପଟେ କିଣିବାକୁ ପଠେଇଲ, ସେ ବୁଲି ବୁଲି ବାଟ ଅଧକୁ ଆସିଲେ ହୁଏତ ସେ କଥା ଭୁଲି, ନହେଲେ ଟଙ୍କାତକ କାହାକୁ ଦେଇ ଖାଲି ହାତରେ । ଏଇ ରକମ ଲୋକକୁ ନେଇ ସଂସାର କରି ତୁମେ ଖୁସୀ ବା ସୁଖୀ କିପରି ହେବ କହ ଦେଖିନ ?

ଦ୍ୱିତୀୟ କଥା, ଏଗୁଡ଼ାକ ପ୍ରେମ ଜାଣନ୍ତିନି । ମୁଁ ତ କହୁଚି ଏମାନଙ୍କ ମତରେ ପ୍ରେମ ଅଯୌନ । ଭଲା ଏ କିମିତି ହବ ? ସ୍ତ୍ରୀ ପୁରୁଷର ପ୍ରେମ, ସେତ କେବଳ ଯୌନ ସମ୍ବନ୍ଧ । ସେତକ ନ ହେଲେ ପ୍ରେମ ସମ୍ପୂର୍ଣ୍ଣ ହେଲା କିପରି ? ସେଇ କଥାତ ! ଆଇନ୍ ବି ସେଇଆ କହେ । ତୁମେ ବାହା ହୋଇପାରିଥାଅ, ଏକାଠି ସାଙ୍ଗସାଥି ଭାବରେ ରହି-ପାରିଥାଅ । କିନ୍ତୁ ସେତକ ଯେବେ ହେଇନି, ତାହେଲେ ସେ ବିବାହ ଅପୂର୍ଣ୍ଣ ରହିଚି । ଦରକାର ହେଲେ ତାକୁ ଭାଙ୍ଗି ଦିଆଯାଇପାରେ । ଆଇନ କରିଚନ୍ତି ଯୁମାନେ ସେମାନେ ବଡ଼ ପଣ୍ଡିତ, ଗ୍ରନ୍ଥର ମାଲିକ, କୋଟିପତି, ଲକ୍ଷପତି । ସେମାନେ କଣ ଆଉ ଭୁଲ କଥାଟେ ଆଇନ କରନ୍ତେ ? ଯୌବନର ଭୋକ ଠିକ୍ ଭାତ, ଡାଲିଖିଆ ଭୋକଭଳି । ଭାତ, ଡାଲି ନ ଖାଇ ଯିମିତି ମଣିଷ ବଞ୍ଚିପାରେନି, ଯୌବନର ଭୋକ ନ ମେଣ୍ଟେଇ ମଧ୍ୟ ମଣିଷ ବଞ୍ଚିପାରିବନି । ହଁ, ଏ ଯୋଗି ଋଷିଙ୍କ କଥା, ନା ? ସେ ତ ଯୌବନ ଭୋଗ କରି କରି ଯେତେବେଳକୁ ଅଙ୍ଗ ଇନ୍ଦ୍ରିୟ ଥଣ୍ଡା ପଡ଼ିଯାଏ; ଆଉ ଭୋଗ କରିବାର ଶକ୍ତି ନାହିଁ, ସେତେବେଳକୁ ଚକାମାଳିଟାଏ ପକେଇ ନାକ, କାନ ଛୁଇଁ ବସନ୍ତି; କଣ ନା ଯୋଗ କରୁଚନ୍ତି । ଯୋଗ ତ ନୁହେଁ, ସେ ଖାଲି ନାକ, ବାଲ ଛୁଇଁ ହଲପ ଯେ ଆର ଜନ୍ମରେ ମଣିଷ ହୋଇ ଜନ୍ମିଲେ ଟିକିଏ ଜଗିରଖି ଭୋଗ କରିବ, ଯିମିତି କି ୭୦।୮୦ ବର୍ଷଯାଏ ଭୋଗ କରିବାର ଶକ୍ତି ରହିଯାଏ । ମିଛ ? ଏଇ ଦେଖନା ମହାତ୍ମା ଗାନ୍ଧି । ମହାତ୍ମା ସେ, ଋଷି ସେ । କିନ୍ତୁ କେତେବେଳେ ? ଛ'ଛଟା ପୁଅ ହେଲେ । ମାଇପ ବୁଢ଼ୀ ହେଇଗଲେ । ନିଜର ମଧ୍ୟ ଶକ୍ତି କମିଗଲା । ସିଠୁ ବସିଗଲେ ସବୁ ଗୁଡ଼ୁଚୁଡ଼ ଦେଇ । କ'ଣ ନା ଆମେ ତ୍ୟାଗୀ । ଆମେ ମହାତ୍ମା । ଏଇମିତିକା ଏ ସବୁ ଯୋଗିଋଷିଗୁଡ଼ା କିମ । ସ୍ୱାଙ୍କ କଥା କ'ଣ ଗୋଟାଏ କହୁଚ । ସତ କଥା କହିବ ତ ପ୍ରେମମାନେ ଯୌନ ସମ୍ବନ୍ଧ ଆଉ ଯୌନ ସମ୍ବନ୍ଧ ମାନେ ପ୍ରେମ । କବି କିନ୍ତୁ ସ୍ୱା ବୁଝେନି । ସେ କହେ ଯୌନ ସମ୍ବନ୍ଧ ଗୋଟାଏ ବାଜେ କଥା । ଏଇଟା ପେଟ ଭୋକଭଳି ଭୋକଟାଏ । ଅସମ୍ଭାଳ ଭୋକ ଲାଗିଲେ ଯିମିତି, ଜାତପତି, ଭଲମନ୍ଦ ବିଚାର ନ କରି ମଣିଷ ଯାହା ପାଇଲା ତା ଖାଇ ଆଗ ପେଟ ଜ୍ୱାଳାକୁ ଶାନ୍ତ କରେ, ସେହିପରି ଯୌନ ଭୋକ, ବା ଇନ୍ଦ୍ରିୟ ଭୋକ

ଲାଗିଲାବେଳେ, ଯାହାକୁ ମନ ବଳିଲା ତା ଉପରେ ତାକୁ ଶାନ୍ତ କରି ପକାଅ । ସେଥିରେ ପ୍ରେମ ଗୋଟାଏ କଣ ଆଏ ? ଭୋକ ଦାଉରେ ତୁମେ ଯେତେବେଳେ ଶୁଖିଲା ରୁଟି, କି ଗଣ୍ଡିଆ ପଖାଳ କି ଦାନ୍ତଭଙ୍ଗା ଆରିଷା ପିଠା ଚୋବାଇଯାଅ, ତୁମେ କଣ ସେ ଜିନିଷକୁ ସୁଖ ପାଅ ବୋଲି ଖାଉଥାଅ ? ପେଟ ପୂରିଗଲେ କି ପେଟରେ ଭୋକ ନ ଥିଲେ, ସେ ଜିନିଷକୁ ତୁମେ ଭଲା ଛୁଇଁବ ? ଏ ବି ସିମିତି କଥା । ଇନ୍ଦ୍ରିୟ ଭୋକଲାଗି ମୁଁ ଯେବେ କୁ-ମାଇକିନିଆ ପାଖକୁ ଯାଏଁ, ତାହେଲେ ମୁଁ ତାକୁ ପ୍ରେମ କରୁଚି ବୋଲି କହିବାଟା ବଡ଼ରକମର ମୂର୍ଖାମି । ସେ୍ତ କବିଙ୍କର ଯୁକ୍ତି । ଆହା, କି ସୁନ୍ଦର ଯୁକ୍ତି ନୁହେଁ କି ? ଘରେ ମାଇପ ମହଜୁଦ୍ । ଏଣେତେଣେ ଯାଇ ନାଗରଣି କରିବେ ଆଉ କହିଲେ, ଶୁଣି କି ସୁନ୍ଦର କଥାମାନ । ତା'ଠି ପ୍ରେମ ନ ଥିଲା, ଖାଲି ସିମିତି ଯାଇଥିଲି ଭାରି ତା ପାଖକୁ ନା ! ତୁମେ ଭଲା ଏପରି କଥା କେବେହେଲେ ବିଶ୍ୱାସ କରିବ ? କେହି ବିଶ୍ୱାସ କରି-ପାରେ ? ତୁମେ ବିଶ୍ୱାସ ନ କଲ । ସେଇଟାତ ନ୍ୟାୟ । କିନ୍ତୁ ଓଲଟି କ'ଣ ଜବାବ ମିଳିବ ଜାଣିଚ ? ତୁମତେ ଭଲ ପାଉନି । ଭଲ ପାଉଥିଲେ ତୁମତେ ଏପରି ସନ୍ଦେହ କରନ୍ତିନି । ଭଲା ସନ୍ଦେହ କରିବାର ଆଉ ରହିଲା କ'ଣ ? ନିଜ ତୁଣ୍ଡରେ ତ ମାନୁଚ ଯାଇଥିଲି ତା ପାଖକୁ । ଆଉ ସନ୍ଦେହ କଣ କରି ପକେଇଲି ମୁଁ ? ଭଲା ଏମିତି ମଣିଷକୁ ନେଇ କମିତି ଘର କରିବ ?

ତୃତୀୟ କଥା···ଏ ଯୁ କବିଗୁଡ଼ାକ, ଏଗୁଡ଼ାକ ନିଜେତ ବଡ଼୍‌ଡ ଅସ୍ଥିର, ଆଉ ସେ ଚାହାନ୍ତି ଜଗତଟାଯାକ ତାଙ୍କରି ଭଳି ଅସ୍ଥିର ହଉ । ଛଳଛଳ ଛନଛନ ଜୀବନର ସେ କୁଆଡ଼େ ଭକ୍ତ । ଯୁ'ଠି ଏ ଛନଛନ ଛଳ ଛଳ ଭାବ ନାହିଁ, ସେଠି ସେ ଜୀବନର ଦୁଦ୍‌ଦୁକ ପା'ନ୍ତି ନାହିଁ । ପା'ନ୍ତି ମରଣର ସ୍ଥିରତା, ଶୀତଳତା । ତାଙ୍କୁ ସେଗୁଡ଼ାକ ଭଲଲାଗେନି । ତୁମେ ଯେବେ ସବୁଦିନେ ପହିଲି ବିବାହ ବେଳର ଛଳ ଛଳ ଛନ ଛନ ଭାବ ରଖିନ୍ତ, ତାହେଲେ କେଜାଣିବା ତାଙ୍କୁ ଭଲଲାଗନ୍ତା । ଭଲା ଏ କମିତି ହେବ ? ଅଭିଆଡ଼ି ବେଳର କଥା । ପହିଲି ବିବାହର ଚୁଙ୍ଗୁଚୁଙ୍ଗିଆ ବୟସର କଥା ସବୁଦିନେ କମିତି ରହିବ ? ବାହାହେଲେ ହେଁ, ଘର ସଂସାର କଲେଇଁ, ପିଲା ଛୁଆ ହେଲେଣି, ମୁଣ୍ଡ ଉପରକୁ କେତେ ବୋଝ ଆସ୍ତେ ଆସ୍ତେ ମାଡ଼ିଆସୁଚି । ଆମେ ସିମିତି ଚଙ୍ଗ ଚଙ୍ଗ ତୁରୁଙ୍ଗ ତୁରୁଙ୍ଗ ହେଲେ ଆମକୁ ସଂସାର କଣ କହିବ ? ଆଉ ଆମର ଏ ସଂସାରଟି ଚଳିବ କମିତି ? ସେ୍ତ ସେ କଥା ବୁଝିବେନି । ବୁଢ଼ା ହେଲେ ବି ପିଲାଙ୍କ ଭଳି ଡେଇଁବା, ହସିବା, ଗୀତ ଗାଇବା, ଖେଳିବା ଓ ଚଗଲାଙ୍କ ଭଳି ଏବେତେଣେ ବୁଲି ଧାଇଁବାଟାହିଁ ତାଙ୍କର ସୁଖ । କଉ କଥା କଣ ? ଜବାବ ମିଳିବ—ଜୀବନୀଶକ୍ତିହିଁ ଭଗବାନ, ସତ୍ୟହିଁ ଭଗବାନ, ସୌନ୍ଦର୍ଯ୍ୟ ହିଁ ସତ୍ୟ । ଜୀବନୀଶକ୍ତିହିଁ ସୌନ୍ଦର୍ଯ୍ୟ । କି ମଜ୍ଜା ! କଥାଟା ବୁଝୁଛ ତ, କଥାଟା କମିତି ଗଡ଼ିଚାଲିଲା ? ଜଣେ କବି ତ ଏଇ ମଇଲା ପାଲୁ ସାଲୁ, ଲାଳ ବାଲୁ ବାଲୁ, ସିଙ୍ଘାଣି ସଡ଼ସଡ଼, କଫ ଭଡ଼ଭଡ଼, ଛୋଟ ପିଲାଙ୍କ ଦେହରେ ଈଶ୍ୱରଙ୍କର ସ୍ୱ

ଅବତାର ଦେଖନ୍ତ । ଛୁଆ ଜନ୍ମ ହେଲବେଳେ କୁଆଡ଼େ ଈଶ୍ୱରଙ୍କର ଜ୍ୟୋତି ଝଲକେଇ ଝଲକେଇ ଆସେ । ମୁଁ ତ ନାସ୍ତି ନୁହେଁ । ପୋଖତ କାଳର କଥା ମୁଁ ଜାଣିନ । ଧାଇ ବ୍ୟବସାୟ ବ କରିନ । ସେତେବେଳେ ପିଲ କଣ ଝଲକେଇ ଝଲକେଇ ଆସେ ମୁଁ ଜାଣିନ । ତେବେ ଯାହା ଝଲକେଇ ଆସେ ବୋଲ ଶୁଣିଚ, ସେଗୁଡ଼ାକ ଶୁଣିଲେ ତୁମକୁ ଭାରି ଲୁଚବନ । ତା ଉପରୁ କ'ଣ ନା, ସେ ଯେତକ ଯେତକ ବଡ଼ ହେଉଥାଏ, ଏଇ ଈଶ୍ୱର ଜ୍ୟୋତି ତା ହୃଦୟରୁ ସେତକ ସେତକ କମି ଯାଉଥାଏ—ବୋଧହୁଏ ସିଂଘାଣି, ଲାଳ ଓ ମଇଳାର ସାଙ୍ଗେ ସାଙ୍ଗେ । ଯୌବନ ଅବସ୍ଥାରେ ସେଥିରୁ କିଛି କିଛି ରହିଯାଏ । ସେ ତା'ର ବଳରେ ଶୋଇ ଶୋଇ ବସି ବସି ସ୍ୱର୍ଗର ସ୍ୱପ୍ନ ଦେଖୁଥାଏ । କିନ୍ତୁ ଯିମିତି ତାର ବିଚାର କରିବାର ବୟସ ଆସିଯାଏ, ଭଲ ମନ୍ଦ ବାଛିବାର ଶକ୍ତି ଆସିଯାଏ, ଜ୍ଞାନ ପାଇଯାଏ ସେ, ସେମିତି କୁଆଡ଼େ ଈଶ୍ୱର ତାକୁ ଛାଡ଼ି ପଳାନ୍ତି ଆଉ ସଇତାନ ତାକୁ ମାଡ଼ିବସେ । ଏଇତ କବିଙ୍କର କଥା । ସଂସାରଜ୍ଞାନ, ବୋଧଶକ୍ତି, ଏସବୁ ଖରାପ । କିଶୋରର ଅବୋଧତା ଓ ଯୌବନର ଅବାଧତା କୁଆଡ଼େ ଭଲ । ସେଥିପାଇଁ ସେ ସବୁବେଳେ ପିଲା ବା ଟୋକା ରହିବାକୁ ଇଚ୍ଛା କରେ । ବୁଢ଼ା ଦିନରେ ଦାନ୍ତ ନପାଇଲେ ବି ଗୁଡ଼ାଏ ହୋ ହୋ ହୋଇଯିବା, ଧୂରୁଡ଼ୁ ଧୂରୁଡ଼ୁ ହୋଇ ଦ' ଘର ପାହୁଣ୍ଡ ଧାଇଁଯିବା ଆଉ ବାକି ସମସ୍ତକ ଶୋଇ ଶୋଇ ଅଳସ, ନିରର୍ଥକ ଓ ଅଦରକାରୀ ସ୍ୱପ୍ନଗୁଡ଼ାଏ ଦେଖି ମନକୁ ମନ ଟେକିହେବାରେ ଜୀବନଟା କଟାଇଦେବାକୁ ସେ ଚାହେଁ । ଏମିତି ଲୋକଙ୍କୁ ନେଇ ବାସ୍ତବ ସଂସାରର କଠିଣ ଜୀବନ କେମିତି କଟାଇବ ତୁମେ ?

ଏମିତି ଅନେକକଥା କହିବାକୁ ଅଛି । ଯେତିକ କହିଗଲିଣି, ଏଇଥିରୁ ତୁମେ ବୁଝିପାରୁଥିବ—ଏ କବିଗୁଡ଼ାଙ୍କର ମନ ଠିକ୍ ନୁହେଁ, କି କଥା ଠିକ୍ ନୁହେଁ । ସ୍ତ୍ରୀଙ୍କର ତଳ ଉପର କାହାରି ଠିକଣା ନାହିଁ । କେତେବେଳେ ଥଣ୍ଡା, କେତେବେଳେ ଗରମ, କେତେବେଳେ ଉତ୍ସାହ, କେତେବେଳେ ଲହୁଣି । ଖାଲି ବାହାପିଆଗୁଡ଼ାକ ମ ଖାଲି ବାହାପିଆଗୁଡ଼ାକ । ଏଗୁଡ଼ାଙ୍କୁ ବାହାହେଇ ଘରସଂସାର କରିଅଛ ! ତୁମେ କେବେହେଲେ ତା କରିବନି । ଭଲ ଭଲ ଗୀତ ଲେଖି, ଲମ୍ବା ଲମ୍ବା ଚିଠି ବନେଇ ସେ ତୁମକୁ ଭୁଲାଇବାକୁ ଚେଷ୍ଟା କରିବେ । କିନ୍ତୁ ଜାଣିରଖ, ସେଗୁଡ଼ାକ ଖାଲି ଫାଙ୍କା ଆବାଜ । ସେଥିରେ ଯେବେ ଥରେ ଭୁଲିଲ ତାହେଲେ ପସ୍ତଉଥିବ ଜୀବନଯାକ ।

□

# ଏ କି ସାହିତ୍ୟ ?

ଆଜିକାଲି ଖବରକାଗଜମାନଙ୍କରେ ବହୁତଥର ବାହାରବାର ମୁଁ ଦେଖିଲିଣି ଯେ, ଏତେ ବର୍ଷର ଉଦ୍ୟମ ସତ୍ତ୍ୱେ ଓଡ଼ିଆ ସାହିତ୍ୟ ପଡ଼ୋଶୀ ଭାରତୀୟ ସାହିତ୍ୟ ସହିତ ତାଳ ଦେଇ ଠିଆ ହେବାକୁ ଉପଯୁକ୍ତ ହେଉନାହିଁ, କାହିଁକି ? ଏ କଥାଟା କେତେଦିନ ତଳେ କୌଣସି ପତ୍ରିକାରେ ଘମାଘୋଟିଆ ଭାବରେ ଆଲୋଚିତ ହୋଇଥିଲା । ସେସବୁ ପଢ଼ି ମୁଁ ସେ ବିଷୟରେ କେତେପୃଷ୍ଠା ଗାରେଇଗଲି । ତାପରେ ସେଗୁଡ଼ିକ ଫୋପାଡ଼ିଦେଲି, ଭାବିଲି, କି ଲାଭ ? ମୁଁ ତ ସାହିତ୍ୟିକ ଭିତରେ ଗଣା ନୁହେଁ—ମୋ କଥା କିଏ ଶୁଣିବ, କିଏ ଛାପିବ ? ମୁଁ ଯେବେ ସାହିତ୍ୟ-ଶାସକଗୋଷ୍ଠୀ ଭିତରୁ ଜଣେ ହୋଇଥାନ୍ତି, ତାହେଲେ ମୁଁ ଆବୁଲୁ ବାବୁଲୁ ଲେଖିଲେ ମଧ୍ୟ ତାହା ଉଚ୍ଚକୋଟୀର ସାହିତ୍ୟ ବୋଲି ବଡ଼ ବଡ଼ ଅକ୍ଷରରେ ଛପା ହୋଇଥାନ୍ତା । କିନ୍ତୁ ମୁଁ ତ ତା' ନୁହେଁ । ସୁତରାଂ ଏ ସବୁରେ କି ପ୍ରୟୋଜନ ?

ମୁଁ ଜାଣେ, ଏ ଗୋଟାଏ ପଳାତକ ଭାବ । ସେଇଥିପାଇଁ ତ ଏତେଗୁଡ଼ାଏ ମଙ୍ଗଳାଚରଣ କଲି । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଗୋଟାଏ ପଳାତକଭାବ ପଶିଚି, ବିଶେଷତଃ ସାହିତ୍ୟରସିକମାନଙ୍କ ମଧ୍ୟରେ । ସେମାନେ ଯାହା ଚାହୁଁଛନ୍ତି, ତା ପାଉ-ନାହାନ୍ତି । ଥରେ ଦିଥର ପାଞ୍ଚଥର ସେ ବିଷୟରେ ଆନ୍ଦୋଳନ କଲେ ମଧ୍ୟ, ସେମାନଙ୍କ କଥାକୁ ଉପହାସରେ ଉଡ଼ାଇଦିଆଯାଉଛି । ସାହିତ୍ୟ-ଶାସକଗୋଷ୍ଠୀଙ୍କ ଭିତରେ ଆସନ ମାଡ଼ି ବସିବାକୁ ଯେଉଁ ଗୁଣଗାରିମା ଲୋଡ଼ା, ତା ତ ତାଙ୍କର ନାହିଁ ବା ସେ ଗୁଣଗାରିମା ଦେଖେଇ ସାହିତ୍ୟିକ ବୋଲାଇବାରେ ତାଙ୍କର ଇଚ୍ଛାନାହିଁ । ସୁତରାଂ ଯାହା ହଉଚି ହୋଇଯାଉ ହୋ, ଆମେ ଆଉ କଣ କରିବା ? ଏହି ମହାପଳାତକ ମନ୍ତ୍ରଟା ଜପି ସେମାନେ ତୁନି ପଡ଼ିଯାଉଛନ୍ତି । ଯେତେଦିନଯାଏ ସାହିତ୍ୟ ଶାସନରେ ସାଧାରଣତନ୍ତ୍ର ନ ଆସିଚି, ସେ ପର୍ଯ୍ୟନ୍ତ ସାହିତ୍ୟର ବିଗ୍ଭର ଓ ପୁରସ୍କାର କେବଳ ଗୋଷ୍ଠୀଗତ ବା ଦଳଗତ ମତବାଦ ଉପରେ ଅବଦ୍ଧ ରହୁଚି, ଯେତେବେଳଯାଏ ଖୋସାମୋଦ ତୋଷାମଦ ଉପରେ ସାହିତ୍ୟିକ ନିର୍ବାଚନ ନିର୍ଭର କରୁଚି, ସେତେଦିନଯାଏ ଓଡ଼ିଆ ସାହିତ୍ୟ କାହିଁକି, କୌଣସି ସାହିତ୍ୟର ଅଭ୍ୟୁତ୍ଥାନ ହୋଇପାରେ ନାହିଁ, ହୋଇପାରିବ ନାହିଁ ।

ତାପରେ ଦ୍ୱିତୀୟ କଥା ହେଲା, ସାହିତ୍ୟ ସେପରି ଗମ୍ଭୀର ହୋଇପାରିବ ନାହିଁ; ସାହିତ୍ୟିକ ସେ ସେପରି ସର୍ବକାଳ ଲୋକପ୍ରିୟ ହୋଇପାରିବେ ନାହିଁ । ଓଡ଼ିଆ ସାହିତ୍ୟିକ ଓଡ଼ିଆ ହିଁ ରହିବେ । ସେ ବୈଦେଶିକ ସାହିତ୍ୟ ଦ୍ୱାରା ଯେତେ ପ୍ରଭାବିତ ହେଲେ ମଧ୍ୟ,

ସେଥିରେ ସେ ଯେତେ ଡୁବି ରହିଲେ ମଧ୍ୟ, ବିଦେଶୀ ହୋଇପାରିବେ ନାହିଁ । ଦୁଇଶହ ବର୍ଷର ବିଲାତି ପ୍ରଭାବରେ ବଢ଼ି, ବିଲାତରେ ଶିକ୍ଷା ଓ ଦୀକ୍ଷା ପାଇ ମଧ୍ୟ କୌଣସି ଭାରତୀୟ ଠିକ୍ ବିଲାତି ବନିପାରିନାହାନ୍ତି । ଆଜିଯାଏଁ ମଧ୍ୟ ଉପେନ୍ଦ୍ରଭଞ୍ଜ ଇତ୍ୟାଦି ମଧ୍ୟଯୁଗର ଓଡ଼ିଆ କବିମାନେ ଛାପାଖାନା ଓ ପତ୍ରପତ୍ରିକାର ଅଭାବରେ ମଧ୍ୟ ଘରେ ଘରେ ପ୍ରଚଳିତ ଥିଲେ ଓ ଅଛନ୍ତି । ସେମାନଙ୍କୁ ଲୋକମାନଙ୍କ ମଧ୍ୟରେ ଅପ୍ରିୟ ଓ ଘୃଣ୍ୟ କରିବାର ଗୋଟାଏ କୋଣ୍ଡ ପ୍ରଚେଷ୍ଟା । ଇନ୍ଦ୍ରଧନୁଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ପ୍ରାୟ ଷାଠିଏ ବର୍ଷ ହେଲା ଲାଗି ଆସିଛି ତଥାପି ଓଡ଼ିଆର ମନ ଉପରୁ ତାଙ୍କର ସାମ୍ରାଜ୍ୟ ଲୋପ ପାଇ ପାରିନାହିଁ । ମୁଁ ତ ବେଳେ ବେଳେ ଭାବେ, ଆଜିକାଲି ଯେଉଁମାନେ ସାହିତ୍ୟରଥୀ ଓ ସାହିତ୍ୟ ମହାରଥୀ ବୋଲି ପଇନ୍ତରା ମାରୁଛନ୍ତି, ସେମାନଙ୍କ ବିରୁଦ୍ଧରେ ଯେବେ ଏହିପରି ପତ୍ରପତ୍ରିକାର ମାତ୍ର ଦଶଟି ବର୍ଷ ଚାଲନ୍ତା, ତାହେଲେ ତାଙ୍କର ସ୍ଥାନ କେଉଁଠି ରହନ୍ତା । ଯାହୁ, କଥା ହେଲା, ସେ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ ଓଡ଼ିଆ କୃଷ୍ଟି ଉପରେ ଗଢ଼ା ନ ହେଉଛି ଓ ଓଡ଼ିଆ ଜୀବନର ବୈଶିଷ୍ଟ୍ୟତାକୁ ବିଶ୍ଳେଷଣ ନ କରୁଛି, ସେ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ ଓଡ଼ିଆଙ୍କ ପାଖରେ ସର୍ବକାଳ ଲୋକପ୍ରିୟତା ପାଇପାରିବ ନାହିଁ କି, ଓଡ଼ିଶା ବାହାରେ ମଧ୍ୟ ପ୍ରଶଂସ୍ୟ ହୋଇପାରିବ ନାହିଁ । ତାର କାରଣ ଯେ କୌଣସି ମନସ୍ତତ୍ତ୍ୱବିତ୍ କହିପାରିବେ ଓ ସହଜରେ ବୁଝିପାରିବେ । ଯେଉଁଠାରେ ଚେତନ ଓ ଅବଚେତନ ମଧ୍ୟରେ ଗୋଟାଏ ବିବାଦ ସଦାସର୍ବଦା ରହିଯାଉଛି; ସେଠାରେ ମାନବୀୟତାର ଅନ୍ତରତମ କ୍ଷୀରସମୁଦ୍ର ଆଲୋଡ଼ି ସେଥିରୁ କବିତାଚନ୍ଦ୍ର ବା ସାହିତ୍ୟ ଅମୃତ ବାହାର କରିବା ଅସମ୍ଭବ ।

ଏହି ମାନବୀୟତାଟା ପୁଣି କ'ଣ ? ସାହିତ୍ୟ ବା କଳା ମାନବୀୟତାର ଚଳଚ୍ଚିତ୍ର ମାତ୍ର । ମାନବୀୟତା ହେଲା, ମନୁଷ୍ୟ ଜୀବନର ପ୍ରଖ୍ୟାପନ । ଯେ ଜୀବନକୁ ଭଲ କରି ପଢ଼ିପାରିଛି, ବୁଝିପାରିଛି, ମର୍ମେ ମର୍ମେ ଉପଲବ୍ଧି କରି ନେଇପାରିଛି, ସେଇ ଏକା ହିଁ ସାହିତ୍ୟର ସ୍ରଷ୍ଟା ହୋଇପାରେ, ଯେବେ ତାହାର ଉପଲବ୍ଧିକୁ ଭାଷାରେ ପ୍ରକାଶ ସାହିତ୍ୟ କାହିଁକି, କୌଣସି ସାହିତ୍ୟର ଅଭ୍ୟୁତ୍ଥାନ ହୋଇପାରେ ନାହିଁ, ହୋଇପାରିବ ନାହିଁ ।

ତାପରେ ଦ୍ୱିତୀୟ କଥା ହେଲା, ଗୋଟାଏ ହୁଜୁଗ ଉଠିଛି, ବର୍ତ୍ତମାନ ଯୁଗରେ ଦୁର୍ବିସହ ଜୀବନଯାତ୍ରାର ପ୍ରଭାବରେ ସାହିତ୍ୟ ସବୁ ଦେଶରେ ଗମ୍ଭୀରତା ହରାଇଛି । ଓଡ଼ିଶାରେ ଏହା କିଛି ବିଶେଷ କଥା ନୁହେଁ । ଏ କଥାଟା କବିତା ଦିଗରେ କିଛି କିଛି ମାତ୍ର ସତ୍ୟ ହେଲେ ମଧ୍ୟ ସାହିତ୍ୟର ଅନ୍ୟାନ୍ୟ ବିଭାଗରେ ଆଦୌ ସତ୍ୟ ନୁହେଁ । ଆଲଡ଼ସ ହକ୍ସଲି, ବର୍ଟ୍ରାଣ୍ଡ ରସେଲ, ଷ୍ଟିଫେନ ଲିକକ୍ ଇତ୍ୟାଦିଙ୍କର ସାହିତ୍ୟରେ ଗମ୍ଭୀରତାର ଅଭାବ ନାହିଁ । ଅଥଚ ଜୀବନଯାତ୍ରାର ଦୁର୍ବିସହମାନ ଇଂଲଣ୍ଡ ଓ ଆମେରିକାରେ ଯେତେ ପ୍ରବଳ, ଓଡ଼ିଶାରେ ତାର କାଣିଚାଏ ମଧ୍ୟ ନୁହେଁ । 'ରୁଷିଆ

ସାମ୍ୟବାଦୀ ଗ୍ରନ୍ଥ' ବୁଝାଯାଏ । ସେଠି ସାହିତ୍ୟ କେବଳ ପ୍ରଚାରମୁଖୀ । ଶାସକଗୋଷ୍ଠୀର ନୀତି ବଖାଣ କରିବା ଓ ପ୍ରଚାର କରିବା ହିଁ ତାହାର ମୁଖ୍ୟ ଉଦ୍ଦେଶ୍ୟ । ଏକଥା ମଧ୍ୟ ସତ ନୁହେଁ, ସତ ହୋଇଥିଲେ ଏଇ ବର୍ଷ ଜଣେ ରୁଷୀୟ ସାମ୍ୟବାଦୀ ସାହିତ୍ୟିକ ନୋବେଲ ପ୍ରାଇଜ ପାଇନଥାନ୍ତେ ।

ପ୍ରକୃତ କଥା ତା ନୁହେଁ, ଆମର ଅଭ୍ୟାସ ହୋଇଗଲାଣି । ଆମ ଦେଶରେ କିଛି ହେଲେ ସେ କଥାକୁ ଅନ୍ୟ ଦେଶର ସେହିପରି କଥା ସହିତ ତୁଳନା କରିବା ଏ ଗୋଟାଏ ମସ୍ତବଡ଼ ଭୁଲ । ଯେପରି ମତେ କାଳନ୍ଦୀବାବୁଙ୍କ ସହିତ, ବା କାଳନ୍ଦୀବାବୁଙ୍କୁ ଜୟପୁର ମାନସିଂହଙ୍କ ସହିତ ବ୍ୟକ୍ତିଗତ ଭାବରେ ତୁଳନା କରାଯାଇପାରେନା, ସେହିପରି ଓଡ଼ିଶାକୁ ବଙ୍ଗଳା ସହିତ ବା ଭାରତକୁ ଆମେରିକା ସହିତ ତୁଳନା କରାଯାଇ ପାରେନାହିଁ । ମୋର ବ୍ୟକ୍ତିତ୍ୱ ଅନ୍ୟର ବ୍ୟକ୍ତିତ୍ୱଠାରୁ ଭିନ୍ନ । ଏ ଦେଶର କୃଷ୍ଟି ଅନ୍ୟ ଦେଶର କୃଷ୍ଟିଠାରୁ ଭିନ୍ନ, ଏ ଦେଶର ସାହିତ୍ୟ ଏ ଦେଶ କୃଷ୍ଟିର ଅନୁରୂପ ଓ ଅନୁକୂଳ ହେବା ଦରକାର । ତା ନହେଲେ ସେ ପାରିଛି, ମର୍ମେମର୍ମେ ଉପଲବ୍‌ଧି କରି ନେଇପାରିଛି, ସେଇ ଏକା ଉଚ୍ଚ ସାହିତ୍ୟର ସ୍ରଷ୍ଟା ହୋଇପାରେ, ଯେବେ ତାହାର ଉପଲବ୍‌ଧିକୁ ଭାଷାରେ ପ୍ରକାଶ କରିବାର ଶକ୍ତି ସେ ହାସଲ କରିପାରିଥାଏ । ଏହି ମାନବୀୟତା ଦ'ଟୋପା ଲୁହ ଗଡ଼ାଇବାରେ, ବୁହେ ହସାଇଦେବାରେ ବା ନଚେଇ-ଦେବାରେ ପରୀକ୍ଷା କରାଯାଏନାହିଁ । ପ୍ରକୃତରେ ଦଟୋପା ଲୁହ ଗଡ଼େଇ ପକାଇବା ବଡ଼ ଶସ୍ତା । ଯେଉଁମାନେ କଥାରେ କଥାରେ କାନ୍ଦିପକାନ୍ତି ବା ହସିଉଠନ୍ତି, ସେମାନଙ୍କ ହୃଦୟରେ ଗମ୍ଭୀରତା ନଥାଏ । ମନୁଷ୍ୟ ହୃଦୟର ଏଇ ଅଗମ୍ଭୀରତାର ସୁଯୋଗ ନବାକୁ ଯେଉଁ ସାହିତ୍ୟ ଲେଖାଯାଏ ବା ଯେଉଁ କଳା ପ୍ରଦର୍ଶନ କରାଯାଏ, ତାହା ଖାଲି ଅନାସ୍ଥିର ନୁହେଁ, ଅସାଧୁ ମଧ୍ୟ ।

ମୁଁ ଯାହା ସବୁ କହୁଛି ତାହା ଭୂରି ଭୂରି ଉଦାହରଣଦ୍ୱାରା ପ୍ରମାଣିତ ହୋଇପାରେ । ବହୁ ପ୍ରସିଦ୍ଧ ସମାଲୋଚକ ଏସବୁ କହିଛନ୍ତି । ଏ କିଛି ମୋର ମନଗଢ଼ା କଥା ନୁହେଁ, କିନ୍ତୁ 'ସମାଜ'ର ଛନୋଟି ସ୍ତମ୍ଭ ମଧ୍ୟରେ ଏ ସବୁ ଉଦାହରଣ ଦେଇ ପ୍ରମାଣ କରିବାର ସୁଯୋଗ ଆଦୌ ନାହିଁ । ଯଦି କୌଣସି ପାଠକ ଏସବୁ ଶୁଣିବାକୁ ବା ବୁଝିବାକୁ ଇଚ୍ଛା କରନ୍ତି, ତାହେଲେ ମୁଁ ସବୁବେଳେ ତାଙ୍କ ପାଖରେ ହାଜର ଅଛି ।

ତେବେ ଗୋଟିଏ କଥା କହିବି, ପୁଅ ମରିଗଲେ ସମସ୍ତେ କାନ୍ଦନ୍ତି; ଅଦ୍ଭୁତ ଅନାଟନରେ ପଡ଼ିଲେ ସମସ୍ତେ ହସନ୍ତି ହୁଅନ୍ତି । ମୁଁ ଯେବେ କେବଳ କହିଯାଏ ଯେ, ଖାଲି ହରିଜନ ବା ଆଦିବାସୀମାନେ ପୁଅ ମରିଗଲେ କାନ୍ଦନ୍ତି ବା ଅଦ୍ଭୁତ ଅଟାଟନରେ ହସନ୍ତି ହୁଅନ୍ତି, ତାହେଲେ ମୁଁ ସତ ତ କହିବି ନାହିଁ, ବରଂ ଅନ୍ୟମାନଙ୍କୁ ଅଣ-ହରିଜନ ଓ ଅଣ-ଆଦିବାସୀମାନଙ୍କୁ ଉପେକ୍ଷା କରିବି ମାତ୍ର; ଅଥଚ ସାହିତ୍ୟ ସମସ୍ତଙ୍କ

ପାଇଁ । ସାହିତ୍ୟ ପଢ଼ି ବା ଦେଖି ଯେବେ ସମସ୍ତଙ୍କ ମନରେ ସମାନ ଆନନ୍ଦ ବା କ୍ଷୋଭ ନ ଆସିଲା, ତାହେଲେ ସେ ମାନବାସ୍ୱତାଦ୍ରୋହୀ ହୋଇଯିବ, ସୁତରାଂ ଉଚ୍ଚ ସାହିତ୍ୟର ଯୋଗ୍ୟ ହୋଇପାରିବ ନାହିଁ ।

କହିବାର ତ ଅନେକ ଅଛି, ଦୁଇ ଦୁଇଟା ଗ୍ରନ୍ଥ ହୋଇଯିବ । କି ଲାଭ କହି ? ତେବେ ମତେ ଯେବେ କେହି ପଚାରେ, ମୁଁ କହିବ, ଆମର ସାହିତ୍ୟିକମାନଙ୍କ ମଧ୍ୟରେ ସାହିତ୍ୟ ଗୁଣଗ୍ରାହୀ ଓ ଧୀମାନ ଲେଖକ ଅନେକ ଅଛନ୍ତି । ସେମାନେ ଇଚ୍ଛାକଲେ ଉଚ୍ଚ ଧରଣର ସାହିତ୍ୟ ଲେଖିପାରନ୍ତେ । କିନ୍ତୁ ଲେଖିପାରୁନାହାନ୍ତି, ତାର କାରଣ ସେଥିଲାଗି ପ୍ରେରଣାର ଅଭାବ । ସାହିତ୍ୟକୁ ଯେବେ ଦଳଗତ ଗୋଷ୍ଠୀଗତ ପ୍ରଭାବରୁ ମୁକ୍ତ କରି ରାଜନୀତିରୁ ଉଦ୍ଧାର କରାଯାଏ ଓ ସାହିତ୍ୟ ପ୍ରକାଶନ ଓ ପ୍ରଚାର ଯେବେ ନିରପେକ୍ଷ ସାହିତ୍ୟିକମାନଙ୍କଦ୍ୱାରା କରାଯାଏ, ତାହେଲେ ଓଡ଼ିଆ ସାହିତ୍ୟ ମଧ୍ୟ ପୃଥିବୀର ଯେ କୌଣସି ସାହିତ୍ୟ ସହିତ ସମାନ ଆସନ ପାଇପାରିବ । ବାକି ଯେଉଁ ସବୁ କଥା, ସେ କେବଳ ବାଜେ । ଆମର ଦେଶ ଗ୍ଲେଟ, ଆମର ପାଠକମଣ୍ଡଳୀ କ୍ଷୁଦ୍ର, ଏସବୁର କୌଣସି ଅର୍ଥ ନାହିଁ, କେକୋସ୍ଲୋଭାକିଆ ଆମଠାରୁ ଖୁବ୍ ବଡ଼ ନୁହଁ; ତଥାପି ସେ ତ ଉଚ୍ଚ ସାହିତ୍ୟ ଦେଇ ପାରୁଛି ।

ଗୋଟିଏ ସର୍ବଦଳୀୟ ସାହିତ୍ୟିକ ପ୍ରକାଶନୀର ଉଦ୍ୟମ ଥରେ ହୋଇଥିଲା । ମୁଁ ସେଥିରେ ମୁଖ୍ୟ ହୋଇ କାଳନ୍ଦୀବାବୁ, ଶଚୀବାବୁ ଇତ୍ୟାଦିଙ୍କ ସହିତ କଥାବାର୍ତ୍ତା ଚଳାଇଥିଲି, ହେଲାନାହିଁ କିଛି । କିମିତି ହବ ? କଉ ହବ କଏ ? ହାୟରେ ହତଭାଗା ଦେଶ । 'ଶିରୋନାସ୍ତି ଶିରଃପୀଡ଼ା' ।

ନିଖିଳ ଭାରତ ଲେଖକ ସମ୍ମେଳନ—ସମାଜ ତା ୧ । ୧ । ୫୯



# ଗୋପବନ୍ଧୁଙ୍କ ଶ୍ରାଦ୍ଧ

ସତ୍ୟବାଦୀ ମନ୍ଦିର । ମହାଦୀପ ଜାଳିବାକୁ ସେବକ ଯେତେବେଳେ ଏହି ମନ୍ଦିରର ଶିଖାକୁ ଉଠି ଗୃଧ୍ରଆଡ଼କୁ ତା'ର ଚକିତ ଚାହାଣୀ ଚଳାଏ, ସେତେବେଳେ ସେ ଦେଖେ, ମନ୍ଦିର ବେଢ଼ାଠାରୁ ଆରମ୍ଭ କରି ପଶ୍ଚିମ ଓ ଉତ୍ତରରେ ଆଖି ଯେତେଦୂରଯାଏ ଦିଶିଯାଏ ଗୋଟାଏ ଶ୍ୟାମଳତାର ବିରାଟ ଆସ୍ତରଣ । ବଉଳ, ତମାଳ ଓ ଝୁରିଅନାର ଚିକ୍କଣ ଶ୍ୟାମଳ ଶାନ୍ତଶ୍ୟାମମୂର୍ତ୍ତି । ମହାଯୋଗେଶ୍ୱର ବାସୁଦେବ ଯେପରି ଏହି 'ଶ୍ୟାମବର୍ଣ୍ଣ ଶେଯ'ରେ ଯୋଗନିଦ୍ରାରେ ଶୋଇଯାଇଛନ୍ତି । ଧୀର ପବନ ବେଗରେ ଦୋଳାୟମାନ ଶ୍ୟାମପଲ୍ଲବଗୁଡ଼ିକ ତାଙ୍କ ହୃଦୟର ମୃଦୁମଧୁ ସ୍ପନ୍ଦନର ସୂଚନା ଦେଉଛି । ଦକ୍ଷିଣରେ ନାରିକେଳ ବନ ନାଗଫେଣୀ ସେନାଙ୍କ ଭଳି ସିଧାସଳଖ ଭାବରେ ଏହି ଯୋଗନିଦ୍ରାଗତ ଭଗବାନ ବାସୁଦେବଙ୍କର ରକ୍ଷାପାଇଁ ଜଗି ରହିଛନ୍ତି । ପୂର୍ବରେ ନିଜେ ସତ୍ୟବାଦୀ ଗୋପୀନାଥ ହାତରେ ବଂଶୀ, ଗୋଡ଼ରେ ନୂପୁର, ମୁଣ୍ଡରେ ଶିଖୀଚୂଳ ଓ ନାକରେ ମୋତି ବସୁଣୀ ଲଗାଇ ଆଗୁଆଳ ହୋଇ ରହିଛନ୍ତି—ଯେପରି ଯୋଗେଶ୍ୱରଙ୍କର ଯୋଗରେ କୌଣସି ରକମ ବ୍ୟାଘାତ ନହୁଏ, କିଛି ମାତ୍ର ଆଞ୍ଚ ନ ଆସେ ।

ବୃନ୍ଦାବନଠାରୁ କାହ୍ନୁଯାଏ ଚାଲିଆସିଲେ ଗୋପୀନାଥ ସତ୍ୟର ସନ୍ଧାନରେ । ସତ୍ୟ ମିଳେନି । ଗୋଟାଏ ମହାନ୍ ମିଥ୍ୟାର ମାୟାଜାଲରେ ତାଙ୍କର ଜୀବନ ଜର୍ଜରିତ । ଗୋପାଳ ଗଉଡ଼ ତାଙ୍କର ବଡ଼ ଭାଇ ହଳଧରରୂପୀ । ଗୋରୁଙ୍କ ଲାଗି ଶ୍ୟାମଳ ଘାସ ଲୋଡ଼ା । ଶ୍ୟାମଳ ଘାସ ଲାଗି ବର୍ଷା ପାଣି ଦରକାର । ବର୍ଷା କୃଷିର ଜୀବନ । ନବ-ଘନଶ୍ୟାମ ଶିଖୀପୁଚ୍ଛ, ତଡ଼ିତ ଲୋହିତ କଟୀବାସ ଶ୍ରୀକୃଷ୍ଣ ଏମାନଙ୍କୁ ଦୟା କରନ୍ତି । ନବଘନ ଆସେ, ମୟୂର ନାଚେ, ବିଜୁଳି (ରାଧା) ଖେଳେ, ନୂଆ ମେଘର ନୂଆ ପବନ ବାଉଁଶରନ୍ଧ୍ରରେ ପଶି ବେଣୁ ବଜାଏ, ବିଜୁଳିକୁ ଦେଖି ଚନ୍ଦ୍ରାବଳୀ ଲୁଚିଯାଏ । ଗୋପୀମାନେ ଆନନ୍ଦରେ ଗୀତ ଗାଆନ୍ତି, ନାଚନ୍ତି, ନଈ ବଢ଼େ, ସାପ ଖେଳେ, ଶଗଡ଼ ଭାଙ୍ଗେ, ଗଛ ଉପୁଡ଼ି ପଡ଼େ, ବଗ ନିରାହାରରେ ମରିଯାଏ, ଜିଆଁ ଲଭିଯାଏ—କେତେ କ'ଣ ଯେ, ହୁଏ । ଶ୍ରୀକୃଷ୍ଣ ଧରାକୁ ଅଗମନ କରନ୍ତି, ଗୋପୀନାଥ ଗୋପୀ-ମାନଙ୍କର ପୂଜା ପାଆନ୍ତି । ଏ ଆନନ୍ଦର ସୌଭାଗ୍ୟର ଦେବତା । ସେ ଯୋଗୀ ନୁହନ୍ତି, ଯୋଗେଶ୍ୱର ନୁହନ୍ତି; କିନ୍ତୁ ତାଙ୍କୁ କେତେଗୁଡ଼ାଏ ଲୋକ ଯୋଗେଶ୍ୱର ଶ୍ରୀକୃଷ୍ଣଙ୍କ ସହିତ ମିଶାଇଦେଇ ଗୋଟାଏ ମିଥ୍ୟାଜାଲ ବିସ୍ତାର କରି ଦେଇଚନ୍ତି ମାୟାଜାଲ, ମିଛ ମାୟାର ଗୋଟାଏ ପ୍ରହେଳିକା । ଏ ପ୍ରହେଳିକା କିପରି ଭାଙ୍ଗିବ, କିପରି ସତ୍ୟର ବିକାଶ ହେବ, କିପରି ଗୋପୀନାଥଙ୍କ ନିଜ ରୂପ ଲୋକେ ଜାଣିବେ—ଏଇଥିପାଇଁ

ଗୋପୀନାଥ ବୃନ୍ଦାବନଠାରୁ କାଣ୍ଟପାଏ ବୁଲିଗଲେ । ସତ୍ୟ ପାଇଲେନ । ବୁଲି ବୁଲି ପାଇଲେ ଏଇ ସତ୍ୟବାଦୀରେ । ରହିଗଲେ ଏଇଠି ଆସନ ଜମେଇ । ଏଇଠି ତାଙ୍କର ବସ୍ତାରୁ ଜଣେ ପଣ୍ଡିତର ମୁହଁରୁ ବାହାରୁଥିଲା ଅତି ଉପାଦେୟ ତାଙ୍କର ଅନୁସରଣୀୟ ମହାସତ୍ୟ—ରାସଲୀଳାର ଶ୍ରୀକୃଷ୍ଣ ଭଗବଦ୍ ଗୀତାର ଶ୍ରୀକୃଷ୍ଣ ନୁହନ୍ତି, ହୋଇ ନପାରନ୍ତି । ଜଗତ କ'ଣ ବୁଝିଲା ? ସତ୍ୟର ରୂପ କଣ ତା ଆଖିରେ ପଡ଼ିଲା ? ସତ୍ୟବାଦୀ ଗୋପୀନାଥ ଓ ମହାଯୋଗେଶ୍ୱର କୃଷ୍ଣଙ୍କର ବିଭିନ୍ନ ବିକାଶ ହେଲା; ତଥାପି କଅଣ ଜଗତ ସେ କଥା ମାନିଲା ?

ସତ୍ୟର ସଞ୍ଚାର ହେଲା ଏଇଠି, ସତ୍ୟର ସମାଧି ମଧ୍ୟ ହେଲା ଏଇଠି । ଏଇ ଜାଗାର ଧୂଳିରେ ସତ୍ୟବାଦୀର ପାଦଧୂଳି ମିଶିଛି । ଏଇ ଜାଗାର ମାଟିରେ ସତ୍ୟବାଦୀର ଦେହ ପାଉଁଶ ହୋଇ ମିଳେଇଯାଇଛି । ସେଇ ଗୋଟିଏ ଶ୍ମଶାନରେ ଏଇ ଯେ—ଏଇ ଦେଖାଯାଏ ମନ୍ଦିର ଶିଖରୁ ସେଇ ଶ୍ମଶାନ, ସେଇ ତିନି ହାତର କ୍ଷୁଦ୍ରସ୍ଥାନ— ଯେଉଁଠାରେ ଏମିତି ଗୋଟାଏ ଦିନରେ ସତ୍ୟବାଦୀର ଦେହରେ ନିଆଁ ଲଗାଇ ଦିଆଗଲା । ଏଇଠୁ ସେଇ ନିଆଁରେ ତାଙ୍କ ଦେହରୁ ପବନ ବାମ୍ପ ହୋଇ ଧୂଆଁରେ ଉଡ଼ିଗଲା—କୁଆଡ଼େ ? ସ୍ୱର୍ଗକୁ ? ନରକକୁ ? କେଉଁଆଡ଼କୁ ? କେହି ଦେଖିଲେ ନାହିଁ, କେହି ବୁଝିଲେ ନାହିଁ । କିଛି ଦିନ ପରେ ଗୋଟାଏ ବୁଢ଼ା ଆସିଲା, ତାଙ୍କୁ ତାର ସତ୍ୟବାଦୀ ଗୋପବନ୍ଧୁଙ୍କୁ ଦେଖିବ ବୋଲି । ଦେଖିଲା ମାତ୍ର ମୁଠାଏ ପାଉଁଶ । ସାଉଁଟି ନେଲା ସେ ପାଉଁଶକୁ, ସେ ଆଖିର ଲୁହରେ ଓଦାକରି ପିଣ୍ଡୁଳା ବାନ୍ଧିଦେଲା । ଭାବିଥିଲା କି ସେ ପିଣ୍ଡୁଳା ପୁଣି ରକ୍ତମାଂସ ହାଡ଼ର ମଣିଷ ହୋଇ ଠିଆ ହୋଇଯିବ ବୋଲି ? ନା, ଭାବିଥିଲା, ସେ ପାଉଁଶ ପବିତ୍ର, ମହାନ୍, ସର୍ବବ୍ୟାଧିନିବାରଣୀ, ସର୍ବମୁକ୍ତିପ୍ରଦାୟିନୀ । ପାଉଁଶପୁଡ଼ିଆଟିକ ମଧ୍ୟ ରହିଲା ନାହିଁ, ରଖେଇ ଦେଲେ ନାହିଁ । ଗଢ଼ିଲେ ସେ ପୋଡ଼ା ଭୂଇଁଟା ଉପରେ ଗୋଟାଏ ସମାଧି ମନ୍ଦିର । ସରିଗଲା ଆମର କାମ; ଗୋପବନ୍ଧୁଙ୍କ ଲାଗି ଆମର କର୍ତ୍ତବ୍ୟ । ଦୈବ ଦାଉରେ ନଷ୍ଟମି ହୋଇ ବୁଲୁଥିଲି । ଗଲି ସତ୍ୟବାଦୀ । ଜାଣିଲି ଗୋପବନ୍ଧୁଙ୍କର ବାର୍ଷିକ ଶ୍ରାଦ୍ଧ । ଅମୃତତୃପ୍ତି । ଏ ଯୁଗରେ ଏ କଥା ଶୁଣି ଗୋପବନ୍ଧୁଙ୍କ କଥା ମନେପଡ଼ିଗଲା ବୋଲି ଏ କଳ୍ପନା କରିବସିଲି । ଡରିଯିବେ ନାହିଁ । ମୁଁ ଗୋପବନ୍ଧୁଙ୍କର ଆତ୍ମାର ନିଷ୍ଫଳ ରୋଦନ ବିଷୟରେ କିଛି ପ୍ରବନ୍ଧ ଲେଖିବାକୁ ଯାଉ-ନାହିଁ । ଯେଉଁମାନେ ଗୋପବନ୍ଧୁଙ୍କ ଶ୍ରାଦ୍ଧ ଦିନରେ ଗୋପବନ୍ଧୁଙ୍କ ବିଷୟରେ ମଧୁର ଗାନ ବା ତାନ ଧରୁଛନ୍ତି, ସେମାନଙ୍କ ସୁକଣ୍ଠ ସହିତ ମୋର ଦଦରା ସ୍ୱର ମିଳାଇବାକୁ ଯାଉନାହିଁ । ଗୋପବନ୍ଧୁଙ୍କର ଆତ୍ମା ସତ୍ୟବାଦୀର ତମାଲ ବଣରେ, ପୁରୀର ସାଗର-ବେଳାରେ, ଗୋପକଣାପରର ବଲବାଡ଼ରେ, ମହାନଦୀର ବାଲିଶେଯରେ, ସିଂହଭୂମିର ବଣଜଙ୍ଗଲରେ ଘୂରିବୁଲୁଛି । ମୁଁ ଦେଖିଛି । ସେ ମତେ ତାଙ୍କ ବିଷୟରେ ଗୁଡ଼ାଏ ବାଜେ ପ୍ରଶଂସା ନ ଗାଇବାକୁ ପ୍ରବର୍ତ୍ତାଇଛନ୍ତି । ବରଂ କହିଚନ୍ତି, "ବାବା ଏ ସ୍ତାବକମାନଙ୍କୁ

ମନାକର ମୋର ଏ ସ୍ତୁତି ତାଙ୍କର କୋକିଳ କଣ୍ଠରୁ ନ ବାହାରୁ; ଲୋଡ଼ାନାହିଁ ଏ ସ୍ତୁତି, ଲୋଡ଼ା ନାହିଁ ଏ ହୃଦସ୍ପର୍ଶୀ ବକ୍ତୃତା ।"

ଏଇ ଯେ ସ୍ତୁତି, ଏଇ ଯେ ବକ୍ତୃତା ଶୁଣି ଶୁଣି ନିନ୍ଦ ଲାଗିଆସେ । କିନ୍ତୁ ଗୋପବନ୍ଧୁଙ୍କ ବିଷୟରେ ଏ ସବୁ ଶୁଣିଲେ ବିରକ୍ତ ଲାଗେ, ରାଗ ହୁଏ, ତିକ୍ତତା ଆସିଯାଏ । ଗୋପବନ୍ଧୁ ଏ ଦେଶର ମସ୍ତିଷ୍କ ଫେରାଇଆଣିବା ପାଇଁ ସମାଜପତିମାନଙ୍କ ସହିତ ଲଢ଼ାଇ କରିଥିଲେ । ଏ ଦେଶର ସ୍ୱାଧୀନତା ଆଣିବା ପାଇଁ ବିଦେଶୀ ସରକାର ବିରୋଧରେ ବିଦ୍ରୋହ ଘୋଷଣା କରିଥିଲେ । ସର୍ବହରାର ପାଟିରେ ଦି'ମୁଠା ଅନ୍ନ ଦେବାଲାଗି ଅନ୍ୟମାନଙ୍କୁ ଗୁହାରି ମାରିଥିଲେ । ସେ ବଞ୍ଚିଥିଲାବେଳେ କିଏ କେତେ ତାଙ୍କୁ ଗାଳି ନ ଦେଇଚନ୍ତି, କିଏ କେତେ ତାଙ୍କ ପାଇଁ ନିଜ ପାଟିରୁ ବିଷ ଉଦ୍‌ଗାରି ନାହାନ୍ତି, କିଏ କେତେ ତାଙ୍କୁ ଗୋଇର, ଖଣ୍ଡ ବୋଲି ନ କହିଛନ୍ତି ! ଅଥଚ ଆଜିକାର ସ୍ତୁତି ଓ ସ୍ତବ ସେଇମାନଙ୍କ କଣ୍ଠରୁ କି ମଧୁର ମୂର୍ଚ୍ଛନାରେ ଝରିପଡୁଚି । ଆଜି ଯେଉଁମାନେ ସାହିତ୍ୟରେ ନବଯୁଗ ଆଣିବାରେ ସନ୍ତୁଷ୍ଟ ନହୋଇ, ଧର୍ମର କଳଙ୍କ ଓ ଚଳନ୍ତି ଶୃଙ୍ଖଳାର ବିରୋଧରେ ଯୁଦ୍ଧଦୁନ୍ଦୁଭି ବଜାନ୍ତି, ଦେଶପ୍ରୀତି ଓ ପୁଞ୍ଜିବାଦକୁ ଘୃଣା କରନ୍ତି, ନିଜକୁ ସାମ୍ୟବାଦୀ, ବିଶ୍ୱମୈତ୍ରୀବାଦୀ, ଶାନ୍ତିବାଦୀ ଓ ବିବେକବାଦୀ ବୋଲି ପରିଚୟ ଦିଅନ୍ତି, ସେମାନଙ୍କୁ ଏଇମାନେ କିପରି ଭାବରେ ବ୍ୟବହାର କରିବେ, ତାହା ଆମ୍ଭେମାନେ ସମସ୍ତେ ଜାଣୁ । ସେଇମାନେ କହିବେ, "ଏମାନେ ଦେଶର ବିପଦ, ଏମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବାକୁ ପଡ଼ିବ ।" ଏମାନଙ୍କର ନିନ୍ଦାର ସୁଅ ବୋହି ଚାଲିବ । ଏମାନଙ୍କ ବୁଦ୍ଧି ଓ ବିଚାରଶକ୍ତିକୁ ଘୃଣାକରି କେତେ ବକ୍ତୃତାମାନ ଦିଆହେବ ଓ ଯେଉଁମାନଙ୍କର ବୁଦ୍ଧି ଆଉ ଟିକିଏ ତୀକ୍ଷ୍ଣ, ସେମାନେ ଏମାନଙ୍କ ନାମ ପର୍ଯ୍ୟନ୍ତ ସେମାନଙ୍କ ଆସ୍ଥିର କାଗଜରେ ପ୍ରକାଶ କରିବେ ନାହିଁ ।

କିନ୍ତୁ ଗୋପବନ୍ଧୁ ନିର୍ଘପଦରେ ସତ୍ୟବାଦୀରେ ପୋଡ଼ା ହୋଇଯାଇଚନ୍ତି । ସେ ଆଉ ବଞ୍ଚିନାହାନ୍ତି ଯେ ଏମାନଙ୍କର କୌଣସି କ୍ଷତି ଧଡ଼କ ଆଣିପାରିବେ । ସେ ମୃତ ନେତା, ମୃତ ସାହିତ୍ୟିକ । ସେହି ହେତୁ ଶାନ୍ତିଶୃଙ୍ଖଳାର ପ୍ରଚାରକ ଏଇ ନେତାମାନେ, ବର୍ତ୍ତମାନ ସାହିତ୍ୟର ପୃଷ୍ଠପୋଷକ ଏହି ସାହିତ୍ୟରଥୀମାନେ ଏକାଠି ହୋଇ ତାଙ୍କର ପ୍ରଶଂସା କରିବାରେ ଲାଗିଚନ୍ତି । ତାଙ୍କର ଉଦ୍ଦେଶ୍ୟ ବଖାଣୁଛନ୍ତି ଓ ତାଙ୍କ ବିଷୟରେ ବକ୍ତୃତାମାନ ଦେଉଚନ୍ତି । ତାଙ୍କର ଏହି କୋକିଳଝଙ୍କାର ପଛରେ କାକଗୁଡ଼ୁକା ରହିଚି । ଏହି ବାର୍ଷିକ ଶ୍ରାଦ୍ଧ ହୃଦସ୍ପର୍ଶନତା ଓ ଅବିଶ୍ୱାସର ବିସମ୍ବାଦରେ ଘୋଡ଼ାଇ ହୋଇଯାଉଚି । ମୃତ ମହାପୁରୁଷମାନଙ୍କ ଜୀବନ-ଦୀପ ଆଉ ଥରେ ଜଳାଇବା, ଏସବୁ ଶ୍ରାଦ୍ଧର ଉଦ୍ଦେଶ୍ୟ ନୁହେଁ; ଏହାର ଉଦ୍ଦେଶ୍ୟ, ସେ ଯେ ଚିରଦିନପାଇଁ ମରିଚନ୍ତି—ଏହି କଥା ବାରମ୍ବାର କହି ଶାନ୍ତି ଲାଭ କରିବା, ଏହାଙ୍କୁ ପୋଡ଼ିଦେବା । ଗୋଟାଏ ଜୀବନ୍ତ

ମହାତ୍ମା ପାଉଁଶ ହୋଇଯାଇଚ । ଆମେ ଏହି ଶ୍ରାଦ୍ଧ ଦିବସରେ ମାଟିମିଶା ତାର ସେ ପାଉଁଶକୁ ସମାଧିରେ ଥୋଇ ଗୌରବ ଅନୁଭବ କରୁଁ ମାତ୍ର ।

ଅନ୍ୟ ଦେଶମାନଙ୍କରେ ସେମାନଙ୍କ ବଡ଼ବଡ଼ିଆଙ୍କ ଶ୍ରାଦ୍ଧ କିପରି ଆନନ୍ଦ ଓ ଉତ୍ସାହ ମଧ୍ୟରେ ଅନୁଷ୍ଠିତ ହୁଏ । ଯେମେ ପାଶ୍ଚାତ୍ୟ ଦେଶରୁ, ବିଶେଷତଃ ବିଲାତରୁ ଏପରି ଶ୍ରାଦ୍ଧ ଦିବସ ପାଳନର ନମୁନା ପାଇଚୁଁ । ଆଗେ ଆମ ଦେଶରେ ମହାତ୍ମାମାନଙ୍କ ଶ୍ରାଦ୍ଧ ଉତ୍ସବ ଓ ଆନନ୍ଦ ମଧ୍ୟରେ ପାଳନ କରାଯାଉଥିଲା । କୃଷ୍ଣଜନ୍ମରେ ଉପବାସ ଓ ଉପାସନା ମଧ୍ୟରେ କେତେ ଉତ୍ସବ ହେଉଥିଲା । ବର୍ତ୍ତମାନ ମଧ୍ୟ ମାରଓ୍ୱାଡ଼ି ଓ ପଶ୍ଚିମାମାନଙ୍କ ମଧ୍ୟରେ ମହୋତ୍ସବ ଗାଣବାଜଣା, ମିଠେଇଖିଆ ଇତ୍ୟାଦିରେ ପାଳନ କରାଯାଏ । ଶିବରାତ୍ରିରେ ସବୁ କାଷ୍ଟା ଉପବାସ ଥାଇ ମଧ୍ୟ ଆନନ୍ଦ, ଉତ୍ସବ, ମେଳା ଇତ୍ୟାଦି କରାଯାଏ । ଏସବୁ ଆନନ୍ଦ ଉତ୍ସବ ମୃତ ପିତୃଦେବତାଙ୍କ ସ୍ମରଣ ଓ ସମ୍ମାନ କରିବା ସଙ୍ଗେସଙ୍ଗେ ଜୀବନ୍ତ ଲୋକଙ୍କ ମଧ୍ୟରେ ଉତ୍ସାହ, ଉଦ୍ୟମ ଓ ଉଦ୍ଦୀପନା ଆଣିଦିଏ । ଜୀବନ୍ତ ଲୋକର କର୍ମ କଠିନ ଓ କର୍ମକ୍ଳାନ୍ତ ଜୀବନରେ ନୂଆ ଜୀବନଶକ୍ତି ସଞ୍ଚାର କରାଏ । କିନ୍ତୁ ଆମେ କଅଣ କରୁଛୁଁ ? କେତେକେତେ ଏକାଠି ହୋଇ ନଈ ବା ପୋଖରୀ କୂଳରେ ତିଳତର୍ପଣ ଟିକିଏ କରିଦେଉଛୁଁ । ତା' ପରେ କେବଳ ଅର୍ଥହୀନ, ହୃଦୟହୀନ ଓ ଭାବନାହୀନ ଗୁଡ଼ାଏ ଭାଷଣ ଓ ବକ୍ତୃତା । କେବଳ ଗପସେଉଁଥିରେ ମୃତ ନେତାଙ୍କ ବୁଦ୍ଧି ଓ ବ୍ୟକ୍ତିତ୍ୱର ସତ୍ତା ନ ଥାଏ, ଥାଏ କେବଳ କେତେଗୁଡ଼ାଏ ଝପସଡ଼ା କାହୁଥ ଶବ୍ଦାଡମ୍ବର, ଥାଏ ମୃତ ପିତୃଙ୍କ ନାମ ନେଇ ନିଜର ଗୁଡ଼ାଏ ଆତ୍ମବଡ଼ିମା ବା ଆତ୍ମପୌରୁଷ । ଇଂଲଣ୍ଡ ଭଳି ଦେଶରେ ମହାପୁରୁଷମାନଙ୍କର ଶ୍ରାଦ୍ଧଦିବସରେ ଦେଶର ସୈନ୍ୟଗଣ ସେମାନଙ୍କ ଜାକଜମକ ପୋଷାକପତ୍ର ପିନ୍ଧି ପଥେ ପଥେ ପରେଡ଼ କରି ମାରନ୍ତି । ସମୁଦାୟ ସହରର ନାଗରିକମାନେ ସୁବେଶ ହୋଇ ବାହାରିପଡ଼ନ୍ତି । ସଭା ହୁଏ, ହୃଦୟସ୍ପର୍ଶୀ ବକ୍ତୃତାମାନ ଦିଆଗଲା ପରେ ସେମାନେ ସମସ୍ତେ ଖେଳପଡ଼ିଆକୁ ଯା'ନ୍ତି ଓ ସେଠାରେ ସାଇକଲ ଚଢ଼ା ଇତ୍ୟାଦି ନାନା ପ୍ରକାର ଖେଳ କସରତ ଦେଖାଯାଏ ।

ଏସବୁ ଆମ ନାକକାନ୍ଦଣାଠାରୁ କେତେ ଭଲ ! ଗୋପବନ୍ଧୁଙ୍କର ଆଦର୍ଶ ଓ ସାହିତ୍ୟ ପ୍ରାଣମୟ, ଜୀବନୀଶକ୍ତିରେ ଭରପୂର । ତାହା ମୃତ ନୁହେଁ, ମୃତ ହେବାର ନୁହେଁ । ସାଇକଲ ଦୌଡ଼, ଖେଳ କସରତ ଇତ୍ୟାଦି ଗୋପବନ୍ଧୁଙ୍କ ସହିତ ଖାପ ଖାଏନାହିଁ ବୋଲି କେହି କେହି କହିପାରନ୍ତି, ସେ ତ ମିଛ । ଗୋପବନ୍ଧୁ ସତ୍ୟବାଦୀ ବିଦ୍ୟାଳୟରେ ଖେଳ, କସରତ, କୁସ୍ତି ଇତ୍ୟାଦି ବାଧ୍ୟବାଧକ ଅନୁଷ୍ଠାନ କରିଥିଲେ । ସେ ନିଜେ ବୋଧହୁଏ ଖେଳ ବା କୁସ୍ତିପ୍ରିୟ ନ ଥିଲେ । ସେ କିନ୍ତୁ ଆମ ଭଳି ପେଟରେ ବିଷ ରଖି ମୁହଁରେ ଅମୃତ କହୁ ନ ଥିଲେ; ଯେଉଁଥିରେ ତାଙ୍କର ହୃଦୟ ବିଚଳିତ ହେଉ ନ ଥିଲା, ତାକୁ ନେଇ କେବଳ ଲୋକଦେଖାଣି କାନ୍ଦଣା ଝରଉ ନ ଥିଲେ । କାହାକୁ ମନେ ମନେ ଘୃଣା ଓ ଭୟ କରି ପ୍ରକାଶ୍ୟରେ ତାର ବନ୍ଦନା ଗାଉ ନ ଥିଲେ ।

ଆଶ୍ଚର୍ଯ୍ୟ କାଣ୍ଡ ! ଆମେ ଯେବେ ସେମାନଙ୍କର ବାସ୍ତବ ଜ୍ଞାନ, ଜୀବନ ନୀତି ଜୀବନ ପ୍ରତି ମମତା ଓ ଯାହା ଇନ୍ଦ୍ରିୟଗ୍ରାହ୍ୟ ବାସ୍ତବ ତାହା ପ୍ରତି ଆଦର ଶିଖିପାରନ୍ତୁ । ଆମର ଏ ଅଜ୍ଞାନମୂଳକରେ ଆମେ କାଳ୍ପନିକ ଗୁଣାବଳୀକୁ ବେଶୀ ସମ୍ମାନ କରୁଁ; ଯାହା ଅଦୃଶ୍ୟ ତାର ପୂଜା କରୁଁ ଓ ବର୍ତ୍ତମାନ ଜୀବନ ଉପଭୋଗରେ ଅନେକ କଷ୍ଟ ମନା ବା ବାଧାର କଳ୍ପନା କରିବସୁଁ । ଆମେ ଅତୀତର କଥା ଭାବୁଁ ବହୁତ, ଆଧ୍ୟାତ୍ମର ବିଷୟ ଓ ପାରମାର୍ଥିକତା ଆମକୁ ଜଡ଼ କରିଦିଏ । ଅଦର୍ଶ ଭବିଷ୍ୟତ, ବ୍ୟାବହାରିକତା ପଥଭ୍ରଷ୍ଟ କରାଏ । ଆମେ ଜୀବନର କଥା, ଚକଚକ ଏଇ ବର୍ତ୍ତମାନର ଦମକରେ ଭୁଲିଯାଉଁ ।

ଗୋପବନ୍ଧୁଙ୍କ ଶ୍ରାଦ୍ଧ ଦିନରେ ଆମେ କେବଳ କହୁଁ—ସେ ଏହା କରିଥିଲେ, ସେ ତା କରିଥିଲେ । ଆମ ଗାଁଗହଳରେ ବାପାମାନଙ୍କର ଶ୍ରାଦ୍ଧଦିନ ଆମେ ଭଦ୍ରବନ୍ଧୁ କୁଟୁମ୍ବ ଭକ୍ଷ୍ୟଭୋଜକ ଇତ୍ୟାଦିଙ୍କୁ ଡାକି ଖୁବ୍ ବଢ଼ିଆ ବଢ଼ିଆ ଜିନିଷ ଖାଇବାକୁ ଦେଉଁ; ତାଙ୍କ କଥା ଭାବି କବାଟ କଣରେ କାନ୍ଦି ବସୁନାହିଁ । ଗୋପବନ୍ଧୁ ତାଙ୍କ ଜୀବନଟାଯାକ ଗରିବ ଦେଶବାସୀଙ୍କ ପେଟ କିପରି ଭରିବ, ସେ କଥା ଭାବି ଯାଇଛନ୍ତି, ସେଇଥିଲାଗି ପ୍ରାଣପାତ କରିଛନ୍ତି । ଆମେ ତାଙ୍କ ଶ୍ରାଦ୍ଧ ଦିନରେ ଯେବେ ସବୁ ଦେଶବାସୀଙ୍କ ପେଟ ପୂରାଇ ଥରେ ଖାଇବାକୁ ଦେଇପାରନ୍ତୁ, ମେଳା ମଜଲିସ କରାଇ ସେମାନଙ୍କ ଏକମୁଖୀ ଜୀବନରେ ଗୋଟିଏ ଦିନ ପାଇଁ ଅନ୍ତତଃ ବିଚିତ୍ରତା ଆଣିଦେଇପାରନ୍ତୁ, ଝେଲ କସରତ କରାଇ ବର୍ତ୍ତମାନ ଓଡ଼ିଶାର ଯେ ତିନୋଟି ମାତ୍ର ମାଲ ପଦ୍ମଚରଣ, ରାଧାଶ୍ୟାମ ଓ ଉଦ୍ଧବ ତିଆରି କରିଥିଲେ, ସେଇମିତିକା ଗୋଟାଏ ଦି'ଟା ମାଲ ତିଆରି କରିବାର ମୂଳଦୁଆ ଦେଇପାରନ୍ତୁ, ତାହେଲେ ତାଙ୍କ ଶ୍ରାଦ୍ଧ ଦିବସ ଯଥାର୍ଥ ହୁଅନ୍ତା କିନ୍ତୁ ନା, ଆମେ ହୁଏତ ବିଧବା ପତ୍ନୀ ତା ସ୍ୱାମୀର ଗୁଣଗ୍ରାମ ମନେପକାଇ କାନ୍ଦିଲା ଭଳି କାନ୍ଦିବୁଁ, ନହେଲେ ଭବିଷ୍ୟତର ଜମାଟ କୁହୁଡ଼ିରେ ଭାସିଭାସି ଅଣ୍ଟୁଣ୍ଟି ଫେଣ୍ଟିଆ କରିବୁଁ । ବର୍ତ୍ତମାନଟା ଯେ ଆମକୁ ଘେରି ରହିଛି ତାର ଲୁହା ପାଚେରୀ ଦେଇ, ସେ କଥା ଆମେ ଭୁଲିଯାଉଁ । ଗୋପବନ୍ଧୁ ଏଥିରେ ସୁଖୀ ହେଉଥିବେ ନା କବରରେ ମୁହଁ ଫେରାଇବସି ଯାଉଥିବେ ?

(ଅଲଡ଼ସ ହକ୍ସ୍ଲେଙ୍କ ମେଣ୍ଟେନାଗନାମକ ପ୍ରବନ୍ଧର ଛାୟାରେ)



# ବଟୁଆ

ବଟୁଆ ଓଡ଼ିଆମିର ଗୋଟାଏ ଚିହ୍ନ—ଓଡ଼ିଆମିମାନେ ଖାଣ୍ଟି ଓଡ଼ିଆମି; ବଙ୍ଗୋଡ଼ିଆ ବା ବହ୍ମାଗ୍ରେଡ଼ିଆ ବା ତେଲଙ୍ଗୋଡ଼ିଆ ଏ ଚିହ୍ନଟାକୁ ଜାତି ଚିହ୍ନ ବୋଲି ମାନିବାକୁ ରାଜି ନୁହଁନ୍ତି । କଲିକତିଆ ବଙ୍ଗାଳୀ ସମାଜରେ 'ବଟୁଆ' ଯିମିତି ଗୋଟାଏ ଚିଗୁଲିଆ କଥା, ଆମ ବଙ୍ଗୋଡ଼ିଆଙ୍କ ଆଖିରେ ମଧ୍ୟ ସେଇମିତି । ପାଠୁଆ ଓଡ଼ିଆଙ୍କ ନାକକୁ ବଟୁଆ ଗନ୍ଧଟା ଦ'କୋଶ ଦୂରରୁ ଗନ୍ଧାଏ । ବଟୁଆଟିଏ ଦେଖିଦେଲେ ତାଙ୍କ ଆଖିରେ ଶୁଖୁଆ କଣ୍ଟା ଗଳିଯାଏ । ବଙ୍ଗାଳୀଙ୍କର ହୁକା ଓ ତେଲେଙ୍ଗାଙ୍କର ପିକା ଗନ୍ଧ ଠାରୁ ବଟୁଆ ଗନ୍ଧଟା କିଛି ବେଶୀ ଦୁର୍ଗନ୍ଧ ନୁହେଁ; ବଟୁଆର ସୌନ୍ଦର୍ଯ୍ୟ ତାଙ୍କ ଅପେକ୍ଷା କିଛି କମ୍ ନୁହେଁ; ତଥାପି ବଟୁଆ 'ଓଡ଼ିଆ'ଙ୍କ ଭଲ ହସକୋଳି ବା ଅଣ୍ଠାବୋଲି ପର ମାଡ଼, ବାହାର ମାଡ଼ ଖାଇ ଆସ୍ତେ ଆସ୍ତେ ପଳେଇଲାଣି । ଦିନକୁ ଦିନ ଏ ଓଡ଼ିଆ ଜାତିଟାକୁ ସାଙ୍ଗରେ ନେଇ ସେ ବଙ୍ଗୋପସାଗରରେ ବୁଡ଼ି ମରିବ । ହାୟରେ ବଟୁଆ !!! ହାୟରେ ବଟୁଆ—ସମ୍ପତ୍ତି ବଟୁଆ !!!

ବଟୁଆର ଏଇ ଯେ ଗତି ହେଉଛି, ସେଇଥିରୁ ଓଡ଼ିଆ ଜାତିର ଗତି ମଧ୍ୟ ଅନୁମାନ କରିପାର । ବଟୁଆ ଥିଲା ଓଡ଼ିଆର ଗୌରବ, ବଟୁଆ ଯେମିତି ଓଡ଼ିଆର ପ୍ରାଣ । ଓଡ଼ିଆ ଯେତେବେଳେ 'ବଟୁଆ' ଥିଲା ବେଉସା ପାଇଁ, ପାର୍ଣ୍ଣୀ ବ୍ୟବସାୟ ପାଇଁ, ସ୍ବକରି ପାଇଁ, ନାଆଁ ଅର୍ଜିବା ପାଇଁ, ଯେତେବେଳେ ଓଡ଼ିଆ ଏ ପୂର୍ବଖଣ୍ଡ ଗୋଟାକଯାକ ବିସ୍ତ ହୋଇଯାଇଥିଲା, ସେତେବେଳେ ତା'ର ବଟୁଆଟି ନହେଲେ ଚଳୁ ନ ଥିଲା । ସେତେବେଳେ ବଟୁଆ ଖାଲି ପାନ, ଗୁଆ, ଗୁଣ୍ଡି ରଖିବାର ଜାଗା ନ ଥିଲା । ସେଥିରେ ରହୁଥିଲା ଜଡ଼ିବୁଟି, ତିଳକ, କୋଥଳି, ଛୁରି, କତୁରି, ପଇସାପତ୍ର, ପାନଗୁଆ ମସଲା ମସଲି ଇତ୍ୟାଦି ହରେକ ଚିଜ । ଖଣ୍ଡିଏ ଗାମୁଛା, ଦ'ଖଣ୍ଡ କନ୍ଥା, ଖଣ୍ଡେ ପିତଳ, ଖଣ୍ଡେ ଡାଳ, ଏସବୁରୁ ଗୋଟିଏ ଗଣ୍ଠିଲି ବା କୋଥଳି କାନ୍ଧରେ, ଥାକୁଲୁ ଥୁକୁଲୁ ବଟୁଆଟି ଅଣ୍ଟାରେ, ହାତରେ ଖଣ୍ଡିଏ ବାଡ଼ି, ମୁଣ୍ଡରେ ଖଣ୍ଡିଏ ଟୋକା, ପାଦରେ ହଳିଏ ନାଗରା ଜୋତା । ବେଶ୍ ଓଡ଼ିଆ ଏତିକରେ ବୁଲିଲେ ଅର୍ଜନ କରି ଘର ପଇସା, ଦେଶ ପଇସା, ଅର୍ଜନ କରିବାକୁ ନୁହେଁ, ବିଦେଶ ପଇସା ଦେଶକୁ ଆଣିବା ପାଇଁ ଏଇମାନେ ହେଲେ ବାଟୁଆ । ତାଙ୍କ ବଟୁଆ ଝଣ୍ଡି ଥିଲା ତାଙ୍କ ବାଟର ସମ୍ପତ୍ତି—ତାଙ୍କ ଓଡ଼ିଆମିର ଗୌରବ, ତାଙ୍କ ଅର୍ଜନର ଉପାୟ । ସେମାନେ ସାତ ସମୁଦ୍ର ତେର ନଈ, ପର୍ବତ ପାହାଡ଼, ଶହ ଶହ ଜଙ୍ଗଲ ପାର ହୋଇ ଯାଉଥିଲେ ସେହି ବଟଆଟି, ଆଉ ସେହି ଠେଙ୍ଗାଟିର ଜୋର୍‌ରେ । ଏହି ବାଟୁଆଗୁଡ଼ାକ ଲକ୍ଷଲକ୍ଷ ଟଙ୍କା ରୋଜଗାର କରି ଆଣୁଥିଲେ । ଏହି ବାଟୁଆଙ୍କ ଧନରେ ଆଜିକାଲିର କେତେ ଓଡ଼ିଆ ବାବୁ ବଡ଼ଲୋକ,

ଏହି ବାଟୁଆଙ୍କ ବଂଶ ଆଜି ସରକାରୀ ଉଚ୍ଚପାହ୍ୟା କାମଠାରୁ ଆରମ୍ଭ କରି ବେସରକାରୀ ଉଚ୍ଚପାହ୍ୟା କାମ ପର୍ଯ୍ୟନ୍ତ ହାସଲ କରି ବସିଅଛନ୍ତି ।

ଏ ମରହଟ୍ଟିଆ କ'ଣ ଗୁଡ଼ାଏ କହୁଛୁ ହେ ? ବାଉଳାଟାଏ ନା କଣ ? ଆଜିକାଲି ଯେମିତି ଓଡ଼ିଆମାନେ ବିଦେଶକୁ ଯାଉନାହାନ୍ତି, କି ପଇସା ରୋଜଗାର କରୁନାହାନ୍ତି, ଖାଲି ସେହି "ସେକେଲେ ପୁରୋନ କଲୁଗୁଡାକ" ସିମିତି ଯାଇ ପଇସା ରୋଜଗାର କରୁଥିଲେ । ଆଃ, ଛି, ଛି, ତାଙ୍କ ମଇଳା ମୁଣ୍ଡ, ତାଙ୍କ ମଇଳା ଗାମୁଛା, ତାଙ୍କ ଗନ୍ଧିଆ ବଟୁଆ, ତା'ର ପୁଣି ତୁଳନା ଆମ ଏ ଓଡ଼ିଆ ସଭ୍ୟମାନଙ୍କ ସାଙ୍ଗରେ !!! ପାଗଳ, ପାଗଳ କଲୁ ବାବୁମାନେ; ସେମାନେ ଆଣୁଥିଲେ ଶହ ଶହ, ହଜାର ହଜାର ପାଦପୂଜା ପାଇ, ବେଉସା କରି, ହାକିମ କରି । ତୁମେ ଯାଉଛ ଦଶ ପନ୍ଦର ଟଙ୍କାର କୁଲିଗିରି କରିବାକୁ, ସେଥିରେ ପୁଣି ତୁମେ ଗୋଟାଏ ଟିଣ ବାକ୍ସ, ଗୋଟାଏ ଶେଯ ଗଣ୍ଠିଲି, ଗୋଟାଏ ବାସନକୁସନ ଜାଗା, ଆଉ ତାକୁ ନେବାପାଇଁ ତୁମର ଦରକାର ଗୋଟାଏ ଅନ୍ତତଃ କୁଲି । ସେମାନେ ଯାଉଥିଲେ ଆଣିବା ପାଇଁ, ତୁମେ ଯାଉଛ ଗୋଲାମି କରି । ତୁମେ ଯେବେ ବଡ଼ମ୍ପା ଗ୍ରୁଢ଼ ଟିକିଏ ନଜରେଖି କରି ଦେଖିବ, ତା'ହେଲେ ତୁମେମାନେ ବୁଝିପାରିବ ଯେ ଏହି ବଟୁଆ ଓ ସୁଟ୍‌କେଶ୍ ଲଢ଼େଇରେ ବଟୁଆର ଜିନା ଜିତ୍, ତୁମ ସୁଟ୍‌କେଶର ଲୁହେଁ ।

ତେବେ ଆମେ ବଟୁଆକୁ ଘୃଣାକରୁ କାହିଁକି ? ତୁମେ କ'ଣ ଭାବୁଚ ଯେ ଆମର ଆଖି ନାହିଁ, ଆମର ବୁଦ୍ଧି ନାହିଁ, ଆମର ଶିକ୍ଷା ନାହିଁ, ଖାଲି ତୁମେ ପାଠୁଆ, ତୁମେ ବୁଦ୍ଧିଆ ?

ତୁମର ଆଖି ଅଛି, ସେ ଖେଲ କଣ୍ଢେଇ ଆଖି । ତୁମର ବୁଦ୍ଧି ଅଛି, ସେ କାଉଁରୀ ମନ୍ତ୍ରଭୁଲ ବୁଦ୍ଧି । ତୁମର ଶିକ୍ଷା ଅଛି, ସେ ପୋଷାଶୁଆର ଶିକ୍ଷା "ଯାହା ପଢ଼ାଇଛୁ ଜଟାଧାରୀରେ, ବାମାଏ ।" ତା'ବାଡ଼ା ମନକୁ ଗୋଟିଏ କଥା କାଢ଼ିବାର ଶକ୍ତି ନାହିଁ । ଥିଲେ ତୁମେ ଦେଖୁଥାନ୍ତ, ତୁମର ଏଇ ଯେ ସାଇବାଣୀମାନେ ସଭ୍ୟ, ଉନ୍ନତ, ଉଚ୍ଚ-ଶିକ୍ଷିତ ସାଇବାଣୀମାନେ । ସାଇବାଣୀମାନଙ୍କର (Hand bag) ହାତଥଳି ଦେଖୁଛ ତ ? ସାଇବମାନଙ୍କର (Haver Sack) ବା (Knap Sack) ଅର୍ଥାତ୍ ଝୁଲମୁଣି ଦେଖିଚ ତ ? କହ ଦେଖି, ଏଇ ହ୍ୟାଣ୍ଡ ବ୍ୟାଗ, ହାବରସାକ୍ ବା ନାପ୍‌ସାକ୍ ଅପେକ୍ଷା ଆମ ବଟୁଆଟା କୋଉ ଗୁଣରେ ନିକୃଷ୍ଟ ? ସାଇବାଣୀ ଓ ସାଇବ ଯୁଆଡ଼େ ଗଲେ, ତାଙ୍କ ସାଙ୍ଗରେ ଏହିଟା ବରାବର ଥିବ । ଆଉ ସ୍ୱା ଭିତରେ ମୁହଁମଖା ଗୁଣ୍ଡାରୁ ଆରମ୍ଭ କରି ଓଠ ଦରକାରୀ ରବର ମୁଣା ପର୍ଯ୍ୟନ୍ତ, ପିକାଠାରୁ ଆରମ୍ଭ କରି ଲୁଚି ପର୍ଯ୍ୟନ୍ତ ସବୁ ମାଲ ମହଜୁଦ୍ ଥାଏ । ଆମର ବଟୁଆରେ ମଧ୍ୟ ଆମର ଲୋଡ଼ା ସବୁ ଜିନିଷ ରହେ । ତାଙ୍କର ଏ ଥଳିଗୁଡ଼ାକ ନାନାରେ ତିଆରି, ଆମ ବଟୁଆଗୁଡ଼ାକ ମଧ୍ୟ ନାନାରେ ତିଆରି । ତାଙ୍କ ବ୍ୟାଗଗୁଡ଼ିକ ଚହଟ ଚକ୍‌କଣ ବେଳେବେଳେ ହୋଇଥାଏ । ଆମ ବଟୁଆରେ ମଧ୍ୟ ରୁପାଫୁଲ ଚକମକା ଦେଇ ଚହଟ ଚକ୍‌କଣ କରାଯାଏ । ଖାଲି ପ୍ରଭେଦ ଏତିକି ଯେ

ତାଙ୍କ ବ୍ୟାଗଗୁଡ଼ିକ ବନ୍ଦହେଲେ ମଧ୍ୟ ତା'ର ମୁହଁମାନ ଓହାଳିଆ, ଅନ୍ୟ ବଟୁଆ ବନ୍ଦ ହେଲେ ତା'ର ମୁହଁଟା ଗୋଜିଆ । ସେପରି ହେବାର ଗୋଟାଏ କାରଣ ଅଛି । ସେ ହେଉଛି ଜାତିର ଲକ୍ଷଣ । ସାଇବ ସାଇବାଣୀମାନେ କାମବେଳେ ତ ଗର୍ଜନ କରନ୍ତି, କାମ ନଥିଲା ବେଳେ ମଧ୍ୟ ଗର୍ଜନ କରୁଥାନ୍ତି । ଗର୍ଜନ କରିବା ତାଙ୍କ ଜାତିର ଲକ୍ଷଣ । ବିଲାତି ସିଂହ ତା ଜନ୍ମଦିନୁ ଗର୍ଜନ ନ କରି ରହି ଶିଖିନାହିଁ । କାମୁଡ଼ା ଜୋର୍‌ରେ ସେତେ ନୁହେଁ . ଖାଲି ଏଇ ଗର୍ଜନ ଜୋର୍‌ରେ ବିଲାତି ସିଂହ ପୃଥିବୀଟା ମାଡ଼ି ବସିଛି । ଏ ଦେଶକଲା ବୁଲ୍‌ଡଗ୍ ଭୁକେ ନାହିଁ, ଦରକାର ବେଳେ କାମୁଡ଼େ ମଧ୍ୟ । ଭୁକ ଭୁକ ଯେବେ ହାଡ଼ଖଣ୍ଡିକ ଆର କୁକୁର ମୁହଁରୁ ମାରିନେଲା, ତେବେ ତ ଭଲ, ଯେବେ ଭୁକିବାରେ କାମ ହାସଲ ନହୁଏ, ତା'ହେଲେ କାମୁଡ଼ି ମଧ୍ୟ ଦିଏ । ଭୁକିବା ପଛକୁ କାମୁଡ଼ିବା ଧମକଟା ଅଛି ବୋଲି ତାଙ୍କ ଗର୍ଜନକୁ ଲୋକେ ଡରନ୍ତି । ଆମ ପୂର୍ବ-ପୁରୁଷ—ଆମର ଓଡ଼ିଆ ଷଣ୍, କାମବେଳେ ଗର୍ଜନ କରୁଥିଲେ । କାମ ସରିଗଲେ ମୁହଁ ବନ୍ଦ କରି ଘରେ ରହୁଥିଲେ । ଖାଲି ମିଛ ବୋବାଳି ଏ ଜାତିଟା ଜାଣି ନ ଥିଲା । ଓଡ଼ିଆ ସୈନ୍ୟ, ଓଡ଼ିଆ ବେପାରୀ, ଓଡ଼ିଆ ନାବାଳି, ଓଡ଼ିଆ ବାଟୁଆ ଦେଶ ଜୟ କରି, ବେପାର କରି, ରୋଜଗାର କରି ଯାଉଥିଲେ; ଫୁକାର ଦେଉଥିଲେ, ଗୀତ ଗାଉଥିଲେ, ଖୁବ୍ ପାଟିତୁଣ୍ଡ କରୁଥିଲେ । କାମ ହାସଲ କରି ଯେତେବେଳେ ଘରକୁ ଫେରୁଥିଲେ, ସେତେ-ବେଳେ ଘରଣୀମାନଙ୍କ ପାଖରେ ଏକାବେଳେକେ ମୁହଁରେ ୧୪୪ ଧାରା । ଖଣ୍ଡା ତଲୁଆର ଥୋଇଦେଇ ଲଙ୍ଗଳ ମୁଠି ଧରିବା ଓ ଲଙ୍ଗଳ ମୁଠି ଛାଡ଼ିଦେଇ ଖଣ୍ଡା ତଲୁଆର ଧରିବା ସେମାନଙ୍କ ପକ୍ଷରେ ଯେପରି ସହଜ ଥିଲା, ବାହାର ଦୁଃଖ କ୍ଲେଶ ସାଙ୍ଗରେ ଘରଣୀଙ୍କ କଅଁଳ ଛାତିରେ ଅତିଥିକୁ ପଡ଼ି ରହିବାର ଅଦଳ ବଦଳ ମଧ୍ୟ ସେହିପରି ସହଜ ଥିଲା । ସେହି ହେତୁରୁ ବଟୁଆଟି ଥିଲା ତାଙ୍କର ଚିରସାଥି । ସମୁଦ୍ରର ଅତଳ ପାଣିରେ ବଟୁଆ, ଯୁଦ୍ଧ କ୍ଷେତ୍ରରେ ବଟୁଆ, ମଶାଣି ଭୂଇଁରେ ବଟୁଆ, 'କେଳି ସଦନର କସ୍ତୂରୀ ଦଳି ପଲଙ୍କ' ପାଖରେ ମଧ୍ୟ ବଟୁଆ । ଚିର ଜାଗ୍ରତ ଥିଲା ଏ ଜାତି । ଚିର ଜାଗ୍ରତ ଅଛି ମଧ୍ୟ ବିଲାତି ଜାତି । ତାଙ୍କ ହ୍ୟାଣ୍ଡବ୍ୟାଗ୍, ହାଭରସାକ୍ ବା ନାପସାକ୍ ସବୁବେଳେ ହାତ ପାଖରେ; ସବୁବେଳେ ତିଆର । କିନ୍ତୁ ଆମେ ପରଗଡିଆଁ, ଆଗଡ଼ିଆଁ ସଭ୍ୟ ଶିକ୍ଷିତ ଓଡ଼ିଆଙ୍କ ନାକକୁ, କାନକୁ, ଆଖିକି, ମୁଣ୍ଡକୁ ଓ ଅଣ୍ଟାକୁ ଏ ବଟୁଆ ଅସୁନ୍ଦର ଅକଡ଼ିଆ ।

ଟିକିଏ ବସିଯାଅ । ଏ ବଟୁଆ, ଓଡ଼ିଆ ଅକଡ଼ିଆ, ବାଟୁଆ, ଅଖୁଆ, ପରଗଡିଆଁ ଆଗଡ଼ିଆଁ ଇତ୍ୟାଦି ଶବ୍ଦଗୁଡ଼ାକ ମୋ ମନରେ ଗୋଟାଏ ବଡ଼ ଗୁରୁତର କଥା ମନେ ପକାଇଦେଇଛି । ଥରକୁ ଥର ଦେଖିଥିଲି, ଜଣେ ବଡ଼ ମୁଣ୍ଡିଆ, ବଡ଼ଖିଆ—ଧେତ୍‌ତେରେ-ସେଇ-ଆ, କଣ କରିବ, ମୁଁ ଯେ ସେଇଥିରେ ବଢ଼ିଆସିଛି କହୁଥିଲି-ଜଣେ ଖ୍ୟାତନାମା, ପ୍ରସିଦ୍ଧନାମା ସାହିତ୍ୟ ମହାରଥୀ ଲେଖିଥିଲେ ଯେ—ଆମେ ନାଁ ପଛରେ ଏଇ ଯେ ଆକାରଟା ଯୋଡ଼ିଦେଉଁ, ଅର୍ଥାତ୍ ବଳରାମକୁ ବଳିଆ, କଳାରାମକୁ କାଳିଆ,

ଦାଉରିବନ୍ଧୁଙ୍କୁ ଦାଉରିଆ, ମଧୁସୂଦନଙ୍କୁ ମଧୁଆ, ହରିଶ୍ଚନ୍ଦ୍ରଙ୍କୁ ହରିଆ, କାଳନ୍ଦିଙ୍କୁ କାଳିଆ, ବୈକୁଣ୍ଠଙ୍କୁ ବଇଆ, ଇତ୍ୟାଦି ବୋଲି ଡାକୁ, ଏଇଟା ଆମ ଜାତିର ସଭ୍ୟତାର ଚିହ୍ନ । ଏଇ 'ଆ' ଟାକୁ 'ନାଁ' ପରକୁ 'କା' କରିଦେବାକୁ ହେବ । ତେବେ ତା ଜାଗାରେ କ'ଣ ବସେଇବ ? ନା ବଦଳି ତ ଫେରେ ଗୋଟାଏ ଡାକ ନା କିଛି ରହିବା ଦରକାର ! ଦେଖ ଦେଖି, ଆଉ ଜାତିମାନେ କଣ ଡାକ ନାଁ ଦିଅନ୍ତି ? ବିହାରୀମାନେ ମଧ୍ୟ ଏଇ 'ଆ' ଟା ଡାକ ନାଁ ପଛରେ ଲଗାନ୍ତି । ଯେପରି ଯମୁନାକୁ ଯମୁନିଆ, ଦାଢୋକୁ ଦାଢଓ୍ୱା, ରାମକୁ ରାମଓ୍ୱା ଇତ୍ୟାଦି । ବିହାରୀଗୁଡ଼ାକ, ଅତଏବ ଆମରି ପରି ଅସଭ୍ୟ । ତାଙ୍କ ପାଖକୁ ଯାଇ କି ଲାଭ ? ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ, ବାବୁ ଜୟପ୍ରକାଶ ନାରାୟଣ—ଏମାନେ ଆମର ଗୁରୁ, ଯା'ଙ୍କ ପାଦ ଛୁଟିବାରେ ଦୋଷ ନାହିଁ । ଏମାନଙ୍କର ଘର ବିହାରରେ ହେଲେ ମଧ୍ୟ ଏମାନେ କ'ଣ ବିହାରୀ କି ? ଏମାନେ ସବୁ ଭାରତବର୍ଷ ବୋଲି ଯେଉଁ ଅଲଗା ଦେଶଟା ଅଛି ନା, ସେଇ ଦେଶର ଧନୁର୍ଦ୍ଧର ! ତା' ହେଲେ ଉପାୟ ? ଦେଖ ତ ବଙ୍ଗାଳୀମାନେ କଣ କରୁଚନ୍ତି ? ଏଥିରେ ଏଇ ତ ଠିକ୍ । ହରିଙ୍କି କହିବ ହରେ, ମଧୁକୁ କହିବ ମଧୋ, କାଳନ୍ଦିଙ୍କି କହିବ କାଳନ୍ଦେ, ବୈକୁଣ୍ଠଙ୍କୁ କହିବ ବୈକୁଣ୍ଠେ, ଓଡ଼ିଆକୁ କହିବ ଉଡ଼େ । ବେଶ୍ ଏଇ ଠିକ୍ । ବଙ୍ଗାଳି ଜାତି ଭାରି ସଭ୍ୟ, ଖୁବ୍ ଉଚ୍ଚଶିକ୍ଷିତ, ଅତଏବ ଆମର ଏ ଅସଭ୍ୟ ପ୍ରଥାଟା ଛାଡ଼ିଦେଇ, ତାଙ୍କର ସେ ସଭ୍ୟପ୍ରଥାଟା ନବା ଆମର ଖାଲି ଉଚିତ୍ ନୁହେଁ, ଏକାବେଳେକେ ଧର୍ମ ।

ଯାଉ, ଏଇଟା ଖାଲି ଫାଲ୍ତୁ । କହୁଥିଲି ଆମେ ସବୁ କଥାରେ ଅପ୍ରସ୍ତୁତ । ଯାହା କହନ୍ତିନା, 'ପାଗ ବାନ୍ଧୁ ବାନ୍ଧୁ କଚେରୀ ବରଖାସ୍ତ'—ସେ କଥାଟା ଠିକ୍ ଆମରି ଉପରେ ଫାବେ । ଜଣେ ଲାଟ୍ସଭାର ସଭ୍ୟ ଆମର ଲାଟ୍ସଭାକୁ ଯିବା ଭାରି ଦରକାର । ଦଳପତିଙ୍କର କଡ଼ା ହୁକୁମ, ଯିବାକୁ ପଡ଼ିବ । ଲାଟ୍ସଭାର ସଭ୍ୟମାନେ ସେଥିରକି ଗୋଟାଏ କିଛି ପୁନାହାତା କି ସାରିଛଡ଼ି ଅର୍ଜନ କରିବାର ଯୋଗାଡ଼ କରିଥାନ୍ତି । ଆମ ଓଡ଼ିଆ ସଭ୍ୟ ଘରଣୀଙ୍କ ସାଙ୍ଗରେ ରାନ୍ଧିବାକୁ ବସିଗଲେ । ଘରୁ ଯାଉଚନ୍ତି ଯେତେବେଳେ ମୁଠେ ଭଲକରି ପେଟକୁ ନଖାଇ ଯିବେ କମିତିକା ? ତରବର ହୋଇ ରୋଷେଇ ହେଲା, ତରବର ହୋଇ ଖିଆପିଆ ହେଲା, ତରବର ହୋଇ ମଟରରେ ଚଢ଼ି ଷ୍ଟେସନକୁ ଯାଇ ଦେଖନ୍ତି ଯେ ଗାଡ଼ିଟା ବି ତରବର ହୋଇ ପ୍ରାୟ ଘଣ୍ଟାଏ ଆଗରୁ ପଳେଇଗଲାଣି । ସଭ୍ୟ ଆମର ମୁହଁରେ ମହାବ୍ୟସ୍ତ ଓ ପେଟରେ ମହାଖୁସି ହୋଇ ଫେରିଲେ ଘରକୁ । ଓଡ଼ିଆ ପୁଅ ବାହାରକୁ ଯିବେ, ପାନ ଦି'ଖଣ୍ଡ ତ ଦରକାର ! କିନ୍ତୁ ପାନ ଦି'ଖଣ୍ଡ ଯେ ତିଆରି ନାହିଁ, ଠିକ୍ ଶେଷ ବେଳକୁ ମନେପଡ଼ିଯିବ ସେଇ କଥା । ଆଉ ତା'ପରେ ଲାଗିଲା ବାହାବେଳେ ବାଇଗଣ ରୁଆ । ଅଥଚ ବଟୁଆ ଖଣ୍ଡିଏ ଯେବେ ଆମେ ରଖିଥାନ୍ତୁ ତା'ହେଲେ ଆଉ ଦରକାର ଥିଲା କଣ ? ବାହାରିଲ ନା ବାହାରିଲ । ବଟୁଆ ଖଣ୍ଡି ଅଣ୍ଟାରେ ଖୋସି ଚାଲିଲ, ଯୁଠେଇଁ ଦରକାର ହେଲା

ଖୋଲିଲ । ପାନ ଖାଇଲି, ଫେରେ ସ୍ବୁଲିଲ । ଏ ଆଜକାଲି ଦନ ଆମ ହାତରେ ହେଉନାହିଁ, କୌଣସି କାମରେ ଘଣ୍ଟୁ ଗୋଡ଼ କାଟିଲେଇ ଅମର ଲଗିଯାଏ ଷାଠିଏ ମହଣ ଘିଅ ଆଉ ସ୍ବଧାଙ୍କ ନାଚ । ଆଗୁଁସାର ଜାତର ଏ ଲକ୍ଷଣ ନୁହେଁ । ଜାତ ଆଗେ ବଢ଼ିବା ଦରକାର, ତା'ର ଦନ ଓ ସ୍ବତ ପ୍ରନ ମୁହୂର୍ତ୍ତରେ ଚଆର ଥିବା ଉଚତ୍ । ଯେ କୌଣସି ବେଳେ ଦରକାର ପଡ଼ିଲେ, ପାଞ୍ଚ ମିନଟ୍ ମଧ୍ୟରେ ସେ ବାହାରଆସିବା ଦରକାର । ମୋର ମନେପଡ଼ୁଚ, ଥରେ ଜଣେ କଂଗ୍ରେସ ନେତା ଓ ଲୋକସଭା ମେମ୍ବର ଆଉ ମୁଁ କୌଣସି ମଫସଲ ଜାଗାକୁ ଯିବାର ଠିକ୍ କରଥିଲୁ । କଥା ହୋଇଗଲା ଯେ, ଆମେ ବାହାରବୁ ଠିକ୍ ସକାଳ ବେଳେ, ଆଉ ଯାଇ ପହଞ୍ଚିବୁ ଠିକଣାମୁଣ୍ଡରେ ପ୍ରାୟ ୭ଟା ସମୟରେ; ଯେପର ଲୋକେ ଆସି ବେଶୀ ବେଳଯାଏ ଅପେକ୍ଷା କର ନ ବସନ୍ତି । ମୁଁ ଠିକ୍ ୪ଟା ବେଳେ ମଟର ନେଇ ମେମ୍ବର ସାହେବଙ୍କ ଦୁଆରେ ପହଞ୍ଚିଲି । ମଟର ପେଁହେଁକାଲ ବଜାଇଲି । କନ୍ତୁ ହୁଲ୍‌ଚୁଲ୍ ନାହିଁ, ଚପରାସି ପଠାଇ ଦୁଆରମୁହଁରେ ବହେ ପାଟିତୁଣ୍ଡ କରବା ପରେ ମେମ୍ବର ସାହେବ ଆଖି ମଳି ମଳି ନଦବାହଳାରେ ଉଠିଆସିଲେ । ଅପେକ୍ଷା କରବାକୁ କହିଲେ । ତା'ପରେ ସ୍ବୁଲିଲା ନତ୍ୟକର୍ମ, ଖିଅର ବାଆର, ଗାଧିଆପାଧୁଆ, ମାଙ୍ଗ ଭଙ୍ଗା ଲୁଗା ପିନ୍ଧା । ଆମେ ବାହାରଲବେଳକୁ ସେଠେଁ ହେଲା ଛଅଟା । ଠିକଣା ମୁଣ୍ଡରେ ପହଞ୍ଚିଲୁ ପ୍ରାୟ ୯ ଟାରେ । ଲୋକେ ପାହାନ୍ତିଆରୁ ଆସି ପୋକକୋକଙ୍କ ପର ସାଲୁ ସାଲୁ ହେଉଥାନ୍ତି । ଆଉ ଏ ଯେ ଦେଶସେବକ ନେତା, ଏ ହେଲେ ସ୍ବରାଜ୍ୟ ଯୁଦ୍ଧର ସେନାପତ, ଗରବ ଦୁଃଖୀ ରଙ୍କିଙ୍କର ମା' ବାପା ।

କନ୍ତୁ ବାବୁ, ତୁମେ ଯାହା କହିଲ, ସେଥିରୁ ଜଣାପଡ଼ୁଚ, ତୁମେ ଏ ସମୁଦାୟ ଦେଶକୁ ଗୋଟାଏ ଯୁଦ୍ଧ ଛାଉଣୀ ବନାଇବାକୁ ସ୍ବୁହଁ । କନ୍ତୁ ଆମେ ତ ଆଉ ଦେଶ ଜୟ କରୁନାହୁଁ ଯେ, ଆମେ ଏକାବେଳେକେ ଖଣ୍ଡା ଉଞ୍ଚେଇ ବସି ରହିବୁ । ଏ ସଭ୍ୟତାର ଯୁଗ, ଆଲୁଅର ସମୟ । ସେ ଅନ୍ଧାର ଅସଭ୍ୟ ଯୁଗରେ ଯାହା ଦରକାର ଥିଲା, ଇଲେ ସେ ସବୁର କ ଦରକାର ?

ଭୁଲ୍ ବୁଝିଚ ଭାଇ; ଭୁଲ୍ ବୁଝିଚ, । ତୁମେ ଦେଶ ଜୟ କର ନ ପାର । କନ୍ତୁ ତୁମକୁ ଯୁଦ୍ଧ ଛାଡ଼ିବ ନାହିଁ । ଖଣ୍ଡା ତଲୁଆର ଯୁଦ୍ଧ ବନ୍ଦ ହୋଇ ଯାଇପାରେ— ଦରକାର ନ ହୋଇପାରେ; କନ୍ତୁ ଅଜ୍ଞାନତା, ଅସଭ୍ୟତା, ଜଡ଼ତା, ସାଙ୍ଗରେ ତୁମକୁ ଯୁଦ୍ଧକରବାକୁ ପଡ଼ିବ । ସଭ୍ୟତାର ଯୁଦ୍ଧ ଖାଲି ଖଣ୍ଡା, ତଲୁଆର, ଗୁଳିଗୁଳାରେ ସରଯାଏନାହିଁ । ଖାଲି ସେଇତକରେ ସଭ୍ୟତାର ଉଦ୍ଦେଶ୍ୟ ସାଧିତ ହୋଇପାରେ ନାହିଁ । ସଭ୍ୟତା କଚ୍ଛ ଆମ୍ବ ଫଳ ନୁହେଁ କ ସପୁରି ଫଳ ନୁହେଁ । ସଭ୍ୟତା ହେଉଚ ଅଶରୀରୀ ବାଣୀ, ଶୂନ୍ୟ ବାଣୀ, ଗୋଟାଏ ମତଲବ, ଗୋଟାଏ ଧାରଣା, ଗୋଟାଏ ବଶ୍ୱାସ ମାତ୍ର । ଖଣ୍ଡା ତଲୁଆରର ଯୁଦ୍ଧ ଧନ ଜନ ପାଇଁ, କନ୍ତୁ ସଭ୍ୟତାର ଏହି ଶୂନ୍ୟ-

ବାଣୀ ପାଇଁ ଯୁଦ୍ଧ କରିବାକୁ ହେଲେ ଖଣ୍ଡା, ତଲୁଆର, ଗୁଳିଗୁଳା ସେତେ ଦରକାର ହୁଏନାହିଁ, ତା ଅପେକ୍ଷା ବେଶୀ ଦରକାର ପାଟି ଭୁଣ୍ଡର ଯୁଦ୍ଧ । କାଳି କଲମର ଯୁଦ୍ଧ । ଶଙ୍କରଙ୍କର ଭାରତ ବିଜୟ, ଅଶୋକଙ୍କ ଭାରତ ବିଜୟଠାରୁ କୌଣସିମତେ ସାନ, ନିକୃଷ୍ଟ ନୁହେଁ । ସତରେ କହିବାକୁ ଗଲେ ଅଶୋକ ଖଣ୍ଡା, ତଲୁଆର ବଳରେ ଯେ ସାମ୍ରାଜ୍ୟ ଠିଆର କରିଥିଲେ, ଶଙ୍କର ତାଳପତ୍ର ଲେଖନ ଓ ପାଟିଭୁଣ୍ଡରେ ସେଇ ସାମ୍ରାଜ୍ୟକୁ ଭାଙ୍ଗି ଚୁରମାର୍ କରିପାରିଥିଲେ । ସିଜାର୍ ଆଣ୍ଟୋନିଓ, ବ୍ରୁଟସ୍, ନେରୋ ଇତ୍ୟାଦ ଖଣ୍ଡା, ତଲୁଆର, ବର୍ଚ୍ଛା ମୂନରେ ଯେ ସାମ୍ରାଜ୍ୟ ଠିଆରି କରୁଥିଲେ, ଖ୍ରୀଷ୍ଟ ଓ ତାଙ୍କର ଶିଷ୍ୟମାନେ ଭୂର୍ଜପତ୍ର ଓ ଲେଖନ ଏବଂ ପାଟିଭୁଣ୍ଡ ବଳରେ ସେଇ ସାମ୍ରାଜ୍ୟକୁ ଧ୍ୱଂସ କରିଥିଲେ । ହିଟ୍‌ଲର୍ ଆଉ ମୁସୋଲିନ ତୋପ ମୁହଁରେ ଯେ ସାମ୍ରାଜ୍ୟ ଠିଆରି କରିଚନ୍ତି ଓ କରୁଚନ୍ତି, ସେ ସାମ୍ରାଜ୍ୟର ଧ୍ୱଂସ ସେଇ ଗୋଲାଗୁଳି, ତୋପ ବନ୍ଧୁକରେ ଯେତେ ନ ହେବ, ତା'ଠାରୁ ବେଶୀ ହେବ କାଗଜ କଲମ ଆଉ ପାଟିଭୁଣ୍ଡ ଜୋର୍‌ରେ । ଆମେ ଇଲେ ପୁରୁଣା ଭାବକୁ ଭାଙ୍ଗି ଦେଶରେ ନୂଆ ଭାବ ଖେଳାଉଚୁ, ଖେଳାଇବାର ଚେଷ୍ଟା ଚାଲିଛୁ । ଏହାହିଁ ଆମର ସଭ୍ୟତା । ଏ ନୂଆ ଭାବ ପୁରୁଣା ଭାବକୁ ମାରି ଦେବ ନାହିଁ, କିନ୍ତୁ ମାଜିମୁଜି ଆହୁରି ଟିକିଏ ବେଶୀ ଚକ୍ ଚକ୍, ଆହୁରି ଟିକିଏ ବେଶୀ ସୁନ୍ଦର, ମନୋହର କରିବ । ସଭ୍ୟତା ଏଇଆ । ଯେ ସଭ୍ୟତା ଯୁଗ ଯୁଗ ଧରି ତା'ର ପୁରୁଣା ମସିଆ ଖତରାଭାବକୁ ଧରିବସେ, ସେ ମଲା ସଭ୍ୟତା; କିନ୍ତୁ ଯେ ସଭ୍ୟତାର ଭିତରେ ଏପରି ଶକ୍ତି ଅଛି ଯେ ସେ ଦରକାର ଅନୁସାରେ ନୂଆଭାବ ନିଜ ଭିତରକୁ ନେଇପାରେ—ସେଇ ସଭ୍ୟତା ଜୀଅନ୍ତା ସଭ୍ୟତା । ତେବେ ନୂଆ ରସ, ନୂଆ ରକ୍ତ କାଁ'ରେ ନୂଆ ନାଳ ପାଣି ଯେପରି କେହି ନ ପିଅନ୍ତି । ଆମର ଏ ବନ୍ଟୁଆଧାଙ୍ଗା ଓଡ଼ିଆଙ୍କର ଗୋଟିଏ ସଭ୍ୟତା ଥିଲା, କେହି କେହି କହନ୍ତି, ସେ ଅସଭ୍ୟତା । ଏଇ ଯେ କେହି କେହି ନାଳ ପାଣିଖିଆ ସଭ୍ୟ । ଏମାନେ ସଭ୍ୟତାର ରକ୍ତ ଓ ରସ ଚାଖିନାହାନ୍ତି । ଚାଖିଥିଲେ ସେମାନେ ବୁଝିଥାନ୍ତେ ଜୀବ ଥିଲେ ଯିବା ରହିବା । ଯେ ଜାତି ଆଗକୁ ମାଡ଼ି ଚାଲିଚି, ସେ ଜାତି ଅସଭ୍ୟ ହୋଇ ନ ପାରେ । ଓଡ଼ିଆ ଜାତିର ଜନ୍ମଠାରୁ ଆଜଯାଏ ସେ କୌଣସି ସ୍ଥାନରେ ଗାଦ ମାଡ଼ି ବସିନାହିଁ । ସେ ବରାବର ଚାଲିଚି । ଅନେକ ଦୂର ଚାଲିଆସିଚି । ମହାଭାରତର ଓଡ଼ିଆ ଜାତିଠାରୁ ମହାଭାରତୀୟ ଓଡ଼ିଆ ଜାତି ଅନେକ ଆଗରେ । ରାସ୍ତା ବଡ଼ ଦୁର୍ଗମ, ବଡ଼ ଖପଡ଼ିଆ, କେତେବେଳେ ତଳକୁ ଖସିଚି, କେତେବେଳେ ଉପରକୁ ଉଠିଚି । କିନ୍ତୁ ଉପରକୁ ଉଠିବାର ଇଚ୍ଛା ଓ ସାହସ ଏ ଜାତି ଭିତରେ ବରାବର ଜୁଆର ଖେଳଚି । ମୁଁ ଓଡ଼ିଆ ଜାତି ସମ୍ବନ୍ଧରେ ଯାହା କହୁଚି, ତାକୁ ଅଦଲ ବଦଳ କରି ସବୁ ଜାତି ସମ୍ବନ୍ଧରେ ଲଗାଯାଇପାରେ । ଆମେ ଉନ୍ନତ ଜାତି ଅଛୁଁ ବା ହେବୁଁ କହିଲାବେଳେ, ଆମେ ଯେ ସବୁବେଳେ ଉପରକୁ ଉଠିଚୁଁ ଓ ଉଠିବାର ଚେଷ୍ଟା କରିଚୁଁ···କଥାଟା ମାନିନେବାକୁ ପଡ଼େ ।

ତେବେ କଥା ହେଉଛି, ଗୋଟାଏ ଉନ୍ନତ ଜାତିକୁ ଟୋକି ଚପି ମଡ଼ା କରି କାନ୍ଧରେ ପକାଇ ବୁହାଇ ନେବାକୁ ଚେଷ୍ଟା କରାଯାଇପାରେ । ମୋର ହିମାଳୟ ପର୍ବତ ଶିଖରକୁ ଉଠିବାକୁ ଦରକାର. ମୁଁ ଚେଷ୍ଟା କରି ଠିକ୍, ଶିଖି, କଷ୍ଟ ସହି, ନିଜ ଗୋଡ଼ରେ, ନିଜ ଉଦ୍ୟମରେ, ନିଜ ଆତ୍ମ ଜୋରରେ ଉଠିପାରେ ଅଥବା ତୁମେ ଦୁଇଜଣ ମୋତେ ମଲାଭଳିଆ କରି ପକେଇ କୋକେଇରେ ତୁମ କାନ୍ଧରେ ଉଠାଇ ନେଇପାର । କିଏ ସେ ଭଲ ? ଲକ୍ଷ୍ୟ ଏକ ହେଲେ ମଧ୍ୟ ସାଧନାର ପ୍ରଭେଦରେ ଲକ୍ଷ୍ୟ ସ୍ଥାନମାନ ହୋଇଯାଇପାରେ । ତା'ର କାରଣ ହେଉଛି, ଧର, ମୋର ଏଇ ହିମାଳୟ ଶିଖରକୁ ଯିବା । ହିମାଳୟ ଶିଖରେ ବରଫ ଭରା । ଖୁବ ଶୀତ, ଖୁବ କାକର । ମୁଁ ଯେବେ ନିଜେ ଚଢ଼ିଯାଏ, ତା'ହେଲେ ଏଇ ଶୀତ କାକର ଆସ୍ତେଆସ୍ତେ ମୋର ଦେହସହା ହୋଇଯାଇଥିବ । ବରଫ ଦେହରେ ଚାଲିଚାଲି ବରଫରେ କିମିତି ଗୋଡ଼ ନ ଖସି ଚାଲିବାକୁ ହୁଏ, ସେ କଥା ମୁଁ ଶିଖିଯାଇଥିବି । ଶିଖରେ ପହଞ୍ଚିଲେ ମୋର ଆଉ ଶୀତ କାକର ବା ଗୋଡ଼ ଖସିବାକୁ ଭୟ ନ ଥିବ; ମୁଁ ନିଶ୍ଚିନ୍ତଭାବରେ ବେପରୁଆ ଦେବତାମାନଙ୍କ ସଙ୍ଗରେ ଜଣେ ହୋଇ ବସି ଚନ୍ଦ୍ର ମଧୁ ପିଇଚାଲିବି । କିନ୍ତୁ ତୁମେ ଯେବେ ମତେ ଉଠାଇ ନେଇଯାଅ, ତା'ହେଲେ ମୁଁ ଶିଖରେ ପହଞ୍ଚି ଠିଆ ହେଲାବେଳକୁ ମୋ ମୁଣ୍ଡ ଘୂରେଇଯିବ, ଶୀତ କାକରରେ ଦେହ କୋଲ ମାରିଯିବ, ଖସଡ଼ା ବରଫରେ ଗୋଡ଼ ଖସି ମୁଁ ଯାଇ ପଡ଼ିବି ରସାତଳରେ । ମୋର ଗୋଡ଼ ହାତ ଭାଙ୍ଗିଯିବ, ମୁଣ୍ଡ ଦେହ ଛିନ୍ନଭିନ୍ନ ହୋଇ କୁଆ କୁକୁରଙ୍କ ପେଟ ପୂରେଇବ । ଅଥଚ ଏଣେ ପୁଣି ତମର ମତେ ନେଇ ସେଠାରେ ପହଞ୍ଚିବା କଷ୍ଟକର ଓ ଗୋଡ଼ଖସିବାକୁ ଭୟ ଥିବ । ମୁଁ ନିଶ୍ଚିନ୍ତ ଭାବରେ ବେପରୁଆ । ବଡ଼ ପଡ଼ାଉଠା ରାସ୍ତା, କଣ୍ଟାଝଟାରେ ଦୁର୍ଗମ, ବରଫ କାକରରେ ପିଚ୍ଛିଳ । ଏକା ଏକା ଯିବା କଷ୍ଟ । ସେଥିରେ ପୁଣି ଭାର ବହିଯିବା ଆହୁରି କଷ୍ଟକର । ତୁମେ ଖୁବ୍ ସମ୍ଭବ କରି ପାରିବ ନାହିଁ । ଖୁବ୍ ସମ୍ଭବ, ତୁମେ ଆଉ ମୁଁ ସାଙ୍ଗ ହୋଇ ରସାତଳରେ ପଡ଼ି ଗୁଣ୍ଡ ମରିବା ।

ଯେଉଁମାନେ ଜାତିକୁ ନଚଲେଇ, ତା'କୁ ବାଟ ମଣେଇ ନବାରେ ସନ୍ତୁଷ୍ଟ ନ ହୋଇ, ତାକୁ ଏକାବେଳକେ ସେମାନେ ଅସୁର କାନ୍ଧରେ ଉଠାଇନେବା ପାଇଁ ଇଚ୍ଛା କରନ୍ତି, ସେମାନଙ୍କର ଏଇ ଅବସ୍ଥା ହବ ନିଶ୍ଚୟ । ପୃଥିବୀର ଇତିହାସ ଏହାର ପ୍ରମାଣ । ଜର୍ମାନୀ ନାଁ ପୃଥିବୀର ଚାରିଆଡ଼େ ଡବ ଡବ ବାଜୁଥିଲା—କାହିଁକି ? ଜର୍ମାନୀର ବ୍ରିଟିଶ୍ ବା ଫ୍ରେଞ୍ଚ୍ ଜାତି ଭଳି ବଡ଼ ସାମ୍ରାଜ୍ୟ କେବେ ନ ଥିଲା । ୟୁରୋପ ଭିତରେ କେବଳ ସମ୍ରାଟ ଫ୍ରେଡରିକ୍‌ଙ୍କ ଛଡ଼ା ବଡ଼ ଯୁଦ୍ଧରେ କୌଣସି ଜର୍ମାନ ରାଜା ପଶିନାହାନ୍ତି । ତଥାପି ଜର୍ମାନୀ ଥିଲା ବଡ଼—ତା'ର ବିଜ୍ଞାନ, ତା'ର ସଙ୍ଗୀତ ତା'ର ଦର୍ଶନ ହେତୁରୁ । ଓ୍ୱାଗନର, ସୋପେନ୍‌ହର୍, ଗେଟେ, ଆଇନ୍‌ଷ୍ଟାଇନ୍ ଇତ୍ୟାଦି ସମସ୍ତେ ଜର୍ମାନୀ ବାସୀ । ଏମାନଙ୍କ ହେତୁ ଜର୍ମାନୀ ହୋଇଥିଲା ବଡ଼ । ଜର୍ମାନୀ ଜାତିର ସାମ୍ରାଜ୍ୟ ନ ଥିଲା ।

ତଥାପି ଜର୍ମାନୀ ଜାତି ପୂଜା ପାଉଥିଲା ସବୁଆଡ଼େ । ଜର୍ମାନ ବ୍ୟବସାୟ କରୁଥିଲେ । ଜର୍ମାନୀ ଲୋକଙ୍କର ବିଶ୍ୱାସ ଥିଲା, ତାଙ୍କ ଜୀବନର କାନ୍ତି ହେଉଥିଲା । ଧନ, ଜନ, ଯଶରେ ଜର୍ମାନୀ ଉଚ୍ଛୁଳି ପଡ଼ୁଥିଲା । ବିସ୍‌ମାର୍କଙ୍କୁ ଏ ଗୁଣ ଆଉ ଭଲ ଲାଗିଲା ନାହିଁ । ତାଙ୍କର ଇଚ୍ଛା ହେଲା, ସେ ପୃଥିବୀବ୍ୟାପୀ ଗୋଟାଏ ଜର୍ମାନୀ ସାମ୍ରାଜ୍ୟ ବସେଇବେ । ସେ ଭାବିଥିଲେ ଜର୍ମାନୀ ଜାତିର ମଧ୍ୟଗତ ସାହାଯ୍ୟ ପାଇଲେ, ତାକୁ ଭାଙ୍ଗି ତା ସ୍ଥାନରେ ବିଳାତି ଗୁଲ ଚଳେଇବାକୁ ପଡ଼ିବ । ଏ ଜର୍ମାନୀ ଜାତିଟାକୁ ସଙ୍ଗୀନ୍ ଶେଷରେ ବସେଇ ଜର୍ମାନ୍ ଯୁବ ରାକ୍ଷସଙ୍କ କାନ୍ଧରେ ସ୍ୱର୍ଗରେ ପହଞ୍ଚେଇଦବାକୁ ପଡ଼ିବ । ତାର ଫଳ ହେଲା—ଗଲା ଜର୍ମାନ ଯୁଦ୍ଧ । ଜର୍ମାନୀର ଯାହା ଥିଲା, ସବୁଗଲା; ତଥାପି ରହିଯାଇଥିଲା ଜର୍ମାନୀର ବ୍ୟବସାୟ ସାଧୁତା । ତା'ର ବଳରେ ଜର୍ମାନୀ ପୁଣି ଉଠି ପାରିଥାନ୍ତା, ଜର୍ମାନ୍ ଜାତିର ମନବଳ ଓ ବୁଦ୍ଧିବଳ ପୁଣି ତାର ସାମ୍ରାଜ୍ୟ ଫେରେଇ ଆଣିଥାନ୍ତା । କିନ୍ତୁ ହିଟ୍‌ଲର୍‌ଙ୍କ ତର ସହିଲା ନାହିଁ । ସେ ବାର୍କୁ ବର୍ଷ ଦେଖେଇ ଲାଗିଲେ ଯେ ଜର୍ମାନର କଥାରେ ବିଶ୍ୱାସ ନାହିଁ । ସେ ଭାବିଲେ ବିଳାତି ପେଞ୍ଚ ଖେଳି ସେ ପୁଣି ଜର୍ମାନକୁ ତାଙ୍କ କାନ୍ଧରେ ଉଠାଇନେବେ । ଜର୍ମାନର ମନ, ବୁଦ୍ଧି, ବିବେକ ବିବେଚନା, ସବୁ ହିଟ୍‌ଲର୍‌ଙ୍କ ପାଦତଳେ ବଳିଦିଆଗଲା । ତାଙ୍କର ମୁହଁଭୁରୁଡ଼ି ଇଂରେଜ ଲୋକଙ୍କ ମୁହଁଭୁରୁଡ଼ିକୁ ବଳିଗଲା । ସାହିତ୍ୟ, ବିଜ୍ଞାନ, ଦର୍ଶନ ଓ ସଙ୍ଗୀତର ଜନ୍ମଭୂମି ବୋଲି ଜର୍ମାନୀ ଯେ ପରିମାଣରେ ସ୍ନେହ ଓ ସହାନୁଭୂତି ପୃଥିବୀରୁ ପାଉଥିଲା, ବର୍ତ୍ତମାନ ସେତିକି ପରିମାଣରେ ଭୟ ଓ ଘୃଣା କମେଇଲା । ଜର୍ମାନୀର ଅସଲ ରାଜ୍ୟ–ମନୁଷ୍ୟ ସଭ୍ୟତାରେ ତା'ର ଉଚ୍ଚସ୍ଥାନ ଯାଇଛି, ନର୍ଆଗିଲାଙ୍କ ଭିତରେ ଯେ ସ୍ଥାନ ପାଇଁ ସେ ଦଉଡ଼ଇ କରିଥିଲା, ସେ ମଧ୍ୟ ଯିବା ଉପରେ ।

ଜାତିକୁ ତାର ଚରିତ୍ର ବାଟରେ, ତା'ର ଚିନ୍ତାଚରିତ୍ର ଓ ସଭ୍ୟତାର ମାର୍ଗରେ ଚଳେଇନେବା ଦେଶ ନେତା ଓ ଦେଶସେବକର କର୍ତ୍ତବ୍ୟ, ଆମେ ବଣ୍ଟୁଆକୁ ଘୃଣା କରି ବଣ୍ଟୁଆ ସଭ୍ୟତାକୁ ଘୃଣାକରି, ଏ ଜାତିଟାକୁ ଉଡ଼ାଇପାରିବା ନାହିଁ । ପ୍ରାୟ ପଚିଶ ବର୍ଷ ହେଲା, ଏ ବଣ୍ଟୁଆକୁ ପୋଡିଦେଇ ଏ ଜାତି ଉପରେ ଗୋଟାଏ ଏକାବେଳେକେ ନୂଆ ଆଦର୍ଶ ଲଦିଦେବାର ଚେଷ୍ଟା ଜୋର୍‌ସୋର୍‌ରେ ଲାଗିଛି । କିନ୍ତୁ ଦେଶ ସେଥିରେ କିଛି ଉପକାର ପାଇଛି କି ? ଆମେ ଗୋଟାଏ ଅଲଗା ପ୍ରଦେଶ ପାଇଛୁଁ । ସେ କେବଳ ସିନ୍ଧୁ ପ୍ରଦେଶର ଦୟାରୁ । ଆମ ଦେଶରେ କଂଗ୍ରେସ ସରକାର ବସିପାରିଛି । କିନ୍ତୁ ତା'ଦ୍ୱାରା ଲୋକଙ୍କର ବଢ଼ି, ମରୁଡ଼ି, ଦୁର୍ଭିକ୍ଷରୁ ବଞ୍ଚେଇବାର ଶକ୍ତି କେତେ ବଢ଼ିଛି ? ମୁଠାଏ ମୁଠାଏ ବେଶୀ ଦୁର୍ଭିକ୍ଷ ଗୁଡ଼ାଇବା ପୁଞ୍ଜି ଛ'ଟା ବେଶୀ ତଗାବି ଟଙ୍କା ମିଳିବାର ସୁବିଧା ହୋଇପାରିଥାଏ, ସେ ମଧ୍ୟ ସ୍ଥାନେ ସ୍ଥାନେ ନୀତି ଦୃଷ୍ଟିରେ । ଏଥିରେ ଲୋକଙ୍କର କି ବିଶେଷ ଉପକାର ହେଲା ? ବର୍ଷରେ ମାସେ ଖଣ୍ଡେ ଟିକିଏ ଟେକାପାଣି ଦେବାଦ୍ୱାରା ଗରିବ ଓଡ଼ିଆର ଖାଁ ଖାଁ ପେଟ ପୂରିବ ? ଲୁହ ଭିତରେ

ହୋଇଛି ଯେ, ଗରିବ ଓଡ଼ିଆର ସାମାନ୍ୟ ପୁଞ୍ଜିରୁ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ଅସମ୍ଭବ ପ୍ରସ୍ତାବର ବିଚାର ପାଇଁ ଗୁଡ଼ାଏ କମିଟି କମିଶନ୍ ବସେଇ ପୁଣି ସେଇ ଅସମ୍ଭବ ସିଦ୍ଧାନ୍ତରେ ପହଞ୍ଚିବା । ଥରେ ବଢ଼ି ମାରଣ କମିଟି ବସେଇ କେତେଗୁଡ଼ିଏ ବାଲୁଆ ବିଚାର ହୋଇଥିଲା ଓ ଶେଷରେ ସିଦ୍ଧାନ୍ତ ହେଲା ଯେ, ଏଗୁଡ଼ାକ ପାଇଁ ପଇସା ଲୋଡ଼ା । ପଇସା ଯେତେବେଳେ ନାହିଁ, ଏଗୁଡ଼ାକ କାମରେ ଆସିପାରିବ ନାହିଁ । ସେଇ ପାଗୁଳା ଜନପଦକୁ ଆଉ ଥରେ ପାଗୁଳିବା ପାଇଁ ପୁଣି ଗୋଟାଏ ଦୁ'ଟା କମିଟି ବସିଲା । ପୁଣି ଚାଲିଲା ବାଲୁଆ ବିଚାର ସେହି ପୁରୁଣା ମତରେ, ଶେଷକଥା ହେଲା ସେଇଆ—ଏଥିଲାଗି ଟଙ୍କା ଦରକାର, ଆଉ ଟଙ୍କା ନାହିଁ ।'' ଆମର ନେତାମାନେ ଠିକ୍ କରିନେଇ ପାରିଲେଣି ଯେ 'ନାନ୍ୟ ପନ୍ଥା ବିଦ୍ୟତେ ଅୟନାୟ' । ପରବୁଦ୍ଧି ଛଡ଼ା ଆଉ ବୁଦ୍ଧି ନାହିଁ—ଏଇ ହେଉଛି ଆମ ନୂଆ ବଣୁଆ ସଭ୍ୟତାର ମତ ।

ଆମର ଉନ୍ନତି ହେଉନାହିଁ । ଜାତିର ଉନ୍ନତି ଏ ଦଳର ରାଜୁତି ବା ସେ ଦଳର ରାଜୁତିରେ ହୁଏନାହିଁ । ପୁଞ୍ଜାଏ ଦୁ'ପୁଞ୍ଜା ବଡ଼ପାଟିଆଙ୍କ କଥାରେ ଓ ପାଟିରେ ଜାତି ଉପରକୁ ଉଠେନାହିଁ । ଓଡ଼ିଶାରେ କଂଗ୍ରେସ୍ ଏତେ ଜୋର ପ୍ରଚାର ହୋଇଛି, ତା'ର କାରଣ କଂଗ୍ରେସର ଆଦର୍ଶ ଆମ ବଣୁଆ ଆଦର୍ଶ ସାଙ୍ଗରେ ମିଳିମିଶି ଯାଉଥିଲା ବୋଲି । ଓଡ଼ିଆ ଲୋକେ ଆଶା କରିଥିଲେ କଂଗ୍ରେସରେ ପଶିଲେ ପୁଣି ଆମ ବଣୁଆ ସଭ୍ୟତା ଫେରିଆସିବ । କିନ୍ତୁ ହେଲା କ'ଣ ? କଂଗ୍ରେସ ରାଜୁତି ଆଗରୁ ଓଡ଼ିଶାର ଦୁର୍ନାମ ଥିଲା ଯେ ସେ ରାଜଭକ୍ତିର ଅର୍ଥାତ୍ ରାଜଶକ୍ତିବାଲା ଲୋକମାନଙ୍କର ଭକ୍ତଭୂମି । ଆଜିକାଲି ଆମେ ହୋଇଛୁଁ କଂଗ୍ରେସ ନେତାଙ୍କର— ଅର୍ଥାତ୍ ବର୍ତ୍ତମାନ ରାଜଶକ୍ତିବାଲା ଲୋକମାନଙ୍କର ଭକ୍ତଭୂମି । ମୋଟଉପରେ ଆମେ ଅର୍ଥାତ୍ ହାମ୍‌ବଡ଼ା ଆଗଚଲାମାନେ ଯାହା ଥିଲୁଁ, ସେଇଆ ଅଛୁଁ । ଖାଲି ଗୋରା ହାକିମଙ୍କ ସ୍ଥାନରେ କଳା ହାକିମଙ୍କୁ ବସେଇ । ଏ ଯେବେ ସଭ୍ୟତା ହୁଏ, ସ୍ୱାଧୀନତା ହୁଏ, ତେବେ ଅସଭ୍ୟତା କ'ଣ, ଆଉ ଗୋଲାମୀ କ'ଣ ? ଦଳଗତ ଶାସନରେ ଦଳର ନିୟମକାନୁନ ମାନି ଚଳିବାକୁ ହେବ ବୋଲି, ଆମର ପ୍ରକୃତି, ଆମର ସଭ୍ୟତା, ଆମର ବୈଶିଷ୍ଟ୍ୟକୁ ଆମେ ବାଦ୍ ଦବୁଁ କିଆଁ ? ଏ ଦୁଇଟିଯାକ କଥା—ଅର୍ଥାତ୍ ଦଳର ଶାସନ ଆମର ଏକ ଶିଂଘିଆ ପଣ, ଦୁଇଟାଯାକ ଭାଇବୋହୂ ଦେହୁଣୁର ନୁହନ୍ତି । ଆକାଶ ନ ହେଲେ ପାତାଳ ହବ, କଳା ନ ହେଲେ ଧଳା ହବ, ଗୋରା ନ ହେଲେ କାଳୀ ହେବ, ରାଣୀ ନ ହେଲେ କାଣୀ ହେବ – ଏପରି ଭାବିବାଠାରୁ ବଳି ବଡ଼ ଅଜ୍ଞାମି ଜଗତରେ ଆଉ କ'ଣ ଅଛି ?

କଂଗ୍ରେସ ଦଳ ଅଛି, କଂଗ୍ରେସ ଦଳର ରାଜୁତି ଅଛି ଓ ଚିରଦିନ କାଏମ୍ ରହୁଁ । ଯେ କଂଗ୍ରେସ ଦଳ ଅଛି, ସେମାନେ ରହିବେ ଓ ରହନ୍ତୁ । କଂଗ୍ରେସବାଲାମାନେ ଓ ଅନ୍ୟାନ୍ୟ ଦଳର ଲୋକମାନେ ଦଳର ମର୍ଯ୍ୟାଦା ଓ ଶାସନ ମାନି ଚଳନ୍ତୁ । କିନ୍ତୁ ତା ବୋଲି ଆମ ଜାତିର ବୈଶିଷ୍ଟ୍ୟ, ଆମ ଜାତିର ବାହାଦୁରି, କାରିଗରି ଆମେ ପଛକୁ

ପକାଉଦବୁଁ କାହିଁକି ? ଗୋଟାଏ ଜାତକୁ ପୋଡ଼ିଜାଳି ଗୋଟାଏ ଆଦର୍ଶର ପୂଜାରେ ବଳିଦବୁଁ କାହିଁକି ? ଓଡ଼ିଶା ଚିରଦିନ ଓଡ଼ିଶା ରହିବ । ସ୍ତା'ର ମହାନଦୀ ମହାଭାରତୀୟ ପବନରେ ପୋଡି ହୋଇଯିବ ନାହିଁ, ସ୍ତା'ର ସମୁଦ୍ର ଓ୍ୱାର୍ଦ୍ଧାର ଗରମ ପବନରେ ଶୁଖିଯିବ ନାହିଁ, ସ୍ତାର ମେଘାସନୀ ସିମଲାର ଗୁଡ୍ଗୁଗର୍ଜନରେ ଭାଙ୍ଗି ଚୂନା ହୋଇଯିବ ନାହିଁ । ଓଡ଼ିଆର ଅଭାବ ଓଡ଼ିଆର ସୁଖଦୁଃଖର ସୀମା ଓ ପରିସର, ଓଡ଼ିଆର ହାର ଗୁହାରି ବୁଝି, ଭଲକରି ମନ ଭିତରେ ପୂରେଇ, ଓଡ଼ିଆର ବୈଶିଷ୍ଟ୍ୟ ବଜାୟ ରଖି ସେସବୁର ସମାଧାନ ଓଡ଼ିଆ ନେତାମାନଙ୍କର କରିବା ଧର୍ମ । ଓଡ଼ିଆର ବଟୁଆ ଏହି କଥାଟି ଆମ ଆଖି ଆଗରେ ବଳ୍ ଲବଙ୍ଗ ଜାଳି ଦେଖେଇଦେଇଚ । ଓଡ଼ିଆକୁ ଘରଭଙ୍ଗା ପାନ ଭଲ ଲାଗେନାହିଁ । ଏପର୍ଯ୍ୟନ୍ତ ମଧ୍ୟ ମଫସଲରେ ଓଡ଼ିଆ ଘରକୁ ଅତିଥି ଗଲେ, ଓଡ଼ିଆ ଅଣଓଡ଼ିଆ ବାବୁଙ୍କ ଭଳି ଟିକିଏ ଚୂନ, ଖଣ୍ଡିଏ ଗୁଆ, ଚେପ୍ଟା ପାନ ଖଣ୍ଡ ଲବଙ୍ଗ ମାରି ଆଣିଦିଏ ନାହିଁ । ସେ ଆଣି ଥୋଇଦିଏ ତା'ର ବଟୁଆ ବା ପାନ ପେଡ଼ି । ପାନ ଅଛି, ଗୁଆ ଅଛି, ଗୁଣ୍ଡି ଅଛି, ଚୂନ, ଖଇର, ଜାଇଫଳ, ଅଳେଇଚ, ସବୁ ଅଛି, ଅତିଥି ତା'ର ମନମାଫିକା, ତା' ରୁଚି ମୁତାବକ ପାନ ଭାଙ୍ଗିବ, ଖାଇବ । ମୋ ଘରକୁ ଅତିଥି ଆସିଲେ ମୁଁ ଯେପରି ମୋର ରୁଚି ଓ ମନ ତା ଉପରେ ଲଦିଦେବି ନାହିଁ, ମୁଁ କାହା ଘରକୁ ଗଲେ ମୋର ରୁଚି ଓ ମନ ମୁଁ କାହାରି ପାଇଁ ବଳି ଦେଇପାରିବି ନାହିଁ । ଏଇ ହେଲା ବଟୁଆର ଶିକ୍ଷା, ଏଇ ହେଲା ଅସଲ ଡେମୋକ୍ରାସି, ପ୍ରଜାତନ୍ତ୍ର ବା ଗଣତନ୍ତ୍ର । ଓଡ଼ିଆ ବଟୁଆ କହେ, ପ୍ରଜାର ଶାସନ ପ୍ରଜାର ହିତ ପାଇଁ, ପ୍ରଜାର ବୈଶିଷ୍ଟ୍ୟ ରକ୍ଷା କରିବା ପାଇଁ, ପାଞ୍ଚଟା ସାତଟା ଶାସକଗୋଷ୍ଠୀ ପ୍ରଜାର ହିତ ପାଇଁ—ପ୍ରଜାର ସ୍ୱାଧୀନତା ପାଇଁ ନୁହେଁ । ନିଜର ହିତ ଓ ନିଜର ସ୍ୱାଧୀନତା ତିଆରିଦେବା ହେଲା ପ୍ରଜାତନ୍ତ୍ର ଶାସନର ଅସଲ ମୂଳ ମନ୍ତ୍ର । ଦେଶ ନେତାର ପ୍ରଧାନ ଓ ପ୍ରଥମ ଗୁଣ । କିନ୍ତୁ ଆଜିକାଲି ହଉଚି କ'ଣ ? ହିଟ୍ଲରଙ୍କ ଜର୍ମାନି, ଷ୍ଟାଲିନ୍ ରୁଷିଆ, ମୁସୋଲିନି ଇଟାଲି ଓ ଜାତୀୟ ଭାରତ ବର୍ଷରେ ପ୍ରଜାର ଶାସକମାନେ, ନେତାର ଖିଅଲି ପାଇଁ ପ୍ରଜାର ରୁଚି, ବୈଶିଷ୍ଟ୍ୟ ଓ ସ୍ୱାଧୀନତାର ଶ୍ରାଦ୍ଧ, ଶାସନର ଉନ୍ନତି ପାଇଁ ପ୍ରଜାର ହିତ ଓ ମଙ୍ଗଳର ତିଳତର୍ପଣ, ଜଳ ତର୍ପଣ ଓ ଶେଷରେ ବିସର୍ଜନ । ଏ ତ ଡେମୋକ୍ରାସି ନୁହେଁ, ପ୍ରଜାତନ୍ତ୍ର ନୁହେଁ, ବରଂ ଡେମନ୍କ୍ରାସି, ପ୍ରଜାମାରଣ ମନ୍ତ୍ର ବା ପ୍ରଜାଭୂଲାଣିଆ ମନ୍ତ୍ର ମାତ୍ର ।

ଆଉ ଏଣିକି ବେଶୀ କହିବି ନାହିଁ । କହିବ ନାହିଁ, କହିଲେ ଏ ଘରେ ରହିବ ନାହିଁ । ଏ କଡ଼ାବାର୍ତ୍ତା କାଳ ଯେବେ ତୁମର ଚେତା ନ ହେବ, ତା'ହେଲେ ତୁମର ଚେତା କେବେ ହବନାହିଁ, ତୁମେ ତୁମ ନିଜ ମନକୁ ଢେଙ୍କୁରା ପିଟିପାର ଯେ ଆମେ ବଡ଼, ଆମେ ବଡ଼ କାମ କରୁଛୁଁ । ଆମର ମୁଣ୍ଡ, ଆମର ମଝି, ଆମର ଗୋଡ଼ ସବୁ ବଡ଼ । କିନ୍ତୁ ସଂସାର ତୁମର ଏ ଢେଙ୍କୁରା ପିଟାରେ ଭୁଲିବ ନାହିଁ । ତୁମେ କେତେଟା ଲୋକଙ୍କୁ କିଛି ସମୟ ପାଇଁ ବୋକା ବନେଇପାର । କିନ୍ତୁ ସବୁ ଲୋକଙ୍କୁ ସବୁ ସମୟ ପାଇଁ

ବୋକା ବନେଇପାରନ୍ତି ନାହିଁ । ହିଟ୍‌ଲର୍ କିଛି ଦିନ ପାଇଁ ଜର୍ମାନ ଲୋକଙ୍କୁ ବୋକା ବନେଇଥିଲେ କୁହୁକ ମନ୍ତ୍ରରେ, ଏବେ ପରେ ଅନ୍ଦର ମହଲରେ ପଡ଼ୁଛି ବୋମା । ତୁମେ ଭଲଗେ ଲୋକଙ୍କୁ ଠକି ଦେଇପାର, କିନ୍ତୁ ବେଳ ଆସିବ—ବେଶି ଡେରି ନାହିଁ—ଯେତେବେଳେ ତୁମ ଅନ୍ଦର ମହଲରେ ବୋମା ପଡ଼ିବ, ସେତେବେଳେ ଆଳେ ମା'ଳେ. ମଗଲ ଲେ, ବୋଲି ଡକା ଶୁଣି ଆକାଶ ଫାଟିଗଲେ ମଧ୍ୟ କେହି ଶୁଣିବେ ନାହିଁ, କେହି ଟିକିଏ ଅଣହେଳରେ ତୁମକୁ ଗୁହିଁବେ ନାହିଁ ।

ପର ଲଙ୍ଗୁଡ଼ଧରା ବଡ଼ଲୋକ, ବଡ଼ଲୋକ ନୁହେଁ । ସେ ଗୋଲାମର ଗୋଲାମୀ ମାତ୍ର । ଯଦି ପ୍ରକୃତରେ ଏ ଜାତିର, ଏ ଦେଶର, ଏ ସଭ୍ୟତାର କିଛି କାମ କରି ତୁମର ନାଁ ଅମର ଅକ୍ଷରରେ ଲେଖିଦେବାକୁ ଇଚ୍ଛାକର, ତା' ହେଲେ ନିଜ ବାଟ ଆଗ ଧରି ନିଜ ବାଟରେ ନିଜ ଗୋଡ଼ରେ ଚାଲ । ଏଣିକି ତେଣିକି ଚାହିଁ ଯେ ଚାଲେ ସେ ବାଟ ଜାଣେନାହିଁ, ସେ ନିଶ୍ଚେ ବାଟ ଭୁଲିବ । ଯେ ବାଟ ଜାଣେ, ଯାହାର ଲକ୍ଷ୍ୟ ଠିକ୍ ସେ ତା'ରାସ୍ତାରେ ଚାଲିବ । ସେ ରାସ୍ତା ଅନ୍ୟକୁ ଅସୁନ୍ଦର ଦିଶିପାରେ, ଅନ୍ୟ ନାକ ଟେକିପାରେ, ରାଗିପାରେ, ଥଟ୍ଟା ପରିହାସ କରିପାରେ, କି ଯାଏ ଆସେ ସେଥିରେ ? ମୋର ବାଟ ଏ, ଏ ବାଟରେ ମୁଁ ଯିବି । ସେଥିରେ ଯେବେ ମୁଁ ଲକ୍ଷ୍ୟସ୍ଥାନରେ ନ ପହଞ୍ଚିପାରେ ତା'ହେଲେ ମଧ୍ୟ ମୋର ଗୌରବ ଓ ଜାତିର ଉନ୍ନତି । ଆଉ କ'ଣ କହିବି ? ଖାଲି ଏତିକି ।

He either fears his fate too much
Or his deserts are small.
That dares not put it to the touch
To gain or loss it all,

ଇଂରେଜୀ କିଆଁ ? ତୁମେ କି ଦେଶୀ କି ?

ନବଭାରତ
୧୯୪୭
୬ଷ୍ଠ ବର୍ଷ—୩ୟ ୪ର୍ଥ ସଂଖ୍ୟା

# ବୋମା

ଲୋକେ କହୁଚନ୍ତି ରୁଆଡ଼େ ଯୁଦ୍ଧ ଲାଗିଚି । କୁଆଡ଼େ ମ ? ସେ କେଉଁ ଅଗନା-ଅଗନା ବନସ୍ତରେ । କୁଆ କୋଇଲର ରାବ ନାହିଁ କି ଆମ ଓଡ଼ିଆଙ୍କର ଘର କଲି ନାହିଁ; ଏପରି ରାଜ୍ୟ ସେ ଯେଉଁଠି ଯୁଦ୍ଧ ଲାଗିଚି । ଆମର ସେଥିରେ କ'ଣ ଗଲା ? ବାସ୍ତାର କି ଯାଏ ନା ବା' କଲେ ବସା ଦୋହଲୁଥାଏ । ମାତ୍ର ବାଡ଼ଆପିଟା ହେଇ, ଆମେ ଚୌକି ପକେଇକରି ବସିବା । ଆମେ ଯେବେ ଦୋକାନଦାର ହେଇଥାଉଁ, ତା'ହେଲେ ଏତିକିବେଳେ ଯୁଦ୍ଧ ନାଁକରି ଦି' ପଇସା ମାଲ୍ ଗୁରି ପଇସାକୁ ବିକି କିଛି ଲାଭ ମାରିନବା । ଏ ଓଡ଼ିଆ ଭେଡ଼ା କରିବେ କ'ଣ ? ଚୋଟି ଚପିଲେ ଖାଲି ଭେଁ ଭେଁ ହେବା ଛଡ଼ା ସ୍ୱାଙ୍କ ବହାବି ହବ କ'ଣ ? ଯେତେବେଳେ ଯାଏଁ ଆମ ଅଣ୍ଟା ଗାଣ୍ଠିଆରେ ମାଲ ଅଛି, ସେ ପର୍ଯ୍ୟନ୍ତ ଭୟ କାହାକୁ ? ଆମେ ଯେବେ ରାଜନୈତିକ, ତା'ହେଲେ ଏଇ ଗୋଟାଏ ହଲ ଦୋହଲ ବେଳ । କିଛି ଉପଦ୍ରବ କରି ଘଡ଼ାଟା ଭର୍ତ୍ତି କରିନବାର ଫିକରଟା ଗ୍ରୁଡ଼ିବା କିଆଁ ? ଆମେ ଯେବେ ଓକିଲ, ତା' ହେଲେ ବଜାର ଦର ବଢୁ ବା ନବଢ଼ୁ ଆମେ ଏ ମଳିଆ ମୁଣ୍ଡିଆ, କବୁଡ଼ିଆ ମହକିଲଗୁଡ଼ାଙ୍କୁ ଧମକେଇବୁ—ବାବୁ ଆମେ ଦି'ଟଙ୍କାରେ ତୁମ କାମ କରିଥିଲୁ, ଯେତେବେଳେ ଗୁଡ଼ିଲ ସେରକୁ ହୋଇଥିଲା ୬ ପଇସା । ଇଲେ ଗୁଡ଼ିଲ ସେର ହେଲାଣି ଡିନଅଣା ବାବା, ଆମ ଫିସ୍‌ଟା ବି ଦୁଇ ଟଙ୍କାରୁ ପାଞ୍ଚ ଟଙ୍କା କରିବାକୁ ପଡ଼ିବ । ଏହିପରି ଯେ ଯେମିତି ବାଗରେ ପାଇଲା, ସେ ସେମିତି ମାରିନବାର ଚେଷ୍ଟାରେ ରହିଲା । ଏହି ହେଲା ମାତ୍ର ଆମ ଯୁଦ୍ଧର ଧାରଣା । ସ୍ୱା'ଠାରୁ ଖୁବ୍ ବେଶୀ ଯେବେ କଳନା କରିବାକୁ ଯାଉଁ, ତା' ହେଲେ ଆମର ମନେପଡ଼ିସିବ ସେଦିନ ଆମ ଗାଁରେ ରାମ ଦାସେ ଓ ଶ୍ୟାମ ପ୍ରହରାଜଙ୍କ ଭିତରେ ଯେ ବାଡ଼ିଆବାଡ଼ି ଚାଲିଥିଲା । ଏ ପଟରୁ ଦଶ ପନ୍ଦର, ସେ ପଟରୁ ଦଶ ପନ୍ଦର, ହାତରେ କାତି, କୁରାଢ଼ି, କଟୁରି, ଲାଗିଗଲା ବୁହେ ପିଟାପିଟି, କଟାକଟି, ହଟାହଟି ଉଡ଼ିଲା ଚୁଟି, ଫାଟିଲା ପିଠି, ଭାଙ୍ଗିଲା ଗଣ୍ଡି—ଆଉ ତା'ପରେ ଓକିଲ ପାଟି, ମୋହରିର କଲମକାଠି, ଟାଉଟର ବଟାବଟି, ପୁଅଙ୍କର ଖସିଲା ଅଣ୍ଟି, ସରିଲା ପାଣ୍ଠି । ଏଇଥିରୁ ହୁଏତ ଆମେ ଏ ଯୁଦ୍ଧର କିଛି କଳନା କରିବୁ । ନହେଲେ ରାମାୟଣରୁ ଯେ ରାମ-ରାବଣ ଯୁଦ୍ଧ ପଢ଼ିଚୁଁ ବା ଶୁଣିଚୁଁ ନା, ସେଇଥିରୁ ଅନୁମାନ କରିନବୁଁ । ଏକ ପକ୍ଷରେ ଜର୍ମାନୀ ରାକ୍ଷସ ଆଉ ଅନ୍ୟପଟେ ଆମ ରାମ ସରକାର ଫରାସୀ ଇତ୍ୟାଦି ବାନରସେନା ଘିନ କରୁଚନ୍ତି ଯୁଦ୍ଧ । ତା ସାଙ୍ଗରେ ମାତିଉଠିଚି ରୁଷିଆ କୁମ୍ଭକର୍ଣ୍ଣ । ପଥର ଫୋପଡ଼ା-ଫୋପଡ଼ି, ଗଛ ବାଡ଼ିଆ ବାଡ଼େଇ, ଶରର ଚଡ଼ଚଡ଼ି, ଗଦାର ଘଡ଼ଘଡ଼ି, କୁନ୍ତର ଫୋଡ଼ାଫୋଡ଼ି, ଉଡ଼ା ପଥର ହାବୁଡ଼ାହାବୁଡ଼ି ଲାଗିଛି ଲଢ଼େଇ । ମେଦନୀ ଥରୁଚି

କମ୍ପି, ସରଗ ଯାଉଛି ଖସି, ପାତାଳ ଉଠୁଚି ଫିଁ ଫିଁ । ଏଇ ଯୁଦ୍ଧ ତ ? ତା'ହେଲେ ଏ ଯୁଦ୍ଧ ଏତେଦିନ ଲାଗିବ କାହିଁକି ? ଏତେ ବଡ଼ ମହାଭାରତ ଯୁଦ୍ଧ କେତେ ଅକ୍ଷୌହିଣୀ ସୈନ୍ୟ ଏପଟସେପଟ ହୋଇ ମରିଗଲେ, କୁରୁକ୍ଷେତ୍ରରେ ରକ୍ତ ନଈ ବହିଗଲା; ଅଥଚ ସେ ଯୁଦ୍ଧ ସରିଗଲା ମାତ୍ର ଅଠରଟା ଦିନରେ । ଏତେବଡ଼ ରାମାୟଣ ଯୁଦ୍ଧ, ଯୁଦ୍ଧରେ ଅସୁର ବଂଶ ନିର୍ବଂଶ ହୋଇଗଲେ । ଭାଲୁ ମାଙ୍କଡ଼ଙ୍କ ମଡ଼ାଗଦା ପୃଥିବୀରୁ ଆକାଶ ଯାଏଁ ଲମ୍ବିଗଲା । ଅଥଚ ସେ ତ ପୁଣି ସରିଯାଇଥିଲା ଦିନ ସାତଟାରେ, ଆଜି ଏ ଯୁଦ୍ଧ ଲାଗିଲାଣି ପୁଣି ଦେଢ଼ମାସ କି ଦି ମାସ ହେଲା । ତଥାପି କିଛି ହେବାକୁ ନାହିଁ । ଲୋକେ କହୁଚନ୍ତି, ଏ ଯୁଦ୍ଧ ତିନି ଚାରି ବର୍ଷ ଲାଗିପାରେ । କିଆଁ ? ଏଥିରେ କଣ ହଉଚି ? ଯଦି ଦିନ ଅଠରଟାରେ ଭାରତବର୍ଷ ଭଳିଆ ଦେଶଟା ଜନଶୂନ୍ୟ ହୋଇଯାଏ, ତା'ହେଲେ ଏହି ଦୁଇ ମାସ ଭିତରେ ତ ଜର୍ମାନୀ ଆଉ ବିଲାତ ଭଳିଆ ଦେଶଗୁଡ଼ାକରେ ମଡ଼କ ପଡ଼ି ଯା'ନ୍ତାଣି, କଥାଟା କ'ଣ କହ ଦେଖି ?

କଥାଟା କ'ଣ କି, ସେ ଯୁଦ୍ଧ ଥିଲା ହାତର ଯୁଦ୍ଧ, ବାହା ବଳର ଯୁଦ୍ଧ, ବୁଦ୍ଧି କୌଶଳର ଯୁଦ୍ଧ । ଦୁଇ ଦଳ ସାମନା ସାମନି ଠିଆ ହୋଇଗଲେ କାଛୁଆ ଭିଡ଼ି, ଜଣ ମୋଡ଼ି, ବାହା ବାଡ଼େଇ, ଜଙ୍ଘ ଫୁଟେଇ, ହାଣମାର କାଟ, ପିଟାପିଟି ଫାଟ ଲାଗିଗଲା । ଏଆଡ଼ୁ ଗୁଡ଼ାଏ ମରିଗଲେ, ସେଆଡ଼ୁ ଗୁଡ଼ାଏ ମରିଗଲେ । ଯୁ ଦଳର ବାହାବଳ ଯେତେ ବେଶୀ, ସେ ଦଳ ଜିତିଗଲା, ଆର ଦଳ ଗଲା ହାରି । କିନ୍ତୁ ଏ ଯୁଦ୍ଧ ହାତର ଯୁଦ୍ଧ ନୁହେଁ; ଭିତର ଯୁଦ୍ଧ, ସେଥିରେ ବାହାବଳ ଦେଖାଇ ମୁହାଁମୁହିଁ ଯୁଦ୍ଧ କରିବା ପାପ । ସେଥିରେ ମୁହାଁମୁହିଁ ଯୁଦ୍ଧ ନ କରିବା ଥିଲା ପାପ । ସେଥିରେ ମୁଁ ଦେଖିଛି ଶତ୍ରୁ ମାଡ଼ିଆସୁଚି; ଦେଖିଛି ଶତ୍ରୁ ଅସ୍ତ୍ର ଉଠାଇ ମତେ ହାଣିବାକୁ ଧାଉଁଛି, ମୁଁ ଶତ୍ରୁକୁ ମାରିବାକୁ ଧାଇଁଯାଉଛି । ଲଢ଼େଇ ଲାଗିଛି, ରକ୍ତ ଗରମ ହୋଇ ଉଠୁଛି । ମୁଣ୍ଡରେ ପାଗଳାମି ଆସିଯାଉଛି । ମାଡ଼ ଦଉଛି, ମାଡ଼ ଖାଉଛି, ମୋର ବଳ ଓ କୌଶଳ କମ୍ ହେଲେ ମୁଁ ମରୁଛି ବା ପଳେଇଯାଉଛି । କିନ୍ତୁ ଏ ଯୁଦ୍ଧ ତାହା ନୁହେଁ । ମୁଁ ଗାତ ଖୋଳି ନିଜକୁ ମୂଷାଙ୍କ ଭଳି ଲୁଚେଇରଖୁଛି, ଲୁଚିଲୁଚି ଗୁହିଁ ବସିଛି । ଶତ୍ରୁ ଆସିବ । ଶତ୍ରୁ ଆସୁନାହିଁ । ଶତ୍ରୁକୁ ଦେଖୁନାହିଁ । ବସି ବସି ଗାତ ଭିତରେ, ପଙ୍କ କାଦୁଅରେ ସଢ଼ି ସଢ଼ି ହଠାତ୍ ଦିନେ ଶୁଣୁଛି ତୋପର ଆଓ୍ୱାଜ, ବୋମାର ଶବ୍ଦ, ଘଡ଼ ଘଡ଼ ଫଟ୍, ଘଡ଼ ଘଡ଼ ଫଟ୍, ଏ ଯେପରି ଶୂନ୍ୟବାଣୀ, ଏ ଯେପରି ଅକାଳ ବଜ୍ର, ଆସି ପଡ଼ୁଛି ଅଜଣା ଶତ୍ରୁ ପାଖରୁ । ମୋର ହାଡ଼ ଛିଣ୍ଡି ଯାଉଛି, ଗୋଡ଼ ଭାଙ୍ଗି ଯାଉଛି, ପଞ୍ଜରା ହାଡ଼ ଚୂନା ହୋଇଯାଉଛି, ହାତ ଗୋଡ଼ ଛିଣ୍ଡା ମାଦଳ । ଅଜଣା ଆତଙ୍କରେ ଠକ୍ ଠକ୍ ହୋଇ ଦଉଡ଼ିଯାଉଛି ଲହୁର ସୁଅ ଭସାଇ । କିଛି ଦୂର ପରେ ପଡ଼ିଯାଉଛି, ପ୍ରାଣ ଯାଉଛି । କେତେବେଳେ ପୁଣି ମୁଁ ବସିଛି, ହୁକୁମ ହେଲା ଗୁଳି ମାର, ତୋପ ମାର, ବନ୍ଧୁକ ମାର । କାହାକୁ ମାରିବି ମୁଁ ଜାଣେନାହିଁ, କୁଆଡ଼େ ମାରିବି ତା ମଧ୍ୟ ମୁଁ ଜାଣେନାହିଁ । ତୋପ

ଅଛୁ, କଳ ବନ୍ଧୁକ ଅଛୁ, ଯୁଆଡ଼େ ମାରିବାକୁ ହବ, ତାର ଢଗ ମତେ ଠିକ୍ କରିବାକୁ ପଡ଼ିବ ନାହିଁ । ତାର ଢଗ ଅନ୍ୟ କଏ ଜଣେ ମୋ ପାଇଁ ଠିକ୍ କରିଦେଇଛି । ମୁଁ ଖାଲି ସେଇ କଳ ଭଳି ବନ୍ଧୁକରେ ଗୁଳି ଦଉଛି, ମାରୁଛି, ବନ୍ଧୁକର ଗୁଳି କାହା ଉପରେ ବାଜୁଛି କି ଶୂନ୍ୟରେ ଉଡ଼ିଯାଉଛି, ତା ଜାଣିବାର ମୋର ଉପାୟ ନାହିଁ । ହାକିମମାନେ କହନ୍ତି ମୋର ଜାଣିବାର ମଧ ଦରକାର ନାହିଁ । ମୁଁ ମାରିଲାବେଳେ ମୋର ରକ୍ତ ଗରମ ହେଉନାହିଁ—ବରଂ ଥଣ୍ଡା ହୋଇଯାଉଛି ବରଫ ଭଳି । ବରଫ-ଦିଆ ମାଛ ଭଳି । ମୁଁ କଛି ଜାଣିପାରୁନାହିଁ ମରିଗଲି କି ମାରିଦେଲି । ବୁଝୁଛ ନା ? ସେ ଯୁଦ୍ଧ ହେଲା ଲକ୍ଷ୍ୟର ଯୁଦ୍ଧ । ମୁଁ କାହାକୁ ମାରିବି ଜାଣେ, ଦେଖେ, ତା'ର କୁଠିକି ମାରିବି ତା' ମଧ ଜାଣେ । ଏ ଯୁଦ୍ଧ ହେଲା ଅଲକ୍ଷ୍ୟ ଯୁଦ୍ଧ । ଅନୁମାନରେ ଟ୍ରେଞ୍ଚ ଉପରୁ ଗୁଳି ମାରୁମାରୁ ଯୁଆଡ଼େ ବାଜିଲା । ସେଥିରେ ମରୁଥିଲେ ବେଶୀ ଯୋଦ୍ଧା । ଏଥିରେ ମରୁଛନ୍ତି ବେଶୀ ଆମର ଭଳିଆ ଯୋଦ୍ଧା ଅନାଡ଼ି । ସେ ଯୁଦ୍ଧରେ ଅନେକେ ଯାହା ଯୋଦ୍ଧା ମରୁଥିଲେ, ଏ ଯୁଦ୍ଧରେ ତା'ଠାରୁ ଅନେକେ ଖୁବ୍ କମ୍ ଯୋଦ୍ଧା ମରନ୍ତି । ସେଇଥିପାଇଁ ଏ ଯୁଦ୍ଧ ଏତେ ଦିନ ଲାଗେ ।

ଆଉ ଗୋଟିଏ କଥା; ସେ ଯୁଦ୍ଧ ଥିଲା ହାତର, ଏ ଯୁଦ୍ଧ ହେଉଛି ଭାତର । ସେ ବଳ କଷାକଷିରେ ଯେ ହାରିଯାଉଥିଲା ସେ ହାରିଯାଉଥିଲା । ଏଥିରେ ବଳ କଷା-କଷିରେ କୌଣସି ପକ୍ଷ ହାରେନାହିଁ, ହାରିଯାଏ ଭାତ କଷାକଷିରେ । ଗଲା ଜର୍ମାନୀ ଯୁଦ୍ଧରେ ଜର୍ମାନୀ ଯେ ହାରିଯାଇଥିଲା ତା'ର କାରଣ ନୁହେଁ ଯେ ତା'ର ଅସ୍ତ୍ରଶସ୍ତ୍ର ସରିଗଲା କି ମଣିଷ ବଳ କମି ଯାଇଥିଲା; ସେ ହାରିଗଲା କାହିଁକି ନା ତାଙ୍କ ଦେଶ ଲୋକଙ୍କୁ ଖାଇବାକୁ ମିଳିଲା ନାହିଁ । ତା'ର ଘର ଉପରୁ ମିତ୍ରପକ୍ଷ ଛେକି ଦେବାରୁ କୁଆଡ଼ୁ ସେ ମାଲ ପାଇପାରିଲା ନାହିଁ । ଲୋକେ ଖାଇବାକୁ ପାଇଲେ ନାହିଁ, ଆଉଟିପାଉଟି ହୋଇ ମରିଗଲେ । ସେହିହେତୁରୁ ସେ ବାଧ୍ୟ ହୋଇ ହାତ-ଯୋଡ଼ି ଶରଣ ମାଗିଲା । ଏଇଲାଗେ ଯେ ଯୁଦ୍ଧ ଚାଲିଛି, ସେଥିରେ ମଧ ସେ ହାରିବ ସେ ପ୍ରକାରରେ । କିନ୍ତୁ ତା' ଘରୁ ମାଲ ସରି, ସେ ହୀନସ୍ତ ହେବାଯାଏ ଅନେକ ଦିନ ଲାଗିବ । ଆଗ କାଳରେ ମଧ ଏହିପରି ଭାତରେ ମାରିବା ଯୁଦ୍ଧ ଲୋକେ କରୁଥିଲେ । ଶତ୍ରୁ ଆସିବାର ଶୁଣିଲାକ୍ଷଣି ଦୁର୍ଗ ବା ଗଡ଼ ଭିତରେ ଦୁଆର ବନ୍ଦ କରି ସୈନ୍ୟସାମନ୍ତ ଘେନି ବସି ରହୁଥିଲେ । ଗଡ଼ ପାଚେରି ଉପରେ ଲୁଚି ରହି ଶତ୍ରୁ ପାଖକୁ ଆସିଲେ ଟେକା, ପଥର, ଶର, ଭୁଷୁଣ୍ଡି ଫୋପାଡ଼ୁଥିଲେ । ଶତ୍ରୁ ଗଡ଼ ଘେରାଉକରି ବସିରହୁଥିଲା । ଖୋଲା ମେଲା ଜାଗାରେ ଖରା ପାଣି ସହି ବସି ବସି ତା'ର ଯେତେବେଳେ ଆଉ ସୈନ୍ୟ ରହୁ ନ ଥିଲେ, ସେତେବେଳେ ସେ ପଳାଉଥିଲା, ନହେଲେ ଦୁଆର ଭାଙ୍ଗି ପାଚେରି ଡେଇଁ ଗଡ଼ ଭିତରେ ପଶିବାର ଚେଷ୍ଟା କରୁଥିଲା । ଏଣେ ଗଡ଼ବାଲାମାନେ ମଧ ଗଡ଼ରେ ଯାହା ସଞ୍ଚି ରଖିଥାନ୍ତି, ତାକୁ ଖାଉଥାନ୍ତି । ସେସବୁ ସରିଗଲେ ଆଉ ଖାଇବାକୁ

ପିଇବାକୁ ନ ମିଳିଲେ ସେମାନେ ବାଧହୋଇ ବେଳେବେଳେ ଆସି ଯୁଦ୍ଧ କରନ୍ତି ବାହାରେ, ନ ହେଲେ ଯାଇ ଶତ୍ରୁ ପାଖରେ ଶରଣ ପଶନ୍ତି । ଆଜିକାଲି ଦୁର୍ଗ ନାହିଁ, ମାତ୍ର ସମୁଦାୟ ଦେଶଟା ଦୁର୍ଗ ବୋଲି ଧରାଯାଉଛି । ଶତ୍ରୁ ସମୁଦାୟ ଦେଶକୁ ଘେରାଉ କରି ରହୁଛନ୍ତି । ଘେରାଉ ଦେଶ ବାହାରୁ ଜିନିଷପତ୍ର-ଖାଦ୍ୟ ସାମଗ୍ରୀ ପାଇପାରୁନାହିଁ, ହାରିଯାଉଛି ।

ତେବେ ତୁମେ ଦେଖୁଛ, ପ୍ରକୃତ ଯୁଦ୍ଧ, ଅସଲ ଲଢ଼େଇ, କିଛି ନୁହେଁ, ତା'ର ଘୋସରା ଘା'ଟା ହିଁ ବେଶୀ କାଟେ । ଯେଉଁମାନେ ନିଜ ସ୍ୱାର୍ଥ ଲାଗି ଲଢ଼େଇ ଲଗାଉଛନ୍ତି, ଆଉ ଯେଉଁମାନେ ପଇସା ଖାଇ ପ୍ରାଣଦେବାକୁ ଯୁଦ୍ଧ ଭୂଇଁକୁ ଯାଉଚନ୍ତି, ସେମାନଙ୍କ ଭିତରୁ ଯେତେ ନ ମରନ୍ତି, ଯେତେ କଷ୍ଟ ନ ପାଆନ୍ତି, ତା'ଠାରୁ ଦଶ ଗୁଣରେ କଷ୍ଟ ପାଏ—ଯେ ଏ ସବୁର ବାହାରେ । ବୁଢ଼ା, ପିଲା, ମାଇପି, ଅଣଯୋଦ୍ଧା । ପଇସା ଯିବ ଯା'ଙ୍କର ସବୁ ଅଣ୍ଟାରୁ, ପେଟ କଷା ହେବ ଯାଙ୍କର ଶାଗ ଭାତରୁ । କାନ୍ଦ ବୋବାଳି ଯାଙ୍କର, ପେଟ ମୁଣ୍ଡ ପୋଡ଼ା ଯାଙ୍କର, ଦହଗଞ୍ଜ, ହୀନ ଅବସ୍ଥା, ସବୁ ଯାଙ୍କର ପାଇଁ । ଜିତାପଟରୁ ଯୁ ଅବସ୍ଥା, ହାରିପଟର ସେଇ ଅବସ୍ଥା । ଏ ଚଣ୍ଡୀ ଚାମୁଣ୍ଡା ନାଚର କି ପ୍ରତିକାର କିଛି ନାହିଁ ? ମଣିଷ ସମାଜକୁ ଏ ରଣଚଣ୍ଡୀଙ୍କ ଲହ ଲହ ଜିଭରୁ ରକ୍ଷା କରିବାର କି କିଛି ଉପାୟ ନାହିଁ ? ହଜାର ହଜାର ବର୍ଷ ହେଲା ଏ ମଣିଷ ଜାତିଟା ବାଡ଼ିଆପିଟା ଲଢେଇ ଛୁରଖାର ହୋଇଯାଉଛି, ଯାଙ୍କୁ କ'ଣ ସେଥିରୁ ବଞ୍ଚେଇ ହବ ନାହିଁ ? ଭାରତବର୍ଷ ତମାମ ଜାଣନ୍ତି ଯେ ଆମେ ଅଣଯୋଦ୍ଧା ଜାତି । ଆମେ ଖାଲି ମରି ଜାଣୁ, ଗୋଇଠା ଖାଇ ଜାଣୁ, ଯେ ଟାଣୁଆ ହେଲା ତା' ପାଖରେ ପିଠି ଦେଖାଇ ଦେଇ ଜାଣୁ । ସେଦିନ ଦେଖିଲି ଟାଟା ଫାଉଣ୍ଡ୍ରୀ ଷ୍ଟ୍ରାଇକ୍‌ବେଳେ କେତେଗୁଡ଼ାଏ ଓଡ଼ିଆ କୁଲି କମକସଛା ପଣ ଦେଖାଇ ଧର୍ମଘଟ ନ ମାନି ଅଣ୍ଟାବାନ୍ଧି ବାହାରିପଡ଼ିଲେ କାମ କରିଯିବା ପାଇଁ । ଥୋଡ଼େ ବାଟ ଯାଉଚନ୍ତି, ହେଲା ଟେକାବୃଷ୍ଟି । ଦି ଚାରିଜଣ ଖଣ୍ଡିଆ ଦଣ୍ଡିଆ ହୋଇଗଲେ । ତା'ପରେ କମକସଛା ପଣିଆ ସରିଗଲା; ଓଡ଼ିଆପୁଏ ଲାଙ୍ଗୁଡ଼ ଜାକି ନିଜ ଗାତ ଭିତରକୁ ପଳେଇଗଲେ । ମୁଁ କହୁନାହିଁ ଯେ ଧର୍ମଘଟରେ ଯୋଗ-ଦେବା ଅନ୍ୟାୟ କି ଯୋଗ ନ ଦେବା ଭଲ । ଖାଲି ଏତିକି କହିବାର କଥା ଯେ ଭଲ ହଉ, ମନ୍ଦ ହଉ କୌଣସି କାମରେ ହାତଦେଇ ବଡ଼ ମୁହଁ, ବଡ଼ କାନରେ ଯୁଦ୍ଧକୁ ଡେଇଁପଡ଼ି ମାଡ଼ ଭୟରେ ପଳେଇଯିବାଠାରୁ ବଳି ଜାତିପକ୍ଷରେ ଆଉ କଳଙ୍କ କ'ଣ ହୋଇପାରେ ? ଆମେ ସବୁଥିରେ ଏଇଆ । ହଳଦି ପାଣିକି ଗୋଡ଼ ଦେବୁ ନାହିଁ । ଦେହକୁ ଟିକିଏ ହେଇ ଆଞ୍ଚ ଲାଗିବ ନାହିଁ । ଅଥଚ ଆମ ମୁହଁରେ ଗୁଣ୍ଡା ଗଳି ଯାଉଥିବ । ଏ ନୀତି ତୁମେ କୌଣସି ଜାତିରୁ କେବେ ପାଇଚ ? ଜନ୍ଦା, ପିମ୍ପୁଡ଼ି, ଜନ୍ତୁ ଖାଇବାକୁ ନ ପାଇଲେ, ମଣିଷ ଭଳି ଜନ୍ତୁକୁ ଆସି ରଟ୍‌କରି ପୁଲାଏ କାମୁଡ଼ି ଦଉଚନ୍ତି । କୁକୁର ମୁହଁରୁ ହାଡ଼ ଖଣ୍ଡିକ କାଢ଼ିନେଲେ ସେ ତା ସାଆନ୍ତ ହାତକୁ ମଧ୍ୟ କାମୁଡ଼ି ଦଉଚି । କିନ୍ତୁ

ଆମର କଣ ? ଖାଇବାକୁ ନମିଳଲେ ଆଣ୍ଠୁ ଭିତରେ ମୁଣ୍ଡ ଗୋଞ୍ଜି ପଡ଼ି ରହିବୁ । ଆମ ମୁହଁର ଆହାର ପାଖ ପଡ଼ଶା କାଢ଼ି ନେଉଚନ୍ତି, ଆମେ ଲଙ୍ଗୁଡ଼ ଯାକି ପଳାଇ-ଯାଉଛୁଁ । ଆମେ ଖାଲି ଅଣଯୋଦ୍ଧା ନୋହୁଁ, ଆମେ ବଳକୁଳ ମାଇଗୁଲିଆ, ମାଇଗୁଲିଆ ଦୁଃଖେଇ ସାହୁ, ମାଇପ ହାତର କହୁଣୀ ଖାଉ । ସେ ତ ଭଲ କଥା । ପ୍ରିୟାଙ୍କର ଶ୍ରୀବସ୍ତ୍ର କହୁଣୀ ତ କହୁଣୀ ନୁହେଁ ସେ ଏକାବେଳେକେ ନବାତପକା ଲହୁଣୀ । ଆମେ ଦୁଃଖେଇ ସାହୁ ଠାରୁ ଆଉର ଖାନ କାହିଁକି ନା ଆମେ ପର ମାଇପ ଠାରୁ ଯେଉଁ କହୁଣୀରେ ମାଡ଼ଖାଉଁ, ସେଇ କହୁଣୀକି ପୁଣି ଗୃହି ଗନ୍ଧ ଓ ଆନନ୍ଦ ଅନୁଭବ କରୁ । ତେବେକେଇ ହଉଁ ଯେ ଆମେ ନାଗର, ଆମେ ରସିକ । ଆମେ ଦୁଃଖେଇ ସାହୁଠାରୁ ବଳି ଯେ ମାଇଗୁଲିଆ ସେଥିରେ କିଛି ସନ୍ଦେହ ଅଛି କି ? ଯାହାହଉ ସେ କଥା ଆଉଥରେ କହିବି । ଖାଲି କହୁଥିଲି ଯେ ଆମଭଳି ଅଣଯୋଦ୍ଧା ଜାତଙ୍କ ମୁଣ୍ଡରେ ମଧ୍ୟ ଢୁକିଲାଣି— ଏ ଯୁଦ୍ଧ କପରି ବନ୍ଦ କରିବାକୁ ହବ । ଗୋଟାଏ ସଭା କୁଆଡ଼େ ହୋଇଥିଲା । ସେଥିରେ କ'ଣ ଗରମ ଗରମ କଥାବାର୍ତ୍ତା ମଧ୍ୟ ଚାଲିଥିଲା । ଶୁଣିଲେ ହସ ମାଡ଼େ । ଯୁ ଜାତି ଯୁଦ୍ଧକରି ବଞ୍ଚି ରହିଥିଲା, ଯୁ ଜାତିର ସୈନ୍ୟବଳ ପୃଥ୍ୱୀ ବିଜୟୀ ଗ୍ରୀକ୍ ସେନା ସାଙ୍ଗରେ ତାଳ ପକେଇବାକୁ ଟିକିଏ ହେଲେ ପଛେଇନଥିଲା, ଖଣ୍ଡା ମୁନରେ ଯୁ ଜାତି ଦ୍ୱିଲ୍ଲୀଠାରୁ କାମରୂପ ଯାଏ, ପାଟଳୀପୁତ୍ରଠାରୁ କାଞ୍ଚି ନଗରଯାଏ ଆତଙ୍କ ପକେଇ ଦେଇଥିଲା, ସେ ଜାତି ଆଜି ଅଣଯୋଦ୍ଧା । ଭାରତ ରାଜ୍ୟବାହିନୀରେ ତା'ର ନାମ ଗନ୍ଧ ମାତ୍ର ନାହିଁ । ସବୁ ପ୍ରକାର ଯୁଦ୍ଧରେ ତା'ର ହାରପଟ । ଯୁଦ୍ଧ କ'ଣ ସେ ଜାଣେନାହିଁ । ଯୁଦ୍ଧର ଖଣ୍ଡା ଝଣ୍ ଝଣ୍ ମଧ୍ୟ ତା କାନରେ ପଡ଼େନାହିଁ । ଅଥଚ ଏପରି ଗୋଟିଏ ନିରୀହ ଗୋବେଚାରା ଜାତିର ମୁଣ୍ଡ ବଥେଇଉଠୁଛି ଯୁଦ୍ଧ କପରି ବନ୍ଦ ହେବ ? ଯୁଦ୍ଧ କିଆଁ ବନ୍ଦ ହେବ ? ଯୁଦ୍ଧ କିଆଁ ହୁଏ ? ଯୁଦ୍ଧ କିଏ କରେ ? ଆମେ କହିବୁ, ନିଜ ଅଭିଜ୍ଞତାରୁ ନୁହେଁ, ନିଜର ପୋଥି ବାଇଗଣ ପୋଡ଼ା ମତଲବରୁ ଯେ ପେଟ ଦାଉରୁ ଯୁଦ୍ଧ ହୁଏ । ଯୁଦ୍ଧ କେବଳ ଅର୍ଥନୈତିକ କାରଣରୁ ଆସେ । ମହାଭାରତ ଯୁଦ୍ଧ ପଛରେ କେଉଁ ପେଟ କଥା ଥିଲା ? ଆଲେକ୍‌ଜାଣ୍ଡାର ପୃଥ୍ୱୀ ଜୟରେ କେଉଁ ଅର୍ଥନୈତିକ କାରଣ ଥିଲା ? ଜେରୁଜେଲମର ରକ୍ଷା ପଥରେ ଯେ ଶହ ଶହ ବର୍ଷ ବ୍ୟାପୀ ଯୁଦ୍ଧ ହୋଇଥିଲା କାହା ପେଟପୋଡ଼ା ଭଲ ହୋଇଥିଲା ? ବୁଅର ଯୁଦ୍ଧ, ଗଲା ଜର୍ମାନୀ ଯୁଦ୍ଧ, ଆଜିକାଲି ଜର୍ମାନୀ ଯୁଦ୍ଧ, ଏ ସବୁର ମୂଳରେ କ'ଣ ଖାଲି ଅର୍ଥନୀତି ? ଦୁଇଟା ଦେଶ ମଧ୍ୟରେ ଯୁଦ୍ଧର ଯେ କାରଣ, ଦୁଇ ପଡ଼ଶାଙ୍କ ଭିତରେ ମାଲି ମକଦ୍ଦମା, ଠେଙ୍ଗା ମାଡ଼ର ମୂଳରେ ମଧ୍ୟ ସେହି କାରଣ । ଟିକିଏ ପେଟ ଦାଉ, ବେଶୀ ଧର୍ମ, ଆହୁରି ବେଶୀ ବଂଶ ବଡ଼େଇ, ମାନବଡ଼େଇ ଏଇସବୁ ହେଲା ଯୁଦ୍ଧର କାରଣ । ତୁମେ କହିବ ଏଗୁଡ଼ାକ ମିଛ କଥା, ଅସଲ କଥା ପେଟଦାଉ । ତା ଗାଲୁ ମାରିବାକୁ କେହି କାହା ଧାଡ଼ିରେ ପାଲ ଖୁଣ୍ଟା ମାଡ଼ି ଦେଇନାହିଁ । କିନ୍ତୁ ଯାହା ହୋଇଯାଉଚ, ତା'ର ସତମିଛ ଗାଲୁରେ

ଲଢ଼ିଯିବ ନାହିଁ । ନେପୋଲିଅନଙ୍କର ଅଷ୍ଟ୍ରଲିଜ ଯୁଦ୍ଧ ଆତ୍ମରକ୍ଷା ବା ପେଟଦାଉ ପାଇଁ ହୋଇପାରିଥାଏ, କିନ୍ତୁ ତା'ପରେ ସ୍ପେନ୍‌ଠାରୁ ଆରମ୍ଭ କରି ରୁଷିଆ ବିଜୟ ପର୍ଯ୍ୟନ୍ତ କେଉଁ ପେଟଦାଉରୁ ହୋଇଥିଲା ? ଏପରିକି ଜର୍ମାନୀ, ଚେକୋସ୍ଲୋଭାକିଆ, ଅଷ୍ଟ୍ରିଆ, ଗ୍ରୀକ୍ ସବୁ ପାଇଥିଲା । କଥାବାର୍ତ୍ତା ଚଳେଇ ସାଲିସ୍‌ରେ ଡାନ୍‌ଜିଗ୍ ଓ କରିଡର ମଧ୍ୟ ପାଇଥାନ୍ତା । ଯଦି ହିଟ୍ଲର ଦାବି କରିଥିଲେ ତା'ର ପୂର୍ବ ଉପନିବେଶଗୁଡ଼ିକରୁ ମଧ୍ୟ କିଛି ହାତ କରିପାରିଥାନ୍ତା । ସେ ପନ୍ଥା ଛାଡ଼ି ସେ ଧାଁ କରି ଗୋଟାଏ ଲଢ଼େଇ ଲଗେଇ ଦେଲା, ସେ କାହିଁ ? ସେ ପେଟଦାଉ ସାଲିସ୍‌ରେ ମେଣ୍ଟିଥାନ୍ତା, ତା'ଲାଗି ଗୋଳା, ଗୁଳି ବୋମା, ହାବେଲିର ଦରକାର ହେଲା କାହିଁକି ? ପେଟଦାଉର ଛଳନା କରି ଖାଲି ଜିଦ୍, ଆଉ ଖାଲି ଅହଙ୍କାର, ସଂସାରଟାକୁ ଶ୍ମଶାନ ବନେଇବାର ଫିକର । ତା'ହେଲେ ଆମେ ଦେଖିଲୁଁ ଯୁଦ୍ଧ ଲାଗିବାର କାରଣ ହେଉଛି—(୧) ପେଟଦାଉ ବା ଅର୍ଥଚିନ୍ତା (୨) ଜାତି ଅଭିମାନ (୩) ଈର୍ଷା । ଏ ଭିତରେ ଆଉ ଗୋଟାଏ କଥା ରହିଗଲା । ସେ ହେଉଛି ନିଜ ମହିମା ବଜାୟ ରଖିବାର ଇଚ୍ଛା । ରାଜା ରାଜ୍ୟ ଶାସନ କରେ । ତା'ର ଇଚ୍ଛା ସବୁବେଳେ ଯେ, ସେ ନିଜ ଖୁସିରେ ରାଜ୍ୟ ଶାସିବ କିନ୍ତୁ ସେଥିରେ ଲୋକେ ରାଗିଯାଇପାରନ୍ତି, ଅସନ୍ତୁଷ୍ଟ ହୋଇପାରନ୍ତି; ରାଗିଯାଇ ଦେଶ ଭିତରେ ଗୋଟାଏ ବିବାଦ ଗୋଟାଏ ବିଦ୍ରୋହ ଲଗାଇ ଦେଇପାରନ୍ତି । ଯେ ଚାଲାକ ରାଜା, ସେ ଏହି ବିଦ୍ରୋହର ଗନ୍ଧ ପାଇଲାକ୍ଷଣି ଆଗରୁ ସାବଧାନ ହୋଇଯାଏ । ନିଜ କ୍ଷମତାରୁ ଟଳିହେଲେ ହାନି ହେବ ନାହିଁ, ଅଥଚ ଲୋକଙ୍କର ରାଗ ଅନ୍ୟଆଡ଼େ ଖେଳିଯିବ, ଏହି ଉପାୟ ସେ ଖୋଜି-ବସେ । ଆଉ ତା'ର ଉପାୟ ଆବହମାନ କାଳରୁ ଗୋଟିଏ ଯେ, ପର ସାଙ୍ଗରେ ଲଢ଼େଇ ଲଗେଇଦବା । ତ ପଡ଼ିଶା ରାଜ୍ୟ ଭିତରେ ଖେଣ୍ଟିଆ ଖେଣ୍ଟେଇ ସବୁବେଳେ ଟିକିଏ ଅଧେ ଲାଗିଥାଏ । ରାଜା ବା ଶାସକ ତାହାର ଉପରେ ଢୋଲକୁ ତାଳ କରି ମଶାକୁ ହାତୀ କରି, ଜାତି ନାଁରେ, ଦେଶର ମାନ ନାଁରେ ଲୋକଙ୍କୁ ଉଳୁଟେଇ ଦିଅନ୍ତି । କଥାକୁ ଅନ୍ୟଥା କରି, ମିଛକୁ ଟାଣିଓଟାରି, ସତ ବୋଲି ପ୍ରମାଣ କରି ଦେଖେଇ ଦିଅନ୍ତି ଯେ ତାଙ୍କ ଦେଶ ଭିତରେ ଯେତେ ଦୁଃଖ ଦୁର୍ଗତି, ସେସବୁ ଏହି ପଡ଼ିଶା ରାଜ୍ୟ-ମାନଙ୍କର ଅହଂକାର ଓ ସବଳିଆ ଶଠରୁ । ଲୋକଙ୍କ ମନ ତ ତେଜିଥାଏ; ସେମାନେ ଭଲମନ୍ଦ ବିଚାର କରିପାରନ୍ତି ନାହିଁ । ରାଜା ଓ ରାଜକର୍ମଚାରୀ ଯେତେବେଳେ ତାଙ୍କ ଦେଶର, ତାଙ୍କର ଖୁବ ବନ୍ଧୁ କୁଟୁମ୍ବ ବିରାଦର । ସେମାନଙ୍କ କଥାରେ ସେମାନଙ୍କର ବିଶ୍ୱାସ ହୁଏ । ବେଳକାଳ ଜାଣି କର୍ତ୍ତାମାନେ ପୁଣି ଶୁଣେଇଦିଅନ୍ତି ଯେ ଏ ଦେଶଟା କି ସେ ଦେଶଟା ଯେବେ ଆମେ ନେଇପାରିବା, ତା'ହେଲେ ଆମ ହାତରେ ବହୁତ ଧନଦଉଲତ ପଡ଼ିଯିବ । ଆମେ ଭଲ ସୁଖରେ ରହିବା । ଲୋକେ ଗଲେ ମାତି । ବେଳ-କାଳ ଜାଣି କର୍ତ୍ତାମାନେ ଗୋଟିଏ ଛୋଟ ସାମାନ୍ୟ କଥାକୁ ଧରି ଲଗେଇଦେଲେ ଲଢ଼େଇ । ମଲେ ତ ମରିବେ ଏଇ ଗରିବ ବାପୁଡ଼ା, ଯେତେ ମରିବେ ଦେଶ

ଭିତରେ ତାଙ୍କ ବିରୋଧରେ ବିଦ୍ରୋହ କରିବାକୁ ସେତେ କମ ଲୋକ ରହିବେ । ଲଢ଼େଇ ପାଇଁ ପଇସା ଦେବେ, ଏଇ ଗରିବ ଲୋକେ । ଲଢ଼େଇରେ ମରିବେ ଏଇ, ହନ୍ତସନ୍ତ ହେବେ ଏଇ । ରାଜା ବା ଶାସକମାନେ ମଝିରେ ବସି ବାଲିଆ ପିଟିବେ; ଭିତର ବିଦ୍ରୋହ ସରିଯିବ; ଆଉ ଯୁଦ୍ଧରେ ଯେବେ ଜିଦ୍ ହୋଇପାରିଲ, ତା'ହେଲେ ଆଉ ଗୋଟାଏ ଅଧେ ଦେଶ, ଆଉ କୋଟିଏ ଦି କୋଟି ଲୋକଙ୍କ ଉପରେ ହାକମି କରିବାର ସୁବିଧା ମିଳିଯିବ । ନାଇଁ ଯେବେ ଲଢ଼େଇରେ ହାରିଯିବାର ଦେଖିଲେଇଁ; ତା'ହେଲେ ଗୋଟାଏ ସନ୍ଧି କରି ପକେଇବା । ଟିକିଏ ମୁଣ୍ଡ ନୁଆଁଇଦେବା; ଯୁଦ୍ଧରେ କ୍ଷତିପୂରଣ କିଛି ଦେବାକୁ ଶତ୍ରୁ ପକ୍ଷରେ ରାଜି ହେଇଯିବା । ଆଉ କ୍ଷତିପୂରଣ ଟଙ୍କା ତ ଆମ ପାଣ୍ଠିରୁ ଆସୁନାହିଁ, ସେ ବି ପଡ଼ିବ ସେଇ ପ୍ରଜାଙ୍କ ଉପରେ । ସବୁ ଦିଗରୁ ଏଇ ଭଲ । ଇତାଲିର ଆବିସିନିଆଁ ଯୁଦ୍ଧ ଓ ଜର୍ମାନୀର ଏଇ ବର୍ତ୍ତମାନ ଯୁଦ୍ଧ ମୂଳରେ ଏଇ ଅଣ-ପୂରୁଜିଆ, ଅଣମଣିଷିଆ ରାକ୍ଷସୀ ନୀତି ବିରାଜିତ ରହିଛି । ଏକଚ୍ଛତ୍ର ଶାସକ ଏହି ନୀତି ନ ଧରିଲେ ବଞ୍ଚିପାରେ ନାହିଁ କି ଏକଚ୍ଛତ୍ର ଶାସନ ତିଷ୍ଟିପାରେ ନାହିଁ । ଅତଏବ, ଏ ମଧ୍ୟ-ଯୁଦ୍ଧର ଗୋଟାଏ କାରଣ, ବିଶେଷତଃ ବର୍ତ୍ତମାନ ଯୁଗରେ, ଆଗେ ରାଜାଙ୍କର ଏକଚ୍ଛତ୍ର ଶାସନରେ ବରଂ ଲୋକଙ୍କର ମନ ସେଥିପାଇଁ ସେତେ ବିଗିଡ଼ୁନଥିଲା । କାରଣ ଆଗେ ରଜାକୁ ଲୋକେ ଭକ୍ତି କରୁଥିଲେ । ଠିକ୍ ହେଉ, ଭୁଲ୍ ହେଉ, ସେମାନେ ଭାବୁଥିଲେ ରଜା ତାଙ୍କର ଦେବତା । ସେ ରାଜା ହବା ପାଇଁ ଜନ୍ମ ପାଇଛି, ରଜା ହବ, ପ୍ରଜାଙ୍କ ଉପରେ ହାକମ କରିବ, ଏ ବିଧାତା ଲିଖନ, ଏହା ତାଙ୍କ ବଂଶର ଦାବୀ । ଆଉ ପ୍ରଜାମାନେ ତାଙ୍କ ପାଖରେ ମୁଣ୍ଡନୁଆଁଇବା ତାଙ୍କର କର୍ତ୍ତବ୍ୟ ।

ସେ ଦିନ ଯାଇଛି । ଲୋକେ ବୁଝିଚନ୍ତି ସେ ରଜା ଦେବତା ନୁହେଁ, ରାଜ୍ୟ ଶାସନ କରିବାରେ ତା'ର କୌଣସି ମୌରସି ଦେବଦତ୍ତ ଅଧିକାର ନାହିଁ । ପ୍ରଜାର ଇଚ୍ଛାରେ ରାଜାର ଅସ୍ତିତ୍ୱ । ସେହି ହେତୁରୁ ରାଜୁତି ଆସ୍ତେ ଆସ୍ତେ ପୃଥିବୀରୁ ହଟିଯାଇଚି । ତା ସ୍ଥାନରେ ପ୍ରଜାଛତ୍ର ଶାସନ ବସୁଚି । କିନ୍ତୁ ଯେଗୁଡ଼ିକ ପ୍ରକୃତରେ ପ୍ରଜାଛତ୍ର ହେଉନାହିଁ, ହଉଚି ପ୍ରଜାଯନ୍ତ୍ର । ଆଜିକାଲି ସବୁ ପ୍ରଜାଯନ୍ତ୍ର ଦେଶରେ ଶାସନର ଭାର ରହିଛି ପୁଞ୍ଜିବାଲାଙ୍କ ହାତରେ । ସେମାନେ ସେମାନଙ୍କ ବ୍ୟବସାୟ ବାଣିଜ୍ୟର ସୁବିଧା ଦୃଷ୍ଟିରୁ ନିଜ ନିଜର ଲୋକ ରଖି ଶାସନ ଚଳାଉଚନ୍ତି । ଆଗେ ରଜା ଧନୀ ନିର୍ଦ୍ଧନ ସମସ୍ତଙ୍କୁ ଶୋଷୁଥିଲେ । ଏବେ ଏ ପ୍ରଜାଯନ୍ତ୍ର ଶାସନରେ ଧନୀ ପୁଞ୍ଜିବାଲାମାନେ ଜଗତକୁ ଶୋଷିବା ପାଇଁ ଗରିବ ମୂଲିଆ ପ୍ରଜାକୁ ଯନ୍ତ୍ର ପରି କରିଚନ୍ତି । ଯନ୍ତ୍ରରୁ କାମ ନବାପାଇଁ ହେଲେ ଯେପରି ବେଳେବେଳେ ତାକୁ ମାଜିମୁଜି ଶାଣ ଦେଇ ଚକ୍‌ଚକ୍ କରିବାକୁ ପଡ଼େ, ତା ଦେହରେ ତେଲ ବା କାଣ୍ଟି ଲଗାଇ ଯେପରି ତାକୁ ସାଇତିଲିଆ କରିବାକୁ ହୁଏ, ସେହିପରି ଏ ପୁଞ୍ଜିବାଦୀମାନେ ସେହିମାନଙ୍କ ସୁବିଧା ଦୃଷ୍ଟିରୁ ମୂଲିଆ ପ୍ରଜାମାନଙ୍କୁ ମୁଠେ ଭଲ କରି ଖାଇବାର ଓ ଖଣ୍ଡେ ଭଲ କରି ପିନ୍ଧିବାର ସୁବିଧା

ବେଳେବେଳେ ଦେଉଚନ୍ତି ସିନା, ଆଉ ଏଣେ କହି ବୋଲୁଛନ୍ତି, "ଆମେ ମୂଲିଆଙ୍କ ପାଇଁ, ପ୍ରଜାଙ୍କ ପାଇଁ ଇମିତି ସ୍ୱର୍ଗ ଗଢ଼ିବୁଁ, ଏପରି ଛତ୍ରୀ ଉଠାଣ କରିବୁଁ ।" ପ୍ରଜା ସନ୍ତୁଷ୍ଟ ହେଉଛି, ପୁଞ୍ଜିବାଲାମାନେ ସନ୍ତୁଷ୍ଟ ହେଉଛନ୍ତି । ପ୍ରଜାତନ୍ତ୍ରର ମହିମା ବାଟରେ ଘାଟରେ ଡବ ଡବ ବାଜିଯାଉଚି । କିନ୍ତୁ ଏମିତି ବେଳ ପଡ଼ିଯାଉଚି, ଯେତେବେଳେ ଏ ପ୍ରଜା-ଗୁଡ଼ାକ ଅସଲ କଥା ଠଉରେଇ ପାରୁଚନ୍ତି । ବୁଝିପାରୁଚନ୍ତି ଯେ ସେମାନେ ପୁଞ୍ଜିବାଲାଙ୍କ ପାଣି ବଢ଼ାଇବାର କଳ ମାତ୍ର, ଦୁହିଁଆର ଖାଲ । କଂଟେଇ ବେଶୀ ଲାଭ ଆଶାରେ ତା ଛେଳିଟିକି ବା ଗୋରୁଟିକି ସିମିତି ଖାଇବାକୁ ପିଇବାକୁ ଦେଇ ମୋଟା ମୋଟି କରି ରଖେ, ତା ଛୁଗ୍ରିଟିକି ସିମିତି ଘସି ମାଜି ସଜେଇ ପୂଜେଇ ରଖେ, ସେମାନେ ସେହିପରି ଅଛନ୍ତି ମାତ୍ର । ସେ ଯେତେବେଳେ ଏ କଥା ବୁଝିପାରେ, ଗର୍ଜନ କରି ଉଠେ, ମେଦିନୀ କମ୍ପେଇଦିଏ । ପୁଞ୍ଜିବାଲାମାନେ ଏ ଗର୍ଜନକୁ ବନ୍ଦ କରିବା ପାଇଁ ଖଣ୍ଡେ ଅଧେ ଅଇଁଠା ମାଉଁସ କି ରୁଟି ତା' ମୁହଁକୁ ଫୋପାଡ଼ି ଦିଅନ୍ତି । ଖେଙ୍କାଳ କୁକୁର ତାକୁ ଗାଉଁ କରି ଗିଳିଦିଏ । ପେଟ ଦାଉ ଟିକିଏ ସମ୍ଭାଳି ପଡ଼ିଗଲେ ସେ ବି କିଛି ସମୟ ପାଇଁ ଶୋଇ-ପଡ଼େ । ଯୁଠେଇଁ କିନ୍ତୁ ପୁଞ୍ଜିବାଲାମାନେ ଦେଖନ୍ତି ଯେ ଏ ମାଉଁସ ଖଣ୍ଡିକରେ କି ରୁଟି ଖଣ୍ଡିକରେ କାମ ହେଉନାହିଁ, ସେଠି ସେମାନେ ପ୍ରଜାତନ୍ତ୍ରର ଛଳନା ଛାଡ଼ି ଏକଛତ୍ର ଶାସନ ବସେଇଦିଅନ୍ତି ।

ଶାସନର ହୁକୁମ ହେଲା, ଆଇନ୍ କାନୁନ୍, ବେଦ ପୁରାଣ ମାନିବାକୁ ପଡ଼ିବ । ନ ମାନିଲେ, କି ତାକୁ ବାଛି ବିଚାରି ବସିଲେ ହାକିମଙ୍କ ମୁଣ୍ଡହଲା ସାଙ୍ଗେ ସାଙ୍ଗେ ତୁମ ମୁଣ୍ଡଟି ଛିଡ଼ି ପଡ଼ିବ । ଇଲେ ସଂସାରରେ ଏକ କଥା, ଏକ ଖେଳ ହିଁ ଚାଲିଚି । ଫ୍ରାନ୍ସ ବିଲାତ ଓ ଆମେରିକାରେ ପ୍ରଜାତନ୍ତ୍ର ଶାସନ ଆଡ଼ ପୁଞ୍ଜିବାଲାଙ୍କର ଶିକାର ଖେଳ, ଜର୍ମାନୀ, ଇଟାଲୀ, ଦକ୍ଷିଣ ଆମେରିକାର ଅଧିକାଂଶ ରାଜ୍ୟ, ସ୍ପେନ୍, ଜାପାନ୍ ଇତ୍ୟାଦିରେ ଏକଛତ୍ର ଶାସନ, ଆଉ ପୁଞ୍ଜିବାଦୀମାନଙ୍କର ଛକା ପଂଝା ପୋ ବାର । ବେଳେବେଳେ ଅବଶ୍ୟ ପୁଞ୍ଜିବାଲାମାନଙ୍କର ଏ ଫିସାଦ ଖାଟୁ ନାହିଁ । ପ୍ରଜା ସବୁ ଲୋଭ, ସବୁ ପ୍ରଲୋଭନ ଛାଡ଼ି ଗୋଟାଏ ଦି'ଟା ଖିଆଲିଆଙ୍କ ସୁଖସ୍ୱପ୍ନରେ ଭୁଲିଯାଇ ପୁଞ୍ଜିବାଦର ଟୋଟି ଚିପି ମାରି ଦେଉଚନ୍ତି; ଯେତେବେଳେ ସ୍ୱପ୍ନର ଜୋର୍ ଭାଙ୍ଗି ଯାଉଚି, ସେମାନେ ଆଖି ମେଲେଇ ଚାହୁଁଚନ୍ତି, ସେତେବେଳେ ସେମାନେ ଦେଖୁଚନ୍ତି ପୁଣି ଜଣେ କିଏ ରଜା ହୋଇ ବସିଲାଣି । ତା' ପଛରେ ଗଦାଏ ସୈନ୍ୟ, ଆଉ ସେ ସୈନ୍ୟଙ୍କ ହାତରେ ମୁକୁଲା ତରବାରି ଝଟକୁଚି । ସେ ରଜା କହୁଚି, ମୋର ଖିଆଲ ଅନୁସାରେ ମୁଁ ଏ ହୁକୁମ ଦେଉଚି, ମତେ ଦେବତା କି ସଇତାନ ଏଇ କଥା ସ୍ୱପ୍ନରେ କହୁଚନ୍ତି, ତୁମକୁ ମାନିବାକୁ ପଡ଼ିବ, ନ ମାନିବ ତ ମୁଣ୍ଡ କାଟ ହେବ—ତାଙ୍କ ପଛରୁ ମୁକୁଳା ଖଣ୍ଡା ଝଣ ଝଣ ହୋଇ ବାଜି ଉଠୁଚି, ଗରିବ ପ୍ରଜା ମୁଣ୍ଡ ପୋତି ପୁଣି ତା'ର ହାଡ଼ଭଙ୍ଗା କାମରେ ଲାଗିଯାଉଚି । ରଜା କହୁଚନ୍ତି, ଏସବୁ ହେଉଚି ପ୍ରଜାଙ୍କ ପାଇଁ, ଆଉ ପ୍ରଜାର ଅର୍ଥ—ଯେ ମତେ ସାହାଯ୍ୟ

କରୁଚନ୍ତି ଯାହାଙ୍କ ପାଖରେ ମୋର ବାଲବଲେଇବା ମଧ୍ୟ ବେଦ । ଯେଉଁମାନେ ଏହା ନ କରୁଚନ୍ତି, ସେମାନେ ଦେଶ ଭିତରେ ସଂଖ୍ୟାରେ ବେଶୀ ହେଲେ ମଧ୍ୟ ପ୍ରଜା ନୁହଁନ୍ତି । ଦୁଃଖଶୋକରେ, ହାହାକାରରେ ସେମାନେ ମୋ'ଠାରୁ ବା ମୋ ରାଜ୍ୟଠାରୁ କୌଣସି ପ୍ରକାର ପ୍ରତିକାର କି ସାହାଯ୍ୟ ଆଶା କରି ନ ପାରନ୍ତି, ଯାଇ ମଧ୍ୟ ନ ପାରନ୍ତି, ଏଇ ହେଲା ରୁଷିଆର ବଲସେଭି ନୀତି, ଆଉ ଏଇ ନୀତିର ଶାସକ ହେଲେ ରୁଷିଆର ଏକଛତ୍ର ରାଜା ଷ୍ଟାଲିନ୍ । ଲୋକେ କହୁଥିଲେ ବଲସେଭିମାନଙ୍କର ସାମ୍ରାଜ୍ୟବାଦ ବା ପୁଞ୍ଜିବାଦ ସାଙ୍ଗରେ କିଛି କରିବାର ନାହିଁ । ସେମାନେ ଏହାର ବିରୋଧୀ, ଏ କଥାକୁ ଘୃଣା କରନ୍ତି, ସେ ସ୍ୱପ୍ନ ବର୍ତ୍ତମାନ ଭାଙ୍ଗିଯାଇଚି, ଯୁଦ୍ଧ ଆରମ୍ଭ ହେଉ ନ ହେଉଣୁ ରୁଷିଆ, ପୋଲଣ୍ଡକୁ ପୁଣି, ଇସ୍ତୋନିଆକୁ ପୁଣି ଗ୍ରାସ କରି ପକାଇ ବସିଲାଣି । ପଞ୍ଚାଏ ଗାଲୁଆ ଅଛନ୍ତି, ସେ କହିବେ ଏ କ'ଣ ସାମ୍ରାଜ୍ୟ ଲୋଭ କି ? ସ୍ୱେ ଖାଲି ବଲସେଭି ନୀତିର ପ୍ରସାର ଆଉ ପ୍ରଚାର ନା !!! ଜୋର୍‌ଜବରଦସ୍ତି ପରରାଜ୍ୟ ଛଡ଼େଇ ନେଇ ନିଜ ରାଜ୍ୟ ଭିତରେ ପୁରାଇବା ଯେବେ ସାମ୍ରାଜ୍ୟ ଲୋଭ ନୁହେଁ, ତେବେ ଆଉ କ'ଣ ?

ଏସବୁ ବାଦବିବାଦ ଭିତରେ ଗୋଟାଏ କଥା ପରିଷ୍କାର କରି ବୁଝି ହଉଚି— ସେଇଟା ହଉଚି, ପ୍ରଜାଯନ୍ତ୍ର ଯେପରି ଶେଷରେ ପୁଞ୍ଜିବାଲାମାନଙ୍କର ଏକଛତ୍ର ଶାସନରେ ପଡ଼ିଯାଏ, ବଲସେଭି ଯନ୍ତ୍ର ମଧ୍ୟ ସେହିପରି ଏକଛତ୍ର ଶାସନରେ ପଡ଼ିଯାଏ । ହବା ସ୍ୱାଭାବିକ, ଯେ ପର୍ଯ୍ୟନ୍ତ କେନ୍ଦ୍ରୀଭୂତ ଶାସନ ରହିଛି, ସେ ପର୍ଯ୍ୟନ୍ତ ଲୋକଙ୍କର ନିଛକ ସ୍ୱାଧୀନତା ଆସିପାରେନାହିଁ । ଶାସନର କ୍ଷମତା ଯେତିକି ଲୋକମାନଙ୍କ ଭିତରେ ସାରା ଦେଶରେ ବାଣ୍ଟିହୋଇଯିବ, ଲୋକଙ୍କର ସ୍ୱାଧୀନତା ସେତିକି ବଢ଼ିବ । ଶାସନ ଯେତିକି ଗୋଟାଏ କେନ୍ଦ୍ର ଜାଗାରେ, ଗୋଟାଏ ଗୋଷ୍ଠୀର ଲୋକଙ୍କ ଭିତରେ ବନ୍ଦ ହୋଇ ରହିବ, ଲୋକଙ୍କର ସ୍ୱାଧୀନତା ସେହି ପରିମାଣରେ କମିଯିବ । ତୁମେ ପଞ୍ଚାଏ ଲୋକଙ୍କ ଭିତରେ ବା ଗୋଟାଏ ଲୋକର ହାତରେ ଯେବେ ଶାସନଭାର ଦିଅ, ତା' ହେଲେ ସେମାନଙ୍କ କ୍ଷମତାଲୋଭ ସେତିକି ବଢ଼ିବ । ସେମାନେ ନିଜ ଦେଶୀ ଲୋକଙ୍କୁ ଚପି ପୁଣି ବିଦେଶୀ ଲୋକଙ୍କୁ ଚପିବାକୁ ଆରମ୍ଭ କରିବେ । ଅତଏବ, ଯୁଦ୍ଧ ଲାଗିବ ନିଶ୍ଚୟ, ଅତଏବ ଆମ୍ଭେମାନେ ଦେଖିଲୁ ଯେ, ଏକଛତ୍ର ଶାସନରେ ଡାଙ୍ଗିଯାଇଚି ଏଇ ଯେ ପ୍ରଜାତନ୍ତ୍ର ଶାସନ, ଏ ମଧ୍ୟ ଯୁଦ୍ଧର ଗୋଟାଏ କାରଣ, ଅର୍ଥାତ ଚତୁର୍ଥ କାରଣ, ଆଉ ସବୁ ଛୋଟଖାଟ୍ କାରଣ ତ ଅନେକ ଅଛି । ସେସବୁ ଗୋଟି ଗୋଟି କରି ପରଖିବାକୁ ଗଲେ ଗୋଟାଏ ମହାଭାରତ ହବ । ତା'ପାଇଁ ସମ୍ପାଦକଙ୍କର ଜାଗା ନାହିଁ କି, ପାଠକଙ୍କର ଧୈର୍ଯ୍ୟ ନାହିଁ । ଅତଏବ ଏ ବିଷୟରେ ଏଇଠି ଡୋରିବନ୍ଧା ।

ବର୍ତ୍ତମାନ କଥା ହଉଚି, ଯୁଦ୍ଧ ତ ସିନା ଲାଗି ହେଲା; ଏ ଯୁଦ୍ଧ ଆଉ କମିତ ଆଗକୁ ନହେବ ତା'ର ଉପାୟ କ'ଣ ? ବଳି ଦେଲେ କି ପୂଜା କଲେ ରଣଚଣ୍ଡୀ ଆଉ

ମାନିବେ ନାହିଁ, ନିଜ ଦେଉଳରେ ପଥରପାଲଟି ବସି ରହିବେ ? ଯୁଦ୍ଧ ବନ୍ଦ ହେବା ଲାଗି ଯେତେସାଧ୍ୟ ଉପାୟ ଲୋକେ ଭାବିଚନ୍ତି, ତା ଭିତରେ ଜାତିଆଣ ସଙ୍ଘ (League of Nations)ର ପ୍ରତିଷ୍ଠା ଓ ସମୁଦାୟ ସଂସାରରେ ଅସ୍ତ୍ରଶସ୍ତ୍ରର ଯନ୍ତ୍ର ସମ୍ପାଦନ (Universal Disarmament) ଏଇ ଦୁଇଟି ସର୍ବପ୍ରଧାନ । ଆଉ ତ ଅନେକ ନୂଆ ନୂଆ ପନ୍ଥା ଅଛି । ସେସବୁ କେହି କେବେ କାମରେ ପରିଣତ କରିବାର ଚେଷ୍ଟା କରି-ନାହିଁ । ଏ ଦୁଇଟି ପନ୍ଥା ଲୋକେ ସବୁଠାରୁ ବେଶୀ ସଂଭବ ବୋଲି କହନ୍ତି ଓ ସେଇଥି-ପାଇଁ ଏ ଦୁଇଟିର ଗୋଟାଏ ଉଦ୍ୟମ କିଛି ବର୍ଷ ପାଇଁ କରାଯାଇଥିଲା । ମାତ୍ର ସେ ଉଦ୍ୟମ ନିଷ୍ଫଳ ହୋଇଚି । ଏ ଯୁଦ୍ଧ ଲାଗିଲା ପରେ ପୁଣି ଜାତିଆଣ ସଙ୍ଘକୁ ଆହୁରି ଜୋରଦାର୍ କରି ଗଢ଼ିବା ପାଇଁ ଏବଂ ସମୁଦାୟ ପୃଥିବୀକୁ ନିରସ୍ତ୍ର କରିବାର କଳ୍ପନା ଜଳ୍ପନା ଅନେକ ଜାଗାରେ, ଅନେକ ମୁହଁରେ ଶୁଣାଯାଉଚି । ଏସବୁ ଉଦ୍ୟମ ସଫଳ ହେବ କି ନାହିଁ, ତା'ର ନିଷ୍ପତ୍ତି ଯୁଦ୍ଧର ଏହି ମୂଳ କାରଣର ସୁବିଚାରରୁ ଜଣାପଡ଼ିବ ।

ପ୍ରଥମରେ ଦେଖାଯାଉ ଜାତିଆଣ ସଙ୍ଘର କଥା । ଏହାକୁ ମୂଳ ହିସାବରେ ବୁଝିବାକୁ ହବ । ପହିଲେ ପେଟ ଦାଉ ବା ଅର୍ଥନୀତିର ଦାଉରୁ । ଧର ଗୋଟାଏ ଜାତିଆଣ ସଙ୍ଘ ରହିଲା । ସେଥିରେ ଛୋଟ ବଡ଼ ସବୁ ଜାତି ସବୁଦେଶ ସଭ୍ୟ ରହିଲେ । ସେମାନେ ମାନିଗଲେ ଯେ ଜାତିଆଣ ସଙ୍ଘ ଯାହା କରିବ ସେହିକଥା ହବ ସାର, ଆଉ ସମସ୍ତେ ତାକୁ ମାନିବେ । ଏ ଛୋଟବଡ଼ ରାଜ୍ୟ ଭିତରେ ଇମିତି ରାଜ୍ୟ ଅଛନ୍ତି, ଯାହାଙ୍କର ମହିମା ସୂର୍ଯ୍ୟକିରଣ ସଙ୍ଗରେ ବ୍ୟାପି ରହିଚି । ପୃଥିବୀର ଚାରିଆଡ଼େ ଛାଇପଡ଼ିଚି । ଆଉ ଇମିତି ରାଜ୍ୟ ମଧ୍ୟ ରହିବେ ଯାହାଙ୍କର ନାଁ ପାଖ ପଡ଼ୋଶୀ ରାଜ୍ୟ କେତୋଟା ଛଡ଼ା ଆଉ କେହି ଜାଣନ୍ତି ନାହିଁ । ଯେପରି ଏସ୍ତୋନିଆ, ଆଲ୍ବେନିଆ ଇତ୍ୟାଦି । କେତେବଡ଼ ଶକ୍ତିଶାଳୀ ରାଜା ମଧ୍ୟ ଅଛନ୍ତି । ଯେଉଁମାନଙ୍କର କି ଉପନିବେଶ ଇତ୍ୟାଦି କିଛି ନାହିଁ । ଏଇ ଛୋଟ ବା ଅଣ ଉପନିବେଶିଆ ରାଜ୍ୟମାନଙ୍କରେ ଲୋକସଂଖ୍ୟା ବଢ଼ୁଚି ଓ ବଢ଼ିବ । ଜମି ରହିଚି ସମାନ । ଅଥଚ ଲୋକେ ଯାଉଚନ୍ତି ବଢ଼ି । ଏ ସବୁ ଖାଇବେ କ'ଣ ? ବିଦେଶକୁ ଯିବେ ରୋଜଗାର କରି । କିନ୍ତୁ ବିଦେଶରେ ତାଙ୍କ ନିଜ ଦେଶର ଲୋକଙ୍କ ପାଟିରୁ ଯାହା ବଳିବ, ତା' ସିନା ଏମାନେ ପାଇବେ । ଆଉ ବଳିବ ବା କାହୁଁ ? ପଇସା ଅଣ୍ଟେ କାହାକୁ ? କିଏ ପାଞ୍ଚ ପଚିଶି ପାଇ ସନ୍ତୁଷ୍ଟ ହୋଇ ରହିଲାଣି ? ଏଇ ଦେଶ ବା ଆମର ଓଡ଼ିଆ ଜାତି ଓ ବିହାର ଜାତି । ଧର୍ମ ହିସାବରେ ଏମାନେ ଏକ, ମୌଳିକ ନୀତି ହିସାବରେ ଏମାନେ ଏକ, ଭାଷା ବିଷୟରେ ମଧ୍ୟ ଅଳ୍ପକିଛି ବାଦ୍ ଦେଲେ ଏମାନେ ଏକ । ଉଭୟ ଦେଶରେ ଏକ କଂଗ୍ରେସ ସରକାର ଚାଲୁଚି । ଉଭୟେ ଏକ ଜାତିଆଣ ସଙ୍ଘର ମେମ୍ବର । କିନ୍ତୁ ବିହାରୀମାନେ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଛନ୍ତି—ସବୁ କ୍ଷେତ୍ରରେ ଓଡ଼ିଆମାନଙ୍କ ନାସ୍ତାନାବୁଦ କରିବାକୁ । ଖାଲି ତାଙ୍କ ସରକାରଙ୍କ ଅଧୀନରେ ନୁହେଁ, ତାଙ୍କ ଅଧୀନରେ ଦେଶ ଭିତରେ କଳକାରଖାନା ଚଳାଇବା ପାଇଁ ମଧ୍ୟ ଆଗେ

ବିଦ୍ୱାସୀ ଦରକାର । ଓଡ଼ିଆ ଦୁର୍ବଳ ଜାତି, କାଙ୍ଗାଳ ଜାତି । ସ୍ୱାଙ୍କର ଅଭାବ ଅନେକ । ତାହାର ଉପର ଭୁଇଁ, ବିଦ୍ୱାସୀମାନେ ପଇସାବାଲା । ତଥାପି ସେମାନଙ୍କର ସୃଜନର ବାକିର, ଅର୍ଥନୈତିକର ଆଗ ଦରକାର । ମହାଭାରତୀୟତାର ନିଦର୍ଶନ ତ ଏଇ, ଜାତିଆଣ ସଙ୍ଘର ସଭ୍ୟ ହବାର ଫଳ ତ ଏଇ ! ତା'ହେଲେ ଏ ଜାତିଆଣ ସଙ୍ଘରେ କି ଫଳ ହେଲା ? ଯେ ଶ୍ରେଷ୍ଠ ଜାତି, ଯେ ଅଣଉପନିବେଶିଆ ଜାତି, ତା'ର ବଳକା ଲୋକଙ୍କ ପାଇଁ ରାଜ୍ୟ ଚାହି, ତା'ର ବଳକା ପେଟଗୁଡ଼ିକ ପାଇଁ ଦାନା ଚାହି, ତା'ର କ୍ଷୁଦ୍ର ଓ ସାମାନ୍ୟ ବଳରେ ଯୁ ଜିନିଷଗୁଡ଼ିକ ଉତ୍ପାଦିତ, ତା ପାଇଁ ବଜାର ଚାହି, ବିଦେଶରୁ ଶସ୍ତା ଦରରେ କଞ୍ଚାମାଲ କିଣିବାକୁ ତା'ର ସୁବିଧା ଚାହି, ସ୍ୱାଙ୍କୁ କିଏ ଦବ ? ତୁମେ କହିବ ଜାତିଆଣ ସଙ୍ଘ ପୃଥିବୀ ବଜାରରେ ସମସ୍ତଙ୍କୁ ସମାନ ଅଧିକାର ଦିଏ, ତା' ମାନେ ଅର୍ଥନୀତିର ମେଲାଦୁଆର ପ୍ରଥା **(Laisser Faire)**, ଏ ନୀତି ତ ବଡ଼ବଡ଼ିଆଙ୍କର, ତାଙ୍କର ସୁବିଧା ପାଇଁ । ଏହାର ମୂଳ କଥା ହେଲା, ଯେ ପାରିଲା ସେ ମାରିନେଲା । ଯେ ଶ୍ରେଷ୍ଠ ସେ ଦ୍ୱନ୍ଦ୍ୱରେ ପାରିବ ନାହିଁ । ଅତଏବ ମରିବ, ଭୋକରେ, ପେଟ ଦାଉରେ । ଶାହାଣ ମେଲାବେଳେ ଯେ ଜୋର୍‌ଦାର, ଯିଏ ପଇସାବାଲା ସେ ଠେଲିପେଲି ହେଇ-ଗଲେ, ଦେଖିଲେ, ଫେରିଲେ ଯେ ଦୁର୍ବଳିଆ, ଯେ ଲୁଗୁରପୁଗୁରିଆ, ଯେ ଗରିବ ସେ ପଛରିହଲେ, ଦୂରରୁ ଦେଖି ହନ୍ତସନ୍ତ ହେଲେ । ଏ ହନ୍ତସନ୍ତ ସେମାନେ କେତେଦିନ ସହିବେ ? ତାଙ୍କର ରାଜ୍ୟ ଅଛୁ, ତାଙ୍କର ପ୍ରଜା ଅଛନ୍ତି । ପ୍ରଜା ଅସନ୍ତୁଷ୍ଟ ହେବେ । ସେମାନେ ମାତିବେ ଉଠି । ଲାଗିଯିବ ପୁଣି ଯୁଦ୍ଧ । ଯଦି ଏମିତି କୌଣସି ଜାତିଆଣ ସଙ୍ଘ ଗଢ଼ାଯାଇପାରେ ଯେ କି ଦୁର୍ବଳଙ୍କୁ ପ୍ରବଳଙ୍କ ସାଙ୍ଗରେ ଠୋକର ଦେଇ ଚଳିପାରିବା ଭଳି ସୁବିଧା ଓ ସହଯୋଗ ଦେଇପାରିବ, ଯେ କି ପ୍ରବଳ ଦାଉରୁ ଦୁର୍ବଳକୁ ରକ୍ଷି-ପାରିବ—ଯେବେ ସବଳ ଜାତିମାନେ ଦୁର୍ବଳ ଜାତିର ମଙ୍ଗଳ ଓ ଉପକାର ପାଇଁ ନିଜର ଅଧିକା ସ୍ୱାର୍ଥଟିକ ବଳିଦେବା ପାଇଁ ରାଜିହେବେ ଏବଂ ସେମାନଙ୍କ ନିଜ ଦେଶର ବଡ଼ ବଡ଼ ବ୍ୟବସାୟୀମାନଙ୍କ ଉପରେ କଟକଣା କରି କ୍ଷୁଦ୍ରଜାତିର ବ୍ୟବସାୟୀମାନଙ୍କୁ ପୃଥିବୀ ବଜାରରେ ଦର ଲଢ଼େଇରେ ଟେକି ରହିବା ପାଇଁ ସୁବିଧା ଦେବେ, ତା'ହେଲେ ଅର୍ଥନୀତି ଦୃଷ୍ଟିରୁ ଏଇ ଜାତିଆଣ ସଙ୍ଘ ସଫଳ ହୋଇପାରେ । ତା'ମାନେ ଆଜିକାଲି ଭାରତୀୟ ଅର୍ଥନୀତିରେ ମୁସଲମାନ ଓ ହରିଜନମାନେ ଯେଉଁ ବିଶେଷ ସୁବିଧା ଦାବୀ କରୁଛନ୍ତି ମାଫ ପାଉନାହାନ୍ତି, ସେହି ବିଶେଷ ସୁବିଧା ପୃଥିବୀ ଜାତିଆଣ ସଙ୍ଘରେ ସବୁ ଶ୍ରେଷ୍ଠ ଜାତିକୁ ଦବାକୁ ପଡ଼ିବ । ଏ କିପରି କଷ୍ଟକର । ପ୍ରାୟ ଅସମ୍ଭବ କଥା, ଏହା ଭାରତୀୟମାନଙ୍କର ଅନ୍ତତଃ ବୁଝିବାରେ ବିଶେଷ କିଛି କଷ୍ଟ ନ ହେବା ଉଚିତ ।

ଦ୍ୱିତୀୟରେ ଜାତି ଅଭିମାନ; ଏ ପର୍ଯ୍ୟନ୍ତ ପୃଥିବୀଟା ଚାଲିଆସିଚି ଏଇ ଜାତି ଅଭିମାନ, ଜାତୀୟତା ବା ଜାତି ପ୍ରେମରେ, ଏତେଦିନଧରି ଜାତିଆଣ ସଙ୍ଘ ବସିଥିଲେ ମଧ୍ୟ, ମହାଜାତୀୟତା ବିଷୟରେ ଏତେ ବକ୍ତୃତା ଝଙ୍କାର, କବିତା ଟଙ୍କାର, ଧର୍ମ

ଓଁକାର ହୋଇଯାଇଥିଲେ ମଧ୍ୟ ଆଜି ସ୍ୱଦେଶୀ ପ୍ରେମୀହିଁ ପୃଥିବୀରେ ବଡ଼ । ଯେଉଁମାନେ ମହାଜାତୀୟତାର ମନ୍ତ୍ର ଅକାଳେ ସକାଳେ, ସକାଳେ ବିକାଳେ କହି ଗାଇ ଧାଉଁ ବୁଲୁଚନ୍ତି, ସେହିମାନେ ମୋ ବଙ୍ଗଳା, ମୋ ବିହାର ବୋଲି ସମ୍ମୁଖ ହୋଇ ରହୁଛନ୍ତି । ମୋ ଜାତିର ଟେକ ରଖିବାକୁ ହବ; ତା'ଲାଗି ଦରକାର ପଡ଼ିଲେ ମହାଭାରତୀୟ ଜାତିଆଣ ସଭାକୁ ବମ୍ବେଇ ବନ୍ଦରରେ, ନ ହେଲେ କଲିକତା କାଳୀଘାଟରେ ଚୋଟି ଚପି ବୁଡେଇଦବାକୁ ପଡ଼ିବ । ମୋ ବିହାର ଜିନ୍ଦାବାଦ୍, ବିହାର ସବୁ ନବ । ବିହାରୀ ହେଲେ ସବୁଠାରୁ ବଡ଼ । ଏ ଜାତିକୁ ଏ ଦେଶଟାକୁ ଭାରତର ଛାତିରେ ମଧ୍ୟମଣି କରି ବସାଇବାକୁ ହବ । ତା'ଲାଗି ନ୍ୟାୟ, ଧର୍ମ, ସତ୍ୟ, ଯୁକ୍ତି ସବୁ ତର୍ପଣ କରି ଭସାଇ-ଦବାକୁ ତିଆରି ଅଛୁଁ । ଏଇ ହେଲା ଦେଶପ୍ରୀତି, ଏଇ ହେଲା ଜାତିପ୍ରୀତି । ଏଇଥିଲାଗି ଲକ୍ଷଲକ୍ଷ ଲୋକଙ୍କର ପଇସାରେ, ଆଶୀର୍ବାଦରେ ଓ ଉତ୍ସାହରେ ଗଢ଼ା ଭାରତର ଏ ଜାତିଆଣ ସଭା କୌଣସି ଆନ୍ତ୍ରୁ ଶ୍ରଦ୍ଧା ଓ ସମ୍ମାନ ପାଇପାରୁନାହିଁ । ଏଇଥିଲାଗି ତା'ର ଲକ୍ଷ୍ୟଠାରୁ ସେ ଏତେ ଦୂରରେ ପଡ଼ିରହିଛି । ଏଇଥିଲାଗି ତା'ର କଥା, ତା'ର ନିର୍ଦ୍ଦେଶ, ତା'ର କାମନା କାହାରିକୁ ଡରେଇପାରୁନାହିଁ, ସନ୍ତୁଷ୍ଟ କରିପାରୁନାହିଁ । ପୃଥିବୀ ଜାତିଆଣ ସଭାରେ ଠିକ୍ ଏଇକଥାଟି ହବ । ସବୁଦେଶ ନିଜପାଇଁ ଠିଆ ହେବେ, ନିଜ କଥାଟି ରହିବା ପାଇଁ, ନିଜ ମାନମର୍ଯ୍ୟାଦାରେ ବାଧା ନପଡ଼ିବା ପାଇଁ, ସେମାନେ ଛଳେ, ବଳେ, କୌଶଳେ ଅନ୍ୟ ଜାତିକୁ ମାଡ଼ି ଦଳି ଚାଲିଯିବେ । ଜାତିଆଣ ସଭା ଗ୍ରୁଁ ଗ୍ରୁଁ ଭାଙ୍ଗିଯିବ । ଠିକ୍ ଏହି କାରଣରୁ ଗତ ଜାତିଆଣ ସଭାକୁ ଜର୍ମାନୀ, ଇଟାଲୀ ଓ ଜାପାନ ହସରେ ଉଡ଼ାଇଦେଇଚନ୍ତି । ତା'ର ଧମକ, ଚମକ ଓ ଗର୍ଜନକୁ ଖତେଇହୋଇ ଗୋଟିକ ପରେ ଗୋଟିଏ ଷ୍ଟେଟ, ନିଶାହ ଅସହାୟ ଦେଶକୁ ଗ୍ରାସକରି ଚାଲି ଯାଇଚନ୍ତି । ଜାତିପ୍ରୀତି ଓ ମହାଜାତୀୟ ପ୍ରୀତି ଏକ ସାଙ୍ଗରେ, ଏକା ଘରେ ଏକା ସମୟରେ ରହି ନପାରେ । ମହାଜାତୀୟତା ଅପାର ସମୁଦ୍ର ପରି । ସ୍ୱୀ ଭିତରେ ଯେଉଁ ସବୁ ଶ୍ରେଷ୍ଟ ଶ୍ରେଷ୍ଟ ଜାତିଗୁଡ଼ିକ ଆସି ପଡ଼ିବେ, ସେମାନେ ଯେବେ ନିଜର ସତ୍ତା, ନିଜର ଅସ୍ତିତ୍ୱ, ନିଜର ବିଶେଷତ୍ୱ ତା ସଙ୍ଗରେ ମିଳାଇ ନଦଅନ୍ତି, ବା ନଈ ଯେବେ ସମୁଦ୍ରରେ ମଜ୍ଜି ନଈ ହୋଇ ନରହେ, ସମୁଦ୍ର ସାଙ୍ଗରେ ମିଳି ନଯାଏ, ସେ ମହାଜାତୀୟ ସମୁଦ୍ର ଅସମ୍ଭବ ହୋଇ ଉଠିବ । ପ୍ରତି ନଈଟି ଯେବେ ନିଜର ବଡ଼ିମା ସମୁଦ୍ର ମଧ୍ୟରେ ବଜାଏ ରଖିବାକୁ ଇଚ୍ଛା ଓ ଚେଷ୍ଟା କରିବେ, ତା'ହେଲେ ସେ ସମୁଦ୍ର ନହୋଇ ବିଗ୍ରଟ ନିପଟ ନିଷ୍ଠୁର ମରୁଭୂମି ହୋଇଉଠିବ । ତା'ର କୌଣସି ଲକ୍ଷଣ ବର୍ତ୍ତମାନ ଅଛି କି ? ପୃଥିବୀର କୌଣସି ଜାତି ସାର୍ବଜନୀନ ଶାନ୍ତି ଉଦ୍ଦେଶ୍ୟରେ ନିଜର ଅସ୍ତିତ୍ୱ ଓ ଜାତୀୟତା ଛାଡ଼ିବାକୁ ପ୍ରସ୍ତୁତ ଅଛି କି ? ତା' ଯଦି ନହୁଏ ତା'ହେଲେ ଗୋଟାଏ ଜାତିଆଣ ସଭା ବଳରେ ପୃଥିବୀରୁ ଉଗ୍ରଚଣ୍ଡୀକୁ ତଡ଼ିଦବାର କଳ୍ପନା ଅଳୀକ ସ୍ୱପ୍ନ ମାତ୍ର । ଏ ସମ୍ବନ୍ଧରେ ବିଲାତର ଜଣେ ରାଜନୀତି ପଣ୍ଡିତ ହାରଲ୍ଡ ଜେ. ଲେସ୍କି

(Harold j. Laski) ଯାହା କହିଛନ୍ତି, ତା ଉପରେ କଥା କହିବାର ବିଶେଷ କିଛି ନାହିଁ ବୋଲି ମୁଁ ସେତକ ତଳେ ଦେଲି—

"War in 1914 as now had become the Supreme instrument of national Policy and what we have, above all, learned from the experience of the league is that the latter organisation cann't fulfil any of its major purposes. So long as its members are Sovereign States. For the Supreme need of our time is cosmopolitan law-making and the essence of Sovereignty is that those who possess it remain, save by their own wills, unbound by the law."

ଅର୍ଥାତ୍ ୧୯୧୪ରେ ଯେପରି ଥିଲା, ଆଜିକାଲି ମଧ୍ୟ ସେହିପରି ଜାତୀୟତାର ପ୍ରଧାନ ଅସ୍ତ୍ର ଓ କାର୍ଯ୍ୟଧାରା ହେଲା ଯୁଦ୍ଧ । ଜାତିଆଣ ସଙ୍ଘରୁ ଆମେ ଏତିକିମାତ୍ର ଶିଖିଲୁଁ ଯେ ଯେ ପର୍ଯ୍ୟନ୍ତ ଏ ସଙ୍ଘର ପ୍ରତ୍ୟେକ ସଭ୍ୟ ଗୋଟାଏ ଗୋଟାଏ ଅଲଗା ସ୍ୱତନ୍ତ୍ର ରାଜ୍ୟ ହୋଇ ରହିବେ, ସେ ପର୍ଯ୍ୟନ୍ତ ଏ ସଙ୍ଘ ଏହାର କୌଣସି ଉଦ୍ଦେଶ୍ୟ ସାଧନ କରିପାରିବ ନାହିଁ । ଆଜିକାଲି ଆମର ସବୁଠାରୁ ବେଶୀ ଦରକାର ଆନ୍ତର୍ଜାତୀୟ ଆଇନକାନୁନ୍, ଅଥଚ ସ୍ୱତନ୍ତ୍ର ରାଜ୍ୟର ମୂଳନୀତି ହେଲା ଯେ ସେମାନେ କୌଣସି ଆଇନ୍‌ର ବାଧ୍ୟ ନୁହଁନ୍ତି ।

( କ୍ରମଶଃ )

ନବଭାରତ
ଜୁଲ ୧୩୪୭/୧୯୪୦
୬ଷ୍ଠ ବର୍ଷ, ୫ମ ସଂଖ୍ୟା
ପୃଷ୍ଠା-୨୯୭ ରୁ ୩୦୭



# ବୋମା —୨

ଶ୍ରେଷ୍ଠ ବଡ଼ ଜାତିର ଭେଦ ନେଇ ଗୋଲମାଲ ବିଷୟରେ ପୂର୍ବରେ କହିଛି । ତା' ଉପରେ ପୁଣି ବଡ଼ ବଡ଼ ଜାତି ସମାନ ସମାନ ଜାତି ମଧ୍ୟରେ କଳଗୋଳ । ତୁମେ ଆଇନ୍ ଜୋର୍‌ରେ, ବାହୁବଳ ସାହାଯ୍ୟରେ ବଡ଼ କରିପାର, ବଡ଼କୁ ଶ୍ରେଷ୍ଠ କରିପାର, କିନ୍ତୁ ଏ ପର୍ଯ୍ୟନ୍ତ ଇମିତି କିଛି ଉପାୟ ବାହାରିନାହିଁ ଯେ କି ସବୁ ମଣିଷଙ୍କର ବୁଦ୍ଧିବୃତ୍ତି, ସାଧନ ସଂପାଦନକୁ ସମାନ କରିପାରେ । ମୋର ବୁଦ୍ଧି ଶ୍ରେଷ୍ଠ ହେଲେ, ତୁମର ବୁଦ୍ଧି ବଡ଼ ହୋଇପାରେ । ମୁଁ ଯାହା କରି ନ ପାରୁଚି, ଭାବି ନପାରୁଚି, ତା' ତୁମେ କରିପାର, ଭାବିପାର, ତୁମେ ଯାହା ସାଧନ କରିପାର, ମୁଁ ତାହା ନ କରିପାରେ, ଫଳରେ ତୁମେ ବଡ଼ ବଡ଼ କାମ କରିପାର, ତୁମେ ବେଶୀ ନାଁ କମାଇପାର, ମୁଁ ପାରିବି ନାହିଁ । ଅନ୍ୟ ଦିଗରେ ସମାନ ରହି ଏ ଦିଗରେ ଅସମାନ ରହିଲେ ମୋ ତୁମ ଭିତରେ ଈର୍ଷା ହେବା ସ୍ୱାଭାବିକ । ଯାହା ମୋ ତୁମ ଭିତରେ ହେବ, ତା ଦୁଇଟା ସମାନ ଜାତି ଭିତରେ ବି ନିଶ୍ଚୟ ହେବ । ଇଂଲଣ୍ଡ ଏପରି କରିଗଲା । ଜର୍ମାନୀ ପାରିଲା ନାହିଁ । ଏ ସବୁ ନେଇ ଉଭୟ ମଧ୍ୟରେ ଈର୍ଷା, ପେଟ ପୋଡ଼ା ଆରମ୍ଭ ହେବ । ଏଇଥିରୁ ବିବାଦ ଥେଣ୍ଟିଆଥେଣ୍ଟି, କଳଗୋଳ ଶେଷରେ ଯୁଦ୍ଧ ବିଗ୍ରହ ଆସିଯିବ । ସ୍ୱା'ଠୁ ବଳି କରିବ କିମିତି ? ବଡ଼ ବୁଦ୍ଧିଆଙ୍କୁ ଶ୍ରେଷ୍ଠ ବୁଦ୍ଧିଆ କରିବାର କି ଉପାୟ ? ଉପାୟ ଅଛି—ଯେ ବୁଦ୍ଧିଆ ହେଲା ବେଶୀ ତାକୁ ଫାଶୀ ଦିଅ, ନ ହେଲେ ତା' ମୁଣ୍ଡକୁ ଚିରି ତା'ର ବୁଦ୍ଧିକୁ ହଲଚଲ କରିଦିଅ । ବୁଦ୍ଧିମାନ ହେବା ଗୋଟାଏ ଦଣ୍ଡନୀୟ ଦୋଷ ହେଇଯାଉ । କିନ୍ତୁ ଏ କଥାଟା ଅଳ୍ପ ବହୁତେ ଆଜକାଲି ଆମ ଦେଶରେ ହେଇଆସୁଚି । ଆମ ଦେଶରେ ଯେ ଟିକିଏ ସ୍ୱାଧୀନ ବୁଦ୍ଧି ବିଚାରର ପରିଚୟ ଦେଲା, ତା'ରି ମୁଣ୍ଡରେ ଠୋ'କରି ଆଗ ପଡ଼ୁଚି ଠେଙ୍ଗା । ଯେତେକ ନିର୍ବୁଦ୍ଧିଆ ବା ଅଳ୍ପବୁଦ୍ଧିଆ ନିଜ ଭିତରେ ଚରନ୍ତିନ କାମୁଡ଼ା କାମୁଡ଼ି ବନ୍ଦ କରି ଏଇ ବୁଦ୍ଧିଆ ପଛରେ ଲାଗିଯାନ୍ତି । ବିଲୁଆ କୁକୁର ଭଳି ତାକୁ ଟାଣିଓଟାରି ମାଟିରେ ମିଶାଇବା ଯାଏ କାହାରି ମନରେ ଶାନ୍ତି ରହେ ନାହିଁ । ଏ କିନିଷଟା ହେବାର କାରଣ ଅଛି । ଯେଉଁମାନେ ଏ ଲୋକଗୁଡ଼ାକୁ ନିଜ ମୁଠା ଭିତରେ ରଖି କଣ୍ଢେଇ ଖେଳ ଖେଳିବାର ଇଚ୍ଛା କରନ୍ତି, ସେମାନଙ୍କ ଦୃଷ୍ଟିରେ ବୁଦ୍ଧିଆଗୁଡ଼ାକ ତାଙ୍କର ପରମ ଶତ୍ରୁ—କାରଣ ସେ ଲୋକମାନଙ୍କୁ, ସେ ସଖି କଣ୍ଢେଇଗୁଡ଼ିକୁ ବାରି କଥା ଶିଖେଇପାରନ୍ତି । ସ୍ୱା'ଙ୍କ ମୁଣ୍ଡରେ ଏପରି ଭାବ ଓ ଏପରି ଚେତନା ଆଣି ଦେଇପାରନ୍ତି, ଯାହା ହେତୁରୁ ସେ ଆଉ ସଖିକଣ୍ଢେଇ ହେଇ ରହିବାକୁ ରାଜି ହେବେ ନାହିଁ । ତା'ପରେ ତାଙ୍କ ଅଳ୍ପ ବୁଦ୍ଧିର ଫନ୍ଦବାଜିରେ ସେମାନେ ଯେ ଏ ନିର୍ବୁଦ୍ଧିଆ ଦଳକୁ କାଉଁସି ମନ୍ତ୍ରଭୁଲା କରି ରଖିଚନ୍ତି ସେ ଧରାପଡ଼ିଯିବ । ଅତି ବୁଦ୍ଧିଆଙ୍କ ତେଜରେ

ତାଙ୍କର ବନ୍ଧୁଘାକରେ ପୁରରହିଥିବା କାଳକୂଟ ମହାଗୁହାକ ଧସ୍ତପଡ଼ିଯିବ । ତାଙ୍କର ପ୍ରଶ୍ନପତ୍ତି ଉଠିଯିବ । କୌଣସି ସା'ନ୍ତ, ସ୍ମଲକ ଚରୁର ସ୍ମକର ସନ୍ଧ୍ୟାରେ ନାହିଁ । ତା'ର ଦରକାର ବୋକା, ନର୍ବୁଦ୍ଧିଆ ମଣିଷ, ଯେ କ ତାଙ୍କ କଥା ବେଦଶଣୀ ପଶ ମାନ ଗ୍ମଲିଯିବ । ଗ୍ମଲକ୍ ଚରୁର ଗ୍ମକର ଯେତେ ସାଧୁ ହେଲେ ମଧ୍ୟ ସା'ନ୍ତ ମନରେ ସବୁବେଳେ ସନ୍ଦେହ । ସେ ଠକେଇ ପଇସା ଖାଇଯାଉଚ ପସ, ସେ ଲୁଚେଇ ପ୍ରିୟାଙ୍କ ମନ ଗ୍ରେରେଇନଉଚ ପସ ! ହେଇପାରେ, ଆମ ଭିତରେ ଏଇ ବୁଦ୍ଧିଆ ଭସ୍ୱ ଅଛୁ ବୋଲି ଆମେ ଶାନ୍ତଶିଷ୍ଟ ଭଲପିଲ, ଭାରତୀୟ ଜାତମାନଙ୍କ ଭିତରେ ଆମେ ନଶ୍ଚିହ୍ନ ଗୋବେଗ୍ରସ୍ତ । ଆମର ହଜାର ବର୍ଷର ଯୁଦ୍ଧ-ଇତହାସ ଥିଲେ ମଧ୍ୟ ଆମେମାନେ ଅଣବୁଦ୍ଧିଆ ଜାତ । ଅଧା ଭାରତ ଜସ୍ କଶଥିଲେ ମଧ୍ୟ ଆମେ 'କ୍ଷୁଦ୍ର ମନୁଷ୍ୟର ଦେଶ' । ଓଡ଼ିଆଙ୍କର ଏହି ଅଂପୁରୁଷିଆ, ନପୁଂସିକଆ ଉଦାହରଣ କ'ଣ ପୃଥିବୀ ଜାତଆଂ ସଭ୍ୟର, ମହାମାନବୀୟ ସଭ୍ୟତାର ଶେଷ ଆଦର୍ଶ ହବା ଉଚତ ? ହବା କ ସମ୍ଭବ ? ଜାତ ଜାତ ଭିତରେ ପ୍ରଭେଦ ହଟିଯିବ ବୋଲି ମଣିଷ ମଣିଷ ମଧ୍ୟରେ ଯେ ସ୍ୱାଭାବିକ ଭେଦ, ସେ କ'ଣ ଉଠିଯାଇପାରେ ? ପୃଥିବୀର ଇତିହାସ ନ ଥିଲେ ବୁଝିବାକୁ କଷ୍ଟ ହେବ ନାହିଁ ଯେ ବୁଦ୍ଧିରେ ଲୋଡ଼ାନାହିଁ । କୌଣସି ଶକ୍ତ (Energy)ର ବ ଅର୍ଥ ଅନ୍ତର୍ଦ୍ଧାନ ନାହିଁ । ଓଡ଼ିଶାରେ ମଧ୍ୟ ବୁଦ୍ଧିଅଙ୍କ ବିରୋଧରେ ଅଣବୁଦ୍ଧିଆ ଓ ଅଳ୍ପ ବୁଦ୍ଧିଆଙ୍କର ଏ ମହାଯୁଦ୍ଧ ସତ୍ତ୍ୱେ ବୁଦ୍ଧିର ବିଷସ୍ ଖେଳୁଚ, ଧୀରେ ଧୀରେ ଏ ବିଷବାମ୍ପ ଦେଶ ଭିତରେ ମାଡ଼ିଗ୍ଲୁଚ । ତେବେ ଉପାୟ କ'ଣ ? ଉପାୟ ହଉଚ, ଏକମାତ୍ର ଉପାୟ, ପୃଥିବୀ ଗୁଡିକୁ ଏ ଜାତୀୟତା ଭାବ, ଜାତୀୟ ଅନୁଷ୍ଠାନ ସବୁ ଏକାବେଳେକେ ଲୋପ କରଦେବା । କନ୍ତୁ ସେ ଲୋପ ପ୍ରଥମେ ଆରମ୍ଭ ହବା ଉଚତ ବଡ଼ବଡ଼ଙ୍କ ଆଡ଼ୁ । କଂଗ୍ରେସ କର୍ଣ୍ଣଧାରମାନେ ଏ ଦୁର୍ବଳ ନର୍ବୁଦ୍ଧିଆ ଓଡ଼ିଆଙ୍କୁ ଜାତୀୟତା ଭୁଲିବାକୁ ଶିଖେଇ ନଜ ଜାତର ଘଡ଼ା ପୂରେଇବାକୁ ଯେ ଚେଷ୍ଟା କରୁଚନ୍ତି, ସେ ଭାବରେ ହେଲେ ମହାଜାତୀୟତା ସରଗ ଫଳ ହବା ପରିବର୍ତ୍ତେ ନରକ ନର୍ଆଁ ହେଇଯିବ—ଏ ପୃଥିବୀ ଭୂତ, ପ୍ରେତ, ଡାହାଣୀ, ପିଶାଚୁଣୀଙ୍କର ଯୁଦ୍ଧଭୂଇଁ ହେଇଉଠିବ ।

ତା'ପରେ ଚତୁର୍ଥ କାରଣ—ଏକଚ୍ଛତ୍ର ଶାସକର ରାଜ୍ୟଲିପ୍ସା, କ୍ଷମତା ଇଚ୍ଛା, ପ୍ରଭୁତ୍ୱର ଅଭିଳାଷ । ମୁଁ ଆଗରୁ କହିଛି, ଏକଚ୍ଛତ୍ର ଶାସନ ହାତରେ ଯୁଦ୍ଧ ଗୋଟାଏ ସୁବିଧା ଉପାୟ ହବାର କଥା । ଗୋଟାଏ ଲୋକକୁ ଯଦ ଗୋଟାଏ ରାଜ୍ୟର ମାଲିକ କର ଗ୍ରୁଡ଼ଦଅଯାଏ, ତା'ହେଲେ ତା' ମନରେ କ୍ଷମତାଲୋଭ ବଳେବଳେ ଆସିଯିବ । ହେଇ ହେଇ ପ୍ରଜାସତ୍ତ୍ୱ ବା ପ୍ରଜାତନ୍ତ୍ର ଶାସକ ଏକଛତ୍ର ହେଲେ, ତା' ଭାଉ ସାଧାରଣ ଏକଚ୍ଛତ୍ର ରାଜୁତ୍ୱ ଶାସକଦାଉଠାରୁ ବଳପଡ଼େ । କାରଣ ରାଜା ତା'ର ବଂଶଗତ ଦାବୀ ଓ ପୁରୁଷ ପୁରୁଷ ଧର ଜମାହୋଇଥିବା ପଇସା ବଳରେ କୁଦେଇ ହୁଏ । ତା'ର ଡରଥାଏ ଯେ କେଉଁ କାଳେ ତା'ର ପଇସା, ବିଳାସବଳାସ, ଅଗ୍ରାମ,

ଆମୋଦ ହରେଇବସିବ । କାଳେ ତା'ର ପୁଅନାତିମାନେ ସିଂହାସନ ପାଇ ନ ପାରିବେ, ସେଥିପାଇଁ ସେ ଯେତେଦୂରସମ୍ଭବ ଗୋଳମାଳକୁ ଏଡ଼େଇ ଯେ କୌଣସି ରକମ ବିପଦର ପାଖ ନଯାଇ ଚଳିବାକୁ ଚେଷ୍ଟାକରେ, ଗୋଟାଏ ଯୁଦ୍ଧ, ଗୋଟାଏ କୋଳାହଳ ଲଗାଇବା ଆଗରୁ ସେ ହଜାରଥର ଭାବେ । କିନ୍ତୁ ଯେଉଁମାନେ ପର ଦଉଡ଼ିକଟା, କେବଳ ଲୋକମାନଙ୍କର ଦୁଃଖ କଷ୍ଟରେ ଉଚ୍ଛିନ୍ନ ଓ ଲୋକମାନଙ୍କର ହିତ ଓ ଦେଶର ଗୁଣପଢ଼ଇ ବଡ଼ ହୋଇଚନ୍ତି, ନେତା ବୋଲାଉଚନ୍ତି, ସେମାନେ ବୁଝିପାରନ୍ତି ଯେ ଏ ସ୍ଥାନ ହରେଇଲେ, ସେ ପୁଣି ଦେହି ଦେହି ହୋଇ ବୁଲିବେ । ଯେ ପର୍ଯ୍ୟନ୍ତ ସେମାନେ ଲୋକମାନଙ୍କୁ ସନ୍ତୁଷ୍ଟ କରି, ଭବେଇ କରି ରଖିପାରିବେ, ସେ ପର୍ଯ୍ୟନ୍ତ ଲୋକେ ବାହାରର ଚତୁର୍ଗୁଣୀ ଅଭୂଅ ଭୁଲି ରହିପାରିବେ, ସେ ପର୍ଯ୍ୟନ୍ତ ସେମାନେ ଘର ଭିତରେ ଯାହା ହେଉଥିଲେ ମଧ୍ୟ ତାଙ୍କ ସ୍ଥାନ ଓ ଅଧିକାରରେ ହାତ ଦେବେ ନାହିଁ । ଗୋଟାଏ କିଛି ଗୋଳମାଳ ବାହାରେ ନ ଲଗିଲେ, ଭିତରେ ସମ୍ଭାଳିବା ମୁସ୍କିଲ୍ ହୋଇପଡ଼ିବ, ସେ ରାଜଗାଦିରୁ ଫୋପାଡ଼ି ହୋଇ ଗୋବରଖାତରେ ପଡ଼ିବେ । ଯଦି ଗୋଟାଏ କିଛି ଗୋଳମାଳ ଭିଆଣ କରି ଜିତି ଯା'ନ୍ତି, ତା'ହେଲେ ଘରଲୋକେ ବାହ୍ୱା'ବା ଦେବେ । ତାଙ୍କ ମୁକୁଟ ରହିଯିବ । ନାହିଁ ଯେବେ ଗୋଳମାଳରେ ହାରିଯାନ୍ତି, ତାହାହେଲେ 'ପୁନର୍ମୂଷିକୋ ଭବ' । କ୍ଷତି ରହିଲା କେଉଁଠାରେ ? ଯୁଦ୍ଧ ଲଗେଇବାକୁ ଏଇ କାହିଁଅଛିଲା ଶାସକଗୁଡ଼ାକଙ୍କର ଯେପରି ଆଗ୍ରହ ଓ ଆବଶ୍ୟକ ରହିବ, ଖାଣ୍ଟି ପ୍ରଜାମାନଙ୍କର ସେପରି ରହିବ ନାହିଁ । ହିଟ୍‌ଲର ମୁସୋଲିନୀ, ଷ୍ଟାଲିନ୍—ଏମାନଙ୍କର ଅବସ୍ଥା ଏହିପରି । ଏହି ହେତୁରୁ ସେମାନେ କଥା କଥାକେ ଖଣ୍ଡା ଝଣଝଣ କରନ୍ତି, କଥା କଥାକେ ଗୋଟାଏ ଯୁଦ୍ଧର କୋକୁଆଭୟ ଲଗାଇଦିଅନ୍ତି । ଏ ପ୍ରକାର ଶାସନ ପୃଥିବୀରୁ ବିଦାୟ ନ ହେବାଯାଏ ପୃଥିବୀରେ ଶାନ୍ତି ପ୍ରତିଷ୍ଠା କରିବାର ଚେଷ୍ଟା ବିଡ଼ମ୍ବନା । କିନ୍ତୁ ଏମାନଙ୍କର ଶ୍ରାଦ୍ଧ ତର୍ପଣର ଉପାୟ କଣ ? ଆଜିକାଲି ଗୋଟାଏ ବୁଦ୍ଧିଉଠିଚି ଯେ ପ୍ରଜାତନ୍ତ୍ର ଶାସନ ସ୍ୱେଚ୍ଛାଚାର ଶାସନର ଏକମାତ୍ର ପ୍ରତିକାର । କିନ୍ତୁ ପ୍ରକୃତରେ ତାହା ହୁଏ କି ? ପ୍ରଜାତନ୍ତ୍ର ଶାସନର ଅର୍ଥ କଣ ? ପ୍ରଜା କ'ଣ ପ୍ରକୃତରେ ନିଜକୁ ଶାସନ କରେ ? ସେ ଶାସନ ସମ୍ବନ୍ଧରେ କେବେ କିଛି ଠିକ୍ ରକମ ଭାବେ ? କୌଣସି ଆଇନ୍ ଓ ପ୍ରସ୍ତାବର ପ୍ରକୃତ ସତ ମିଛ କ'ଣ ସେ ବିଚାର କରିପାରେ ? ଭାବିବାର, ବିଚାର କରିବାର ସମୟ ଓ ସାମର୍ଥ୍ୟ ତାର କଉ ଅଛି ? ଯେ ଦେଶ କହନା କାହିଁକି, ସେଥିରୁ ପ୍ରାୟ ଶତକଡ଼ା ନବେ ଭାଗ ପ୍ରଜା ମୁଣ୍ଡଝାଳ ତୁଣ୍ଡରେ ପୁରାଇ ସାରାଦିନ ଖଟି ଖଟି ସନ୍ଧ୍ୟାବେଳେ ଘରକୁ ଫେରନ୍ତି । ସାରାଦିନର ପରିଶ୍ରମ ପରେ ତା' ମୁଣ୍ଡରେ ଏପରି ଧୈର୍ଯ୍ୟ ଓ ଶକ୍ତି ନଥାଏ ଯେ ସେ ବସି କୌଣସି ସରଳ ବା ଜଟିଳ ରାଜନୀତି ବା ଅର୍ଥନୀତିର କଥା ଭାବିବ, ବିଚାର କରିବ । ସେ ଯେବେ କୌଣସି ସମୟରେ ସେ ସମ୍ବନ୍ଧରେ ଭାବେ, ଯେବେ କେହି କୌଣସି ବିଷୟରେ ଭାବିବାକୁ ତାକୁ ବାଧ୍ୟ କରାଏ,

ତା'ହେଲେ ସେ ଅଳ୍ପ ସମସ୍ତ ସେ ସମସ୍ୟରେ ଚିନ୍ତା କରୁକରୁ ତାର ମୁଣ୍ଡ ଗୋଳମାଳ ହୋଇଯାଏ । ସେ ସବୁଚେଷ୍ଟା ଗୁଡ଼ାକରେ ଅନ୍ୟମାନେ କଣ କହୁଚନ୍ତି, ସେକଥା ଶୁଣିବାକୁ ଧାଇଁଯାଏ । ସେଇ ଅନ୍ୟମାନଙ୍କ ଭିତରୁ ଯେ କଥାର ଢଙ୍ଗରେ, ବୁଦ୍ଧିର ବଳରେ ତାକୁ ମନେଇପାରିଲା, ସେ ତା'ର କଥା ବିଶ୍ୱାସ କରିଯାଏ, ତା'ର ଗୋଟିଏ ମତ ଧାରଣ କରିନିଏ । ତାର ଅଭିଜ୍ଞତା କମ୍ । ତାର ଦୃଷ୍ଟି ସୀମାବଦ୍ଧ । ତାର ସମସ୍ତ ଚେଷ୍ଟା, ସମସ୍ତ ବୁଦ୍ଧି, ସମସ୍ତ ଶକ୍ତି କେବଳ କମିତ ତା ନିଜ ପେଟ ପୋଷିପାରିବ—ତାରି ଉପାୟ ଖୋଜିବାରେ ଲାଗି ରହିଥାଏ । ଆଇନ୍‌କାନୁନ୍, ନୀତି, ଗତି, ପ୍ରସ୍ତାବ, ଅଭାବ ଏସବୁ ବିଷୟରେ ତା'ର କୌଣସି ସ୍ୱାର୍ଥ ସେ ଦେଖିପାରେନାହିଁ । ସେ ପରକଥାରେ ଭୁଲି ଗୋଟାଏ ହଁ' ମାରିଦିଏ । ଯେତେବେଳେ କୌଣସି ଆଇନ୍‌ର ଜାଲରେ ସେ ନିଜେ ଛନ୍ଦିଯାଏ, ସେତେବେଳେ ସେ ସେହି ଆଇନ୍ ଉପରେ ରାଗିଯାଏ । ସ୍ୱଭେ ଏପରି ଆଇନ୍ ହୋଇ ନପାରେ, ନହବା ଉଚିତ୍ । ଏକଥା କାହାକୁ କହିଲେ, ଯେଉଁମାନେ ରାଜ୍ୟର ସୁଦକ୍ଷ ସେମାନଙ୍କ ପାଖରେ ଗୁହାରି କଲେ, ସେମାନେ କହନ୍ତି, "କିରେ ବାପୁ, ତୁ ଯେ ଏକଥାରେ ସେଦିନ ହଁ ମାରି ଦେଇଥିଲୁ ?" ସେ ବୋକା ବନିଯାଏ । ନିଜ ଲୁହ ନିଜ ଆଖିରେ ମାରି ଚୁପ୍‌ହୋଇ ରହେ । ଏଇ ହେଲା ଜନମତ ।

ତା'ପରେ ପ୍ରଜାତନ୍ତ୍ରର ଆଉ ଗୋଟିଏ ନୀତି ହେଉଚି, ସଂଖ୍ୟା ଲଘିଷ୍ଠ ଦଳଦ୍ୱାରା ଶାସନ ଚଳେଇବା ଉପରେ ଯେଉଁଭଳି ମତନବା କଥା କହିଲି, ସେହିପରି ମତ ଉପରେ ରାଜ୍ୟସଭାକୁ ସଭ୍ୟ ବଛାହେଲେ, ଯେ ବେଶୀ ବୁଝାଇଥା, ଯେ ବେଶୀ ପାଟିକରି ପାରିଚି, ବେଶୀ ପଇସା ଖର୍ଚ୍ଚ କରିପାରିଚି, ଲୋକଭୁଲା ବୁଦ୍ଧି ଯାହାର ଯେତେ ବେଶୀ, ସେଇ ଦଳର ଲୋକେ ବେଶୀସଂଖ୍ୟାରେ ସଭାକୁ ଗଲେ । ସେଇମାନଙ୍କ ଭିତରୁ ମନ୍ତ୍ରୀ ବଛାହେଲେ, ଏଇ ମନ୍ତ୍ରୀମାନେ ରାଜ୍ୟ ଚଳେଇଲେ । କୋଟିଏ ଲୋକଙ୍କର ମୁଖିଆ ହୋଇଗଲେ ଦେଢ଼'ଶ ଲୋକ । ଏ ଦେଢ଼'ଶ ଭିତରୁ ଯେବେ କୌଣସି ଦଳ ୭୬ ଜଣ ଲୋକ ନିଜ ଗୋଠ ଭିତରକୁ ଆଣିପାରିଲେ, ତା'ହେଲେ ସେଇମାନେ ଚଳେଇଲେ ରାଜ୍ୟ । ତା'ମାନେ ୭୬ ଜଣଙ୍କ ହାତରେ କୋଟିଏ ଲୋକଙ୍କର ଜୀବନମରଣ ଭାର ଦିଆଗଲା । ଏ ୭୬ ଜଣଙ୍କ ଭିତରୁ ଅଧିକାଂଶ ହେଲେ ଗୋବର ଗଣେଶ ବା ଗୋବୁମୁଣ୍ଡ । ଖାଲି ଦଳର ଲୋକ ବୋଲି ଅଥବା ପଇସା ଅଛି ବୋଲି ଏମାନେ ଭୋଟ ପାଇ ଚାଲିଯାଇଚନ୍ତି । ରାଜ୍ୟ ଶାସନ କରିବା ପାଇଁ ଯେ ଦୂରଦୃଷ୍ଟି, ଯେ ଲମ୍ବବୁଦ୍ଧି, ଯେ ଓସାର ଅଭିଜ୍ଞତା ଦରକାର, ତା' ଏମାନଙ୍କର ନାହିଁ । ଏମାନେ ଖାଲି ବଡ଼ବଡ଼ଆଙ୍କର ପଣତକାନି ଧରା କୁମ୍ଭମାଳ । ସ୍ୱା'ଙ୍କ ଭିତରୁ ଯେ ପାଞ୍ଚ, ଛ ଜଣ ବୁଦ୍ଧିଆ ଓ ପ୍ରଭାବଶାଳୀ ଲୋକ, ସେଇମାନେ ହେଲେ ମନ୍ତ୍ରୀ । ତା'ହେଲେ ଶେଷରେ କୋଟିଏ ଲୋକଙ୍କ ଜୀବନ

ମରଣ ଝୁଲୁଛି ରହିଛି ୫।୬ ଜଣଙ୍କ ହାତରେ । ଏ ପାଞ୍ଚ ଛଅ ଜଣଙ୍କର ସ୍ୱାର୍ଥ ଯେବେ ଏକ ହୋଇପାରେ, ତା'ହେଲେ ଏମାନେ ରାଜ୍ୟରେ ଯାହାଇଚ୍ଛା ତାହା କରଗଲେ । ଯୁଦ୍ଧ ଯେବେ ଏମାନଙ୍କର ସ୍ୱାର୍ଥଦୃଷ୍ଟିରୁ ଦରକାର, ତା'ହେଲେ ଏମାନେ ଯୁଦ୍ଧ ମଧ୍ୟ କରେଇଦେଲେ । ବେଳେବେଳେ ଗୋଟାଏ ଯୁଗରେ, ଗୋଟାଏ ଗୋଟାଏ ଦେଶରେ ଏପରି ଲୋକ ଜନ୍ମ ଲଭନ୍ତି, ଯେଉଁମାନଙ୍କର ବ୍ୟକ୍ତିତ୍ୱର ବଳ ଏତେ ବେଶୀ ଯେ ସେମାନେ ସମସ୍ତଙ୍କୁ ନିଜ କବଳ ଭିତରେ ରଖି ନିଅନ୍ତି । ସେହିପରି ଗୋଟାଏ ଲୋକ ଯେବେ ଥାଏ, ତା'ହେଲେ ସେ ମନ୍ତ୍ରୀମାନଙ୍କୁ ହାତରେ ରଖି ତାର ନିଜ ଇଚ୍ଛାରେ ରାଜ୍ୟ ଚଳେଇନିଏ । ଶେଷରେ ଏହି ପ୍ରଜାତନ୍ତ୍ର ଶାସନ ଗୋଟାଏ ଏକଚ୍ଛତ୍ର ଶାସନରେ ପରିଣତହୁଏ । ଏହାର ଉଦାହରଣ ନେଇ ଦେଖାଇଦେବା ଦରକାର ନାହିଁ । ଅର୍ଦ୍ଧସ୍ୱାଧୀନ ଭାରତବର୍ଷଠାରୁ ଆରମ୍ଭ କରି ପୂର୍ଣ୍ଣ ସ୍ୱାଧୀନ ବିଲାତ ଓ ଆମେରିକା ପର୍ଯ୍ୟନ୍ତ ସବୁଦେଶରେ ଏଇ ଖେଳ ଲାଗିଛି । ଆଖି ଥିଲେ ତୁମେ ମଧ୍ୟ ଦେଖିପାରିବ ।

ଆଉ କେହି କେହି କହିପାରନ୍ତି ଯେ ବଲସେଭି ଆଦର୍ଶ ଶାସନରେ ଏକଚ୍ଛତ୍ର ଶାସନର ସବୁ ଦୁର୍ଗୁଣ ଲୋପ ପାଇଯିବ । ବଲସେଭି ଶାସନ ଆରମ୍ଭ ହୋଇଥିଲା ସେଇ ଜନତନ୍ତ୍ର ମାଧ୍ୟରେ । ପ୍ରଭେଦ ଏତିକି—ଯେ ବଲସେଭି ରାଜ୍ୟରେ ବଲସେଭି ଛଡ଼ା ଆଉ କାହାରି ଭୋଟଦବାର ଅଧିକାର ନାହିଁ । ଅର୍ଥାତ୍—ପ୍ରକାଣ୍ଡ ରୁଷିଆ ସାମ୍ରାଜ୍ୟରେ ପ୍ରାୟ ତିନକୋଟି ବଲସେଭି ଗାଦିମାଡ଼ି ବସିଲେ । ଗୋଟାଏ ଦଳ, ଗୋଟାଏ ମତ, ଆଉ ସେ ଦଳର ନେତାମାନଙ୍କ ବିରୋଧରେ କିଛି ଯେ କହିଲା, ସଙ୍ଗେ ସଙ୍ଗେ ତା'ର ମୁଣ୍ଡ କାଟ୍ । ଅତଏବ, ନେତାମାନେ—ଅର୍ଥ ଦୁଇ ତିନି ଜଣ ଲୋକ ଏକଚ୍ଛତ୍ର ଶାସକ ବନିଗଲେ । ଏହି ମହତ୍ତ୍ୱ ଆଦର୍ଶ ବଲସେଭି ଏକଚ୍ଛତ୍ର ଶାସକ ଷ୍ଟାଲିନଙ୍କ ଅମଳରେ ଲୋକଙ୍କର ସ୍ୱାଧୀନତା ଜନତନ୍ତ୍ରର ବାହାଦୁରୀ କିପରି ରଖାଯାଇଛି, ତାହା ଲେସ୍କିଙ୍କ କଥାରୁ ଜଣାପଡ଼ିବ । ଲେସ୍କି ପୁଞ୍ଜିବାଦର ଲୋକ ନୁହଁନ୍ତି । ବଲସେଭି ବାଦପାଇଁ ତାଙ୍କର ପ୍ରଶଂସା ଛଡ଼ା ଆଉ କିଛି କହିବାର ନାହିଁ । ଅତଏବ ସେ ଯାହା କହିଚନ୍ତି, ସେଥିରେ ମିଛ ପ୍ରଚାରର ଗନ୍ଧ ନ ରହିବା ଉଚିତ । ସେ ଲେଖିଚନ୍ତି—

But it remains, after twenty years defiritey a dictatorship and it has disappointed those, who care for freedom all over the world. Not only it is dictatorship, but the ruthlessness with which it has suppressed those hostile to it authority has been sombrely then in the grion tale of execution, Since the assassination of Kiror. In the classic sense of absolute liberation, freedom does not exist in the Soviet Union.

ଅର୍ଥାତ୍ ଜୋଡ଼ଏ ବର୍ଷ ବଲସେଭୀ ରାଜତ୍ୱ ପରେ ମଧ୍ୟ ତାହା ଏକଚ୍ଛତ୍ର ଶାସନ ହୋଇ ରହିଛି । ଫଳରେ ସାରା ପୃଥିବୀରେ ଯେଉଁମାନେ ସ୍ୱାଧୀନତାପ୍ରେମୀ ସେମାନେ ଏଥିରେ ବିରକ୍ତ ଓ ଦୁଃଖିତ ହୋଇଥିଚନ୍ତି । ଖାଲି ଏକଚ୍ଛତ୍ର ଶାସନ ନୁହେଁ, ଜେସ୍‌ଭେଭଙ୍କ ହତ୍ୟାଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଯେତେ ସ୍ୱପନ୍ନ କାଣ୍ଡ ବଲସେଭୀ ରୁଷିଆରେ ଘଟିଯାଇଛି, ସେଥିରୁ ଏ ରାଜୁତି କେପରି ନୃଶଂସ ତାହାର ଯଥେଷ୍ଟ ପ୍ରମାଣ ମିଳେ । ସ୍ୱାଧୀନତାର ପ୍ରକୃତ ଅର୍ଥ ଅନୁସାରେ ବଲସେଭୀ ରୁଷିଆରେ ସ୍ୱାଧୀନତା ନାହିଁ ବୋଲି କହିବାକୁ ପଡ଼ିବ । ତେବେ କ'ଣ ବୁଝିବାକୁ ହବ ଯେ ଏ ସଂସାରରେ ଏକଚ୍ଛତ୍ର ଶାସନ ଛଡ଼ା ଅନ୍ୟ କୌଣସି ଶାସନ ସମ୍ଭବ ହୋଇପାରେ ନା ? ରାଜୁତିରେ ଯାହା ପ୍ରଜାତନ୍ତ୍ରରେ ସେଇଆ । ବଲସେଭୀ ବା ସାମ୍ୟବାଦ ମତରେ ମଧ୍ୟ ସେଇଆ ଯେବେ ହୁଏ, ତା'ହେଲେ ଏକଚ୍ଛତ୍ର ଶାସନକୁ ଗୋଟାଏ ଆବଶ୍ୟକୀୟ ଅମଙ୍ଗଳ ବୋଲି ଧରି ନବାକୁ ପଡ଼ିବ । ପ୍ରକୃତ କଥା ହଉଛି, ଯେଉଁମାନେ ଚଳନ୍ତି ପ୍ରଥା ଛାଡ଼ିଦେଇ ଗୋଟାଏ ନୂଆ କଥା କରିବାକୁ ଯାଆନ୍ତି, ସେମାନଙ୍କର ଅସଲ ମୂଳ ଅନିଷ୍ଟଟିକୁ ବୁଝି, ତାକୁ ବଦଳେଇବାର ସାହସ ରଖିବା ଉଚିତ୍ । ପ୍ରଜାତନ୍ତ୍ର ଶାସନ ବୋଲ, ବଲସେଭୀ ଶାସନ ବୋଲ୍ ସବୁ ଶାଣ୍ଡି ରାଜୁତି ଭଳି ଗୋଟାଏ ବଡ଼ ଦୋଷରେ କଳଙ୍କିତ ସେ ହଉଛି । କେନ୍ଦ୍ରୀଭୂତ ଶାସନ ଯେତେଦିନଯାଏ ଜଣଙ୍କ ହାତରେ ବା ଦଳଙ୍କ ହାତରେ ଶାସନର ସମସ୍ତ ଭାର ଓ ଦାୟିତ୍ୱ ଛଡ଼େଇଦିଆଯିବ, ସେ ପର୍ଯ୍ୟନ୍ତ ଏକଚ୍ଛତ୍ର ଶାସନର ସମ୍ଭାବନା ବରାବର ରହିବ । ମଣିଷ ଦେବତା ନ ହେବାଯାଏ, ତା'ର କ୍ଷମତାଲୋଭ ଯିବ ନାହିଁ, ଆଉ ସେ ଯେତିକି ବୁଦ୍ଧିମାନ ଓ ତେଜୀ ହବ, ତା'ର କ୍ଷମତାଲୋଭ ସେତିକି ପ୍ରବଳ ରହିବ । ଅତଏବ ତାକୁ ଏଡ଼ିବାର ଏକମାତ୍ର ଉପାୟ—କୌଣସି ଲୋକ ହାତରେ ବା ଦଳ ହାତରେ ସମୁଦାୟ ଶାସନ ଶକ୍ତି ନଦେଇ ଶାସନର ଭାର ସାରା ଦେଶ ଓ ସାରା ଜାତି ମଧ୍ୟରେ ବଣ୍ଟି ଓ ବାଣ୍ଟିଦବାକୁ ପଡ଼ିବ । ଏପରି ଶାସନ କେପରି କାର୍ଯ୍ୟକାରୀ ହୋଇପାରିବ, ଏ କଥା ବୁଝାଇ ଲେଖିବାର ସ୍ଥାନ ଏ ନୁହେଁ, କି ସେଥିପାଇଁ ସମୟ ଓ ଅବକାଶ ଏଠାରେ ନାହିଁ । ଦରକାର ହେଲେ ଅନ୍ୟବେଳେ ଏ ବିଷୟ ବୁଝାଇ ଲେଖିପାରେ । ଏଠାରେ ଏତିକିମାତ୍ର କହିବାର କଥା ଯେ ଜଣଙ୍କ ହାତରୁ ବା ପଞ୍ଚାଏ ଲୋକଙ୍କ ହାତରୁ ଯେବେ ଶାସନ ଭାର କାଢ଼ିନିଆଯାଏ, ତା'ହେଲେ କଥା କଥାକେ ଯୁଦ୍ଧ ଲଗିବାର ସମ୍ଭାବନା ରହିବ ନାହିଁ । ତା ଯେବେ ନ ହୁଏ, ତା'ହେଲେ ଯେତେ କଳନା ଜଳ୍ପନା କରନା କାହିଁକି, ଯୁଦ୍ଧ ବନ୍ଦ କରିବାର ଚେଷ୍ଟା କେବଳ ଚମ୍ପୁ-ଲୁଚିବା ହବ ମାତ୍ର ।

ଏହି କେନ୍ଦ୍ରୀଭୂତ ଶାସନ ପ୍ରଥାର ଆଉ ଗୋଟାଏ ଦୁର୍ଗୁଣ ଅଛି । ଏହି ଶାସକମାନେ ଦେଶର ନାମରେ, ଜାତିର ନାମରେ, ଧର୍ମର ନାମରେ, ପ୍ରଜାର ବ୍ୟକ୍ତିଗତ ସ୍ୱାଧୀନତାକୁ ଜନର ସ୍ୱାର୍ଥବେଦୀରେ ବଳିଦେଇ ବସନ୍ତି । ରାଜୁତି ପ୍ରଥା ବିରୋଧରେ

କହିବାକୁ ଯାଇ ଏମାନେ ଉଦ୍‌ଗାର କରନ୍ତି ଯେ, ରଜା ପ୍ରଜା ପାଇଁ, ପ୍ରଜା ବା ରାଜ୍ୟ, ରାଜା ପାଇଁ ନୁହେଁ । କିନ୍ତୁ କାଳ ବେଳ ଆସିଲେ ସେଇମାନେ କହନ୍ତି ଯେ ଦେଶପାଇଁ, ଜାତିପାଇଁ, ପ୍ରଜାତନ୍ତ୍ର ଶାସନ ପାଇଁ, ପ୍ରଜାର ସର୍ବସ୍ୱ ବଳିଦେବା ମହାପୁଣ୍ୟ । ରଜା ତା'ର ବ୍ୟକ୍ତିଗତ ହିସାବରେ କିଛି ନୁହେଁ, ସେ ଦେଶ ପାଳିବାର ଗୋଟାଏ ଅନୁଷ୍ଠାନ ମାତ୍ର । ଉଭୟଙ୍କ ଭିତରେ ପ୍ରଭେଦ ଏତିକି ଯେ ରାଜା ଏକା । ପ୍ରଜାତନ୍ତ୍ର ଶାସକ ଏକରୁ ବେଶୀ, ମାତ୍ର ଦଶରୁ ବେଶୀ ନୁହେଁ । ଏଥିରେ ରାଜନୀତିର କିଛିମାତ୍ର ପ୍ରଭେଦ ନ ଥାଏ । ଆଉ ଉଭୟଙ୍କ ଦୃଷ୍ଟିରେ ପ୍ରଜା, ରାଜ୍ୟ ପାଇଁ । ଯେଉଁମାନେ ପ୍ରଜାତନ୍ତ୍ର ଶାସନରେ ବଡ଼େଇ କରୁଛନ୍ତି, ସେମାନେ ଖାଣ୍ଟି ରାଜନୀତି, ଅସଲ ମୂଳନୀତିଗୁଡ଼ିକୁ ନିଜର ଆଦର୍ଶ ବୋଲି ଧରି ନେଇଚନ୍ତି ମାତ୍ର । ଯେ ପର୍ଯ୍ୟନ୍ତ ରାଜ୍ୟ ଓ ଜାତି ପ୍ରଜାଠାରୁ ବଡ଼ ବୋଲି ବିବେଚନା କରାଯିବ, ସେ ପର୍ଯ୍ୟନ୍ତ ପ୍ରଜାର ବ୍ୟକ୍ତିଗତ ସ୍ୱାଧୀନତା ଦେଶର ସମଷ୍ଟିଗତ ମଙ୍ଗଳ ପାଖରେ ଅତି ଶ୍ରେଷ୍ଠ ଓ ହୀନ ବୋଲି ଧରାଯିବ, ସେ ପର୍ଯ୍ୟନ୍ତ ଯୁଦ୍ଧ ରହିବ । ଯୁଦ୍ଧର ହିଁ ଜିତାପଟ ହେବ । ପ୍ରଜାର ବ୍ୟକ୍ତିଗତ ସ୍ୱାଧୀନତା ବିଚାର କିପରି ଗୋଟାଏ ରାଜ୍ୟ ବା ଦେଶ ଦ୍ୱାରା ସମ୍ଭବ ହୋଇପାରେ, ତାହାର ଖିନ୍‌ଭିନ୍ ଆଲୋଚନା ଏଠାରେ ସମ୍ଭବ ନୁହେଁ । ତେବେ ମୁଁ ଏତିକି ଜୋର୍‌କରି କହିପାରେ ଯେ ସାହସର ସହିତ ଓ ନୂଆର କୋକୁଆ ଭୟକୁ ପଛକୁ ପକାଇ ଯେବେ ପୃଥିବୀର ରାଜନୈତିକମାନେ ଏହାର ବିଚାର କରି ବସନ୍ତି, ତା'ହେଲେ ସେମାନେ ଦେଖିବେ ଯେ ଏପରି ଶାସନ ଅସମ୍ଭବ ତ ନୁହେଁ, ଖୁବ୍ ସହଜ, ସମ୍ଭବ ।

ମୁଁ ଏ ବିଷୟରେ ଆଉ କିଛି କହିବି ନାହିଁ । ତା'ହେଲେ ଆମ୍ଭେମାନେ ଦେଖିଲୁଁ ଯେ କୌଣସି ଜାତିଆଣ ସଙ୍ଘର ଶାନ୍ତିରକ୍ଷା କାର୍ଯ୍ୟ ସଫଳ କରିବାକୁ ଗଲେ ପୃଥିବୀର ବଡ଼ ମୁଣ୍ଡିଆମାନେ ପ୍ରଥମେ ଜାତି ଅଭିମାନ ଓ ଜାତି ଈର୍ଷାକୁ ତଡ଼େଇ ସଂସାର ମଧ୍ୟରେ ମହାବିଶ୍ୱମୈତ୍ରୀର ମନ୍ତ୍ରକୁ ଖାଲି ପ୍ରଚାର କରିବେ ନାହିଁ । ଏହି ବିଶ୍ୱମୈତ୍ରୀ ମନ୍ତ୍ରକୁ କାର୍ଯ୍ୟରେ କରି ଦେଖାଇବେ । ଆଉ ତାହା କରିବା ଆଗରୁ ପୃଥିବୀ ଉପରେ ଯେତେ-ଲୋକ ଅଛନ୍ତି, ସେମାନଙ୍କୁ ପୂର୍ଣ୍ଣ ସ୍ୱାଧୀନତା ଓ ସମାନ ଅଧିକାର ଓ ବ୍ୟବହାର ଦେବେ । ଏ କେତେଦୂର ସମ୍ଭବ ହେବ, ଆଉ କେବେ ସମ୍ଭବ ହେବ, ଏ କଥା ଆପଣମାନେ ହିଁ ଭାବନ୍ତୁ । ତା'ପରେ ରାଜ୍ୟମାନଙ୍କ ଭିତରୁ ଗୋଟାଏ ଅଲଗା ଅଲଗା ରାଜନୀତି ଉଠିଯାଇ ସମୁଦାୟ ପୃଥିବୀ ଏକ ଜାତିଆଣ ସଙ୍ଘର ଶାସନରେ ରହିବ, ଆଉ ଏ ଶାସନ ବ୍ୟକ୍ତିଗତ ଶାସନ ହେବ । ଏହାର କୌଣସି ଚିହ୍ନ ବର୍ତ୍ତମାନ ଦେଖାଯାଉନାହିଁ । ଏ କଥା ଯେ କହୁଚି ବା କହିବ, ସେ ଭଲେ ସ୍ୱପ୍ନଖେଳା ବୋଲି ଉପହାସ ପାଇବ ମାତ୍ର । ଯେବେ ପାଗଲା ଗାରଦରୁ ରକ୍ଷା ପାଇଯାଏ, ଅତଏବ ଜାତିଆଣ ସଙ୍ଘ ବଳରେ ପୃଥିବୀରେ ଶାନ୍ତି ରଖିବାର ଚେଷ୍ଟା ଓ ଚିତ୍କାର ଖାଲି ଭୂଆଁବୁଲା ଛଡ଼ା ଆଉ କିଛି ନୁହେଁ ।

ଦ୍ୱିତୀୟରେ ସମୁଦାୟ ପୃଥିବୀକୁ ନିରସ୍ତ୍ରୀକରଣ, ତା'ମାନେ କୌଣସି ଜାତି ବା ଦେଶର ଅସ୍ତ୍ରଶସ୍ତ୍ର ରହିବ ନାହିଁ,—ଏହା ହେବ କି ? ବର୍ତ୍ତମାନ ନିରସ୍ତ୍ରୀକରଣର ଅର୍ଥ ହେଉଛି, ଯେ କୌଣସି ଗୋଟିଏ ରାଜ୍ୟରେ ତା'ର ରାଜ୍ୟକୁ ଶାସନ କରିବା ପାଇଁ, ଗୋଳମାଳ ବନ୍ଦ କରିବା ପାଇଁ ଯେତିକି ଅସ୍ତ୍ରଶସ୍ତ୍ର ଗୋଳାବାରୁଦ ଦରକାର—ତା' ଛଡ଼ା ଆଉ ବେଶୀ କେହି କିଛି ତିଆରି କରିପାରିବେ ନାହିଁ । ଫଳରେ ଦେଶର ସୀମା ଓ ପରିସୀମାରେ କେତେ ଅସ୍ତ୍ରଶସ୍ତ୍ର ରହିବ, ତାହାର ବିଚାର ହେବ । ତା' ହେଲେ ଏ ପ୍ରକୃତରେ ନିରସ୍ତ୍ରୀକରଣ ନୁହେଁ, ଅସ୍ତ୍ର କମେଇବାର ପନ୍ଥା ମାତ୍ର । ଏଥିରେ କି ଲାଭ ହେବ ? ଅରେ କୌଣସି ରାଜ୍ୟକୁ ଅସ୍ତ୍ରଶସ୍ତ୍ର ରଖିବାର ଅଧିକାର ଦେଲେ ସେ କେତେ ଅସ୍ତ୍ରଶସ୍ତ୍ର ପ୍ରକୃତରେ ରଖିଛି, ତା'ର ହିସାବ ଠିକ୍ କରିବା କଷ୍ଟକର ହେବ । ଜାତିଆଣ ସଂଘକୁ ଦେଖେଇବା ପାଇଁ ବାହାରେ ରହିବ ଯେତେ, ଭିତରେ ଲୁଚି ଭୂମିରେ ରହିବ ତା'ଠାରୁ ଢେର୍ ବେଶୀ । ଆଉ ଦରକାରବେଳେ ସବୁ ବାହାରିପଡ଼ିବ । ଲାଗିଯିବ ଗୋଟିଏ ଯୁଦ୍ଧ । ବିଶେଷତଃ ଯେ ପର୍ଯ୍ୟନ୍ତ ଦେଶ ଦେଶ, ଜାତି ଜାତି ହୋଇ ରହିଛି, ସେ ପର୍ଯ୍ୟନ୍ତ ଦେଶ ହାତରେ ପଇସା ଓ ଅସ୍ତ୍ରଶସ୍ତ୍ର ତିଆରି କରିବାର ଅଧିକାର ରହିଛି, ସେ ପର୍ଯ୍ୟନ୍ତ ନିରସ୍ତ୍ରୀକରଣ ଚିତ୍କାର କରିବା ଗୋଟାଏ ମସ୍ତବଡ଼ ରକମ ବାହାଦୁରୀ । ସାର୍ବଜନୀନ ନିରସ୍ତ୍ରୀକରଣ ଛଡ଼ା ଆଉ କେତେଗୁଡ଼ିଏ ପ୍ରସ୍ତାବ ପଣ୍ଡିତମାନଙ୍କ ମୁହଁରୁ ଶୁଣାଯାଏ, ସେ ହେଉଛି :—

(୧) ପୃଥିବୀର ଗୋଟାଏ ଦି'ଟା ଶକ୍ତିକୁ ଛାଡ଼ି ସମସ୍ତଙ୍କୁ ନିରସ୍ତ୍ର କରାଯିବ ଓ ସେହି ସମସ୍ତ ଜାତି ଦେଇଟା ଅନ୍ୟ ଜାତିମାନଙ୍କ ଭିତରେ କଳିଗୋଳ ଲାଗିଲେ ମୀମାଂସା କରିବେ ।

(୨) ପୃଥିବୀର ସମସ୍ତ ଜାତିମାନଙ୍କୁ ନିରସ୍ତ୍ରୀକରଣ ଜାତିଆଣ ସଂଘ ହାତରେ ଅସ୍ତ୍ରଶସ୍ତ୍ର ଓ ସୈନ୍ୟ ବାହିନୀ ରଖାଯିବ ଓ ଜାତିଆଣ ସଂଘର ହୁକୁମ ଅନୁସାରେ ଏ ଅସ୍ତ୍ର-ଶସ୍ତ୍ର ଓ ସୈନ୍ୟ ଅନ୍ୟମାନଙ୍କ ଉପରେ ପ୍ରୟୋଗ କରାଯିବ ।

(୩) ସମୁଦାୟ ପୃଥିବୀକୁ ଗୋଟାଏ ଶକ୍ତିର ଅଧୀନରେ ରଖାଯିବ ଏବଂ ସୈନ୍ୟ ସାମନ୍ତ, ଅସ୍ତ୍ରଶସ୍ତ୍ର ତା'ର ହାତରେ ରହିବ ।

ଏସବୁ କଳ୍ପନା ଜଳ୍ପନା ମୂଳରେ ଗୋଟାଏ ବଡ଼ ଭୁଲ୍ ରହିଯାଇଛି । ଏପରି ଯେଉଁମାନେ କହନ୍ତି, ସେମାନେ ଧରିନିଅନ୍ତି ଯେ ଅସ୍ତ୍ରଶସ୍ତ୍ର ବଳରେ ହିଁ ଯୁଦ୍ଧ ହୁଏ । ଅନ୍ୟପ୍ରକାର ଯୁଦ୍ଧ ଅସମ୍ଭବ ଓ ସମ୍ଭବ ହେଲେ ମଧ୍ୟ ସେତେବେଶୀ କ୍ଷତିକାରକ ନୁହେଁ । ଏପରି ଧାରଣା ଏକାବେଳେକେ ଭୁଲ୍ । ମଣିଷର ମନ ଗାତମୂଷାପରି । ତାର ଗୋଟିଏ ଦୁଆର ବନ୍ଦ କରିଦେଲେ, ସେ ମାଟି ଭିତରେ ପୁଣି ଗୋଟାଏ ଦୁଆର ଖୋଲି ବାହାରିପଡ଼େ । ତା'ର ଝୁଙ୍କ ଯେତେବେଳେ ଉଠେ, ସେ ଯେ କୌଣସିମତେ ତାକୁ ସନ୍ତୁଷ୍ଟ କରିବ । ଆମର ଜଣେ କବି ଗାଇଛନ୍ତି

"ଡାଲିଗଲା ବନ, ବାଛିଗଲା ମନ, ଲେଉଟିଆସେ କି ଆଉ ଗୋ ।" ଯେତେବେଳେ ଗୋଟାଏ ଜାତିର ମନରେ ଅନ୍ୟାୟ ଓ ଖରାପ ବ୍ୟବହାର ହେତୁରୁ ଧକ୍କା ଲାଗେ, ସେ ତେଜିଉଠିବ, ଅନ୍ୟାୟ ଓ ଅତ୍ୟାଚାରର ପ୍ରତିଶୋଧ ନବାକୁ ଲାଗିପଡ଼ିବ । ଉପରେ ହାକିମ ଅଛି ବୋଲି, କି ତାର ହାତରେ ଅସ୍ତ୍ରଶସ୍ତ୍ର ନାହିଁ ବୋଲି ସେ ଆମ ଓଡ଼ିଆଙ୍କ ଭଳି ଘରକୁଣରେ ବସି କାନ୍ଦିବନାହିଁ । ନିରସ୍ତ୍ର ଭାରତୀୟ ଅସହଯୋଗ ଯୁଦ୍ଧ କରିପାରେ । ସବୁ ଆଇନ୍ କଟକଣା ଥାଇ ମଧ୍ୟ ସେ ସ୍ୱେଚ୍ଛାକରି ହଉ, ଲୁଚେଇ ଚୋରି କରି ହଉ, ଯିମିତି ପାରୁ ସିମିତି, ଗୁଳାଗୁଳି, ବନ୍ଧୁକ, ପିସ୍ତଲ ନେଇ ଶହଶହ ମଣିଷ ମୁଣ୍ଡ ଗଡ଼େଇଦେଇ ଯାଇପାରେ । ଏ ଦିଗରେ ଗୋଟାଏ ମଣିଷ ଯେପରି, ଗୁଡ଼ାଏ ମଣିଷଙ୍କର ଗୋଟାଏ ଜାତି ମଧ୍ୟ ସେହିପରି । ଆଇନ୍ ଅଛି ମଣିଷ ମାଇଲେ ଫାଶୀ ପାଇବ । ସ୍ୱା ବୋଲି କଣ ଲୋକେ ମଣିଷ ମାରୁନାହାନ୍ତି ? ଫାଶୀ କ.ଠ, ବନ୍ଦୀଶାଳା ଚୌକି କଣ ଶୂନ୍ୟ ରହୁଚି ? ସ୍ୱେଚ୍ଛାକଲେ ଦଣ୍ଡ ପାଇବ । ସ୍ୱା ବୋଲି କଣ ଲୋକେ ସ୍ୱେଚ୍ଛା କରୁନାହାନ୍ତି ? କେତେ ମଣିଷମାରୁ ହଉଚି, ତା ଭିତରୁ କେତେ ଲୋକ ଧରା ପଡ଼ୁନାହାନ୍ତି । ଯେ ବା ଧରାପଡ଼ୁଚନ୍ତି, ବସ୍ତୁରରେ ଓକିଲଙ୍କ ସୁଆଲ ଜବାବରେ, ହାକିମର ମର୍ଜି ଉପରେ କେତେକ ଖସିଯାଉଛନ୍ତି, ଆଉ ସାମାନ୍ୟ କିଛି ଦଣ୍ଡ ଭୋଗୁଛନ୍ତି । ଯାହା ଜଣେ ମଣିଷ ପାଇଁ ସତ୍ୟ, ତାହା ସମସ୍ତଙ୍କ ପାଇଁ ସତ୍ୟ । ଅତଏବ, ଜାତିକୁ ନିରସ୍ତ୍ର କରି ତାକୁ ଶାନ୍ତିପ୍ରିୟ କରାଇପାରେନାହିଁ । ଲୋକ ମାନୁଥିବାଯାଏ ଆଇନ୍ ଆଇନ୍ ହୋଇ ରହିବ । ଲୋକ ନ ମାନିଲେ ଆଜିର ଆଇନ୍ କାଲି ବେଆଇନ୍ ହୋଇଯିବ । କଥାରେ କହନ୍ତି, "ମାନିଲେ ଦେଓ, ନ ମାନିଲେ ପଥର" । ତାପରେ ଅଛି ପେଟ ଯୁଦ୍ଧ । ଧର ସମୁଦାୟ ପୃଥିବୀକୁ ନିରସ୍ତ୍ର କରିଦିଆଗଲା, ସବୁ ଗୋଳା ଗୋଳି ରହିଲା ଜାତିଆଣ ସଂଘ ହାତରେ । କିନ୍ତୁ କୌଣସି କାରଣରୁ ଗୋଟିଏ ବଡ଼ଜାତି ଗୋଟିଏ ଶ୍ରେଷ୍ଠ ଜାତି ଉପରେ ରାଗିଥିଲେ ବା ଯଦିଆଏ ଶ୍ରେଷ୍ଠ ଜାତି ଗୋଟିଏ ବଡ଼ ଜାତି ଉପରେ ରାଗିଥିଲେ । ସେମାନେ ଦେଖିଲେ ଅସ୍ତ୍ରଶସ୍ତ୍ରର ଯୁଦ୍ଧ କରିପାରିବେ ନାହିଁ । ଠିକ୍ କଲେ, "ଆଚ୍ଛା ବେଟା, ଦେଖିବା", ଆଜିକାଲି ଯେପରି ଅର୍ଥନୀତିର ମାମଲା ଚାଲିଚି, ଗୋଟାଏ ଜାତି ତା'ର ଜିନିଷ ପାଇଁ କଳକାରଖାନା ଠାରୁ ଆରମ୍ଭ କରି ଖାଇବା, ପିନ୍ଧିବାର ଜିନିଷ ପର୍ଯ୍ୟନ୍ତ ଅନ୍ୟ ଦଶଟା ଜାତି ଉପରେ ନିର୍ଭର କରୁଚି । ଅତଏବ ଲାଗିଗଲା ଭିତରର ଯୁଦ୍ଧ । ରାଜ୍ୟରେ ଚଳୁଥିବା ପଇସାର ଦାମ୍ ବଢ଼ିଗଲା । ଜିନିଷ ରପ୍ତାନି ହେଲା ନାହିଁ । ଦେଶଟା ଖାଲି ଜିନିଷ ଅଭାବରେ ଛଟେଇପଟେଇ ହେଲା । ଅସ୍ତ୍ରଶସ୍ତ୍ରର ଯୁଦ୍ଧରେ ଲୋକେ ଯେମିତି ଖାଇବା ପିଇବା ବିନା ହଇରାଣ ହୋଇଥାନ୍ତେ, ଏଥିରେ ମଧ୍ୟ ସେହିପରି ହେଲେ । ଏହି ପ୍ରକାର କିମିଟି ଖେଳରୁ ମଧ୍ୟ ମହାଭାରତ ଉପୁଜି ଯାଇପାରେ । ସେହିହେତୁରୁ କହୁଥିଲି ଖାଲି ନିରସ୍ତ୍ରୀକରଣରେ ପୃଥିବୀରେ ଶାନ୍ତି ଆସିପାରେ ନାହିଁ । ଅସଲ କଥା ହଉଚି, ମନ ମାନିବା । ଏ ମନପବନକୁ କିମିତି ବାନ୍ଧି

ରଖିବ, କି ଦହନ୍ଧଦେଇ, କି ଲୁହାଘର ଭିତରେ, ତାର କୌଣସି ପନ୍ଥା ଏପର୍ଯ୍ୟନ୍ତ କେହୁ କରିନାହାନ୍ତି । ଏକଆଖିଆ ଓଟଭଳି ସମସ୍ତେ ମାଡ଼ିଗ୍ଲ୍‌ଚନ୍ତି ଗୋଟାଏ ବାଟରେ ଯେ ମଣିଷର ବଦ୍ହଟାନ୍ଧି ସବୁ । ମଣିଷର ଯେ ଗୋଟାଏ ମନ ଅଛି, ଆଉ ସେ ମନଟା ଏ ଶରୀରର ମାଲିକ ଏ କଥା ଭୁଲିଯାଇଚନ୍ତି । ଜଣେ ପଣ୍ଡିତ କଏ ବଲିବଲେଇ ପକେଇଲେ କେଉଁଦିନ ଯେ ମନ ବୋଲି କିଛି ନାହିଁ । ସବୁ ଇନ୍ଦ୍ରିୟର କାରସାଦି । ସମସ୍ତେ ସେଇଥିରେ ବାଇହୋଇ ଧାଇଁଚନ୍ତି । ଏ ମତ ବଦଳିଯାଇଚି । ନୂଆ ମତ ଆସିଚି । ନୂଆ ନୁହେଁ ପୁରୁଣା, ଅତି ପୁରୁଣା । ପୁରୁଣା ତାର ହକ ଜାଗାକୁ ଆସିଚି । ଯେ ପର୍ଯ୍ୟନ୍ତ ଲୋକେ, ଲୋକନେତାମାନେ ମଣିଷର ମନକୁ ବଡ଼ ବୋଲି ମାନିନାହାନ୍ତି, ଯେପରି ମଣିଷକୁ ଗୋଟାଏ କଳରେ ଗୋଟାଏ ପେଚ ବୋଲି ଭାବି ଚଳିଚନ୍ତି, ସେ ପର୍ଯ୍ୟନ୍ତ ସଂସାରରେ ଶାନ୍ତି ଅସମ୍ଭବ ।

ତା'ହେଲେ ଆମ୍ଭେମାନେ ଦେଖିଲୁ ନିରସ୍ତ୍ରୀକରଣର ଯୁଦ୍ଧର ଅବସାନ ହେବ ନାହିଁ । ହୋଇ ନ ପାରେ । ଅବଶ୍ୟ ସମୁଦାୟ ପୃଥିବୀକୁ ଯେବେ ଗୋଟାଏ ଶାସନର ଭିତରକୁ ଅଣାଯାଇପାରେ, ଯେବେ ଦେଶ ଦେଶ ଓ ଜାତି ଜାତିର ଭେଦ ହଟେଇ ଦିଆଯାଇପାରେ, ଯେବେ ପୃଥିବୀର ସମସ୍ତ ଲୋକଙ୍କୁ ସମାନ ଅଧିକାର ଓ ମର୍ଯ୍ୟାଦା ଦିଆଯାଇପାରେ, ଯଦି ଗ୍ରାମର ସ୍ୱାୟତ୍ତ ଶାସିତ ପଞ୍ଚାୟତ ଉପରେ ଭିତ୍ତିକରି ଗୋଟାଏ ଜାତିଆଣ ସଭା ବସାଇ ଦିଆଯାଇପାରେ । ଲୋକଙ୍କ ମନରେ ନ୍ୟାୟ ଓ ସତ୍ୟ ଉପରେ ବିଶ୍ୱାସ ଅଣାଯାଇପାରେ, ଅର୍ଥାତ୍ ଯେବେ ଆକାଶର ଚନ୍ଦ୍ର ମର୍ତ୍ତ୍ୟରେ ଗଡ଼ଗଡ଼େଇପାରେ, ଯେବେ ମାଟିରେ ତାରା ଫୁଟିପାରେ, ପାଣିରେ ପଥର ଭାସିପାରେ, ଯେବେ ନିର୍ମୂଳ ଲତାର ଚେର ସାଙ୍ଗରେ ପିମ୍ପୁଡ଼ିର ରକ୍ତ ମିଶେଇ ଅମର ବଟି ତିଆରି କରାଯାଇପାରେ, ତାହେଲେ ପୃଥିବୀର ଯୁଦ୍ଧ ବଦଳି ଶାନ୍ତି ଆସିପାରେ । କିନ୍ତୁ ପୃଥିବୀର ବର୍ତ୍ତମାନ ଅବସ୍ଥାରେ ଏପରି କଳ୍ପନା କରିବା, ପୁଣି ସ୍ୱା'ର ଭିତରରେ ସମସ୍ତ ଓ ପରିଶ୍ରମ ବ୍ୟୟ କରିବା କେବଳ ସୁଖ ସ୍ୱପ୍ନ ଛଡ଼ା ଆଉ କିଛି ନୁହେଁ । ତେବେ ସଂସାରରେ ଯେପରି ସୁଖର ଅତିରିକ୍ତ ଅଭାବ, ସେଥିରେ ସ୍ୱପ୍ନରେ ମଧ୍ୟ ଟିକିଏ ସୁଖ ପାଇପାରିଲେ ମନ୍ଦ ନୁହେଁ । ତେବେ ସେ ସୁଖର ସ୍ୱପ୍ନ ଦେଖୁ ଦେଖୁ ଯେବେ ବିଦ୍ୟୁତ୍ସ୍ପୃଷ୍ଟ ସୂକ୍ଷ୍ମ ବାଲିରେ ମିଶିଯାଏ, ତା'ହେଲେ ଥାଳ ଝଣ୍ଟିକି ଭାସିଯିବ, ନଉକାଟି ନାସ୍ତିକ ହୋଇଯିବ ।

ଏ ବିଷୟରେ ଅନେକଗୁଡ଼ାଏ କହିଗଲି । କହି ଗାଲି, ମୁଣ୍ଡ, ଗୁଡ଼ା କିଛି ମୁଲେଇଲି ମାତ୍ର । କିନ୍ତୁ ବିଷୟଟା ଏତେବଡ଼ ଆଉ ମାନବ ସଭ୍ୟତା ଦୃଷ୍ଟିରୁ ଏତେ ଗୁରୁତର ଯେ ଏତେଗୁଡ଼ାଏ ତ କିଛି ନୁହେଁ । ବୋଧହୁଏ ଗୋଟାଏ ମହାଭାରତ ଲେଖିଲେ ମଧ୍ୟ ସରିବ ନାହିଁ । ଅତଏବ, ଅସଲ କଥାଟିଏ ଅସରନ୍ତି ଭାବରେ କହିଲି ବୋଲି ଯେପରି କେହି ମୁହଁ ବଙ୍କେଇ ନ ବସନ୍ତୁ । ତୁମ ମୁହଁ ବଙ୍କାକୁ ଯେ ମୋର ବଡ଼ ଡର, ପ୍ରିୟତମ !



ନବଭାରତ, ୧୩୪୭/୧୯୪୦, ୭ମ ବର୍ଷ—୭ମ ସଂଖ୍ୟା, ପୃଷ୍ଠା—୫୬୨

# ଛେନାଗୁଡ଼

ଲେଖିବ କଣ ? କଉଁ ବିଷୟରେ ? ସାହିତ୍ୟ ? ସେଥିରେ ତ ମୋର ହବନାହିଁ, ମୁଁ ଶୀତଦିନର ହଳଦିଆ ଶୁଖିଲା ପତ୍ର, ମଉ ଝାଉଁଣିଆ ଫୁଲ ପତ୍ର ନୁହେଁ, ସାହିତ୍ୟରେ ଲେଖିବା ଅଧିକାର ମୋର ଆସିବ କୁଆଡ଼ୁ ? ମୁଁ ସ୍ୱୀକାର କରୁଛି, ସ୍ୱୀକାରିଆ ହିଁ ରହିବ; ସାହିତ୍ୟର ଅଟକ ଜଙ୍ଗଲ ଭିତରକୁ ପଶିବାପାଇଁ ମୁଁ ମନ ବଳେଇବ କିଆଁ ? ଯଦି ବଳାଏ, ତାହେଲେ ହାତକଡ଼ି, ଗୋଡ଼କଡ଼ି ଦେଇ ସାଙ୍ଗେସାଙ୍ଗେ ଚାଲାଣ ନ ହେବି କାହିଁକି ଓ ଏକତରଫା ଓଡ଼ିଆ ସାହିତ୍ୟର ଜଙ୍ଗଲ ଆଇନ ଅନୁସାରେ ମୋର କଳାପାଣି ହୁକୁମ ନ ହେବ କିଆଁ ? କଥାଟା ବିଲ୍‌କୁଲ ସତ ମାନିନେଲି, ନ ମାନି ଉପାୟ କଣ ? ପୁଲିସ୍ ଯେତେବେଳେ ଧରିଆଣିଛି, ମୁଁ ଦୋଷ ନ କରିଥିଲେ ମଧ୍ୟ ଦୋଷୀ ।

ଲେଖିବ ତେବେ ରାଷ୍ଟ୍ରନୀତି ବା ରାଜନୀତିର ଦର୍ଶନ ? ନା, ନା, ସେ ହୋଇପାରିବ ନାହିଁ । ତେଣିକି ଗୋଡ଼ ବଢ଼େଇବାର ଜାଗା ଏକାବେଳକେ ନାହିଁ । ମୁଁ ଲେନିନ୍‌ଙ୍କୁ ବିଷ୍ଣୁ, ଷ୍ଟାଲିନ୍‌ଙ୍କୁ ବ୍ରହ୍ମା ଓ ଓ.ଏମ୍.ଏନ୍. ରାୟଙ୍କୁ ମହାଦେବ ବୋଲି ମାନିବାକୁ ରାଜି ନୁହେଁ । ଓଃ, ତେବେ ମୁଁ ରାଷ୍ଟ୍ରନୀତି ସମ୍ବନ୍ଧରେ ଜାଣେ କଣ ? ଏଇ ଦେବତାମାନଙ୍କର ବେଦ ପୁରାଣ ଛଡ଼ା ଆଉ କିଛି ରାଜନୀତି ବା ରାଷ୍ଟ୍ରନୀତି ଏ ସଂସାରରେ ଅଛି ? ନା, ନା, ଯେବେ ବା କିଛି ଥାଏ, ତାହେଲେ ସେଗୁଡ଼ାକ ନେଇ ବିଶ୍ୱ-ବିପ୍ଳବର ଜଳନ୍ତା ନିଆଁକୁଣ୍ଡରେ ନ ଜାଳିଲେ ଚିଲିକାର କାଳିଜାଇ ଗଣ୍ଡରେ ଭସାଇଦେବାକୁ ପଡ଼ିବ । ଯାହା ଲେନିନିଜିମ୍‌ରେ ନାହିଁ, ତାହା ପାପ, ଯାହା ସେଥିରେ ଅଛି, ସେଗୁଡ଼ାକ ନିରର୍ଥକ । ଅତଏବ, ଡିଅ ଲଗାଇ ନିଆଁ, ଏହାର ପ୍ରତିବାଦ ଯେବେ କେହି କରେ, ତାହେଲେ ତାଠାରୁ ବଳି ପ୍ରଜାତନ୍ତ୍ରର ଶତ୍ରୁ କେହି ନାହିଁ । କାହିଁକି ନା ପ୍ରଜାତନ୍ତ୍ରର ଅର୍ଥ ହେଲା ଏକର ଏକ-ଶଙ୍କ ଉପରେ ହାକିମ, ମେଶ ରାସ୍ତା ନୀତି । ଆମେ ଯାହା କହୁଛୁଁ, ସେଇଟା ହିଁ ସାର, କାରଣ ଆମେ ଜଣେ ଜଣେ ଗୋଠଗଣ୍ଡିଆ । ଗୋଠର ବାକିମାନେ ଯାହା କହୁଛନ୍ତି ଭୁଲ, କାରଣ ସେମାନେ ଗୋଠ; ସତ ମିଛର ମର୍ଯ୍ୟାଦା ସେମାନେ କାହୁଁ ବୁଝିବେ ? ମୋ ସତମାର୍ଗରେ ଯେ ମତ ନ ଦେଲା, ମୋ ମାଗି ଆଣିଲା ଚିଅଣ ଅଲଣା ହେଲେ ମଧ୍ୟ ଯେ ତାକୁ 'ଚମତ୍କାର, ଚମତ୍କାର, ବାହାବା, ବାହାବା', ନ କଲା, ସେ ମୋର ଶତ୍ରୁ । ଅତଏବ ଦେଶର ଓ ଜାତିର ଶତ୍ରୁ ! କାରଣ ଭଗବାନ ଶ୍ରୀକୃଷ୍ଣଙ୍କ ସ୍ୱପାର ଢଙ୍ଗରେ 'ଦେଶ ମୋ ଭିତରେ, ମୁଁ ଦେଶ ଭିତରେ ନାହିଁ !' ଶ୍ରୀକୃଷ୍ଣ ଭଗବାନ ଏଇଥିପାଇଁ; ନ ହେଲେ ସେ ଗଉଡ଼ ଟୋକା ରାଜମୂର୍ଖ ଫଟାରସିକଟାକୁ ଭଗବାନ ବୋଲି ମାନିବାକୁ ଆମ୍ଭେମାନେ ଆଦୌ ରାଜିନୋହୁଁ । ମାନେ କଥାଟା

ବୁଝିପାରୁଛନ୍ତି ତ ? ଆମର କଥାଟି ବେଦର ଗାର, ଲକ୍ଷ୍ମଣଙ୍କ ଗାର, ସ୍ୱାକୁ ଲଙ୍ଘିବାର ବା କାଟିବାର ଅଧିକାର କାହାର ନାହିଁ, ନହେଲେ ଦଶମୁଣ୍ଡିଆ ରାବଣାସୁର ଦଦ ତମକୁ ଟାକୁକନା ଗିଳି । ତୁମେ ଯେବେ ସେ ଦୁର୍ଦ୍ଦଶାରୁ ରକ୍ଷା ପାଇବା ପାଇଁ ଆମର ପିଛୁ ଧର, ତାହେଲେ ତୁମେ ଖାଲି ଆମର ପାଳିଆ ହୋଇ ରହିବ । ଗାଈଶିଆ ହୋଇ ପଦେ ଅଧେ ଝାଡ଼ିବାର ଅଧିକାର ତୁମର ନାହିଁ । ତେବେ ରାଷ୍ଟ୍ରଦର୍ଶନ ବିଷୟରେ ମଧ୍ୟ ଲେଖିବାକୁ ଆମେ ବେହିକ୍‌କ !

ତେବେ ଆଉ କଣ, ଧର୍ମ ? ଏ ଧର୍ମଟା ଏବେ ହେଇଚି ଦୋମୁହାଁ । ଏକା ମୁହଁରେ ଏ କହେ ଯେ ବେଦ, ପୁରାଣ, ସଂହିତା ଇତ୍ୟାଦି ଇତ୍ୟାଦି ଯାହା ଅଛି, ତାର ଗୋଟାଏ କାହାରିକୁ ମାନିବାକୁ ପଡ଼ିବ । ବେଦରେ ସ୍ୱା କହିଚି, ଅତଏବ ଏ ସାର; ଶଙ୍କର ଏ କଥା କହିଗଲେ, ଅତଏବ ତା ଠିକ୍ ଇତ୍ୟାଦି । ତୁମର ବୁଦ୍ଧି ଥିଲେ ତୁମେ ଶଙ୍କରଙ୍କ ହାତଗୋଡ଼ ଚୁନାକରି ସେଥିରୁ କବୀର ବା ରାମାନୁଜ ବା ଚୈତନ୍ୟ ବନେଇପାର, କିନ୍ତୁ ଆଉ କିଛି କରିପାରିବ ନାହିଁ । ଆମ କଥା ବିରୋଧରେ ଯେବେ ଟିକିଏ ହେଲେ ମୁହଁ ଫିଟାଅ, ତାହେଲେ ଆମେ ଦକୁ ଭର୍ତ୍ତିକରି ତା ଭିତରେ ଶଙ୍କର ଭାଷ୍ୟ, ତୁଳସୀ ରାମାୟଣ, ଚୈତନ୍ୟ ଚରିତା-ମୃତ, ଜଗନ୍ନାଥ ଭାଗବତ, ଚାରି ବେଦ, ୧୮ ଉପନିଷଦ, ୨୪ ପୁରାଣ । ବେଶ୍ ତୁମେ ଆଉ ପାଟି ଫିଟାଇପାରିବ ନାହିଁ । ଆଉ ଗୋଟାଏ ମୁହଁ କହେ ଧର୍ମ, ସେ ଗୋଟାଏକୁ ମରହଟ୍ଟି ଯୁଗର କଥା । ଏ ଦଅଁ ଦେଉଳ ଭାଙ୍ଗିଦିଅ, ଯେତେ ଧର୍ମଶାସ୍ତ୍ର ଅଛି ସବୁ ଜାଳିଦିଅ । ଧର୍ମ ନାହିଁ, ଇଶ୍ୱର ନାହିଁ, ଏ ସବୁ ଖାଲି ପୁଞ୍ଜିବାଲାମାନଙ୍କର ଗରିବ ମଜୁରିଆକୁ ବହଲେଇବାର କୁହୁକ । ଏସବୁ ଜାଗାରେ କାର୍ଲମାର୍କସ, ଲେନିନ୍, ଷ୍ଟାଲିନ୍, ଗାନ୍ଧି, ବୋଷ, ରାସ୍ତ, ଏହିପରି କୌଣସି ନୂଆ ଅବତାର ମୂର୍ତ୍ତି ତିଆରି କରି, ନୂଆ ଫେସନର ଦେଉଳରେ ତାକୁ ବସେଇ, ଫୁଲ ବେଲପତ୍ରୀ ଦେଇ ପୂଜା କର । କିନ୍ତୁ ଏଇଟାକୁ ଯେବେ ଅବତାରବାଦ, କି ପୌତ୍ତଳିକତା ବୋଲି କହ, ତାହେଲେ ତୁମ ମୁଣ୍ଡରେ ଠେଙ୍ଗା । ତୁମେ ଯେବେ ସ୍ୱାଙ୍କୁ ଦେବତା ବୋଲି ନ ମାନ, ତାହେଲେ ତୁମର ଗତି ଅହିନରକ ।

ତେବେ କହନ୍ତୁ ଦେଖି, ମଣିଷ ଆଉ କଣ ଲେଖିବ ? ଭାବି ଭାବି ମୋ ମୁଣ୍ଡ ଫାଟିଗଲା, ସମ୍ପାଦକଙ୍କର ଅଲଟିମେଟମ୍, ଅବଶ୍ୟ ଲେଖା ପଠେଇବାକୁ ପଡ଼ିବ । ଭଲରେ ଭଲ, ନିଜ ମୁଣ୍ଡଟା ବଞ୍ଚାଇ ମୁଁ ଆଉ କଣ ଲେଖିପାରେ ? ରସରସିଆ ହବ, ମନମତାଣିଆ ହବ, ଅଥଚ ଏଥିରେ ନଥିବ ପୁଞ୍ଜିବାଦର ଗନ୍ଧ ଓ ସାମ୍ୟବାଦର ମହକ, ନଥିବ ରାଷ୍ଟ୍ରନୀତି କି ଧର୍ମବାଦ । ତିନି ରାତି ବୁରଦିନ ନଶୋଇ, ନଖାଇ, ନପିଇ ଇଲୁଡ଼ଶାଳର ଯେତେ କଷ୍ଟ ସବୁ ସହି ଏଇ ଛେନାଗୁଡ଼ଟା ମୁଁ ଗଳ୍ପର ପକାଇଲି । ବୋଧହୁଏ କାହାରି ନାକକୁ ଏଇଟା କଷ୍ଟ ଦେବ ନାହିଁ । କାହିଁକି ନ ଦବ ତାର କାରଣ ହେଉଚି ଏଇ । ଏ ପୁଞ୍ଜିବାଦ ନୁହେଁ କି ସାମ୍ୟବାଦ । ଗୁପୀ ମଜୁରିଆ

ଘରର ଗାଈ ଦୁଧ ଦେଲା, ସେଥିରୁ ହେଲା ଛେନା, ଚାଷୀ ମଜୁରିଆଙ୍କ ପତ୍ନୀଙ୍କ କର-କମଳ, ହାଣ୍ଡିଶାଳ ଘର ଓ ଚୁଲି ମୁଣ୍ଡର ସାହାଯ୍ୟରେ। ବାକି ରହିଲା ଗୁଡ଼, ଚାଷୀ ଆଖୁ କଲା, ଆଖୁରୁ ଗୁଡ଼ ତିଆରି କଲା, ସର୍ବସାଧାରଣ ନିଆଁ ଜାଳି। ଗୁଡ଼ ଯେତେବେଳେ ଚିନି କାରଖାନାକୁ ଗଲା, ଚାଷୀ ପାଇଲା ଗୁଡ଼ର ଦାମ୍। ସେ ଆସିଲା ନାହିଁ ପୁଞ୍ଜିବାଦର ଫାଙ୍କା ଭିତରେ। କିନ୍ତୁ ସେ ଗୁଡ଼ ଯିମିତି ଯାଇ ପଡ଼ିଲା କାରଖାନା ଭିତରେ ସେମିତି ସେ ହୋଇଗଲା ପୁଞ୍ଜିବାଦର ମସଲା। ଆଉ ସେଥିରୁ ଚିନି ତିଆରି ହେଲା ମାତ୍ରକେ ସେ ହୋଇଗଲା ପୁଞ୍ଜିବାଦର ଫଳ। ମୁଁ ସେଥିପାଇଁ ଗୁଡ଼କୁ ଧରିଲି; ଏଥିରେ ପୁଞ୍ଜିବାଦ ଆସିପାରେ ନାହିଁ, ଅତଏବ ମୋ ଉପରେ ମାଡ଼ ବସିବାର କିଛି ଭୟ ନାହିଁ।

ଅନ୍ତତଃ ନ ରହିବା ହିଁ ଉଚିତ ଯେବେ ଆମ ମୁଖିଆମାନଙ୍କର ଚାଲିଚଳନ ସାଧାରଣ ମଣିଷର ଚାଲିଚଳନ ପରି ହୁଅନ୍ତା। କିନ୍ତୁ ସେମାନେ ଯେ ଜଣେ ଜଣେ ଅତି-ମାନବ, ସୁପରମ୍ୟାନ, ଦେବତା। ମାଟିର ମଣିଷ ପାଇଁ ଯେ ଯୁକ୍ତିତର୍କ ଖାଟିପାରେ, ସୁପରମ୍ୟାନ ପାଇଁ ସେତେଶିକା ଯୁକ୍ତିତର୍କ ଚାଲିପାରେ ନାହିଁ। ଏଇ ଦେଖ ନା— ଛେନା ଆଉ ଗୁଡ଼। ଦୁଇଟାଯାକ ସ୍ୱଦେଶୀ, ଦୁଇଟାଯାକ ନିର୍ଧୂମ ଓଡ଼ିଆ; ଦୁଇଟାଯାକ ଗରିବ ଚାଷୀର ଖାଣ୍ଟିମାଲ। ଏଥିରେ ପୁଞ୍ଜିବାଦୀଙ୍କର ରାକ୍ଷସୀ କ୍ଷୁଧାର ସଙ୍କେତ ନାହିଁ, କି ସାମ୍ୟବାଦର ଗନ୍ଧ ସମ୍ବନ୍ଧ ନାହିଁ। ଏଥିରେ ବିଦେଶୀ ବ୍ୟବସାୟୀର ସମ୍ପର୍କ ନାହିଁ, କି ରାଜବିଦ୍ରୋହର କଳାପଙ୍କ ନାହିଁ। ଏ ବିଲକୁଲ ଖାଣ୍ଟିମାଲ। ତେବେ ମଧ୍ୟ ଏ ଆମର ଏ ଅତିମାନବ ଦେଶରେ ଛେନା ଗୁଡ଼, ବିଦେଶୀ ପୁଞ୍ଜିବାଦୀ ଚିତ୍ତରଞ୍ଜନ ମାର୍କା ଅମଳପ୍ରିୟ ରସଗୋଲା, ସନ୍ଦେଶ, ଲେଡ଼ିକେନି, ପାନତୁଆ, ଛେନାବରା, ଛେନା ଖିରିରେ ନ ପାଲଟିଲେ କାହାର ପାଟିକୁ ସୁଆଦ ଲାଗେନାହିଁ କି କାହାରି ଆଖିକି ସୁନ୍ଦର ଦିଶେ ନାହିଁ। ପୁରୀ ଜଗନ୍ନାଥଙ୍କ ଦେଉଳର ଛେନାତାଡ଼ିଆ, ପାରିଜାତକ ଓ ଅମୃତ ରସାବଳି, ଆମ ମଫସଲ ଗାଁର ଛେନାମୁଣ୍ଡା, ଛେନାପୁର, ଛେନା ତରକାରୀ ଇତ୍ୟାଦି ସେଇ ଛେନା ଓ ଗୁଡ଼ରେ ତିଆରି ହୋଇଥିଲେ ମଧ୍ୟ ସେଗୁଡ଼ାକ ଆମ ଆଖିରେ ପଡ଼ିଗଲେ, ଆମ ଆଖିପତାଟାମାନ ଦ'ହାତ ଉପରକୁ ଉଠିଯାଏ ଓ କପାଳରେ ହଜାରେ ରେଖା ଆଙ୍କି ହୋଇଯାଏ। କାରଣ ଏଗୁଡ଼ାକ ଦେଶୀ ମାଲ, ଦେଶରେ ତିଆରି, ଦେଶର ଗରିବଙ୍କ ତିଆରି, ଗରିବର ଧନ ଓ ମଜୁରି; ଏ ଗୁଡ଼ାକରେ ଆମ ଦଳସେବୀ, ସମାଜବାଦୀ, ପ୍ରଜାତନ୍ତ୍ରୀ ମନ କେମିତି ମାନିବ? ଏ ଗୁଡ଼ାକରେ ଆମର ସ୍ୱଦେଶୀତ୍ୱ କାହିଁ ବିକଶି ଉଠିବ? ରସଗୋଲା ଓ ପାରିଜାତକ ଏକା ଜିନିଷରେ ତିଆରି; ରସାୟନିକ ପରୀକ୍ଷା କଲେ ଉଭୟରୁ ଏକ ଚିଜ ବାହାରିବ; ହେଲେ କ'ଣ ହେବ? ବିଦେଶୀ ରସଗୋଲା ଆଗରେ ଦେଶୀ ପାରିଜାତକ ସମାନ ହୋଇପାରେ? ଏଇ ପାରିଜାତକଟା ଯେବେ କଲିକତାର ଭୀମନାଗ ବା ଫ୍ରେଣ୍ଡସ୍ ସୋସାଇଟିରେ ତିଆରି ହୋଇଥାନ୍ତା ତା ହେଲେ ଆମର କୌଣସି ଆପତ୍ତି ନ ଥାନ୍ତା। ଆମର ଏ

ଜାତିକା ସ୍ୱଦେଶୀ ପ୍ରେମ ଓ ସ୍ୱଜାତି ପ୍ରେମର ନମୁନା ଆମର ପ୍ରତି କଥାରେ ଆପଣମାନେ ପାଇବେ । ଓଡ଼ିଶାର ଟୋକାମାନେ ସଭାସମିତି କରିବେ, ସେଥିରେ ସଭାପତି ସୁଭାଷବାବୁ ବା ଜୟପ୍ରକାଶ ବାବୁ ପଣ୍ଡିତଲୋକ, ଜ୍ଞାନୀଲୋକ, ଦେଶପ୍ରେମୀ ଲୋକ, ଏ କଥା କେହି ନ ମାନିବାକୁ ଯାଉନାହିଁ, କିନ୍ତୁ ତାଙ୍କ ଭଳି ଜ୍ଞାନୀ, ପଣ୍ଡିତ, ଦେଶ ପ୍ରେମୀ ଓ ବୁଦ୍ଧିମାନ ଲୋକ କଣ ଏ ଓଡ଼ିଶାରେ ନାହାନ୍ତି ? ମୁଁ ଅନ୍ତତଃ ଅଧଡର୍ଜନେ ଓଡ଼ିଆଙ୍କ ନାଁ କହିଦେବି ଯେଉଁମାନେ କି ତାଙ୍କ ସମାସ୍କନ୍ଧ । ସୁଭାଷ ବାବୁ ବା ଜୟପ୍ରକାଶ ବାବୁଙ୍କ ଭଳି ଲୋକେ ଯେବେ ଓଡ଼ିଶାରେ ଅଛନ୍ତି, ତାଙ୍କ ନାଁ କାହିଁକି ବାହାରେ ପଡ଼ୁନାହିଁ, ତାଙ୍କୁ କାହିଁକି ବାହାରର ଲୋକେ ନେତା ବୋଲି ମାନୁନାହାନ୍ତି ? ବାହାରେ ନାଁ ପକେଇବା ଖାଲି ଯୋଗ୍ୟତା ଉପରେ ନୁହେଁ, ଢେଙ୍କୁରା ବଜେଇ ପାରିବାର ଶକ୍ତି ଉପରେ ବହୁତ ନିର୍ଭର କରେ । ଆଉ ସେ ଢେଙ୍କୁରା ବଜାଇବାକୁ ହେବ ଦେଶ-ଲୋକଙ୍କୁ । ଆମର ସୁଭାଷବାବୁ ବଡ଼, ଆମର ଜୟପ୍ରକାଶ ବାବୁ ବଡ଼— । ଏଇ କଥା ବାଣ୍ଡରେ, ହାଟରେ, ସଭାସମିତରେ, ଖେଳ ଓ ଯୁଦ୍ଧ ପଡ଼ିଆରେ ଅକାଳେ ସକାଳେ କହି ବୁଲୁଥିଲେ ବୋଲି—ସୁଭାଷବାବୁ ଓ ଜୟପ୍ରକାଶବାବୁ ବଡ଼ । ସୁଭାଷବାବୁଙ୍କୁ କଂଗ୍ରେସ ନେତାମାନେ ଅପମାନ କରିଛନ୍ତି । ଅତଏବ, ସମସ୍ତ ବଙ୍ଗାଳି ଜାତି କଂଗ୍ରେସ ଛାଡ଼ିବେ ପଛକେ, ସୁଭାଷବାବୁଙ୍କୁ ଟିକିଏହେଲେ ତଳେ ପକେଇବାକୁ ଦେବେ ନାହିଁ । ଏହିପରି ଭାବରେ ଲୋକର ନାଁ ପଡ଼େ । ଆଉ ଆମେ ? ଆମ ଭିତରେ ଯେବେ କିଏ ଟିକିଏ ମୁଣ୍ଡ ଟେକିଲା, କିଏ ଯେବେ ଟିକିଏ ନାଁ କରି ବସିଲା, ତାହେଲେ ଅନ୍ୟ ଦେଶ ଲୋକେ ଯାହା କରନ୍ତୁ ବା ନ କରନ୍ତୁ, ଆମେ ଆଗ କରି ତାଙ୍କ ମୁଣ୍ଡରେ ବସେଇବୁ ପାହାର । ଏ ଜାତି ଉଠିବ କିମିତି ? ଘରର ସୁନାକୁ ଯେବେ ଆମେ ଖପରା ବୋଲି ଫିଙ୍ଗି ଦେଉଁ, ପର କଣ ଆସି ଆମ ଘର ଘଡ଼ା ଭରି ଦେବ ? ପର ସୁନାରେ କାହାର ପେଟ ଭରି ନାହିଁ, ଭରିବ ନାହିଁ, ଭରି ନ ପାରେ । ପଡ଼ିଶା ଘରର ସୁନାକୁ ସୁନା କହି ଆପତ୍ତି ନାହିଁ । ବାହାର ଗୁଣୀଙ୍କ ଗୁଣକୁ ପୂଜା କର, ପ୍ରଶଂସା କର, ଖୁବ୍ ଭଲ କଥା । କିନ୍ତୁ ନିଜ ସୁନାଟିକୁ ଭେଣ୍ଡି କର ନାହିଁ । ତୁମେ କହିବ ଭାରତ ଗୋଟାଏ ଦେଶ, ସମୁଦାୟ ଭାରତବାସୀ ଗୋଟାଏ ଜାତି, ଏ ଜାତି ଓ ଦେଶ ଭିତରେ ଯେ କୁଠି ଗୁଣୀ ରହିଲେ, ସେ ଆମର ଗୁଣୀ, ଏହା ଭିତରେ ଆମ ଦେଶ, ତା ଦେଶ ବୋଲି ଗୋଟାଏ ଭେଦଭାବ ରଖିବା କେବଳ ଛୋଟଲୋକର ପ୍ରମାଣ । ଏପରି କଥା କେବଳ ଛୋଟ-ଲୋକଙ୍କ ପାଖରେ ଶୋଭାପାଏ; କେବଳ ଯେଉଁମାନେ 'ଆମେ ଛୋଟ' ବୋଲି ମନରେ ସବୁବେଳେ ଗୋଟାଏ ଲାଜ ଓ ଭୟ ପୋଷିଥାନ୍ତି, ସେହିମାନଙ୍କ ପକ୍ଷରେ ଖାଲି ଏପରି କଥା ସମ୍ଭବ ହୁଏ । ମହାଭାରତୀୟତା ଆମର ଲକ୍ଷ୍ୟ ଓ ସାଧନା, ଏଥିରେ କୌଣସି ସନ୍ଦେହ ବା ଦ୍ୱିଧା ନାହିଁ । ଏଇ ମହାଭାରତୀୟତାରେ ଯେ ଆମର ମୁକ୍ତି ଏଥିରେ ମଧ୍ୟ କାହାର ଯାଚି ଫିଟେଇବାର ନଥାଇ ପାରେ । କିନ୍ତୁ ଭାରତବର୍ଷର ଓ

ଷାଲଡର କୌଣସି ସୁସ୍ଥ ରାଜନୈତିକ ଏପରି କେବେ ସ୍ୱପ୍ନରେ ଭାବନାହାନ୍ତି ଯେ ଭାରତବର୍ଷର ଏ ବାରଜାତି ତେରଗୋଲ ସମସ୍ତଙ୍କୁ ଭାଙ୍ଗିଭୁଜି ବାଢ଼େଇ ପିଟି ଗୋଟାଏ ଜାତି ଓ ଗୋଟାଏ ଗୋଲରେ ପକାଇବାକୁ ପଡ଼ିବ । ଏ ବାର ଜାତି ଓ ତେର ଗୋଲ ରହିବ । ମହାଭାରତୀୟତା ଜାତି ହେବ ଏଇମାନଙ୍କର ସମାନ ଓ ସାଧାରଣ ମିଳନରେ । ଏପର୍ଯ୍ୟନ୍ତ ପୃଥିବୀରେ ଏହିପରି ବାର ଜାତି ତେର ଗୋଲର ଯେ ମିଳନ ହୋଇଛି, ସେଥିଭିତରେ ଆମେରିକାର ମୁକ୍ତଦେଶ ଓ ରୁଷିଆର ବଲସେଭି ସଂଯୋଗ । ଏ ଦୁଇଟାଯାକ ଉଦାହରଣରେ କୌଣସିଠାରେ ଜାତି ଓ ଭାଷାକୁ ଭାଙ୍ଗି ଏକ ଭାଷା ଓ ଏକ ଜାତି କରିବାର ଚେଷ୍ଟା ହୋଇନାହିଁ । ଗୋଟାଏ ପୁଞ୍ଜିବାଦୀର ସ୍ଥାନ ଅନ୍ୟଟି ସାମ୍ୟବାଦର ଜନ୍ମଭୂମି । ଅଥଚ ଉଭୟରେ ଜାତି ଓ ଭାଷାର ବୈଷମ୍ୟ ଭିତରେ ରାଜନୈତିକ ସମ୍ମେଳନ ମାତ୍ର ହୋଇଛି, ଭାରତବର୍ଷରେ ସେଇଆ ମାତ୍ର ହେବ । ଅନ୍ୟଥା କଳ୍ପନା କରିବା ଐତିହାସିକ ଓ ମାନବୀୟ ଅଭିଜ୍ଞତାର ମୁଣ୍ଡରେ ଗୋଇଠା ମାରିବା ମାତ୍ର, ସ୍ୱର୍ଗଫୁଲ ଧରିବାର ବୃଥା ପିଲାଳିଆ ଚେଷ୍ଟା ମାତ୍ର । ଅଥଚ ଏ ରାଜନୈତିକ ମହାଭାରତୀୟତା ଅସମ୍ଭବ, ଯେ ପର୍ଯ୍ୟନ୍ତ ଏ ବାରଜାତି, ତେରଗୋଲ ଭିତରୁ ପ୍ରତ୍ୟେକ ଅପର ସାଙ୍ଗରେ ତାଳ ପକାଇବାକୁ ସମାନ ବଳଶାଳୀ ନ ହୋଇଛନ୍ତି । ଦୁର୍ବଳ ଓ ସବଳ ଜାତିର ଜବରଦସ୍ତି ମିଳନ ଯେଉଁଠାରେ ଚେଷ୍ଟା କରାଯାଇଛି, ସେଠାରେ ଦେଖାଯାଇଛି ହୁଏତ ଦୁର୍ବଳ ଜାତି ସବଳ ଜାତିର ତେଜୀ ଆଲୁଅରେ ଲୋପ ପାଇଯାଇଛି, ନହେଲେ ସବଳ ଜାତି ଦୁର୍ବଳ ଜାତିର ଦୋଷରୁ ନିଜେ ଟିକିଏ ଦୁର୍ବଳ ହୋଇପଡ଼ିଛି ।

ଯଦି କେହି ଆଶା କରିପାରନ୍ତି ଯେ ଜୋର ଜବରଦସ୍ତି କରି ଏ ଓଡ଼ିଆ ଜାତିଟାକୁ ହିନ୍ଦୀ ଜାତି ସାଙ୍ଗରେ ମିଳାଇଦେବେ ବୋଲି, ସେମାନେ ବଡ଼ ଭୁଲ କରିଛନ୍ତି । ଏଇ ଓଡ଼ିଆ ଜାତି ଉପରେ କେତେ ଅଭିଯାନ ହୋଇଯାଇଛି । ଅଶୋକଙ୍କର କଳିଙ୍ଗ ବିଜୟ ପରେ ବୌଦ୍ଧଧର୍ମର ସାହାଯ୍ୟରେ ଏ ଜାତିଟାକୁ ବୁଡ଼େଇ ଦବାର ଅବକାଶ ମିଳିଥିଲା, କିନ୍ତୁ ଫଳ ହେଲା, ବୌଦ୍ଧଧର୍ମ ଓଡ଼ିଶାର ଜଗନ୍ନାଥ ଧର୍ମରେ ବୁଡ଼ିଗଲା । ମୁସଲମାନମାନଙ୍କର ହାତରେ ଓଡ଼ିଶା ପ୍ରାୟ ୩୦୦ ବର୍ଷ ରହିଥିଲା । ମୁସଲମାନମାନେ ବଙ୍ଗ, ମଗଧ ଇତ୍ୟାଦି ଦେଶରେ ଯେ ପରିମାଣରେ ନିଜର ଧର୍ମ ବିସ୍ତାର କରିପାରିଥିଲେ, ଓଡ଼ିଶାରେ ତାଙ୍କର ସେ ଉଦ୍ୟମ, ସେ ସବୁ ତୁଳନାରେ ଅତି କମ୍ ଓ ନଗଣ୍ୟ । ପ୍ରାୟ ଏକଶ ବର୍ଷ ବ୍ୟାପୀ ମରହଟ୍ଟା ରାଜତ୍ୱ ଓଡ଼ିଶାରେ ହୋଇ ଯାଇଥିଲେ ମଧ୍ୟ, ମରହଟ୍ଟା ପ୍ରଭାବ ଓଡ଼ିଶାରେ କିଛି ମାତ୍ର ନାହିଁ । ଇଂରାଜୀ ରାଜୁତିରେ ପ୍ରାରମ୍ଭରୁ ଆଜି ପର୍ଯ୍ୟନ୍ତ ପ୍ରାୟ ୧୬୦ ବର୍ଷ ମଧ୍ୟରେ କେତେ ବଙ୍ଗାଳି ନେତା ଓ ଓଡ଼ିଆ-ଶିକ୍ଷିମନାଇଙ୍କର ଏଇ ସମସ୍ତ ଚେଷ୍ଟା ଆଇ ମଧ୍ୟ ଓଡ଼ିଶାର ଛେନାଗୁଡ଼ ପାରିଜାତକକୁ ବଙ୍ଗଳାର ଛେନା ଚିନି ରସଗୋଲା ବିଦାୟ କରିପାରିନାହିଁ ।

ଏ ଜାତି ଦୁର୍ବଳ ନୁହେଁ । ଆଜି ଏ ଦୁର୍ଦ୍ଦିନରେ ପଡ଼ିଛି । କିନ୍ତୁ ବଡ଼ମାଛର କଣ୍ଟା ସାର । ସ୍ୱାର ଏଇ ଖଣ୍ଡିଆ ଦଣ୍ଡିଆ କଣ୍ଟା କଙ୍କାଳରେ ବର୍ତ୍ତମାନ ମଧ୍ୟ ଏତେ ସାର ଅଛି ଯେ ଲେଖା ପଢ଼ଣାଙ୍କର ଓ ଘରର ଜୁହୁକଭଲ କେତେକ ଲୋକଙ୍କର ହଜାର ଚେଷ୍ଟା ଏ ସାରକୁ ଅସାର କରିପାରିବ ନାହିଁ । ଏ ଭାଷାକୁ—କୁଭାଷାରେ ପାଲଟେଇ ପାରିବ ନାହିଁ । ଏ ଜାତିର ଲୋପ ଅସମ୍ଭବ ।

ଏଇକଥାଟି ମନେରଖି ଆମ ଦେଶ ଭାଇମାନେ ଯେବେ ଆଗୁସାର ହୁଅନ୍ତି, ତାହେଲେ ସେମାନେ ଜଣେ ଅଙ୍ଗେ ନଭେଇବେ ଯେ ମହାଭାରତ ଜାତୀୟତାକୁ ସଫଳ କରିବାରେ ଏକମାତ୍ର ପନ୍ଥା ଓଡ଼ିଆ ଜାତି ଓ ଓଡ଼ିଆ ଜାତି ଭଳି ସାମୟିକ ଦୁର୍ଦ୍ଦିନ ଗ୍ରସ୍ତ ଅନ୍ୟାନ୍ୟ ଭାରତୀୟ ଜାତିମାନଙ୍କୁ ସବଳ କରିବାକୁ ପଡ଼ିବ । ତା ନହେଲେ ରବୀନ୍ଦ୍ରଙ୍କ ଉପମା ଅନୁସାରେ ଘୋଡ଼ା, ବଳଦ ଯୋଚି ଗାଡ଼ି ଚଳାଇଲେ ଘୋଡ଼ା ସିନା ହଦେଇ ଯିବ, ବଳଦ ଆଉ ଘୋଡ଼ା ହେଇଯିବ ନାହିଁ । ଆଗ ବଳଦକୁ ଖାଇବାକୁ ପିଇବାକୁ ଦେଇ ତେଜୀୟାନ କରିବାକୁ ପଡ଼ିବ, ତାର ଏ ମଠାମି ଭାଙ୍ଗି ତାକୁ ଘୋଡ଼ା ଦୌଡ଼ ଶିଖାଇବାକୁ ହେବ, ତେବେ ଯାଇ ସେ ଘୋଡ଼ାଙ୍କ ସାଙ୍ଗରେ କାନ୍ଧକୁ କାନ୍ଧ ପକାଇ, ଖେପକୁ ଖେପ ପକାଇ ମହାଭାରତର ମୁକ୍ତିରଥ ଅଗ୍ନି ପରୀକ୍ଷାର କୁଣ୍ଡ ଉପରେ ଉଡ଼ାଇନେବ ।

ଏ ଦିଗରେ ଆମର ପ୍ରଧାନ କର୍ତ୍ତବ୍ୟ ହଉଛି, ଆମେ ଅନୁଭବ କରିବୁଁ ଯେ ଆମେ ଶ୍ରେଷ୍ଠ ନୋହୁଁ, ଆମେ ବଡ଼ ଥିଲୁଁ, ପୁଣି ବଡ଼ ହବାର ସବୁ ସରଞ୍ଜାମ ଆମ ଭିତରେ ଅଛି । ଆମେ ବଡ଼ ହବୁଁ । ଆମ ଦେଶର ବଡ଼ ଓ ମୁଖିଆଙ୍କୁ କାନ୍ଧରେ ଟେକି ପଢ଼ଣା ଘରର ବଡ ଲୋକମାନଙ୍କ ସାଙ୍ଗରେ ଏକ ଆସନରେ ବସାଇବୁ । ଆମର ଏଇ କଥା ମନ ଭିତରେ ଅନୁଭବ କରିବା ଉଚିତ ଓ ଅନୁଭବ କରି ଅନ୍ୟମାନଙ୍କୁ ସେଇ ଅନୁଭୂତିରେ ଅନୁପ୍ରାଣିତ କରିବା ଉଚିତ । ଆମର ଛେନାଗୁଡ଼ ପାରିଜାତକ ଯାହା, ପଢ଼ଣା ଘରର ଛେନାଗୁଡ଼ ରସଗୋଲା ସନ୍ଦେଶ ସେଇଆ । ରସଗୋଲା, ସନ୍ଦେଶ ଆଉ ବଡ଼ କାହିଁକି ନା ସେ ଟେକା ପାଇଛି । ଆମ ପରିଜାତକ ଶ୍ରେଷ୍ଠ କାହିଁକି ନା, ସେ ଟେକା ପାଇନାହିଁ ।

ସ୍ୱା ଭିତରେ ଆଉ ଗୋଟାଏ କଥା ରହିଗଲା । ପାରିଜାତକ ଓ ରସୋଗୋଲା ଭିତରେ ତୁଳନା କରିବାକୁ ଗଲବେଳେ ମୁଁ କହିବାକୁ ଭୁଲିଯାଇଛି ଯେ ରସଗୋଲା ଧଳା ଫର ଫର କଅଁଳମାଳ ଆଉ ପାରିଜାତକ କଳା କଟିକଟି ଟାଣୁଆ ଚଜ । ରସଗୋଲାକୁ ଖାଇବା ପାଇଁ ଦାନ୍ତର ଯେତେ କସରତ ଦରକାର, ପାରିଜାତକ ଖାଇବା ପାଇଁ ଦାନ୍ତକୁ ତା ଅପେକ୍ଷା ଟିକିଏ ବେଶୀ ପରିଶ୍ରମ କରିବାକୁ ପଡ଼େ । ଅତଏବ, ରସଗୋଲା ଭଲ ଆଉ ପାରିଜାତକ ଖରାପ । ସ୍ୱେ ଆମ ଭାରତୀୟ ସଭ୍ୟତାର ଗୋଟାଏ ପ୍ରଧାନ ଗୁଣ; ଆମର ଦରକାର ସବୁ ମୃଷ୍ଟ କଅଁଳ ନରମ ଚଜ । ଆମର ନାରୀମାନେ

ହେବେ ତୂଳାଶେଯ ଭଳି କଅଁଳ, ଆମର ନାଗରମାନେ ହେବେ ଅତରମଖା ଫୁଲ କିନାର ଫିଟାଉସିକ ବସିନି ପୋକ । ଆମେ ଦେଶରେ ସେନାପତି ହେବୁଁ ଅଗ୍ରିମ ଚୌକିରେ ବସି, ଆମେ ଦେଶର ସୈନିକ ହବୁଁ ଯୁବତୀମାନଙ୍କର ଅଧର ଚୁମ୍ବନ କରି । ଭିଡ଼ କାମଟି କହିବ ବୋଇଲେ ତୁମେ ହୋଇସିବ ନିତାନ୍ତ ମରହଟ୍ଟି, 'ସେ କେଲେ' । ଆମେ ଏ ସଭ୍ୟତା ଶିଖିଲୁଁ କେଉଁଠାରୁ ? ଅନ୍ତତଃ ଇଂରେଜ ଜାତିଠାରୁ ନୁହେଁ । ଇଂରେଜ ଜାତିର ସଭ୍ୟତାରେ କଅଁଳ କିଛି ନାହିଁ, ସେ ଖାଲି କଠୋର ନିଷ୍ଠୁର କର୍ତ୍ତବ୍ୟ ସାଧନା । ଇଂରେଜ ମହିଳାମାନଙ୍କ ପାଖରେ କଅଁଳ ଫୁଲ ବସିନି ପୋକ ମାଟିର କୀଟପତଙ୍ଗ, ଇଂରେଜ ସାଇବ ପାଖରେ ଅଣ ହାଡ଼ୋଇ ମାଂସଲେଦା ମାଇକିନିଆ ବରଫ ଟେଲା । ଅବଶ୍ୟ ଇଂରେଜ ସଭ୍ୟତା ଦରକାର କରେ ନାହିଁ ଯେ ସମସ୍ତେ ଆଳି କାଠ ପଥର ହେବେ । କିନ୍ତୁ ସେ ଦରକାର କରେ ଟାଣୁଆ ଲୋକର କୋମଳତା, କସରତି ଲୋକର ଯଥା ଇଚ୍ଛା ମୁଲାଏମ ଭାବ । ପୂର୍ବ କାଳରେ ଆମର ଲୋକେ, ଆମର ମରହଟ୍ଟି ଲୋକେ ଠିକ୍ ଏଇ କଥାଟି ବୁଝୁଥିଲେ । ଯେ ଗୋବର୍ଦ୍ଧନ ଟେକି ପାରୁଥିଲା, ସେଇ ମଧ୍ୟ ଇଚ୍ଛାବେଳେ କଅଁଳ ଲହୁଣୀ ପରି ହୋଇଯାଉଥିଲା । ଯେ ଶିବଧନୁ ଭାଙ୍ଗି ପାରୁଥିଲା, ସେ ମଧ୍ୟ ଫୁଲ ପାଖୁଡ଼ା ପରି ନରମ ହୋଇ ପାରୁଥିଲା । ଯେ ନାରୀ ଫୁଲ ଶେଯରେ ଶୋଇ ଫୁଲ ଆବରଣରେ ଫୁଲରାଣୀ ସାଜୁଥିଲା ସେ ମଧ୍ୟ ଦରକାରବେଳେ ଅସ୍ତ୍ରଶସ୍ତ୍ର ଧରି ସୈନ୍ୟମାନଙ୍କ ସାଙ୍ଗରେ ମିଶି ନିଷ୍ଠୁର ଶତ୍ରୁର ନିଦାରୁଣ ଶସ୍ତ୍ର ପ୍ରହାରଣ ସହୁ ଥିଲା । ଆଜିକାଲି ପାଶ୍ଚାତ୍ୟ ସଭ୍ୟତାରେ ଯାହା ଅଛି ଆମର ମରହଟ୍ଟି ବୁଢ଼ା ମଧ୍ୟ ସେଇଆ କରୁଥିଲା । କିନ୍ତୁ ଆମର ଯେ ତୃତୀୟ ପନ୍ଥା ! ଆମେ ବିଦ୍ରୋହ ବା ଯୁଦ୍ଧ କରିବୁଁ, ଆଉ ସେ ଯୁଦ୍ଧରେ ବନ୍ଦି ହୋଇଗଲେ ଆମର ଲୋଡ଼ା ସବୁ ଅନ୍ନ, ବିବିଧ ବ୍ୟଞ୍ଜନ, ପାନ, ସିଗାରେଟ, ଗୁଡ଼ାଖୁ, ଚିଲମ, ଦୁଧ, ଦହି, ସର, ଲହୁଣୀ, ଅବାଧ ଗତି ଓ ଅଗାଧ ପ୍ରୀତି । ଆମେ ଏ ସବୁ ସୂକ୍ଷ୍ମର ରୋଗ ପାଇଲୁ କେଉଁଠାରୁ ? ଏପରିକି ଗାନ୍ଧିଜୀଙ୍କ ଖଦଡ଼ ଆଜିକାଲିର ସାମ୍ୟବାଦୀମାନଙ୍କୁ ଗନ୍ଧେଇଲାଣି । ମୁଁ କେତେ ବଡ଼ ବଡ଼ିଆ ସାମ୍ୟବାଦ ଦେଖୁଚି, ଯେଉଁମାନେ କି ସବୁ ସୂକ୍ଷ୍ମ ମିଲ୍ ଲୁଗା ଓ ଜାମାପିନ୍ଧି ଇନ୍‌କ୍ଲାବ ଜିନ୍ଦାବାଦରେ ଆକାଶ ମେଦିନୀ କମ୍ପେଇ ଦେଉଚନ୍ତି । ଏ ହେଲା କିମିତି ? ଏ ବିଳାସର ଉନ୍ମାଦନା, ଏ ମଖମଲ ଜୀବନର ଆବେଗ ଆସିଲା କେଉଁଠାରୁ ?

କେତେକ କହିବେ ଆମେ ଏହାକୁ ଶିଖିଲୁଁ ଇଂରେଜ ସରକାରଠାରୁ, ଇଂରେଜ ସଭ୍ୟତାରୁ । ମୁଁ ଅବଶ୍ୟ ବିଲାତ ଯାଇନାହିଁ, କିନ୍ତୁ ଭାରତ ବର୍ଷରେ ଥିବା କେତେକ ଖାଣ୍ଟି ଇଂରେଜଙ୍କୁ ଭଲ ଭାବରେ ଦେଖିବାର ଓ ପଢ଼ିବାର ସୁବିଧା ସୁଯୋଗ ପାଇଚି । ଇଂରେଜ ବହି କେତାପରୁ ଇଂରେଜ ଓ ଅନ୍ୟ ପାଶ୍ଚାତ୍ୟ ଜାତିର ଚାଲିଚଳନ ସମ୍ବନ୍ଧରେ କିଛି କିଛି ପଢ଼ିଚି । ମୁଁ ତ କାହିଁରେ ଦେଖିନାହିଁ ଯେ ଇଂରେଜ ବା ଅନ୍ୟ କୌଣସି ପାଶ୍ଚାତ୍ୟ ଜାତି ଆମ ଭଳି ମଖମଲ ଜୀବନ ଚଳାଇବାକୁ ଇଚ୍ଛା କରନ୍ତି ନା ପସନ୍ଦ

କରନ୍ତି । ଏ ଯୁଗରେ ମଧ୍ୟ ଇଂରେଜ ଜାତି ତାର ଖାଦ୍ୟ ସେହ୍ନପଣ ବଜାଏ ରଖିଚି । ଇଟାଲି ଓ ଫ୍ରାନ୍‌ସର ନାନା ପ୍ରକାର ରନ୍ଧଣା କୌଶଳ ସେମାନେ ଜାଣିଥିଲେ ମଧ୍ୟ, ଇଂରେଜ ଜାତି ତାଙ୍କର ସେଇ ସିଝା ମାଂଭିସ, ସିଝା ପଣବା, ଟିକିଏ ଲୁଣ ଗୁଣ୍ଡା, ଟିକିଏ ମରିଚ ଗୁଣ୍ଡା, ଟିକିଏ ଚଟଣି, ଟିକିଏ ସସ୍‌ରେ ସନ୍ତୁଷ୍ଟ ଓ ଆନନ୍ଦ ପାଏ । ସବୁ ସୂକ୍ଷ୍ମ ରନ୍ଧା ଯାହାହୁଏ, ସେ ଇଂରେଜ ମାଇପିଙ୍କ ପାଇଁ । ମରଦମାନେ ତାହା ଆଦୌ ପସନ୍ଦ କରନ୍ତି ନାହିଁ । ହୋଟେଲରେ ଅକାଳେ ସକାଳେ ସେମାନେ ଥରେ ଅଧେ ଯେ ସବୁ ସୂକ୍ଷ୍ମ ରନ୍ଧାବଢ଼ା ନ ଖାନ୍ତି ତା' ନୁହେଁ, ଖାଆନ୍ତି ଓ ଆନନ୍ଦ କରନ୍ତି । କିନ୍ତୁ ସେଥିରେ ତାଙ୍କର ଲାଳସା ନ ଥାଏ । କିନ୍ତୁ ଆମର ଯେ ମସଲା ଗରଗର ଚକ୍‌କଣ ସରସର ଝୋଳ, ଝାଲ, ଚଡ଼ଚଡ଼ି, ଘଡ଼ଘଣ୍ଟ ନ ହେଲେ ନ ଚଳେ; ଆମ ମାଇପିଙ୍କ ପାଇଁ ଅମ୍ବିଲ ଫଡ଼ାଏ ଆଉ ପଖାଳ ଭାତ କଂସାଏ ହେଲେ ଚଳିଯାଇପାରେ । ସେ କଥା ଦେଖିବାକୁ ବା ବୁଝିବାକୁ ଆମର ବେଳ ନ ଥାଏ । କିନ୍ତୁ ଆମ ମର୍ଦ୍ଦମାନଙ୍କର ଏ ସବୁ ଚିଜ ଦରକାର । ଆମେ ଏ କଥା ଶିଖିଲୁ କେଉଁଠାରୁ ?

ସବୁ ଜିନିଷର ଦୁଇଟା କଥା ଅଛି—ଗୋଟାଏ ଉପର କଥା, ଗୋଟାଏ ଭିତର କଥା । ଗୋଟାଏ ଖୋପା ଆଉ ଗୋଟାଏ ରସ । ଆମେ ଏ ମଖମଲ ଜୀବନର ଗୋଲପି ମିଠା ପାଇଚୁଁ ପାଶ୍ଚାତ୍ୟ ସଭ୍ୟତାର ଖୋପାରୁ ଓ ପୂର୍ବବର୍ତ୍ତୀ ଦରମସ୍ତ ମୋଗଲ ସାମ୍ରାଜ୍ୟର ଛଟିକାରୁ । ଆମ୍ଭେମାନେ ପାଶ୍ଚାତ୍ୟ ସଭ୍ୟତାର ବାହାର ଚକମକ ଦେଖି ମନେକରୁ ଯେ ଏ ବାହାର ଚକଚକିଟି ପାଶ୍ଚାତ୍ୟ ସଭ୍ୟତା । ଯେପରି ଏ ମଟର ଗାଡ଼ି, ଏ ଉଡ଼ାଜାହାଜ, ଏ ନୂଆନୂଆ ଢଙ୍ଗ ବେଢ଼ଙ୍ଗର ପାଣି ଜାହାଜ, ଏ ବିଜୁଳି ଆଲୁଅ, ବିଜୁଳି ପଙ୍ଖା ଏଇ ସବୁରେ ହିଁ ପାଶ୍ଚାତ୍ୟ ସଭ୍ୟତା ବନ୍ଧା ରହିଚି । କିନ୍ତୁ ପ୍ରକୃତରେ ଏ ଗୁଡ଼ାକ ପାଶ୍ଚାତ୍ୟ ସଭ୍ୟତାର ଆନୁସଙ୍ଗିକ ମାତ୍ର । ଭୋଗ ବିଳାସର ଏ ସବୁ ସରଞ୍ଜାମ ଥିଲେ ମଧ୍ୟ ପାଶ୍ଚାତ୍ୟ ଜାତି ତାଙ୍କ ସଭ୍ୟତାର ପ୍ରଧାନ କଥା—ସତ୍ୟର ଅନୁସରଣ ଓ ଅନୁଧାବନ ଭୁଲିପାରି ନାହାନ୍ତି । ବରଂ ସେମାନଙ୍କର ଏ ବାହାର ରଙ୍ଗଢଙ୍ଗ ଯେତେ ବଢ଼ୁଚି, ସତ୍ୟ ପାଇବା ପାଇଁ ସେମାନଙ୍କର ଚେଷ୍ଟା ସେତିକି ପ୍ରବଳ ହେଉଚି । ପ୍ରତ୍ୟେକ ସଭ୍ୟତାର ମୂଳରେ ଏକ ମାତ୍ର ଜିନିଷ, ଏକ ମାତ୍ର ପରମବ୍ରହ୍ମ ରହିଚି । ସେ ହେଉଚି ଏଇ ମହାମାନବୀୟ ସତ୍ୟର ଚିନ୍ତା, ଅନୁଶୀଳନ, ଅନୁଧାବନ ଓ ଅନୁଜ୍ଞାନ । ମଣିଷ ଜଣ, କମିଟି ଓ ତାର ଶେଷ କଣ; ଏଇ ସତ୍ୟ ସଭ୍ୟତାର ପ୍ରାଣ । ଯେ ଜାତି ଏହି ସତ୍ୟର ଯେତେ ପାଖରେ ସେ ଜାତି ସେତିକି ସଭ୍ୟ । ଏହି ସତ୍ୟ ସମ୍ପୂର୍ଣ୍ଣରୂପେ ଉପଲବ୍‌ଧି ହୋଇ ପାରିଲେ ସଭ୍ୟତା ଯେ କିପରି ଆକାର ଗ୍ରହଣ କରିବ ତାହା କହି ହେବ ନାହିଁ । କିନ୍ତୁ ଏ ସତ୍ୟକୁ ନ ପାଇବାଯାଏ ମଣିଷ ଆଗକୁ ବରାବର ଗତି କରି-ଯାଉଥିବ । ପୁରାଣ ଭାରତୀୟ ସଭ୍ୟତା ଏଇ ସତ୍ୟର ପଛରେ ଗୋଡ଼ାଇ ଗୋଡ଼ାଇ ପାଇଥିଲା ତାକୁ ବିଶ୍ୱରୂପ ମଧ୍ୟରେ । କିନ୍ତୁ ତାପରେ ସେ ସେହି ବିଶ୍ୱରୂପର ଗୋଲକ

ଧନ୍ଦାରେ ପଡ଼ି ବାଟବଣା ହୋଇଗଲା । ସେଇଥିନ୍ତୁ ଭାରତବାସୀ ଖୋଜି ଖୋଜି ପଛେଇ ଗୁଲିଚି । ବିଶ୍ୱରୂପ ଭୁଲିଯାଇଚି, ସତ୍ୟର ମୋହନ ରୂପ ବାଟବଣାର ଆବେଗରେ ପାସୋରି ପକାଇଚି ।

ପାଶ୍ଚାତ୍ୟ ସଭ୍ୟତା ତା ନିଜ ବାଟରେ, ନିଜ ଗୋଡ଼ରେ ଏହି ସତ୍ୟର ପଛରେ ଧାଇଁ ଧାଇଁ ଅନେକ ସମୟରେ ଏପଟ ସେପଟ ହୋଇଯାଉଚି, କିନ୍ତୁ ସେ ଯେ ଏପର୍ଯ୍ୟନ୍ତ ସତ୍ୟର ପାଖରେ ପହଞ୍ଚିପାରି ନାହିଁ, ସେଥିପାଇଁ ତାର ଏକ ନିଷ୍ଠା, ଏକାଗ୍ରତା ଭାଙ୍ଗି ନାହିଁ । ସେ ଏବାଟେ ସେବାଟେ ହେଲେ ମଧ୍ୟ ସେହି ଆବେଗଭରି ପ୍ରାଣରେ ଅବାଟକୁ ସୁବାଟ ବୋଲି ଭାବି ଗୁଲୁଗୁଲୁ ବେଳେବେଳେ ଏଇ ବିଜୁଳି ଶକ୍ତି, ମାଧ୍ୟାକର୍ଷଣ ଶକ୍ତି ଇତ୍ୟାଦି ଗୋଟାଏ ଗୋଟାଏ ଜିନିଷ ପାଇଯାଉଚି । ତାର ଅଜଣା ଗୋଟିଏ ନୂଆ କଥା ପାଇଗଲାକ୍ଷଣି ସେ ଭାବୁଚି, ଏଇଟା କ'ଣ ସେହି ସତ୍ୟ ? ନୂଆ ଜିନିଷର ମୋହରେ ସେ ମୁହୂର୍ତ୍ତିକ ପାଇଁ ଭୁଲିଯାଉଚି । ସେହି ନୂଆ ଆବିଷ୍କାରକୁ ସତ୍ୟ ଭାବି ଖୁବ୍ ଲମ୍ଫ ଝମ୍ପ ଦେଉଚି; କିନ୍ତୁ ସଭ୍ୟତାର ତାଡ଼ନା ତାର ସେ ମୋହମାୟା ଜାଲ ଛିଣ୍ଡାଇ ଦେଇ ଡାକୁଚି—ଏ ସତ୍ୟ ନୁହେଁ; ଏ ଖାଲି ପିଲାଖେଳ ମାତ୍ର । ପାଶ୍ଚାତ୍ୟବାସୀ ନୂଆର ପ୍ରଲୋଭନ ଭୁଲିଯାଉଚି, ପୁଣି ଧାଉଁଚି । ତାର ଯେ ଫରାସୀ ବିଦ୍ରୋହ—ସେ ଏହିପରି ଗୋଟାଏ ଅମୁହାଁ ଦେଉଥିଲା । ସେତେବେଳେ ପାଶ୍ଚାତ୍ୟ ସଭ୍ୟତା ଭାବୁଥିଲା ସେ ସତ୍ୟ ପାଇଚି । ଖୁବ୍ ବିଭୋର ହୋଇଗଲା । କିନ୍ତୁ ତାର ଏଇ ଯେ ଚଙ୍ଗଚଙ୍ଗିଆ କୌତୂହଳ, ଏଇ ସତ୍ୟର ପ୍ରକୃତ ରୂପ ପାଇଁ ଯେ ଆଗ୍ରହ, ସେ ସବୁ ଚେତେଇ ଦେଲା—ଏ ସତ୍ୟ ନୁହେଁ; ସତ୍ୟର ଛାୟାମାତ୍ର । ସେ ପୁଣି ଆଗେଇ ଗୁଲିଲା । ବର୍ତ୍ତମାନ ସେ ପହଞ୍ଚିଚି ଋଷିଆର ସାମ୍ୟବାଦରେ ।

ଋଷିଆର ସାମ୍ୟବାଦ, ଫ୍ରାନ୍ସର ବିପ୍ଳବବାଦ ଓ ଭାରତର ବିଶ୍ୱରୂପବାଦ, ସମସ୍ତଙ୍କ ମୂଳରେ ଯେ ମନ୍ତ୍ର ଅଛି ସେ ସମାନ; ଅର୍ଥାତ୍ ସେଇ ମହାମାନବୀୟ ସଭ୍ୟତାର ଅନୁଭବ । ଭାରତୀୟ ସଭ୍ୟତା ବିଶ୍ୱରୂପର ସତ୍ତ୍ୱ ଓ ସତ୍ୟ ଜାଣି ଓ ଦେଖିପାରିଲା ପରେ ଯେ ଅମୃତପ୍ରସାଦ ଲଭ କଲେ, ସେଥିରେ ସେମାନେ ଭୁଲିଗଲେ ଯେ ତାଙ୍କପରେ ଯେ ଯୁଗ ହେବ ଓ ଯେ ଯୁଗବାସୀ ହେବେ, ସେମାନେ ଏଇ ସତ୍ୟର ରୂପ ଓ ବିକାଶ ଭୁଲି-ଯାଇପାରନ୍ତି ବା ନ ଦେଖିପାରନ୍ତି । ସେହି ସତ୍ୟର ସତ୍ୟ ସ୍ୱରୂପ ମନୁଷ୍ୟ ସମାଜରେ ଯୁଗଯୁଗାନ୍ତର ଧରି ରହିବାର ପକ୍କା ବ୍ୟବସ୍ଥା ଯେବେ ସେମାନେ କରି ଯାଇଥାନ୍ତେ ତା'ହେଲେ ଏ ଦୁର୍ଦ୍ଦଶା ହୋଇ ନ ଥାନ୍ତା । ସେମାନେ ସେତକ କରି ପାରି ନାହାନ୍ତି । ବିଶ୍ୱରୂପର ସତ୍ୟ ଓ ସତ୍ତ୍ୱ ସେମାନେ ରଖିଯାଇଛନ୍ତି । କିନ୍ତୁ କାଳକ୍ରମେ ସେ ଖାଲି ପୁରୁଣା କଥା ହୋଇ ନ ରହିବ ତାର କିଛି ବ୍ୟବସ୍ଥା ହୋଇପାରି ନାହିଁ ।

ଫରାସୀ ବିପ୍ଳବର ଗୁରୁ 'ରୁସୋ' ତାଙ୍କର ସ୍ୱାଧୀନତା ଓ ବିଶ୍ୱଭ୍ରାତୃତ୍ୱ ମନ୍ତ୍ରରେ ଏ ସତ୍ୟର ପ୍ରକାଶ ପାଇଥିଲେ; ମାତ୍ର ଯେ ମୁହୂର୍ତ୍ତରେ ଫରାସୀ ବିପ୍ଳବବାଦ ସାଙ୍ଗରେ

ହତ୍ୟା ଓ ପ୍ରତିହିଂସା ସ୍ଥିର ମିଶିଗଲା, ସେଇ ମୁହୂର୍ତ୍ତିରୁ ସେ ସତ୍ୟ ପଛକୁ ପଡ଼ି ରକ୍ତମୁଖା ଚଣ୍ଡୀ ଦେବୀଙ୍କର ମାୟାଜାଲ ଦେଶସାରା ବ୍ୟାପିଗଲା । ମହାମାନବୀୟ ସତ୍ୟର ଶ୍ରାଦ୍ଧ ହେଲା 'ଲୁଇ ଓ 'ଶେର' ଆଣ୍ଟୋନେଟଙ୍କର ରକ୍ତରେ ।

ରୁଷିଆର ବଲସେଭୀବାଦ କାଉଣ୍ଟ-ଲିଓ ଟଲଷ୍ଟୟଙ୍କର କୃତ । ଟଲଷ୍ଟୟ ଏ ସତ୍ୟର ସ୍ୱରୂପ ଦେଖିଥିଲେ । ତାଙ୍କର ସତ୍ୟୋନ୍ମୁଖ ହୃଦୟର ନିଆଁବାଣ ସମୁଦାୟ ରୁଷିଆ ମହାଦେଶକୁ ଉଜ୍ଜ୍ୱଳ କରିପକାଇଥିଲା । କିନ୍ତୁ ସେ ମୁହୂର୍ତ୍ତିରେ ତା' ସାଙ୍ଗରେ କାର୍ଲମାର୍କସଙ୍କର ଶ୍ରେଣୀ ଯୁଦ୍ଧବାଦ ପଶିଲା ସେହି ମୁହୂର୍ତ୍ତିରେ ସେ ସତ୍ୟର ବଟବୃକ୍ଷ ଅସ୍ତେ ଆସ୍ତେ ଅପସରିଯାଇ ଖାଲି ରହିଗଲା ଲେନିନବାଦର ନିଦାଘ ଶୁଖିଲା ମରୁଭୂମି । କିନ୍ତୁ ପୁରୁଷାର୍ଥର କଥା ଏତିକି ଯେ ମନୁଷ୍ୟ ସଭ୍ୟତା ଭିନ୍ନ ଭିନ୍ନ ଯୁଗରେ ଭିନ୍ନ ଭିନ୍ନ ଦେଶରେ ଏ ସତ୍ୟକୁ ପାଇଛି । ସଭ୍ୟତା ଏଇ ସତ୍ୟର ଉପରେ, ଭିତରେ ଓ ଚାରିଆଡ଼େ ଘେରି ରହିଛି, ସତ୍ୟ ମିଳୁଚି । ସତ୍ୟ ହଜୁଚି । କିନ୍ତୁ ବଡ଼ କଥା ହେଉଚି ଯେ ସତ୍ୟ ମିଳୁଚି, ଏ ସତ୍ୟ ପାଇବାକୁ ଯେ ସଭ୍ୟତା ଚେଷ୍ଟା କରୁଚି, ସେ କେବଳ ନିଜର ଶକ୍ତି ସାମର୍ଥ୍ୟ ଓ ସାମାଜିକତା ବଳରେ । ସେ ଯେବେ ସେ ସତ୍ୟ ହୋଇଥାଏ, ତାହା କେବଳ ପର ଶକ୍ତି, ସାମର୍ଥ୍ୟ ଓ ସାମାଜିକତା ହେତୁରୁ । ଯେ ପର୍ଯ୍ୟନ୍ତ ଜାତି ପରର ରସଗୋଲା ଉପରେ ନିର୍ଭର ନ କରି, ନିଜର ଛେନାଗୁଡ଼ ଉପରେ ନିର୍ଭର କରୁଚି ସେ ସତ୍ୟ ପାଉଚି ଓ ରଖିପାରୁଚି । କିନ୍ତୁ ଯେଉଁ ମୁହୂର୍ତ୍ତିରେ ଭୁଲିଯାଉଚି ଯେ ତା'ର ଛେନାଗୁଡ଼ରେ ଯାହା ପରର ରସଗୋଲାରେ ମଧ୍ୟ ସେଇଆ, ତା'ର ଛେନାଗୁଡ଼ ଅସଲି ମାଲ, ଆଉ ପରର ରସଗୋଲା କେବଳ ନକଲି ରୂପାନ୍ତର । ସେଇ ମୁହୂର୍ତ୍ତିରେ ସେ ସତ୍ୟ ଛାଡ଼ି ଅସତ୍ୟର ମାୟା ଗୋଲକ ଧନ୍ଦାରେ ଘାରି ହେଉଚି ।

ପାଶ୍ଚାତ୍ୟ ସଭ୍ୟତା ଏଇଆ । ଏଇ ମହାମାନବୀୟ ସତ୍ୟର ଅନୁସରଣ ଓ ଅନୁଧାବନ । ସେ ବାଟ ଭୁଲିଯାଇ ପାରିଥାଏ; କିନ୍ତୁ ପ୍ରତି ମୁହୂର୍ତ୍ତିରେ ସେ ତା'ର ଭୁଲ ବୁଝିପାରୁଚି ଓ ବୁଝିପାରି ପୁଣି ଅବାଟଛାଡ଼ି ସୁବାଟକୁ ଆସିଚି । ଏ ଭୋଗବିଳାସ, ଏ ଚକମକ, ଝକଝକ ପାଶ୍ଚାତ୍ୟ ସଭ୍ୟତାର ନୁହେଁ । ପାଶ୍ଚାତ୍ୟ ସଭ୍ୟତାର ବାହାର ଆଡ଼ମ୍ବର ମାତ୍ର । ଆମେ ଅନ୍ଧ । ଆମେ ଅଳ୍ପ ପାଠର ମାରାତ୍ମକ ବିଷଯୁକ୍ତେ ଜରଜର ହୋଇଯାଇଚୁ । ସେହି ହେତୁରୁ ଆମେ ଅସଲ ଛାଡ଼ି ଅଣସଲ ମାଲକୁ ଅସଲ ବୋଲି ଧରି ନଉଚୁଁ, ଆଉ ଧରିନେଇ ପୁରୁଷର ପୁରୁଷକାର ହରେଇ ଖାଲି ମଖମଲ କୁଶନ୍ରେ ସାଜି ବସିଚୁଁ ।

ଦ୍ୱିତୀୟ କଥା ମୋଗଲ ସାମ୍ରାଜ୍ୟ ଯିବାକୁ ବସିଲାବେଳେ ତା' ଭିତରେ ବହୁତ ମଇଳା ପଶିଯାଇଥିଲା । ବାବର, ହୁମାୟୁନ ଓ ଆକବର ଯେ ମହାଯୋଗ ସାଧି ଗୋଟାଏ ସାମ୍ରାଜ୍ୟ ବସାଇଗଲେ, ଜାହାଙ୍ଗୀର, ଶାହାଜାହାନ, ଆଓରଙ୍ଗଜେବ, ଆଲମଗିର ସେ ସାମ୍ରାଜ୍ୟର ସୁଖ ବିଳାସରେ ବୁଡ଼ି ସେ ମହାଯୋଗର ହାଡ଼ଭଙ୍ଗା

ପରିଶ୍ରମ ଭୁଲିଗଲେ । ସେମାନେ ଭାବିଲେ ସାମ୍ରାଜ୍ୟରେ ଆମୋଦ ଏକମାତ୍ର ଲକ୍ଷ୍ୟ । ଫଳରେ ମୋଗଲ ସାମ୍ରାଜ୍ୟ ବୁଡ଼ିଗଲା ଆଗ୍ରା ଦିଲ୍ଲୀର ଅନ୍ଦରମହଲ ସ୍ନାନକୁଣ୍ଡର ଗୋଲାପ ଜଳରେ । ସେହି ସ୍ନାନ କୁଣ୍ଡରେ ପହଁରୁଥିଲେ ନର ଅପ୍‌ସରା ଦଳ । ସେମାନଙ୍କ ହାତ ଗୋଡ଼ ବାଡ଼ିଆର ଛିଟିକା ପାଣି ପଡ଼ିଗଲା ଆମ ଉପରେ । ଆମେ ଭାବିଲୁଁ ଆମର ଦେହ ପବିତ୍ର ହୋଇଗଲା । ଏଇ ଛିଟିକା ପାଣିରେ ହିଁ ସ୍ୱର୍ଗ ସୁଖ ।

ଏଇ ଦୁଇଟି କାରଣରୁ ଆଜି ଆମର ଏ ଅବସ୍ଥା । ଏ ଦେଶକୁ ସ୍ୱାଧୀନ କରିବାକୁ ଇଚ୍ଛା କଲେ, ଏ ମୋହ କୁହୁକ ଭାଙ୍ଗି ପୁଣି ଆର୍ଯ୍ୟ ସଭ୍ୟତାର ବିଶ୍ୱରୂପ-ବାଦକୁ ପାଇବାର ଇଚ୍ଛା ଥିଲେ, ଆମ୍ଭମାନଙ୍କୁ ଏ ଜଡ଼ତା, ଏ ଶିଥିଳତା, ଏ ପର ଦ୍ରବ୍ୟ ଲୋଭ, ଏ ଦେଶୀ ଛେନାଗୁଡ଼ ଛାଡ଼ି ପରଦେଶୀ ରସଗୋଲାର ମାୟା ଛାଡ଼ି, ମଣିଷ ପରି ମଣିଷ ହେବାକୁ ପଡ଼ିବ ।

ଲେଖୁ ଲେଖୁ ଅନେକଗୁଡ଼ାଏ ଲେଖିଲି, ଏଗୁଡ଼ାକ ଯେବେ ଆମ ଦେଶରେ କୌଣସି ମହାମାନବଙ୍କ ଆଖିରେ ପଡ଼େ, ତା' ହେଲେ ସେମାନେ ତାଙ୍କ ନାକଗୁଡ଼ାକ ହାତେ ଉପରକୁ ଟେକି ହୁଏତ ଗୁଡ଼ାଏ ଗାଳିଦେବେ । କହିବେ, "ଏ ଗୁଡ଼ାଏ ଛେନାଗୁଡ଼ ଲେଖିଛି", ତା' କହନ୍ତୁ ।



# କାହୁଁ ଅଇଲା ?

ଏ ଓଡ଼ିଆ ଭାଷାଟା କାହୁଁ ଅଇଲା ? ଏ ଭାଷାର ଉନ୍ନତି, ବ୍ୟାକରଣ, ଅଭିଧାନ ବଢ଼ା ଛଡ଼ା ଇତ୍ୟାଦି କଥା ପାଇଁ ଉଦ୍ୟମ କରିବାକୁ ଅଣ୍ଟାଭିଡ଼ି ବାହାରିଲା ବେଳେ ତ ଏ କଥାଟାର ଗୋଟିଏ ଜବାବ୍ ଠିକ କରିବାକୁ ପଡ଼ିବ । ଓଡ଼ିଶାର ଭୁଞ୍ଜକପାଳିଆ, ବଡ଼ମୁଣ୍ଡିଆ ସାହିତ୍ୟିକମାନଙ୍କର ଗୋଟିଏ ସଭା ହୋଇଯାଇଛି । ମୋର ଭୁଞ୍ଜକପାଳ ନାହିଁ କି ବଡ଼ ମୁଣ୍ଡ ମଧ୍ୟ ନାହିଁ, ସୁତରାଂ ଏତେ ବଡ଼ ସଭାରେ ଜଣେ ହୋଇ ବସିବାର ଆଶା ମୁଁ ରଖି ନ ଥିଲି, କି ମୋ ଭାଗ୍ୟରେ ମଧ୍ୟ ଘଟିଲା ନାହିଁ । ସଭାରେ କ'ଣ କ'ଣ ପ୍ରକୃତ ହେଲା, ଆମ ବଡ଼ ବଡ଼ଆଙ୍କ ଭିତର ମତଲବଟାମାନ କ'ଣ, ସେମାନେ କି ଉପାୟରେ, କପରି ଭାବରେ, କ'ଣ କରିବାକୁ ଯାଉଛନ୍ତି, ଏ ସବୁ ମୁଁ ଜାଣିପାରି ନାହିଁ । କେବଳ କାଗଜରେ ତାଙ୍କର ମନ୍ତବ୍ୟରେ ଯେଉଁସବୁ ଭାଷଣ, ଅଭିଭାଷଣ, ପ୍ରସ୍ତାବନା ଇତ୍ୟାଦି ବାହାରିଛି, ତା'ର ଉପରେ ସମ୍ଭାବନା କରି ମୁଁ ପଦେ ଅଧେ ବଖାଣିବି ବୋଲି ବାହାରିଛି । ଏଉଟା ଯେବେ ମୋର ବେଆଦବି ହୁଏ—ତା' ହେଲେ ଆଗରୁ କ୍ଷମା ମାଗି ନେଉଛି—ଦାନ୍ତରେ କୁଟା ଧରି, ନାକ ତଳେ ଘଷି, ନତ ମସ୍ତକ ହୋଇ, ନେହୁରା ହୋଇ ।

ଅଭ୍ୟର୍ଥନା ସଭାର ସଭାପତି ମୋର ଗୁରୁଦେବ ପରିଜା ସାହେବ ଠିକ୍ ଠିକ୍ କହିଛନ୍ତି ଯେ, ଓଡ଼ିଆ ଭାଷାରେ ଆଜିକାଲି ବହୁତ ଅଳମାଳକା ପଶିଯାଇଛି ଓ ଓଡ଼ିଆ ଭାଷା ଖାଲି ନିଜ ପଖାଳ ହାଣ୍ଡି ଉପରେ ନିର୍ଭର କରିପାରେ ନାହିଁ । କେହି କେହି ହୁଏତ ତାଙ୍କର ଏ କଥାଗୁଡ଼ିକ "ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ" ନୀତି ବୋଲି ନାକ ଟେକିପାରନ୍ତି । ଅସଲରେ ପରିଜା ସାହେବଙ୍କର ଠେଙ୍ଗୁଣି ବଡ଼ କେଂଟା କାଠ । ସାପ ମରିଚି, ଅଥଚ ବାଡ଼ି ଭାଙ୍ଗି ନାହିଁ । ଓଡ଼ିଆ ଭାଷାରେ ଆଖି ବୁଜି ବିଦେଶୀ ଶବ୍ଦ ଆଣି ପୁରାଇବା ଯେପରି ବାଇଆ ମତି, ଅନ୍ୟ ଦେଶର ଭାଷା ବ୍ୟବହାର କରିବି ନାହିଁ ବୋଲି ବସି ଓଡ଼ିଆରେ ଯଥାଯଥ ଭାବ ପ୍ରକାଶ ନ କରିବା ସେହିପରି ନାକକଟା ଗାଡ଼ି । ବାହାରୁ ଗୁହକୁଟା ଘରକୁ ଆଣିବା ଗର୍ଣ୍ଣୀ ପୁଅ ଅକର୍ମାର କାମ; କିନ୍ତୁ ବାହାରର ଯେ ଭଲ ଚିଜ ମୋ ଘରେ ନାହିଁ, ତାକୁ ମୋ ଘରକୁ ଆଣିପାରିବା ବାହାଦୁର ପୁଅର କାମ । ମୋର ଗୁରୁଗୋସେଇଁ ପଣ୍ଡିତ ଦାସେ ଓଡ଼ିଆ ଭାଷା କେମିତି ରୂପ ବଦଳେଇ ଗ୍ଲଲିଚି, ସେ କଥା ଖଡ଼ି ଧରେଇ ବତେଇ ଦେଇଚନ୍ତି । ଏ ଭାଷାଟାକୁ ସୁଧାରିବାକୁ ପଡ଼ିବ, ଭାଷାରେ ଯାହା ଅଛି; ତାକୁ ଘଷି ମାଜି ଷାଣ ଦେଇ ଆଜିକାଲି ଯୁଗର ସାହିତ୍ୟ ପାଇଁ ତିଆରି କରିବାକୁ ପଡ଼ିବ । ଯାହା ନାହିଁ, ତାକୁ ବିଦେଶରୁ ଆଣିବା ଓ କେତେକ ଆମର ଭାଷାରୁ ଭାଙ୍ଗିରୁଜି, ଦଙ୍କେଇ ଟଙ୍କେଇ ତିଆରି କରିବା ।

ଯାହା ବିଦେଶରୁ ଆସିବ ତା'ଲାଗି ମୋର କହିବାର କିଛି ନାହିଁ, ଖାଲି ଏତିକ ଯେ ଆମର କ'ଣ ଅଛି ଓ ସେଥିରୁ ବାଗାବାଗି କରି ଆମେ କ'ଣ ପାରିବୁ, ତା'ର ଗୋଟାଏ ମୋଟାମୋଟି ଧାରଣା ନ କରି, ବିଦେଶୀ ମାଲ ଗୋଟେଇବାକୁ ଆରମ୍ଭ କଲେ, ଆଉ ଦେଶୀ ମାଲର ଦରକାର ହୁଏତ ପଡ଼ିବ ନାହିଁ । ଆମର କ'ଣ ଅଛି ଓ ସେଥିରୁ ବାଗାବାଗି କରି ଆମେ ଆଉ ନୂଆ କ'ଣ କରିପାରୁ, ଏ କଥାର ବିଚାର କଲାବେଳେ ଏ ଭାଷାଟା ପହିଲୁ କମିତି ତିଆରି ହେଲା, ତା'ର ବିଚାର କରିବା ଦରକାର । ଏ ଭାଷାଟା ମଲା ଭାଷା ନୁହେଁ, ଏଉଟା କାହାରି ଖିଆଲ ଉପରେ ତିଆରି ହୋଇନାହିଁ । କେତେ ଶହ ବର୍ଷର କେତେ ଉଦ୍ୟମ ପରେ, କେତେ ଦେଶର ଓ ଜାତିର ମ ଗ ମାଗୁତି ଓ ଓ ଜସ୍ତି ଜସ୍ତଲି ଉପରେ ଏ ଭାଷାର ତିଆରି । ଓଡ଼ିଆ ଗୋଟିଏ ଦେଶ ଜୟ କରେ ଆଉ ହଜାର ବିଦେଶୀ ଶବ୍ଦ ସେ ଦେଶରୁ ଆଣି ନିଜ ଭାଷାରେ ମିଶାଏ । ଓଡ଼ିଆ ଥରେ ଗୋଟିଏ ବିଦେଶୀ ପାଖରେ ମୁଣ୍ଡ ନୁଆଁଏ, ଶହ ଶହ ଭାଷା ତା'ଠାରୁ ଆଣି ନିଜ ଭାଷାରେ ପୁରାଏ । ଓଡ଼ିଆ ଆର୍ଯ୍ୟ, ତା'ର ଅନାର୍ଯ୍ୟ ପଡ଼ୋଶୀମାନଙ୍କୁ ଚଳାଇନେବା ପାଇଁ ସେମାନଙ୍କ କୁହା ଭାଷାର କେତେ ନିଜ ଲେଖା ଭାଷାରେ ମିଶାଇ ଦିଏ । ଜୀଅନ୍ତା ଭାଷା ଓ ମଲା ଭାଷା ଭିତରେ ଏଇ ପ୍ରଭେଦ । ଜୀଅନ୍ତା ଭାଷା ବଢ଼ି ଚାଲିଛି ଅଥଚ ମଲା ଭାଷା ପଡ଼ି ରହିଚି । ଆଜି କନ୍ଧ, କୋହ୍ଲ, ସାନ୍ତାଳମାନଙ୍କର ଭାଷା ମଲା ଭାଷା । ଖାଣ୍ଟି ସାନ୍ତାଳୀ ବା କୋହ୍ଲାଣ ପାଇବା କଷ୍ଟ । ସେମାନେ ଆସ୍ତେ ଆସ୍ତେ ଓଡ଼ିଆ ବଙ୍ଗଳା ବା ହିନ୍ଦୀକୁ ନିଜର ଭାଷା କରିପକାଉଛନ୍ତି । ନିଜ ଭାଷା ଭୁଲି ଯାଇଚନ୍ତି । ଓଡ଼ିଆ ଏ ପର୍ଯ୍ୟନ୍ତ ତା'ର ନିଜ ଭାଷା ଭୁଲି ନାହିଁ । ବହୁତ ଲେଭ, ଟିହାଟେହି, ଗାଳି ଫଜତ, ଥଟ୍ଟା ପରିହାସ ସହି ମଧ୍ୟ ସେ ନିଜ ଭାଷାର ଟେକ ରଖି ପାରିଚି । ନିଜ ଭାଷାକୁ ବଢ଼ାଇ ପାରିଚି । ଏ ଜାତିଟା ମଲା ନୁହେଁ, ଜ୍ୱଲନ୍ତ ଜୀଅନ୍ତା ଜାତି । ଧୋଇ, ମରୁଡ଼ି, ଅବହେଳା, ଅବମାନନାସବୁ ସହି ମଧ୍ୟ ଏ ହାଡ କଙ୍କାଳ ଚୂରୁ ଭିତରେ ପୁଷ୍ଟି ଜୀବନର ତାତିଲା ଲୁହୁଧାର ଭୁସ୍ ଭୁସ୍ ହୋଇ ବହି ଚାଲିଚି । ନୀଳମାଧବଙ୍କ ମଲା ଦେହଟା ଶବର ରାଜାକୁ କଥା କହିଲା ପରି ନିଜର ଶୋଭାରେ, ଜଲରେ, ଛଟକରେ ମତାଇଲା ପରି ଏ ହାଡ଼ କଙ୍କାଳମୟୀ କାଳୀ ମୂର୍ତ୍ତିର ବିରାଟ ଗର୍ଜନ, ରଣ ତାଣ୍ଡବ ଏବେ ମଧ୍ୟ ଲାଗି ରହିଛି ।

ଏ ଭାଷାର ସଂସ୍କାର କରିବାକୁ ଗଲେ, ଏହାର ଉତ୍ପତ୍ତି କମିତି ହେଲା, ଏ କାହୁଁ ଅଇଲା—ଏ କଥାର ବିଚାର କରିବାକୁ ପଡ଼ିବ । ଓଡ଼ିଆ ଭାଷାର ଇତିହାସ, ଓଡ଼ିଆ ଜାତିର ଇତିହାସ । ଭାରତବର୍ଷର ସମସ୍ତ ଆର୍ଯ୍ୟ ଭାଷାର ଉତ୍ପତ୍ତି ପରି ଏ ଭାଷାର ପ୍ରଥମ ମୂଳଦୁଆ ସଂସ୍କୃତ । "ଦେଶକେ ଫାଙ୍କ, ନଦିକେ ବାଙ୍କ" ପରି ସଂସ୍କୃତ ଭାଷା ଦେଶ ବିଶେଷ ଅନୁସାରେ ଗୋଟିଏ ଗୋଟିଏ ଭିନ୍ନ ରୂପ ଦେଇପାରିଛି । ଏଇ ଅପଭ୍ରଂଶ ନିୟମ ଅନୁସାରେ ଭାରତରେ କଥିତ ଭାଷାର ମୂଳ ଭାଷାକୁ ମୈଥିଲୀ, ମାଗଧୀ ଇତ୍ୟାଦି

ଆଖ୍ୟା ଦିଆଯାଇଥାଏ । ବଙ୍ଗଳା ଓ ଓଡ଼ିଆକୁ ମୈଥିଳୀ ଶ୍ରେଣୀର ବୋଲି କହନ୍ତି । କିନ୍ତୁ ଅପଭ୍ରଂଶର ନିୟମ ଧରି ଯଦି ଏ ଶ୍ରେଣୀ ଭାଗ କରାଯାଇଥାଏ, ତା'ହେଲେ ଓଡ଼ିଆ ଅପଭ୍ରଂଶ ନିୟମ ଓ ବଙ୍ଗଳା ଅପଭ୍ରଂଶ ନିୟମ ଭିତରେ ଯେ ପ୍ରଭେଦ, ବଙ୍ଗଳା ଅପଭ୍ରଂଶ ନିୟମ ଓ ବିହାରୀ ଅପଭ୍ରଂଶ ନିୟମ ମଧ୍ୟରେ ସେହି ପ୍ରଭେଦ । ସେହି ହେତୁରୁ ମୋ ମତରେ ଓଡ଼ିଆକୁ ମୈଥିଳୀ ବୋଲି କହିବା ଯେପରି ଅନ୍ୟାୟ, ମାଗଧୀ ବୋଲି କହିବା ମଧ୍ୟ ସେହିପରି ଅବିଚାର । ଓଡ଼ିଆର ଅପଭ୍ରଂଶ ନିୟମ ଅଲଗା ଉଭୟଠାରୁ; ସୁତରାଂ ଏହା ଗୋଟିଏ ସ୍ୱତନ୍ତ୍ର ଜାତି ଭାଷା, କୌଣସି ଭାଷାର ଅନୁଭାଷା ବା ଉପଭାଷା ନୁହେଁ । ଉଦାହରଣ ସ୍ୱରୂପ ଏଇ ଶବ୍ଦଗୁଡ଼ିକର ଅପଭ୍ରଂଶ ନିୟମ ବିଚାର କରନ୍ତୁ—

| ସଂସ୍କୃତ | ବଙ୍ଗଳା | ବିହାରୀ | ଓଡ଼ିଆ |
|---|---|---|---|
| ବଧୂ | ବଉ, ବୌ | ବହୁ, ବହୁରିଆ | ବୋହୂ |
| ମାତୁଳ | ମାମା | ମାମା, ମାମୁ | ମାମୁ |
| ଆଲୋକ | ଆଲୋ | ଆଲ | ଆଲୁଅ |
| ଆକ୍ଷି | ଆଁଖି | ଆଁଖ | ଆଖି |
| କୋକିଳ | କୟଲ | କୋୟଲ୍ | କୋଇଲି |
| କାର୍ପାସ | କାପଡ଼୍ | କପଡ଼ା | କପଡ଼ା |
| ସାଧୁ | ସା | ସାଓ | ସାହୁ, ସାଉ |
| ତ୍ରିପାଠୀ | — | ତେଉଓରି | ତିଆଡ଼ି |
| ପାଠ | ପଡ଼ା | ପଢ଼ା | ପଢ଼ା |

ଏଇ କେତୋଟା ଉଦାହରଣରୁ ଆପଣମାନେ ଦେଖିପାରିବେ ଯେ, ବଙ୍ଗଳାରେ ଓ ହିନ୍ଦୀରେ ସଂସ୍କୃତ ଅପଭ୍ରଂଶ ହୋଇ ସଂକ୍ଷିପ୍ତର ଆକାର ନିଏ । ଓଡ଼ିଆରେ ଠିକ୍ ସଂସ୍କୃତ ଶବ୍ଦରେ ଯେତୋଟି ସ୍ୱର ଓ ବ୍ୟଞ୍ଜନ ଅଛି ସେତିକିଟି ସ୍ୱର ଓ ବ୍ୟଞ୍ଜନ ରହେ । କେବଳ ସ୍ୱର ଓ ବ୍ୟଞ୍ଜନର ଆକାର ବଦଳିଯାଏ ମାତ୍ର ଦ୍ୱିତୀୟରେ ସଂସ୍କୃତର 'ଠ' ବଙ୍ଗଳାରେ ହୁଏ ଡ, ଓଡ଼ିଆରେ ଢ, ସଂସ୍କୃତରେ 'ଧ', ଓଡ଼ିଆରେ ହୁଏ ହ, ବଙ୍ଗଳାରେ ହୁଏ ଅ । ସେହିପରି ବିଦେଶାଗତ ଶବ୍ଦମାନଙ୍କର ଅପଭ୍ରଂଶ ଲକ୍ଷ୍ୟ କରାଯାଉ—

| ବିଦେଶୀ | ବଙ୍ଗଳା | ଓଡ଼ିଆ |
|---|---|---|
| lantern | ଲଣ୍ଠନ | ଲଣ୍ଠନ |
| ଓ୍ୱକିଲ୍ | ଉକିଲ୍ | ଓକିଲ |
| ମକ୍କେଲ | ମକ୍କେଲ | ମଉକଲ୍ |
| କଚହେରି | କାଛରି | କଚେରି |
| Chrristian | ଖ୍ରୀଷ୍ଟାନ୍ | କିରସ୍ତାନ |

ଏଥିରେ ମଧ୍ୟ ଉପରେ ଲୁହାଯାଇଥିବା ବିଶେଷତ୍ୱଗୁଡ଼ିକ ମିଳିବ । ଅତଏବ ଓଡ଼ିଆ ଭାଷାକୁ ବଢ଼େଇବା ପାଇଁ ଓ ନୂଆ ଭାବରେ ପ୍ରକାଶ ପାଇଁ ନୂଆ ଶବ୍ଦ ତିଆରି କରିବାକୁ ଚେଷ୍ଟା କଲାବେଳେ ଏହି ନିୟମଗୁଡ଼ିକ ଓ ଏହିପରି ଅନ୍ୟ ଯେ ସବୁ ଅପଭ୍ରଂଶ ନିୟମ ମିଳିବ; ତାହାକୁ ମାନି ଚଳିବାକୁ ହେବ ।

ଏ ସ୍ଥାନରେ ପ୍ରଶ୍ନ ହୋଇପାରେ—ବିଦେଶରୁ ଶବ୍ଦ ଆଣିବାକୁ ଗଲେ ଅବିକଳ ଶବ୍ଦଟିମାନ ବ୍ୟବହାର ନ କରିବୁ କାହିଁକି ? ତାଙ୍କୁ ଭାଙ୍ଗିରୁଜି ଗୋଟାଏ ନୂଆ ଶବ୍ଦ ବ୍ୟବହାର କରିବୁ କାହିଁକି ? ଏଥିରେ କାହିଁକି ବୋଲି ପଗ୍ଚରିବାର କିଛି ଅବକାଶ ନାହିଁ । ଏହା କରିବାକୁ ହବ । ଆମେ ଏ ନୂଆ ଶବ୍ଦ ବ୍ୟବହାର କରି ଯେ ସାହିତ୍ୟ ଯାହାଙ୍କ ପାଇଁ ଲେଖିବୁଁ, ତାଙ୍କ ତୁଣ୍ଡରେ ଏ ଶବ୍ଦଗୁଡ଼ିକ ଉଚ୍ଚାରିତ ହେଲା ବେଳକୁ ସେ ଭାଙ୍ଗିରୁଜି ଏକାବେଳକେ କମ୍ପିତକମାକାର ହୋଇଯିବ ।

ଗୋଟିଏ ଭାଷାରୁ ନିଆଯାଇଥିବା ଏଇ ଯେ ଶବ୍ଦଗୁଡ଼ିକର ଓଡ଼ିଆ, ବଙ୍ଗଳା ଓ ହିନ୍ଦୀରେ ଭିନ୍ନ ଆକାର ହୋଇଗଲା, ଏ କାହାରି ଖାମଖିଆଲର କଥା ନୁହେଁ । ଏ ଦେଶର ଓ ଜାତିର ପ୍ରକୃତିର କଥା । ଏହା ନିଶ୍ଚୟ ହବ । ଗ୍ରହଙ୍ଗର ନଡ଼ିଆ ଫସଲ ପରି, ଓଡ଼ିଶାର ସାରୁ ଫସଲ ପରି ଏ ଅବଶ୍ୟମ୍ଭାବୀ । ଅତଏବ ଏ ମୂଳ ଶବ୍ଦ ଯେବେ ଭାଙ୍ଗିବ ତେବେ ବାରତୁଣ୍ଡରେ ଭାଙ୍ଗି ତେର ଆକାର ନେବା ଅପେକ୍ଷା ଓଡ଼ିଆ ତୁଣ୍ଡକୁ ପଖାଳଭାତ ଲାଗିଲାପରି ଶବ୍ଦଟାକୁ ଓଡ଼ିଆ ଭାଷାର ପ୍ରକୃତି ଅନୁସାରେ ଭାଙ୍ଗି ପ୍ରଥମରୁ ତିଆରି କରିନେବା ଉଚିତ୍ ନୁହେଁ କି ?

ତା'ପରେ ଅନେକ ସ୍ଥାନରେ ଆମକୁ ନୂଆ ନୂଆ ଭାବ ପ୍ରକାଶ କରିବା ପାଇଁ ନୂଆ ଶବ୍ଦ ଆମରି ଓଡ଼ିଆ ଶବ୍ଦରୁ ତିଆରି କରିବାକୁ ପଡ଼ିବ । ସେଥିପାଇଁ ଆମ୍ଭମାନଙ୍କୁ ଆମର ଶବ୍ଦଗୁଡ଼ିକର ଉତ୍ପତ୍ତି କେଉଁଠାରୁ ଓ ତାହାର ପ୍ରକୃତି କ'ଣ, ଏସବୁ ବୁଝିବାକୁ ହେବ । ମୁଁ ଯେତେ ଦୂର ଦେଖିପାରିଚି, ଲୁହା ଓଡ଼ିଆ ଭାଷାକୁ ତିନୋଟି ପରଦେଶୀ ଭାଷା ବେଶୀ ମାଡ଼ି ବସିଛନ୍ତି । ସେ ହଉଚି କାନ୍ୟକୁବ୍‌ଜ ବା କନୌଜି, ବଙ୍ଗଳା ବା ମୈଥିଲୀ ଏବଂ ଅସଲି ପାରଶିକ । ଏ ବାଦ୍ ଓଡ଼ିଆ ଭାଷା ଓ ଛୋଟନାଗପୁର ଓରାଂଓ ଓ ମୁଣ୍ଡା ଭାଷା ମଧ୍ୟରେ ମଧ୍ୟ ସାମଞ୍ଜସ୍ୟ ଅନେକ । କିନ୍ତୁ ସେ ସାମଞ୍ଜସ୍ୟ ମୋ ମତରେ ଏହି ଅନାର୍ଯ୍ୟ ଭାଷା ଉପରେ ପ୍ରଭାବ ନୁହେଁ, ବରଂ ଆରଜାତିକା । ଛୋଟନାଗପୁରର ବର୍ତ୍ତମାନ କଥିତ ଭାଷାରେ ବଙ୍ଗାଳୀ ଓ ବିହାରୀ ଔପନିବେଶିକମାନଙ୍କର ପ୍ରଭାବ ସ୍ପଷ୍ଟ ଜଣାପଡ଼ୁଥିଲେ ହେଁ ଆଦିତରେ ସେ ଭାଷାର ଉତ୍ପତ୍ତି ଓ ପରିପୁଷ୍ଟି ଯେ ଓଡ଼ିଆ ଭାଷାରୁ, ସେ ସମ୍ବନ୍ଧରେ ମୋର କୌଣସି ସନ୍ଦେହ ନାହିଁ । ପ୍ରକୃତରେ କହିବାକୁ ଗଲେ ଛୋଟ-ନାଗପୁର ବଙ୍ଗଳାର ଅଂଶ ବା ବିହାରର ଅଂଶ ନୁହେଁ । ଏ ପ୍ରଧାନତଃ ଆଦିମ ଅଧିବାସୀମାନଙ୍କର ଜାଗା । ଏଠାରେ ବଙ୍ଗାଳୀ ବା ବିହାରୀଙ୍କର ସ୍ଥାନ ଯେପରି, ଭାରତ ବର୍ଷରେ ଇଂରେଜ, ଫରାସୀ ଓ ପର୍ତ୍ତୁଗୀଜମାନଙ୍କର ସ୍ଥାନ ସେହିପରି । ଏ ପର୍ଯ୍ୟନ୍ତ ମଧ୍ୟ

ବହାରୀ ହନ୍ଦୁସ୍ଥାନୀ ଭାଷାରେ ଛୋଟନାଗପୁରୀ ଗାଉଁଲି ଲୋକଙ୍କୁ ନଜର ଭାବ ବୁଝାଇପାରେ ନାହିଁ । ତାଙ୍କୁ ସେଥିପାଇଁ ଛୋଟନାଗପୁରୀ ଭାଷା ଶିଖିବାକୁ ହୁଏ । ଏ ଛୋଟନାଗପୁରୀ ଭାଷାକୁ ଘାଣ୍ଟି ଘାଣ୍ଟି ମୁଁ ଦେଖିଚ ଯେ, ଏଥିରେ ଗୋଟିଏ ଅଧେ ହନ୍ଦୀ ବା ବଙ୍ଗଳା ଶବ୍ଦ କେଉଁଠି କମିତ ମିଳୁଥିଲେ ସୁଦ୍ଧା ଏ ଭାଷାର ପ୍ରାଣ ଓଡ଼ିଆ । ମୁଁ ତଳେ ଏଇ ଯେ କେତୋଟି ଉଦାହରଣ ଦଉଚ । ସେଥିରୁ ସାଧାରଣ ଭାବରେ ଏ କଥାଟି ବେଶ୍ ବୁଝାଯିବ । ଛୋଟନାଗପୁର ଭାଷା ହୁଏତ ମୁଣ୍ଡା ନ ହେଲେ ଓରାଂଓ ନ ହେଲେ ସବୁଥିରୁ ଗୋଟାଏ ଖେଚୁଡ଼ି । ମୁଁ କେତେପଦ ଶବ୍ଦର ଉଦାହରଣ ଦେବ—

| ଛୋଟନାଗପୁରୀ ମୁଣ୍ଡା | ଓଡ଼ିଆ | ବଙ୍ଗଳା | ହନ୍ଦୀ |
|---|---|---|---|
| ତାଡ଼ (ଅଳଙ୍କାର) | ତାଡ଼ | | |
| ହାସୁଲ | ହଂସୁଲି | | |
| ଝୁଟିଆ | ଝୁଣ୍ଟିଆ | | |
| ପାଇକ ନାଚ (ବିଭାଘର ବେଳେ ଢାଲ ତରବାରୀ ଧରି ଯେ ନାଚ ହୁଏ ।) | ପାଇକ ନାଚ | | |
| ଥାର | ଥାଳି | ଥାଲା | |
| ପଥର | ପଥୁରି | | |
| କରଚୂଲ | କରଚୁଲି | | |
| ବଣ୍ଡା | ବଣ୍ଡା (ପାଲବଣ୍ଡା) | | |
| ଓଆର | ଓଳି | | |
| କକାରୁ | କଖାରୁ | | |
| ସସାନ | ଶ୍ମଶାନ | | |
| ଲହୁହାନ | ଲଘୁଧାନ | | |
| ଗୁରୁହାନ | ଗୁରୁଧାନ | | |
| କଉଆ | କାଉ, କୁଆ | | |

| ଛୋଟ ନାଗପୁରୀ ଓରାଓ | ଓଡ଼ିଆ |
|---|---|
| ଖେତା | ହେତା |
| ଖପର୍ | ଖପର |
| ଡହ | ଡହ (ଗାଁ ଅର୍ଥରେ) |
| ନୁହାଡ଼ | ଚୁହାଡ଼ |
| ଶିଳା ବାହାଙ୍ଗି | ଶିଳା ବାହାଂଗି |

| | |
|---|---|
| ଭରୁଆ | ଭରୁଆ |
| ବଟୁ | ବଟୁଆ |
| ଖଡ଼ପା | ଖୋଡ଼ପା |
| ଖୁଣ୍ଟ | ଖୁଣ୍ଟ (ମୂଳ, ଉତ୍ପତ୍ତି) |
| ଟଇଲୁ | ଟହଲୁଆ |
| ହର | ହଳ |
| ଫାର | ଫାଳ |
| କୋଡ଼ | କୋଡ଼ |
| ଟାଙ୍ଗିପଣା | ଟାଙ୍ଗିଆପଣା |

ଏ ବାଦ୍ କ୍ଷେତ ଭିତରେ ଗୋଟାଏ କାଠିରେ ଜୁନକାଳି ବୋଲି ମାଟିର ଆଟିକାଟିଏ ଝୁଲୁଡ଼ାଇରଖିବା, କାର୍ତ୍ତିକ ମାସ ଅଁଳସ ଦିନ ଡାଲି ଭୂତ ବାହାର କରିବା, ସମସ୍ତେ ଚୁଟି କେରାଏ ରଖିବା, ଚନ୍ଦ୍ର ଦେବା, ଦୃଷ୍ଟି ନ ପଡ଼ିବା ପାଇଁ ପିଲାଙ୍କ ବେକରେ କଣାକଉଡ଼ି ଗୋଟାଏ ବାନ୍ଧି ରଖିବା, ବିଭାଘରବେଳେ ଶିଳରେ ବସିବା, କନ୍ୟାର ବିଭାଘର ପରେ ଗୀତଗାଇ ସକେଇ କାନ୍ଦିବା ଇତ୍ୟାଦି ଇତ୍ୟାଦି ସ୍ଥାନୀୟ ସାମାଜିକ ବିଧାନଗୁଡ଼ିକ ଖାଣ୍ଟି ଓ ପ୍ରକୃତ ଓଡ଼ିଆ ବିଧାନ ।

ତା'ପରେ ଗାଉଁଲି ଗାରେଡ଼ି ମନ୍ତ୍ର ପଢେଅଧେ ଶୁଣିବେ । "କୋହ୍ୱର ଦେ, ଗୁହଲ ଦେ, ଡଶା ମଶା ଯା ଯା ।" ଅର୍ଥାତ୍ କଖାରୁ ଦେ, ଗୁହାଳ ଦେ, ଡାଁଶ ମଶା ଯାଯା ।

| ଛୋଟନାଗପୁର ମିଶା ଭାଷା | ଓଡ଼ିଆ |
|---|---|
| ଝନ୍ତୁ | ଝଣନ୍ତୁ |
| ଓର | ଓଳ (ବା ଦନାର୍ଥ) |
| କୋନ୍ କୋନ୍ ଆଇଲେ | କିଏ କିଏ ଅଇଲେ |
| ଝଗ୍ | ଖଳା |
| ଧାନ କୁଟିଲୁଁ, କାଟଲୁଁ | ଧାନ କୁଟିଲୁ, କାଟିଲୁ |
| ଧରେ | ଧରେ |
| କଆର | କିଆର |
| ଝାଣ୍ଡି | ଝାଟି |
| ଡହର | ଡହଁର (ଗାଉଁଲି ରାସ୍ତା) |
| ମାଢ଼ିଆ | ମାଢ଼ି ଖଚୁ |
| ଖୋବା | ଖୋବା |
| ଆଡ଼ବେଳ | ଆଡ଼ବେଳ |

| | |
|---|---|
| ଜେହୁଣି | କହୁଣି |
| ଝିଣ୍ଡା | ଝିଣ୍ଡା |
| ଧୁଆଁର | ଧୁଆଁଳ, ଧାଳ |
| ସତ୍ୟନାଶ | ସତ୍ୟାନାଶ |
| ମୁହଁ ଅନ୍ଧାର | ମୁହଁ ଅନ୍ଧାର |
| ଏହୁଁ | ଏସଁ, ଏସନ୍ |
| ହେଠ | ହେଟ, ନୀଚ |
| ଭିନ୍ନ ଭିନ୍ନ ଥିଲେ | ଭିନ୍ନ ଭିନ୍ନ ଥିଲେ (ଅର୍ଥାତ୍ ପୃଥକାନ୍ନରେ ଥିଲେ) |
| ଯିତନ ଜାର ଦେବ | ଯେତେ ଜାର ହେବ |
| ସିତନ ନେଲ | ସେତେ ନେଲ |
| ପରେଇ ଗଲ | ପଳେଇ ଗଲ |
| ଗୋଜା | ଘୋଡା |
| ହାମର ହାତ ଝଙ୍ଗିଭୁଙ୍ଗି ଦେଲ | ମୋର ହାତ ଝଙ୍ଗିଭୁଙ୍ଗି ଦେଲ |
| ମାରପିଟ ଜରୁ ଗେଲ | ମାରପିଟ କଲଗଲ |
| | ଇତ୍ୟାଦି |

ମୁଁ କେବଳ କେତୋଟି ଏପରି ଉଦାହରଣ ଦେଇଛୁ, ଯାହାକୁ କି ବଙ୍ଗାଳୀ ଓ ବିହାରୀ କେହି ବଙ୍ଗାଳୀ ବା ବିହାରୀ ଭାଷା ବୋଲି କହିପାରିବେ ନାହିଁ । ଆଉ ଏ ଯେଉଁ ଭାଷାର ଉଦାହରଣ ଦେଲି, ସିଂହଭୂମି ବା ଧଲଭୂମିର କୁହାଭାଷା ନୁହେଁ; ହଜାରିବାଗ୍ ଓ ରାଞ୍ଚିର ଭାଷା ।

ଏଥିରୁ ଆପଣମାନେ ଦେଖିବେ, ଏ ଖାଲି ଶବ୍ଦର ସାମଞ୍ଜସ୍ୟ ନୁହେଁ । କ୍ରିୟା, କର୍ତ୍ତା, କର୍ମ ଇତ୍ୟାଦିଙ୍କର ରୂପାନ୍ତର ସାମଞ୍ଜସ୍ୟ ମଧ୍ୟ । ଏ ସାମଞ୍ଜସ୍ୟର ଦୁଇଟି କାରଣ ହୋଇପାରେ । ପ୍ରଥମ-ହୁଏତ ସମୁଦାୟ ଛୋଟନାଗପୁର ବହୁଦିନଧରି ଓଡ଼ିଆ ରାଜ୍ୟ ଥିଲା । ନ ହେଲେ ଛୋଟନାଗପୁର ଆଦିମ ଅଧିବାସୀମାନେ ଓଡ଼ିଶାରେ ଆର୍ଯ୍ୟବସତି ହେଲାବେଳେ ଓଡ଼ିଶା ଛାଡ଼ି ଛୋଟନାଗପୁରରେ ରହିଥିଲେ । ଯଦି ଦ୍ୱିତୀୟ କାରଣଟି ଠିକ୍ ହୁଏ, ତା'ହେଲେ ବୁଝିନେବାକୁ ହେବ ଯେ, ବର୍ତ୍ତମାନର ଓଡ଼ିଆ ଭାଷା ଆଦିମ ଅନାର୍ଯ୍ୟ ଭାଷା ଉପରେ ପ୍ରତିଷ୍ଠିତ । କିନ୍ତୁ, ଏପରି ଗୋଟାଏ କଥା ସତ୍ୟ ହୋଇ ନ ପାରେ । କାରଣ ଏପର୍ଯ୍ୟନ୍ତ ଯେ ଖାଣ୍ଟି ମୁଣ୍ଡା ବା ଓରାଂଓ ଭାଷା ଅଛି, ତା' ସହିତ ବର୍ତ୍ତମାନ ଓଡ଼ିଆ ଭାଷାର କୌଣସି ସାମଞ୍ଜସ୍ୟ ନାହିଁ ଏବଂ ଦ୍ୱିତୀୟରେ ଖାଣ୍ଟି ଓଡ଼ିଆ ଶବ୍ଦ ଅଧିକାଂଶ ସଂସ୍କୃତରୁ ଦୂର ବା ନିକଟ ସମ୍ପର୍କରେ ଅପଭ୍ରଷ୍ଟ । ତା'ହେଲେ ଏଇ

ଭାଷା ସୂତ୍ରରୁ ଧରିନେବାକୁ ହବ ଯେ, ଗ୍ରେଟ୍‌ନାଗପୁର ଅନେକ ଦିନ ଧରି ଓଡ଼ିଆ ରାଜ୍ୟ ଥିଲ; କାରଣ ଗୋଟାଏ ଜାତି ଅନ୍ୟ ଜାତି ଉପରେ ନିଜ ଭାଷାର ଏପରି ଗୋଟାଏ ସର୍ବୃଦିନିଆ ଗଭୀର ଦାଗ ପକାଇବା, ବର୍ଷେ ବି ବର୍ଷ ବା ଗୋଟାଏ ଅଧେ ସାମୟିକ ଅଭିଯାନର ଫଳ ହୋଇ ନ ପାରେ । ବିଶେଷତଃ ଓଡ଼ିଶାଠାରୁ ଛିନ୍ନ ହୋଇ ଆଜିକୁ ପ୍ରାୟ ଦୁଇଶହ ବର୍ଷ ହେବ ଗ୍ରେଟ୍‌ନାଗପୁର ବଙ୍ଗଳା ଓ ବିହାର ସଙ୍ଗରେ ଚଳୁଚି । ବଙ୍ଗାଳୀ ଓ ବିହାରୀମାନେ ଗ୍ରେଟ୍‌ନାଗପୁରରେ ଘରଦ୍ୱାର କରି କେତେ ପୁରୁଷ ହେଲା ରହିଲେଣି । ବ୍ୟବସାୟ, ବାଣିଜ୍ୟ, ଚାକିରିବାକିରି କଲେଣି । ତଥାପି ଗ୍ରେଟ୍‌ନାଗପୁର ଭାଷାରେ ସେମାନଙ୍କ ଭାଷାର ଯେତେ ପ୍ରଭାବ, ଓଡ଼ିଆ ଭାଷାର ପ୍ରଭାବ ତା'ଠାରୁ ଢ଼େର ବେଶୀ । ଅନ୍ୟ ଏକ କାରଣ ହୋଇପାରେ ଯେ, ବଙ୍ଗାଳୀ, ବିହାରୀ ଗ୍ରେଟ୍‌ନାଗପୁରକୁ ଯିବା ଆଗରୁ ଓଡ଼ିଆମାନେ ବହୁବର୍ଷ ଧରି ସେଠାରେ ଉପନିବେଶ କରି ରହି ଆସିଛନ୍ତି । ବ୍ୟବସାୟ, ବାଣିଜ୍ୟ ଇତ୍ୟାଦି କରିଛନ୍ତି ।

ଓଡ଼ିଆ ଭାଷାର ବିଚାର କଲାବେଳେ ବୈଦେଶିକ ଭାଷା ଉପରେ ତାହାର ପ୍ରଭାବ ଓ ବିଦେଶରେ ତାହାର ଭାଷା କିପରି ପରିବର୍ତ୍ତିତ ହୋଇପାରିଚି, ତା'କୁ ମଧ୍ୟ ବିଚାର କରିବାକୁ ପଡ଼ିବ । ମୁଁ ଆଗରୁ କହିଚି, ଓଡ଼ିଆ ଭାଷାର ବ୍ୟାକରଣ ଓ ପ୍ରକୃତି ଠିକ୍ କରିବା ଆଗରୁ ଆମ୍ଭମାନଙ୍କୁ ଯେଉଁ ଭାଷା ଓଡ଼ିଆ ଭାଷାକୁ ପ୍ରଭାବିତ କରିପାରିଚନ୍ତି, ସେସବୁ ଭାଷାର ଆଲୋଚନା ଦରକାର ହେବ । ମୁଁ ମଧ୍ୟ କହୁଚି ଯେ, ସେହି ସେହି ଭାଷା ମଧ୍ୟରେ କନୌଜି, ମାଗଧୀ, ବଙ୍ଗଳା, ମୈଥିଳୀ ଓ ପାରସିକ ପ୍ରଭାବ ଏ ଭାଷା ଉପରେ ଅଛି । ଖ୍ରୀଷ୍ଟାବ୍ଦ ଚତୁର୍ଥ ଶତାବ୍ଦୀରେ ଜନ୍ମେଜୟ କେତେକ କନୌଜୀ ବ୍ରାହ୍ମଣ ଓଡ଼ିଶାକୁ ଆଣିଥିଲେ । ତା'ପରେ ପରେ ଅନ୍ୟାନ୍ୟ ରାଜାମାନଙ୍କ ଅମଳରେ କାହିଁ କେତେ କନୌଜୀ ବ୍ରାହ୍ମଣମାନେ ଏ ଦେଶକୁ ଆସି ଶାସନବାଡ଼ି ବସାଇଛନ୍ତି । ପିଢ଼ା, ନନା, ଭାଇନା, ତିଅଣ, ଅଗଣା ପ୍ରଭୃତି ଓଡ଼ିଆ ଶବ୍ଦ ପ୍ରକୃତରେ କନୌଜୀ, ମାଗଧୀ ଶବ୍ଦ । ଏସବୁ ଶବ୍ଦ ତା'ହେଲେ ଚତୁର୍ଥ ଶତାବ୍ଦୀରୁ ଓଡ଼ିଶାରେ ଚଳିଆସୁଛି । ଅର୍ଥାତ୍ ଓଡ଼ିଆ କୁହାଭାଷା ଅନ୍ତତଃ ଚତୁର୍ଥ ଶତାବ୍ଦୀରୁ ଅଛି । ବଙ୍ଗଳା ମୈଥିଳୀର ପ୍ରଭାବ ଓଡ଼ିଆ ଭାଷା ଉପରେ ଚୈତନ୍ୟଙ୍କ ସମୟରୁ ହୋଇଚି ବୋଲି ଧରିନେବାକୁ ହବ । ପାରସିକ ଶବ୍ଦର ପ୍ରଭାବ କଳାପାହାଡ଼ଙ୍କ ଓଡ଼ିଶା ଜୟଠାରୁ ହୋଇପାରିଚି ବୋଲି ବୁଝିବାକୁ ହବ ।

ତା'ପରେ ଆମର ଏ ଭାଷାରେ ଏପରି ଅନେକ ଶବ୍ଦ ଅଛି, ଯାହାର ବ୍ୟବହାର ଅଭାବରୁ ଆମ୍ଭେମାନେ ଆସ୍ତେ ଆସ୍ତେ ଭୁଲିଯାଉଚୁ । ଅଥଚ ସେଇ ଶବ୍ଦଗୁଡ଼ିକ ଯେ ଭାବ ପ୍ରକାଶ କରନ୍ତି, ସେ ଭାବ ପ୍ରକାଶ କରିବା ପାଇଁ ଆମ୍ଭେମାନେ ବୈଦେଶିକ ଶବ୍ଦ ବ୍ୟବହାର କରୁଚୁଁ । ସେସବୁ ଶବ୍ଦର ପୁନରୁଦ୍ଧାର କରିବାକୁ ପଡ଼ିବ । କେହି କେହି କହିପାରନ୍ତି ଯେ, ବ୍ୟବହାରରୁ ଉଠିଯାଇଚି, ସେ ତ archaic ହୋଇଗଲାଣି । ତାକୁ

ପୁଣି ମଶାଣିରୁ ଉଠାଇବା ଦରକାର କିଆଁ ? ଦରକାର ଏଇଥିଲାଗି ଯେ, ସେ ମୋ ଘରର ସମ୍ପତ୍ତି । ସେ ଥାଉଁ ଥାଉଁ ବିଦେଶରୁ ମାଲ ଚୋରାଇବ କିଆଁ ? ଚୋରାଇବା ବା ମାଗିଆଣିବା ଗୋଟାଏ ଦରକାରୀ ପାପ । ଯାହା ମୋର ନାହିଁ, ତା’ଲାଗି ମୁଁ ପାପ ଅର୍ଜିବାରେ କିଛି ଅର୍ଥ ଥାଇପାରେ, କିନ୍ତୁ ଯାହା ମୋର ଅଛି, ତା’ରି ଜାଗାରେ ଆଉ ଗୋଟାଏ ଚିଜ ଅନ୍ୟଠାରୁ ଚୋରାଇବାରେ ଓ ମାଗି ଆଣିବାରେ ଖାଲି ମନର କଦର୍ଯ୍ୟତା ପ୍ରକାଶ ପାଏ ସିନା । ତା’ପରେ ଇଂରାଜୀର ଓ ବଙ୍ଗଳାର ଖ୍ୟାତନାମା କବି ଓ ସାହିତ୍ୟିକମାନେ ନିଜ ନିଜ ଭାଷାର ଏଇ ଆଁ ଶବ୍ଦଗୁଡ଼ିକ ସେମାନଙ୍କ ଲେଖାରେ ବ୍ୟବହାର କରି ସେ ଲେଖାକୁ କିପରି ଲଳିତ, ମଧୁର ଓ ବ୍ୟଞ୍ଜକ କରି-ପାରିଛନ୍ତି, ତାହାର ଉଦାହରଣ ଟେନିସନ୍‌ଙ୍କ ଲେଖା, ରବୀନ୍ଦ୍ରଙ୍କ ଲେଖାରୁ ସହଜରେ ଜଣାପଡ଼େ ।

ମୁଁ ଯାହା ସବୁ କହିଗଲିଣି, ଏଇତକରୁ ହୁଏତ ଆମର ସାହିତ୍ୟରଥୀମାନେ ଚମକିପଡ଼ି କହିବେ ଯେ, ଏ ଫର୍ଦ୍ଦିସ୍ତାକୁ ତିଆରି କରିବାକୁ କେତେ ସମୟ ଯିବ, କେତେ ପଇସା ଖର୍ଚ୍ଚ ହେବ, ଅତଏବ ଏଗୁଡ଼ିକ ଖାଲି ଭୂତ ଗପ, ଅସମ୍ଭବ ଓ ଅକାର୍ଯ୍ୟ । କିନ୍ତୁ ଏ ସବୁରେ ପଇସାରେ ସୁଅ ବୋହିବା ଦରକାର ନାହିଁ, କି ଯୁଗଯୁଗ ଧରି କଟିଯିବାର ଆବଶ୍ୟକ ନାହିଁ । କେତେ ଜଣ ନିଷ୍ଠାପର ସତ୍ୟ-ସେବୀ ଯେବେ ନିଜ ନିଜ ଭିତରେ ଏ ବିଭାଗଗୁଡ଼ାକ ବାଣ୍ଟିନେଇ ଠିକ୍ ବୈଜ୍ଞାନିକ ଭାବରେ କାମ ଆରମ୍ଭ କରନ୍ତି, ତା’ହେଲେ ସେମାନଙ୍କର ନିତ୍ୟ ନୈମିତ୍ତିକ କାର୍ଯ୍ୟ ବାଦ୍ ପ୍ରାୟ ଛମାସ ମଧ୍ୟରେ ସବୁ ବିଷୟର ଗେକ୍‌ଠୋକ୍ ମୀମାଂସା କରିପାରିବେ । ସାହିତ୍ୟ ସମାଜ ଯେ କମିଟିମାନ ବସାଇବେ ବୋଲି ପ୍ରସ୍ତାବ କରୁଛନ୍ତି, ସେ କମିଟିର ମେମ୍ବରମାନଙ୍କ ଉପରେ ଏ ଦାୟିତ୍ୱ ଓ ଦେଶବାସୀଙ୍କର ଆଶା ଯେ, ସେମାନେ ଏ ଦାୟିତ୍ୱ ଯଥାତଥା ନ କରି ଯଥାବିଧି କରିବେ ।

ବହୁତଗୁଡ଼ାଏ ଗପିଯାଇଛି ଏ ବିଷୟରେ । କିନ୍ତୁ ବିଷୟଟା ଏତେବଡ଼ ଆଉ ଏ ଜାତିପାଇଁ ବର୍ତ୍ତମାନ ଏତେ ଦରକାରୀ ଯେ, ଯାହା ବି କଥା କହୁଛି, ସେ ସମୁଦ୍ରକୁ ଶଙ୍ଖେ ପଣା ପରି । ଗୋଲମିରୁ ଫୁରୁସତ ମିଳିଲେ ଆଉ କିଛି ଏ ବିଷୟରେ କହି ଆଉ ଗୁଡ଼ାଏ ମାଡ଼ଗାଳି ମୂଲେଇପାରେ ।

ସହକାର-ଜ୍ୟେଷ୍ଠ-୧୩୪୫
୧୯୩୮ ମସିହା
ପୃ—୯୭-୧୦୧



# ଅଦାବେପାରୀ

ଆମ ଦେଶରେ ଗୋଟାଏ ହୁକୁମ ଜାରି ହୋଇଛି ଯେ, ଯେଉଁମାନେ ପାଞ୍ଚଶ ହଜାର ପାଇଲାବାଲା ଗୋଲାମ, ସେମାନଙ୍କର ସାହିତ୍ୟ ବିଷୟରେ କିଛି କହିବାର ଅଧିକାର ନାହିଁ । କେବଳ ଯେଉଁମାନେ ପେଟରେ ଓଦା କନା ପକାଇ ମା ସରସ୍ୱତୀଙ୍କ କୋଳରେ ବିଳବିଳ ହଉଛନ୍ତି, ସେମାନେ ହିଁ ସାହିତ୍ୟ ଲେଖିବେ ଓ ସାହିତ୍ୟ ବିଷୟରେ କିଛି କହିବେ । ସେଇଥିପାଇଁ ମନେ ମନେ ଭାବିଲି, "କାହିଁକିରେ ବାବୁ ନିଜ ହାତରୁ ପଇସା ସାରି, ନିଜର ମୁଣ୍ଡ ଖଟେଇ, ସମୟର ତର୍ପଣ କରି, ଲେଖିବା କଅଣ ? ତା'ଲାଗି ଏବେ ଦାସ୍ତିକା ମାଡ଼ ଖାଇବା କଅଣ ? କିଏ ଜାଣେ, କେତେବେଳେ କ'ଣ ହୋଇଯିବ । ଦାସ୍ତିକା ମାଡ଼ରୁ ଯେବେ ନାସ୍ତିକା ମାଡ଼କୁ କଥା ଯାଏ, ତାହାହେଲେ କ'ଣ କରିବି ?" ଅତଏବ, ସାହିତ୍ୟ ବିଷୟରେ ଲେଖିବା କିଛିଦିନ ବନ୍ଦ କରିଦେଇଥିଲି; କିନ୍ତୁ ଫେରି ମନେ ଭାବିଲି, "ହଁ ହିକ୍ ପଇସାଟା ଦେଇ ବହି, କାଗଜ କିଣିବି, ହିକ୍ ସମୟଟା ଖର୍ଚ୍ଚ କରି ତାକୁ ପଢ଼ିବି । ସେଥିରୁ ଅଳିଆ ମଳିଆ ବାହାରିଲେ ବ'ସ୍ତିର କଥା କହିବି ନାହିଁ କାହିଁକି ? ଦୋକାନୀ ଯେବେ ଖରାପ ଚିଜ ବିକେ, ତା' ନାଁରେ ଫୌଜଦାରୀ ହୁଏଚ । ଆଉ ମୁଁ ସଦେ କଥା କହିବାରେ କ'ଣ ହେଇଯିବ ?" ସେତେବେଳରୁ ଦେଶର ସାହିତ୍ୟ ମହାରଥୀମାନେ ମଧ୍ୟ ଟିକିଏ ସ୍ୱର ବଦଳାଇଲା ଭଳି ଜଣାପଡ଼ିଗଲା । ଓଡ଼ିଆ ସାହିତ୍ୟଟା ଯେ, ଓଡ଼ିଆ ଦେଶପାଇଁ ଓ ଓଡ଼ିଆ ଲୋକଙ୍କ ପାଇଁ ହିବା ଉଚିତ, ଏ କଥାଟା ସେମାନଙ୍କ ପିଡ଼ିଆଦିଆ ମସ୍ତିଷ୍କରେ ଗଜୁରି ଉଠିଲା । କେହି କେହି ମଧ୍ୟ ସେମାନଙ୍କ ଭାଷା ଯଥାସମ୍ଭବ ଓଡ଼ିଆ କରୁଚନ୍ତି । ଓଡ଼ିଆର ଭାଷା ଓ ସାହିତ୍ୟ ପଢ଼ଣା ଘର ଉପରେ ନିର୍ଭର ନକଲେ ଏକାବେଳକେ ଚଳିପାରିବ ନାହିଁ, ଏ କଥାଟା ଆଉ ଶୁଣାଯାଉନାହିଁ । ଖାଲି ଓଡ଼ିଆ ସାହିତ୍ୟରେ ନୁହେଁ, ପରଦେଶୀ ସାହିତ୍ୟରେ ମଧ୍ୟ ଲେଖାଲୀଙ୍କର ବଡ଼ କଷ୍ଟ, ଏ କଥାଟା ମଧ୍ୟ ଆମ ମୁଣ୍ଡରେ ପଶି-ପାରିଲାଣି । ଇଂରେଜୀ ସାହିତ୍ୟରେ ମଧ୍ୟ ପଚିଶ ଷାଠିଏ ବର୍ଷ ତଳେ ଏହିପରି ଅବସ୍ଥା ଥିଲା ଏବଂ ବଲ୍‌ଡୁଇନ୍ ସାହେବଙ୍କୁ ବିଶ୍ୱାସ କରାଗଲେ, ବର୍ତ୍ତମାନ ମଧ୍ୟ ଅଳ୍ପ ବହୁତେ ଅଛି—ଏ କଥା ମଧ୍ୟ ବୁଝିପାରିଲୁଣି ଆମେ । ସେଇ ହେତୁରୁ ମୋର ସାହସ ହଉଚି, ଏଥରକ ମୋ ମନ କଥାରୁ ପଦେଅଧେ ଲେଖିଲେ ବୋଧହୁଏ ଆଉ ଠେଙ୍ଗାମାଡ଼ ପଡ଼ିବ ନାହିଁ । ଦେଖନ୍ତୁ, ଠେଙ୍ଗାମାଡ଼କୁ ମୋର ଡର ନାହିଁ, ତେବେ ଠେଙ୍ଗାମାଡ଼ ନାଁରେ ଯୁ ଅସକବି ମାଡ଼ ହୁଏ, ତାକୁ ହିଁ ମୋର ଡର ! ଆମେ ସବୁ ହେଲୁ ଛୋଟଲୋକ । ଆମ ଆଖିକି ଅସକବିଗୁଡ଼ାକ ଅସକବି । ତାକୁ ଆମେ ସରଗଫୁଲ ନାଁ ଦେଇ ବା ଦବାର ସ୍ୱପ୍ନ ଦେଖି ବନ୍ଦନା କରିପାରୁନାହିଁ, କି ଭାବିପାରୁ ନାହିଁ । ଯାହାହେଉ, ବର୍ତ୍ତମାନ ମାସିକ

ପତ୍ରିକାଗୁଡ଼ିକରେ ଯାହା ସାହିତ୍ୟ ବିଷୟରେ ଲେଖାହେଉଛି, ସେଥିରୁ ମୁଁ ଏତିକି ବୁଝୁଛି—

୧—ପେଟପୁରୁ ବା ନ ପୁରୁ, ଓଡ଼ିଆ ଲେଖିବାକୁ ହେବ ।

୨—ଯାହା ଲେଖିବାକୁ ହେବ, ସେ ଓଡ଼ିଆର ଜାତୀୟଜୀବନ ସାଙ୍ଗରେ ଖାପ ଖାଉଥିବ, ନହେଲେ ଜାତୀୟ ଜୀବନ ଉପରେ ଗଢ଼ା ହେବ ।

୩—ଦରକାର ପଡ଼ିଲେ ବିଦେଶୀ ସାହିତ୍ୟରୁ ଭାବ ଓ ଭାବପ୍ରକାଶ କରିବାପାଇଁ ଭାଷା ଆମଦାନୀ କରିବାକୁ ହେବ, କିନ୍ତୁ ବିଦେଶୀ ସାହିତ୍ୟରେ ଏ ସାହିତ୍ୟଟାକୁ । ପୁଷ୍ଟି କରିବାକୁ ହେବ ନାହିଁ ।

୪—ଯାହା ଲେଖା ହେଉଛି, ସେ କିପରି ଲୋକଙ୍କ ଭିତରେ ପଶିପାରିବ, ଅର୍ଥାତ୍ କିପରି ଲୋକେ ତାଙ୍କ ଅଣ୍ଟାରୁ ପଇସା କାଢ଼ି ଆମ ଘଡ଼ା ଭର୍ତ୍ତି କରିପାରିବେ, ତାହାର ଉପାୟ କରିବାକୁ ପଡ଼ିବ ।

କଥାଗୁଡ଼ାକ ଏକାବେଳେକେ ଖାଣ୍ଟି ସତ, ଓଡ଼ିଆ ଦେଶରେ ଆଜକାଲିର ଓଡ଼ିଆ ସାହିତ୍ୟ ପ୍ରତି ଆଦର ନାହିଁ କାହିଁକି ? ମୁଁ କାହାରି ସାଙ୍ଗରେ କାହାରିକୁ ତୁଳନା କରିବାକୁ ଯାଉନାହିଁ, ଖାଲି ବିଗୁର କରିବା ପାଇଁ କଥାଟା କହିଦେଉଛି ମାତ୍ର । ମଫସଲର ଅଜଣା କୋଣ ଖୋଜି ଆସିଲେ ଖଣ୍ଡେ ଦିଖଣ୍ଡ ଲାବଣ୍ୟବତୀ, ବିଦଗ୍ଧ ଚିନ୍ତାମଣି, ପ୍ରେମସୁଧାନିଧି ମିଳିବ; କିନ୍ତୁ ମଫସଲର ଦଶପନ୍ଦର ଖଣ୍ଡ ଗାଁ ଓଲେଇ ଆସିଲେ ମଧ୍ୟ ଖଣ୍ଡେ ଆଜି କାଲିକାର ଲେଖା ମିଳିବ ନାହିଁ କାହିଁକି ? ଅନେକ କଥା କୁହା ହୋଇଛି ଏ ବିଷୟରେ; ଯଥା—ଲୋକଙ୍କର ଦାରିଦ୍ର୍ୟ, ସରକାରଙ୍କ ଅବୁଝାମଣା, ଲୋକଙ୍କ ମୂର୍ଖତା ଇତ୍ୟାଦି । ବର୍ତ୍ତମାନ ଏହି କଥାଗୁଡ଼ିକ ଟିକିଏ ବିଗୁର କରାଯାଉ ।

୧ । ଲୋକଙ୍କ ଦାରିଦ୍ର୍ୟ—

ଓଡ଼ିଶା ଦେଶ ଗରିବ, ଏ କଥାଟା ଦାଣ୍ଡରେ ପଡ଼ି ହାଟରେ ଗଡ଼ଗଡ଼ଉଛି । ଓଡ଼ିଆ ଜାତିର ନେତା ଓ କର୍ତ୍ତାମାନଙ୍କର ଯେତେ ଦୋଷ, ଗଫଲତି, ସବୁ ଏହି ଦାରିଦ୍ର୍ୟ ବାପୁଡ଼ା ମୁଣ୍ଡରେ ଅଜଡ଼ା ହେଉଛି; କିନ୍ତୁ ଯେଉଁ ଗାଉଁଲି ଲୋକ ଦେଢ଼ ଟଙ୍କା ଦେଇ ଲାବଣ୍ୟବତୀ କିଣିପାରେ, ସେ ସେଇ ଦେଢ଼ ଟଙ୍କା ଦେଇ ଦି'ଖଣ୍ଡ ଆଜିକାଲିକାର ଓଡ଼ିଆ ଉପନ୍ୟାସ କିଣେ ନାହିଁ କାହିଁକି ? ଯେ ଆଠଣା ପଇସା ଦେଇ ସୁଶୀଳମାଳତୀ କିଣେ, ସେ ଖଣ୍ଡେ ଆଜକାଲିର ଓଡ଼ିଆ ନାଟକ କିଣେ ନାହିଁ କାହିଁକି ? ବହି ପତ୍ର କିଣାରେ ପଇସା ତ ଖର୍ଚ୍ଚ ହେଉଛି । ଦାରିଦ୍ର୍ୟ ଲାଗି ତ ଯାହାଙ୍କର ପଢ଼ିବାର ଇଚ୍ଛା, ସେ ଅପଢ଼ା ଯାଉନାହାନ୍ତି । ଏପରି ସ୍ଥଳେ ଲୋକେ ଯେ ଆଜିକାଲିକାର ଲେଖା ପଢ଼ୁ-ନାହାନ୍ତି, ତା'ର କାରଣ ଦାରିଦ୍ର୍ୟ ବୋଲି କହିଲେ ମିଛ କହିବାକୁ ହେବ ।

୨ । ସରକାରଙ୍କର ଅବହେଳା—

ଯୁଦ୍ଧ ସମୟ ବାଦ ଦେଲେ ବହି ଛାପିବା ପାଇଁ କାଗଜ ଅଭାବ ମୋ ପକ୍ଷରେ ହିଁ ଦୁଃଖର କଥା । ଗାଁ କଥାରେ ଜାଗ୍ରତ ପାଇଁ ସରକାର କ'ଣ କରିବେ ? ସେ ତ ଆଉ ବଜାରରେ ଯେତେ ବହି ବିକାହେଉଛି ସେଗୁଡ଼ାକ ସବୁ କିଣି ପକେଇବେ ନାହିଁ । ସରକାର ଏତିକି ମାତ୍ର କରିପାରନ୍ତି ଯେ, ସରକାରୀ ସ୍କୁଲ, କଲେଜର ଲାଇବ୍ରେରୀ ପାଇଁ ଖଣ୍ଡେ ଖଣ୍ଡେ ବହି କିଣି ପକାଇବେ, କିନ୍ତୁ ସେଥିରେ କେତେ ବିକିବ ? ସରକାରୀ ସ୍କୁଲ, କଲେଜ ବୋଇଲେ ଛ'ଟାକି ସାତଟା । ଏଇ ସ୍କୁଲ କଲେଜ ଯେ ଏହିପରି କିଛି କିଛି ବହି ନ କିଣୁଛନ୍ତି ତା' ମଧ୍ୟ ନୁହେଁ । ତା'ପରେ ସ୍କୁଲ କଲେଜର ଲାଇବ୍ରେରୀରେ ଥାନ ପାଇବା ଭଳି କେତେଖଣ୍ଡ ବହି ଲେଖାଗଲଣି ? ଇଂରେଜୀରେ ଯେପରି ଫେନିମୋର, କୁପରଙ୍କର ଓ ଅନ୍ୟାନ୍ୟ ଲେଖକଙ୍କର ପିଲା ମନ ଭୁଲାଣିଆ Adventure Story, From Log Cabin to White House ପରି ଜୀବନୀ, Uncle Tom's Cabin ପରି ଆଦର୍ଶବାଦ ବହି, ଯେଉଁଥିରେ କି ପ୍ରେମ ପ୍ରୀତିର ରସରସିଆ କଥା ନାହିଁ, କେତେ ଖଣ୍ଡ ଲେଖାଗଲଣି ? ଆଉ ଯେଉଁ ଗପ ବା ଉପନ୍ୟାସ ଲେଖାହେଉଛି, ସେଥିରୁ କେତେଖଣ୍ଡ ସ୍କୁଲ ପିଲାଙ୍କର ପଢ଼ିବାର ଉପଯୋଗୀ ? କେହି କେହି କହିପାରନ୍ତି ଯେ, ପ୍ରାଇମେରୀ ଶିକ୍ଷାର ବିସ୍ତାର ହେଲେ ବେଶୀ ବହି ବିକିବ । ସରକାର ପ୍ରାଇମେରୀ ଶିକ୍ଷାର ବ୍ୟବସ୍ଥା ନ କରିଥିବାରୁ ଆମର ବହି ନ ବିକିବା ପାଇଁ ସରକାର ଦାୟୀ । କଥାଗୁଡ଼ାକ ମୋର ମନେହୁଏ ଅସହଣିଆ କଥା । ଇଲେ ଓଡ଼ିଆ ଦେଶରେ ବୋଧହୁଏ ନିରକ୍ଷର ପୁରୁଷଙ୍କ ଭିତରେ ଶତକଡ଼ା ଦଶ; ବାକି ନବେ ଜଣ ମୋଟା ମୋଟି ସାକ୍ଷର । ତା'ଭିତରୁ ପ୍ରାୟ ଅଧାଅଧି କିଛିକିଛି ପଢ଼ିଶୁଣି ଜାଣନ୍ତି । ଏଇ ଶତକଡା ପଞ୍ଚସ୍ତ୍ରିଶରୁ ବୋଧହୁଏ ପାଞ୍ଚଜଣ ଲେଖାବହି ପଢ଼ନ୍ତି । ବାକି ସ୍ତ୍ରିଶଜଣଙ୍କ ମନରେ ଯେବେ ଆମ ଲେଖା ପ୍ରତି ଆଦର ଆସନ୍ତା, ତାହାହେଲେ ଲେଖକମାନଙ୍କର ଦୁଃଖ ରହନ୍ତା ନାହିଁ । ତା' ଲାଗି ସରକାର କରିବେ କ'ଣ ?

୩ । ଲୋକଙ୍କ ମୂର୍ଖତା—

ଅର୍ଥାତ୍ ଲୋକଙ୍କର ଆମ ଲେଖା ବୁଝିବାଭଳି ବିଦ୍ୟା ବା ବୁଦ୍ଧି ନାହିଁ । ଏହିଟା ଓଡ଼ିଶା ପକ୍ଷରେ ଖାଲି ପ୍ରବର୍ତ୍ତିବ କିଆଁ ? ସମୁଦାୟ ପୃଥିବୀରେ ସବୁ ଦେଶରେ ଏଇ ଦଶା । ଉଚ୍ଚ କପାଳିଆଙ୍କ ପଣ୍ଡିତିଆ ଲେଖା ସାଧାରଣ ଲୋକେ ବୁଝିପାରନ୍ତି ନାହିଁ । ସାଧାରଣ ପଣ୍ଡିତମାନେ ବୁଝି ପ୍ରଶଂସାକଲେ ମଧ୍ୟ ସେଗୁଡ଼ିକୁ ତାଙ୍କର କୃପାମାଳ କରିବାକୁ ଏକାବେଳେକେ ରାଜିହୁଅନ୍ତି ନାହିଁ । କେବଳ ତାଙ୍କରି ଭଳି ଉଚ୍ଚ କପାଳିଆ କେତେଜଣ ତାକୁ ସବୁ ସାଇତି ରଖନ୍ତି । ଯେଉଁମାନେ ସାହିତ୍ୟଟାକୁ ଅର୍ଥକରୀ ଭାବରେ ଦେଖନ୍ତି, ସେମାନେ ତାକୁ ବ୍ୟବସାୟ ଦୃଷ୍ଟିରେ ଆଶ୍ରୟ କରନ୍ତି । ଲୋକଙ୍କୁ କି ଜାତିଆ ଜିନିଷ ଭଲଲାଗେ, ତାହା ଠଉରେଇ ସେହିପରି ଜିନିଷ ଗୋଦାମରେ ମହଜୁଦ

ରଖିବା ଓ ଦୋକାନ ବାଡ଼ରେ ମେଲେଇରଖିବା ବ୍ୟବସାୟର ଗୋଟାଏ ଗୁଣ । ଆଉ ଗୋଟାଏ ଗୁଣ ଯେ, ଗ୍ରାହକଙ୍କ ରୁଚି ଅନୁସାରେ ଚିଜ ଆମ ଦୋକାନରେ ରଖିବା ସମ୍ଭବ ନହେଲେ, ଆମ ରୁଚିକୁ ଟିକିଏ ଲୋକଙ୍କ ରୁଚି ସହ ସମାନ କରିବାର ଚେଷ୍ଟା କରି ଜକବକିଆ ବିଜ୍ଞାପନ ଦ୍ୱାରା ଡେଙ୍ଗୁରା ଦେଇ, କହି ବୁଝେଇ ଆମ ଜିନିଷଗୁଡ଼ାକ ବିକେଇନେବୁ । ଆମେ ଯେପରି ଭାବରେ କାମ କରୁଛୁଁ, ଆଜକାଲି ସେଥିରେ ଆମ ଜିନିଷ ବିକ୍ରି ହେବାର କୌଣସି ଲକ୍ଷଣ ଦେଖାଯାଉନାହିଁ । ଆମେ ପଇସାର ଆଶା ରଖିବୁଁ, ଗ୍ରାହକଙ୍କ ରୁଚିର କୌଣସି ଖବର ରଖିବା ଦୂରେଥାଉ, ଗ୍ରାହକଙ୍କ ରୁଚିକୁ ଅସଭ୍ୟ, ଅନୁନ୍ନତ ଓ ମୂର୍ଖାଣ୍ଡି ବୋଲି ଘୃଣାକରିବୁ । ଏଣେ ପୁଣି ବହି ଖଣ୍ଡେଖଣ୍ଡେ ଲେଖିଦେଲେ ହିଁ ଭାବିବୁ ଯେ, ଆମର କାମ ସରିଗଲା, ଏଣିକି ଲୋକଙ୍କର ଗ୍ରାହକଙ୍କର କର୍ତ୍ତବ୍ୟ ଆରମ୍ଭ ହେଲା ।

ଏପରି ଭାବ ନେଇ ଯେ କମିତି ସାହିତ୍ୟଟା ଅର୍ଥକରୀ ହୋଇପାରିବ ମୁଁ ଦେଖିପାରୁନାହିଁ । ମୋର ନ ହେଲେ ବୁଦ୍ଧିଟା ସ୍ଥୂଳ, ମୁଁ ବୁଝିପାରିଲି ନାହିଁ; କିନ୍ତୁ ଏତେ ଲେଖାଲେଖି ପରେ କେହି ଯେ କିଛି ଉପାୟ ଏହାର ଠିକ୍ କରିପାରିଛି, ସେ କଥା ମଧ୍ୟ ମୁଁ ଏତେବେଳଯାଏ ଶୁଣିନାହିଁ । ମୋ ସ୍ଥୂଳବୁଦ୍ଧିରେ ଯାହା ଆସୁଛି, ତାହା କହିବାକୁ ଆମର ବଡ଼ମୁଣ୍ଡିଆମାନେ ମତେ ଟିକିଏ ହୁକୁମ ଦେବେ କି ?

ମୁଁ ଅବଶ୍ୟ କହୁନାହିଁ ଯେ, ଲୋକଙ୍କ ରୁଚିଅନୁରୂପ ସାହିତ୍ୟ ଲେଖିବାକୁ ହେବ ବୋଲି ଆମର ଶିକ୍ଷା, ସଭ୍ୟତା ସବୁ ଭୁଲି ଆମକୁ ବୈଷ୍ଣବ ପାଣିଙ୍କ ସ୍ତରକୁ ଓହ୍ଲାଇଆସିବାକୁ ପଡ଼ିବ । ଏହା ସମ୍ଭବ ନୁହେଁ, ସୁନ୍ଦର ନୁହେଁ, କି ସାହିତ୍ୟପ୍ରତି ମଙ୍ଗଳଜନକ ନୁହେଁ । ମୁଁ ଖାଲି ଏତିକି କହିବାକୁ ଚାହେଁ ଯେ, ଆମ ପାଣ୍ଡିତ୍ୟକୁ ଭଲ କରି ହଜମ କରି ତାକୁ ଯଦି ଆମ ଦେଶଲୋକ ସାଧାରଣଙ୍କ ଜୀବନ ସହିତ ଖାପଖାଇଲା ଭଳି ଆମେ ତିଆରି କରୁ ଓ ଲୋକ ସାଧାରଣଙ୍କ ବୁଝିପାରିବା ଭଳି ଭାଷାରେ ସଜେଇ ରଖୁଁ, ତାହାହେଲେ ଆମ ଲେଖାକୁ ଲୋକ ସାଧାରଣଙ୍କର ଆଦରଣୀୟ କରିପାରିବୁଁ । ଆଉ ପାଣି ସାହିତ୍ୟର ଖର ସୁଅକୁ ମଧ୍ୟ ବନ୍ଦ କରିପାରିବୁଁ । ଲୋକଙ୍କ ରୁଚି, ଶିକ୍ଷା ଓ ପାଣ୍ଡିତ୍ୟ ଆମରି ଭଳି ହେବାଯାଏ ଯେବେ ଆମେ ଅପେକ୍ଷା କରି ବସୁଁ, ତା' ହେଲେ ଆମର ଲେଖା ହୁଏତ ଏ କଳିଯୁଗରେ ଆଉ ଲୋକପ୍ରିୟ ହୋଇପାରିବ ନାହିଁ । ତା' ଅପେକ୍ଷା ବରଂ ଆମେ ଟିକିଏ ନଇଁପଡ଼ି ଲୋକଙ୍କୁ ଆମର ଉଚ୍ଚ ଆସନ ଆଡ଼କୁ ଟାଣି ଆଣିବାର ଚେଷ୍ଟା କରିବା ଭଲ । ଏ ବିଷୟରେ ମୁଁ ଅନେକ କହିଛି । ସେଗୁଡ଼ାକ ଆଉ ପାଗୁଳେଇବି ନାହିଁ । ମୁଁ ଯାହା କହୁଛି, ତାହା ସାହିତ୍ୟର ରୂପ କିପରି ହେବା ଦରକାର ସେ ଦିଗରୁ ନୁହେଁ; କିନ୍ତୁ ସାହିତ୍ୟଟା କିପରି ଅର୍ଥକରୀ ହେବ ସେଇ ଦିଗରୁ—କିପରି ଭାବରେ ଉଚ୍ଚଧରଣର ନୂଆ ରୁଚିର ସାହିତ୍ୟ ଲେଖିବାକୁ ହେବ ଓ ଲେଖି ତାକୁ କିପରି ଲୋକପ୍ରିୟ କରିବାକୁ ହେବ, ସେଇଦିଗରୁ ।

ଯେଉଁ ସାହିତ୍ୟଟାର ରୂପ, ପ୍ରକୃତି ଓ ଭାଷା ଏହିପରି ଭାବରେ ଟିକିଏ ବଦଳେଇ-ଦେଲେ ଆମର କାମ ଶେଷ ହେଉନାହିଁ, ଆମେ ଯେତେ ଇଚ୍ଛା କଲେ ମଧ୍ୟ ପାଣି ଲେଖାର ଅନୁରୂପ ଲେଖା ଲେଖିପାରିବୁ ନାହିଁ, ଲେଖିବା ଦରକାର ମଧ୍ୟ ନାହିଁ, ଅଥଚ ଏହି ଲେଖାକୁ ଲୋକଙ୍କ ମଧ୍ୟରେ ସାଦର ପ୍ରଚାର କରିବାକୁ ହେବ କିମିତି ? ଗ୍ରାହକ ଖୋଜିବାକୁ ହେଲେ ଆମେ ଏକାଡେମୀରେ କଟକ ଉତ୍କଳ ସାହିତ୍ୟ ଭବନରୁ ଗାଁର ଆଖଡ଼ା ଘରକୁ ଯାଇପାରିବୁ ନାହିଁ; କିନ୍ତୁ ଏ ଦୁଇଟିର ମଝିରେ ହଜାର ହଜାର ଅଧା ପାଠୁଆ ଅଛନ୍ତି, ଯେଉଁମାନଙ୍କୁ ଆମ ସାହିତ୍ୟଆଡ଼େ ଟିକିଏ ନଜର ଦେବାପାଇଁ ଚେଷ୍ଟା କରିବା ବେଶୀ କଷ୍ଟକର ହେବନାହିଁ । ତା'ର ଉପାୟ ମୁଁ ଗୋଟିଗୋଟି କରି ମୋ ସ୍ଥୂଳବୁଦ୍ଧି ଅନୁସାରେ କହୁଛି । ଶୁଣିବାକୁ ଅବଧାନ ହେଉ, ହେ, ଦେବ ମଣିମା !

୧—ଆମ ଦେଶରେ ଉତ୍କଳ ସାହିତ୍ୟ ସମାଜ, ସବୁଜ ସାହିତ୍ୟ ସଂଘ, ତରୁଣ ସାହିତ୍ୟ ସଂଘ, ନବଯୁଗ ସାହିତ୍ୟ ସଂସଦ ଇତ୍ୟାଦି ଅନେକପ୍ରକାର ଅନୁଷ୍ଠାନ ଅଛି । ଯେପରି ଜଣାଯାଏ, ଏମାନେ କେବଳ ନିଜ ନିଜ ଦଳଟି କୁଣ୍ଢେଇବାରେ ବ୍ୟସ୍ତ । ଯାହା ମୋ ଦଳଙ୍କ କଲମରୁ ବାହାରିବ, ସେଇ ଏକା ସୁନ୍ଦର ଓ ସାହିତ୍ୟ, ଆଉ ସବୁ ବାଜେ । ଏମାନଙ୍କ ଅହଙ୍କାର ଭାଙ୍ଗିବାକୁ ହବ । ଭଲ ଲେଖା, ଯେ ସେ ଦଳର, ଯୁ ଗୋଷ୍ଠୀର ହେଲେ ମଧ୍ୟ ତାକୁ ଆଦର କରିବାକୁ ହବ, ପ୍ରଚାର କରିବାକୁ ହେବ ଓ ଲୋକଙ୍କୁ ତା' ଲାଗି ମତେଇବାକୁ ହବ । ସାହିତ୍ୟ ସାଙ୍ଗରେ ରାଜନୀତି, ଧର୍ମନୀତି ଓ ଗୋଷ୍ଠୀନୀତି ଯୋଡ଼ିଲେ ସାହିତ୍ୟ କେବେହେଲେ ଉଧେଇପାରିବ ନାହିଁ । ଏତେ ପଢ଼ୁଆ ପଣ୍ଡିତଙ୍କ ଆଡ୍ଡା । ସେମାନଙ୍କ ମନରେ ଏଇ ଭାବ ଆଣିବା ବିଶେଷ କଷ୍ଟକର ହେବା ଭଳି ଉଚିତ୍ ।

୨—ଅଜିକାଲି ଗ୍ରାମ ସଂଗଠନ ଚାଲିଚି, ସରକାରଙ୍କ ପକ୍ଷରୁ ଓ ବେସରକାରୀ ଦଳଙ୍କ ପକ୍ଷରୁ । ହଜାର ହଜାର ଟଙ୍କା ଏ ବାଟରେ ଖର୍ଚ୍ଚ କରାଯାଉଛି । ଲୋକଙ୍କର ରୁଚି ଓ ସଭ୍ୟତା ବଢ଼ାଇବା ଗ୍ରାମସଂଗଠନର ପ୍ରଧାନ ଉଦ୍ଦେଶ୍ୟ । ସେଥିପାଇଁ ଗାଁମାନଙ୍କରେ ଯେ ପଞ୍ଚାୟତ ସବୁ ବସାଯାଉଛି, ସେମାନଙ୍କୁ ଗୋଟିଏ ଗୋଟିଏ ଲାଇବ୍ରେରୀ ଓ ପଢ଼ିବାଘର ପାଇଁ ସୁବିଧା ଦେଲେ ହୁଅନ୍ତା । କୌଣସି କୌଣସି ସବ୍‌ଡିଭିଜନରେ ଏହିପରି ପ୍ରସ୍ତାବ ହୋଇଥିବା ମୁଁ ଜାଣେ । ସେସବୁ ପ୍ରସ୍ତାବର ଫଳ କ'ଣ ହେଲା, ମୁଁ କହିପାରୁନାହିଁ । ତେବେ ଏତିକି କହିପାରେ ଯେ, ପ୍ରସ୍ତାବଟା ସରକାରଙ୍କ ଆଡ଼ୁ ହୋଇଥିଲା । ଯଦି ଏ ପ୍ରସ୍ତାବଟି କାମରେ କରାଯାନ୍ତା, ତା'ହେଲେ ଅନ୍ତତଃ ପ୍ରତ୍ୟେକ ଗାଁରେ ଦି' ତିନିଖଣ୍ଡ ମାସିକ ପତ୍ରିକା ରଖାଯାଇପାରନ୍ତା । ଖର୍ଚ୍ଚ ତ କିଛି କମ୍ ନୁହେଁ, ବର୍ଷରେ କୋଡ଼ିଏ ଟଙ୍କା ବଡ଼ଜୋର । ବର୍ଷରେ ଯଦି ଗ୍ରାମସଂଗଠନ ପାଣ୍ଠିରୁ ପାଞ୍ଚଟଙ୍କା ଦିଆଯାଏ, ଆଉ ପାଞ୍ଚଟଙ୍କା ଗାଁବାଲାଙ୍କଠାରୁ ଆଦାୟ କରିବା କ'ଣ ଅସମ୍ଭବ ? ଅଥଚ ପ୍ରତି ବଡ଼ ଗାଁକୁ ଯେବେ ଖଣ୍ଡିଏ ଖଣ୍ଡିଏ ମାସିକ ପତ୍ରିକା ଯା'ନ୍ତା, ତା'ହେଲେ ମାସିକ ପତ୍ରିକାମାନଙ୍କର ଏ ଦୁର୍ଦ୍ଦଶା ରହନ୍ତା ନାହିଁ । ସେମାନଙ୍କର ଅବସ୍ଥା ଭଲ

ହେଲେ, ଲେଖକମାନଙ୍କ ପେଟ ଏକାବେଳକେ ଅପୋଷା ରହୁନ୍ତା ନାହିଁ । ଏ ପ୍ରଥାକୁ କାମରେ ଲଗାଇବା ପାଇଁ କିଛି ମାତ୍ର ଅଧିକା ଖର୍ଚ୍ଚ ବା ପରିଶ୍ରମର ପ୍ରୟୋଜନ ନାହିଁ; କାରଣ ଗାଁ ଗାଁରେ ଆଜକାଲି ଗୋଟିଏ ଗୋଟିଏ ଗ୍ରାମୋନ୍ନତ ଅନୁଷ୍ଠାନ ଅଛି । ଯଦି ସରକାରଙ୍କ ପାଖରେ ଯଥାବିହିତ ଭାବରେ ଏ ପ୍ରସ୍ତାବ କରାଯାଏ ଓ ଗାଁ ଦେବତାମାନେ ଟିକିଏ ନଜର ଦେଇ ବୁଝାନ୍ତି, ତା'ହେଲେ ଗୋଟାଏ ବର୍ଷ ଭିତରେ ଏ ଦିଗରେ ଅନେକ କାମ କରି ହୁଅନ୍ତା ।

## ୩—ଲାଇବ୍ରେରୀ ସଂଗଠନ

ଠାଏ ଠାଏ ଲାଇବ୍ରେରି ବସାଯାଇଛି, କିନ୍ତୁ ସେ ମାଗିଯାଗି କରି ଆଉ ଦି'ଚାରି ଜଣଙ୍କ ପାଇଁ । ଏଥିରେ ସାଧାରଣ ଲୋକଙ୍କ ମନ ନ ଥାଏ, ସାଧାରଣଙ୍କ ପାଇଁ ମଧ୍ୟ ମାଲ ନ ଥାଏ । ଯେ ଯାହା ଦେଲା, ତାକୁ ନେଇ ଗୋଟାଏ ଅଧେ ଛୋଟ ଆଲମାରି ଥୋଇ-ଦେଲେ ହେଲା । ଏ ଜାତିକା ଲାଇବ୍ରେରି କଥା ମୁଁ କହୁନାହିଁ । ମୋର କହିବାର ଉଦ୍ଦେଶ୍ୟ, ଭୁଲ ବହି ଦୋକାନ । କେହି ବ୍ୟବସାୟୀ ଟଙ୍କା ପାଞ୍ଚଶ ପାଣ୍ଠି ଧରି ଗୋଟିଏ ଓଡ଼ିଆ ବହି ଦୋକାନ ଖୋଲନ୍ତେ । ସେଥିରେ ଆଜକାଲିକା ଲେଖା ଅଥଚ ଲୋକଙ୍କର ଉପଯୋଗୀ ବହି ଖାଲି ରଖନ୍ତେ । ଖଣ୍ଡିଏ ବହି ପଢ଼ିବାକୁ ନେଲେ ଦି' ପଇସାଠାରୁ ଅଣାଏ ପର୍ଯ୍ୟନ୍ତ ଲାଭ ହୁଅନ୍ତା । ଯେ ନଅନ୍ତା, ସେ ପନ୍ଦର କୋଡ଼ିଏ ଦିନ ଭିତରେ ବହି ପଢ଼ି ଫେରାଇଦଅନ୍ତା । ଦୋକାନଟି କେବଳ ଗୋଟିଏ ବଡ଼ ଗାଁ ବା ବଡ଼ ପଡ଼ୁଆ କେନ୍ଦ୍ର ଜାଗାରେ ହୁଅନ୍ତା ଓ ସପ୍ତାହରେ ନିର୍ଦ୍ଦିଷ୍ଟ ଦିନରେ ବହିବାଲା ନେଇ ବହି-ଗ୍ରାହକଙ୍କ ପାଖରେ ଦେଇଆସନ୍ତା—ଯାହାକୁ ଇଂରେଜୀରେ Circulating Library କହନ୍ତି । କେହି ଯଦି ସାହସ କରି ଏତିକ କରିପାରନ୍ତା, ତା'ହେଲେ ସେ ମାସକୁ ଶତକଡ଼ା ତିନିଟଙ୍କା ଦୁଇଅଣା ଲାଭ ପାଇପାରନ୍ତା । ଅବଶ୍ୟ ଦେଶର ବର୍ତ୍ତମାନ ଅବସ୍ଥାରେ ଯେ କୌଣସି ଗାଁରେ ବା ଗାଁଗହଳରେ ଏପରି ଉଦ୍ୟମ କଲେ ନିଷ୍ଫଳ ହବାର କଥା; କିନ୍ତୁ ସତ୍ୟବାଦୀ, ନିମାପଡ଼ା, ଓଲସିଂହ, ବାଣପୁର, ଜଗତ୍‌ସିଂହପୁର, ଏରସମା, ମାହାଙ୍ଗା, ବରି ଓ ବଉଦପୁର ପ୍ରଭୃତି ଜାଗାରେ କାମ ଆରମ୍ଭ କରି କିଛି ପରିମାଣରେ ସଫଳ ହବାର ଆଶାକରିବା ଆଦୌ ବିଡ଼ମ୍ବନା ନୁହେଁ । ତା'ପରେ ପୁଣି ଏଥିଲାଗି ସିମିତି ବହି ଦରକାର । ବହିଗୁଡ଼ାକ ଯେପରି ଭାବରେ ବନ୍ଧାଇ ହଉଛି, ଆଜକାଲି ସେପରି ବହି ଭୁଲ ଦୋକାନରେ ଦେଲେ, ଥରେ ଭୁଲ ଆସିଲାବେଳକୁ ହୁଏତ ସେଥିରୁ ଅନେକ ପତର ଯାଇଥିବ । ଏଥିପାଇଁ ମୋଟା ମଲାଟବନ୍ଧା ବହି ଦରକାର । ଯାହାହଉ, ଏପରି ଭଳି ଅନେକ ଛୋଟଛୋଟ କଥା ହୁଏତ ବାହାରିବ; କିନ୍ତୁ ସେଗୁଡ଼ାକ ଯେ ବ୍ୟବସାୟ ଆରମ୍ଭ କରିବ, ସେ ସ୍ଥାନ, କାଳ, ପାତ୍ର ଦେଖି ଠିକ୍ କରି-ନେବ । ମୋଟ ଉପରେ କହିବା କଥା, ଏପରି କରାଗଲେ ଲୋକଙ୍କ ଭିତରେ ପଢ଼ିବାର ଆଗ୍ରହ ଓ ଅଭ୍ୟାସ ଆସିଯିବ ।

**୪ । ପ୍ରଚାର**

ଏ ପ୍ରଚାରର ଅର୍ଥ ମାମୁଲି ଧରଣର ବିଜ୍ଞାପନ ନୁହେଁ । ଓପାସିଆ ଖବରକାଗଜ ବା ଲୋଳିଗଲା ମାସିକ କାଗଜରେ ବିଜ୍ଞାପନ ଦେଇ ଯେ କି ଲାଭ ହୁଏ, ମୁଁ ଏ ପର୍ଯ୍ୟନ୍ତ ବୁଝିଲି ନାହିଁ । ଏ ପ୍ରଚାର ଯଥାମତ ବ୍ୟବସାୟସୂତ୍ରରେ କରିବା ଦରକାର । ଗାଁ ଗାଁରେ ବା କେନ୍ଦ୍ର କେନ୍ଦ୍ରରେ ଜଣେ ଜଣେ ପ୍ରଚାରକ ବା ଦଲାଲ ରଖି କେତେକ ନୂଆ ନୂଆ ବହିର ପ୍ରଚାର ଗାଁ ଗହଳରେ କଥା ପଢ଼ାଇବେଲେ, କି ଆଖଡ଼ା ଘର ଖୋଲିବେଲେ କରାଯାଇପାରେ । ଏହି ପ୍ରଚାରକ ବା ଦଲାଲମାନଙ୍କ ସହିତ ଏପରି କରାର୍ ରଖାଯିବା ଦରକାର ଯେ, ସେମାନେ ଏତେ ବହିର ଅର୍ଡର ପଠାଇପାରିଲେ, ଏତେ କମିଶନ ପାଇବେ । ଏହିପରି ଭାବରେ କଲେ ହୁଏତ ଅର୍ଡର ବେଶୀ ନ ମିଳିପାରେ, କିନ୍ତୁ ଅଜି-କାଲିକା ସାହିତ୍ୟର ବାର୍ତ୍ତା କିଛିଏ ଅଧେ ଲୋକଙ୍କ କାନରେ ପଡ଼ିପାରିବ । ସେ ମନ୍ଦ ଲାଭ ନୁହେଁ ।

୫—ବହିଗୁଡ଼ିକୁ ଆଦରଣୀୟ ଓ ଲୋଭନୀୟ କରିବା ପାଇଁ ଯଥାସାଧ୍ୟ ସୁନ୍ଦର ସୁନ୍ଦର ଚିତ୍ର, ବନ୍ଧାଇ ଓ ଅକ୍ଷର ଇତ୍ୟାଦି ଦେବାକୁ ହେବ । ଅବଶ୍ୟ ସବୁ ବହି ଏପରି କରିବା ପ୍ରକାଶକମାନଙ୍କ ପକ୍ଷରେ ଆଜିକାଲି ଅବସ୍ଥାରେ ସହଜ ନୁହେଁ । ତେବେ ଲୋକଙ୍କ ମନକୁ ଲାଗିବା ଭଳି କେତେଖଣ୍ଡି ବହିକୁ ବାହାର ଚକ୍ମକ୍ କରିବାରେ ଚେଷ୍ଟା କରାଯିବା ଉଚିତ ।

୬—ଅଜିକାଲିର ଭଲ ସାହିତ୍ୟ ପ୍ରଚାର ପାଇଁ ଏସବୁ କରିବା ସାଙ୍ଗେ ସାଙ୍ଗେ ପାଣି ଲେଖାକୁ ହତାଦର କରିବାର ବ୍ୟବସ୍ଥା ମଧ୍ୟ କରିବା ଉଚିତ୍ । ସେଥିପାଇଁ ଆଜିକାଲିର ଲେଖକମାନେ ଅଣ୍ଟାଦାଣ୍ଡି ବାହାରିବା ଦରକାର ଯେ, ଏ ଜାତୀୟ ବହି ଯେଉଁ ଛାପାଖାନାବାଲାମାନେ ବାହାରକରିବା ପାଇଁ ହାଇଁପାଇଁ ହେବେ, ସେମାନଙ୍କୁ ଆମ ଲେଖାସବୁ ଛପେଇବାକୁ ଦିଆହବ ନାହିଁ । କିଛିଏ ଚେଷ୍ଟା ଚରିତ୍ର କଲେ ଏସବୁ ଛାପାଖାନା ଉଠେଇବାର ବାଟ ରହିବ ନାହିଁ, ମୋର ତ ମନେହୁଏ ଯେପରି ଏହି ସବୁ ଛାପାଖାନା ମାଲିକ ଓ ପ୍ରକାଶକମାନେ ଲୋକଙ୍କ ରୁଚି ଓ ବୁଦ୍ଧି ଖରାପ କରିଥିବାରୁ ଦଣ୍ଡନୀୟ ହେବା ଉଚିତ୍ । କିନ୍ତୁ ଆଇନରେ ଯେତେବେଳେ ସେପରି କିଛି ନାହିଁ, ଏମାନଙ୍କୁ ହାତରେ ନମାରି ଭାତରେ ମାରିବା ହିଁ ଏକମାତ୍ର ସହଜ ପନ୍ଥା ।

୭—କେହି କେହି ଗୋଟାଏ Board of Censors ଭଳି ଅନୁଷ୍ଠାନ ରଖିବାର କଳ୍ପନା କରିବା ମୁଁ ଶୁଣିଚି । କରିପାରିଲେ ମନ୍ଦ ହୁଅନ୍ତା ନାହିଁ । ତେବେ ତା' ଲାଗି ସବୁ ଶ୍ରେଣୀର ଲେଖକ ଓ ସାହିତ୍ୟିକମାନଙ୍କୁ ଦଳବାନ୍ଧି ଏକ ମନ, ଏକ ମୁନରେ କାମ କରିବାକୁ ପଡ଼ିବ । କିନ୍ତୁ ସେପରି କରିବା ପାଇଁ ଅନୁଷ୍ଠାନ ଓଡ଼ିଶାରେ କାହିଁ ?



ସହକାର, ୧୮ଶ ଭାଗ, ୬ଷ୍ଠ ସଂଖ୍ୟା, ୧୯୩୯ ମସିହା

# କୈଫିୟତ୍

ଏ ପ୍ରବନ୍ଧଟି ଲେଖିସାରିଲା ପରେ କାଲି ନବଭାରତ ପାଇଲି । ସେଥିରେ ଆଗ ଲେଖାରେ ମାନସିଂହ ମହୋଦୟଙ୍କର ମୋ ମିଛକଥାର ସମାଲୋଚନାଟା ପଢ଼ିଲି । ତା' ସାଙ୍ଗରେ ମଧ୍ୟ ପଢ଼ିଲି କୁଳମଣିବାବୁଙ୍କ 'ସାହିତ୍ୟ ଓ ସାହିତ୍ୟ ସମାଜ' ଓ ସଂପାଦକଙ୍କର 'ଓଡ଼ିଶାର ସାହିତ୍ୟ' । ତା'ପରେ ଆଜି ସକାଳେ ମୋ ମିଛକଥାର ଯେତକ ନକଲ ଥିଲା ସେତକ ପଢ଼ିଲି । ପିଠିଟା ବଡ଼ କୁଣ୍ଡେଇ ହେଉଥିଲା । ସେତକବେଳେ ମିଛ କଥାଟା ଲେଖିଥିଲି । ଲେଖିଲାବେଳେ ଯାହା ଆଶା କରିଥିଲି, ତାହା ସେହି ପ୍ରବନ୍ଧ ଭିତରେ ଲେଖିଥିଲି । ଏହିପରି "ବୁଦ୍ଧି ବଳରେ କେତେ ଅଣ୍ଟା ପରିହାସ, କେତେ ହସ କଉତୁକ, କେତେ ନାକଟେକା, ମୁହଁମୋଡ଼ା, କ'ଣ ନା ଏଉଟା, ନିତାନ୍ତ ଅଜବ ଗଣ୍ଡ ମୂର୍ଖଟା, ଯା'ର ମନଟା ଯେପରି ଶ୍ରେଷ୍ଠ, ବୁଦ୍ଧିଟା ସେହିପରି ମୋଟ ।" ଲେଖି ତ ସାରିଲି । ଗୃହିତ । ପିଠିଗଲୁ ତ ମରୁନାହିଁ କାହିଁ ? ଦେଖିଲି ହରିଶବାବୁ ମୋ ମିଛ କଥାର ସତ ମିଛ ବାହାର କରିଚନ୍ତି । ମନଟା ଫିକା ପଡ଼ିଗଲା । ମୁଁ ହରିଶଙ୍କୁ ଜାଣେ, ହରିଶ୍ ମଧ୍ୟ ମତେ ଜାଣନ୍ତି । ମୁଁ ଜାଣେ ମୋ ପିଠିଗଲୁ ମଲାଭଳି ମାଲ୍‌ମସଲା ହରେଶବାବୁଙ୍କଠାରୁ ମିଳିବନାହିଁ । ତାଙ୍କର ଶିକ୍ଷା, ସଭ୍ୟତା ସେତେଦୂର ନାହିଁ । ସେ ପିଠି ଆଉଁସିଦେଇ-ପାରନ୍ତି, ଦରକାର ପଡ଼ିଲେ ପିନ୍‌କଣ୍ଟାରେ ଟିକିଏ ମାରିଦେଇପାରନ୍ତି । କିନ୍ତୁ ମୁଁ ଯାହା ଲେଖିଥିଲି ଓ ଆଶା କରିଥିଲି—ତା' ତାଙ୍କଠାରୁ କୁଠଉଁ ମିଳିବ ? ତାଙ୍କ ଲେଖା ବି ପଢ଼ିଲି । ସତକୁ ସତ ଯାହା ଆଶଙ୍କା କରିଥିଲି ସେଇଆ । ତାଙ୍କ ଲେଖାଟି ବାହାରିବା ପରେ, ମୋର କେତେଜଣ ବନ୍ଧୁ ଓଡ଼ିଶାରୁ ଲେଖିଲେ, ତା'ର ଜବାବ ଦିଅ । ତା'ର କ'ଣ ଜବାବ ଦେବି ବଳକା କଥାରେ କୁଠେଁଇ ତାଙ୍କର ମୋର ଟିକିଏ ନ ବନି ପାରେ, କିନ୍ତୁ ମୋଟାମୋଟି କଥାରେ ଆମେ ଏକ, କାଳିଦାସଙ୍କ କଥାର ଅର୍ଥରେ ଯଦି ସେ ମୋ କଥାରେ ନ ମଙ୍ଗନ୍ତି, ତା' ହେଲେ ଦେଖାହେଲେ ମଲ୍ଲୀନାଥ ଟୀକା ବାହାରକରି ତା'ର ଗୋଟାଏ ନିଷ୍ପତ୍ତି କରିନବୁଁ । ନିରାଶ ହୋଇ ବସିଲି । ପିଠିଗଲୁ ମଲାନାହିଁ ।

ତା'ପରେ ମାନସିଂହ ମହୋଦୟଙ୍କ ଲେଖାଟି କାଲି ଦେଖିଲି । ତାଙ୍କ ସାଙ୍ଗରେ ମୋର ଆଳାପ ନାହିଁ । କିନ୍ତୁ ଶୁଣିଥିଲି ସେ ହରିଶବାବୁଙ୍କ ବାଟର ଲୋକ । ପ୍ରଥମେ ନିରାଶ ହେଲି । କିନ୍ତୁ ଯେତେବେଳେ ପ୍ରବନ୍ଧଟି ତାଙ୍କର ପଢ଼ିଲି, ଥରେ, ଦୁଇ ଥର, ତିନିଥର ? ମୋ ମନରେ ବଡ଼ ଆନନ୍ଦ ହେଲା । ଆଶା ସଫଳ ହୋଇଛି । କିନ୍ତୁ ମାନସିଂହ ମହୋଦୟଙ୍କର ଗୋଟିଏ ଭୁଲ୍ ହୋଇଗଲା । ମୋ ପ୍ରବନ୍ଧ ଶେଷହେବା ସଙ୍ଗେ ସଙ୍ଗେ ତାଙ୍କର ଏ ସମାଲୋଚନାଟି ଲେଖିଥିଲେ ଆହୁରି ସରସ ଓ ମଜାଦାର

ହୋଇଥାନ୍ତା ବିଷୟ । ବୋଧହୁଏ ଏତେଦିନ ପରେ ଲେଖିବା ହେତୁରୁ ଦାଢ଼ଟା କିଛିଏ ପୁରୁଣା ହୋଇଗଲା ।

ସେ ବିଷୟରେ କ'ଣ କାହିଁକି ? ଯାହା କହିବାର ତାହା ସମ୍ପାଦକ କହିଛନ୍ତି ଓ ମୁଁ ଯେପରି କହିଥାନ୍ତି, ତା'ଠାରୁ ଢେର୍ ଭଲ ଭାବରେ କହିଛନ୍ତି, ତେବେ ପଦେ ଅଧେ । ସଙ୍ଗୀ ଜଣାପଡ଼ୁଚି ଯେ ମାନସିଂହ ମହୋଦୟ ମୋ ମିଛକଥାର ସମାଲୋଚନା କରିନାହାନ୍ତି । ମୋ ମିଛ କଥା ଲଙ୍ଗୁଡ଼ର ପଛଆଡ଼ୁ ସମାଲୋଚନା କଲେ ଯାହାହୁଏ ତାହା ହିଁ ହୋଇଚି । ତାଙ୍କ ସମାଲୋଚନାର ମୁକ୍ତିଦୁଆଟି ହିଁ ମିଛ । ସେ ଦେଖାଇପାରିବେ, ମୁଁ କେଉଁଠି କହିଛି ଯେ ଆଜିକାଲିକାର ଲେଖାଗୁଡ଼ାକ ପୁରୁଣା ଲେଖା ତୁଳନାରେ ନିକୃଷ୍ଟ । ମୁଁ ଲେଖାର ବିଷୟ ବିଚାର କରିନାହିଁ, ଭାଷା ବିଚାର କରିଥିଲି ମାତ୍ର । ଭାଷାରୁ ଲେଖାର ଶ୍ରେଷ୍ଠ ବଡ଼ ପଣିଅ କରିହୁଏ କି ? ମୁଁ କହିବାକୁ ଚେଷ୍ଟା କରିଥିଲି—କବିତା ଉପନ୍ୟାସ ଇତ୍ୟାଦି ସାହିତ୍ୟ ସହଜ, ସରଳ ଲୋକବୋଧ୍ୟ ଭାଷାରେ ଲେଖାଯାଇପାରେ ଏବଂ ଲେଖାଯିବା ଉଚିତ୍ । ମୁଁ କୌଣସିଠାରେ କହିନାହିଁ ଯେ, ହାଡ଼ି ପାଣି ଯେ ଭାଷାରେ କହନ୍ତି, ସେହି ଭାଷାରେ ଲେଖାଯାଉ । ମୁଁ କହିଥିଲି ଯେ, ରାମା ଶ୍ୟାମା ଯେପରି ବୁଝିପାରିବେ ସେହିପରି ଭାଷାରେ ଲେଖାଯାଉ । ରାମା ଶ୍ୟାମାଙ୍କ ଭାଷାରେ ଲେଖିବା ଓ ରାମା ଶ୍ୟାମା ବୁଝିପାରିବା ଭାଷାରେ ଲେଖିବା ଏ ଦୁଇଟି ଜିନିଷ ଭିତରେ କ'ଣ ପ୍ରଭେଦ ନାହିଁ ? ମୋ ମୋଟାବୁଦ୍ଧିରେ ତ ଯଥେଷ୍ଟ ପ୍ରଭେଦ ଅଛି ବୋଲି ମତେ ଜଣାପଡୁଛି । ମାନସିଂହ ମହୋଦୟଙ୍କ ମାର୍ଜିତ ସୂକ୍ଷ୍ମ ବୁଦ୍ଧି ଭିତରେ ଯଦି ମୋ ମୋଟାବୁଦ୍ଧି ନ ପଶିପାରେ, ତା'ହେଲେ ମୁଁ କ'ଣ କରିବି ? ମୁଁ ଭକ୍ତଚରଣଙ୍କ କବିତା ଓ ମଧୁସୂଦନଙ୍କ କବିତା ମଧ୍ୟରେ ଯେ ତୁଳନା କରିଥିଲି, ସେଠାରେ ମୁଁ କୌଣସିଠାରେ କହିନାହିଁ ଯେ ମଧୁସୂଦନଙ୍କ କବିତା ନିକୃଷ୍ଟ । ସେହିପରି ଯେ ସ୍ଥାନରେ ମୁଁ ହରିଶ୍, କାଳନ୍ଦୀ ଇତ୍ୟାଦିଙ୍କ ଲେଖା ବିଷୟରେ କହିବାକୁ ଯାଇଚି—ସେ ସ୍ଥାନମାନଙ୍କରେ ମୁଁ 'ସରସ' ଇତ୍ୟାଦି ବିଶେଷଣ ଦେଇଚି । ମୁଁ କେବେ କହିନାହିଁ ଯେ, ସେଗୁଡ଼ାକ ନିରସିଆ । ମୁଁ ଆଉଥରେ କହୁଚି, କୌଣସି ଜାଗାରେ ମୁଁ କବିତାର ଭାବ ଓ ବିଷୟ ସମାଲୋଚନା କରିନାହିଁ । କରିଚି ଭାଷାର । ଭାଷା ଯେ ସରଳ, ସହଜ ଓ ସାଧାରଣବୋଧ୍ୟ ହେବା ଉଚିତ—ମୁଁ ଭାବିଥିଲି ଏଇଟା ସାଧାରଣ କଥା । ଏ ବିଷୟରେ ଦ୍ୱିମତ ହୋଇପାରେ ନାହିଁ । ଏବେ ଦେଖୁଚି, ଓଡ଼ିଶାରେ ତା' ମଧ୍ୟ ସମ୍ଭବ । ମାନସିଂହ ମହୋଦୟ ମତେ କହିଛନ୍ତି—ଗାଉଁଲି ଭାଷାରେ କୁଠେଇଁ ସାହିତ୍ୟ ଲେଖା ହୋଇଚି ଦେଖାଅ । ମୁଁ ତ ସେଇ ମିଛକଥାରେ ଦେଖେଇଚି—ରବର୍ଟ ବର୍ଣ୍ଣସ୍, ଟେନିସନ୍, ଷ୍ଟିଭେନ୍ସନ୍, ସ୍କଟ୍, ଓ୍ୱାର୍ଡସ୍‌ୱାର୍ଥ, ମରିସ୍ ଇତ୍ୟାଦି । ବର୍ତ୍ତମାନ ପ୍ରବନ୍ଧରେ ମଧ୍ୟ ସେଇ ବିଷୟଟି ଆଉଥରେ ଖିନ ଖିନ କରି ବଖାଣିଚି । ସେ ରବିଠାକୁରଙ୍କର ଗୋଟିଏ ଗୀତ ଉଦାହରଣ ଦେଇଚନ୍ତି । ସେଇ ଗୀତଟି ଆଜିକାଲି ବଙ୍ଗାଳୀ ସମାଜ

ପାଇଁ ଲେଖାହୋଇଚ । ସୁତରାଂ ତା'ର ଭାଷା ସାଙ୍ଗରେ ଆଜକାଲି ଓଡ଼ିଆଙ୍କ ପାଇଁ ଯେ ଓଡ଼ିଆ ସାହିତ୍ୟ ଲେଖାହେଉଚ, ତା'ର ଭାଷା ତୁଳନା କରାଯାଇ ନ ପାରେ । ତଥାପି ମାନସିଂହ ମହୋଦୟ ଯଦି ଟିକଏ ଭାବଚନ୍ତ୍ର ପରୀକ୍ଷା କରି ଦେଖିବେ—ସେ ଦେଖିବେ ୪୯ଟି ଶବ୍ଦବିଶିଷ୍ଟ ସେହି ଗୀତରେ ୨୫ଟି ଖାଣ୍ଟି ଦେଶଜ ଓ ସଂସ୍କୃତରୁ ଅପଭ୍ରଷ୍ଟ ସାଧାରଣ ପ୍ରଚଳିତ ଶବ୍ଦ । ସେ ଯା'ଉ । ମାନସିଂହ ମହୋଦୟଙ୍କର ମୋ ବିରୋଧରେ ଅଭିଯୋଗ—

୧-ମୁଁ ପୁରୁଣା ଓଡ଼ିଆ ସାହିତ୍ୟକୁ କହୁ କରିଚ, ଏ ଏକାବେଳେକେ ମିଛ । ମୁଁ କୌଣସିଠାରେ କହିନାହିଁ ଯେ ପୁରୁଣା ଓଡ଼ିଆ ସାହିତ୍ୟରେ ଯାହା ଲେଖାଅଛି, ସେ ସବୁ ଖାଣ୍ଟି ସୁନା । ଓଲଟି ଭଞ୍ଜ ଓ ସାମନ୍ତସିଂହାରଙ୍କ ଭାଷା ମଧ୍ୟରେ ତୁଳନା କରିବାକୁ ଯାଇ ମୁଁ କହିଚ ଯେ ଭଞ୍ଜ ଭାଷା ସାମାନ୍ତସିଂହାରଙ୍କ ଭାଷାଠାରୁ ନିକୃଷ୍ଟ । ମୁଁ ପୁରୁଣା ଓଡ଼ିଆ ସାହିତ୍ୟର ଭାବ ବିଷୟ ମୋଟେ ଆଲୋଚନା କରିନାହିଁ । କେବଳ ଭାଷା ଆଲୋଚନା କରିଚ ମାତ୍ର ।

୨-ମୁଁ ଆଜକାଲି ସାହିତ୍ୟକୁ ନିକୃଷ୍ଟ ବୋଲି ପ୍ରମାଣ କରିବାକୁ ଚେଷ୍ଟା କରିଚ । ମୁଁ ଆଜକାଲି ସାହିତ୍ୟର ଭାବ ଓ ବିଷୟ ମୋଟେ କୌଣସିଠାରେ ଆଲୋଚନା କରିନାହିଁ । କେବଳ ଭାଷା ନେଇ କହିଚ—କାଳିନ୍ଦୀ ବାବୁ, ହରିଶ୍ ବାବୁ ଇତ୍ୟାଦିଙ୍କର ଲେଖାକୁ ମୁଁ ଉଚ୍ଚଦରର ଲେଖା ବୋଲି ଜାଣେ ଓ ମୋର ସେଇ ପ୍ରବନ୍ଧରେ ମଧ୍ୟ କରିଚ ଓ ମାନିଚୁ ।

୩-ଫକୀରମୋହନ ଓ ଗୋପବନ୍ଧୁଙ୍କ ଭାଷା ଓଡ଼ିଆ, ମେହେର ଓ ପ୍ରହରାଜଙ୍କ ଭାଷା ଓଡ଼ିଆ । ଏସବୁ ଲୋକପ୍ରିୟ ହୋଇପାରିନ୍ତି । ଆଜକାଲି ଲେଖକମାନଙ୍କର ଲେଖା ଲୋକପ୍ରିୟ ହୋଇପାରିନାହିଁ । ଅତଏବ, ଆଜକାଲିର ଲେଖା ମଧ୍ୟ ତାଙ୍କରି ପରି ଓଡ଼ିଆ । ଏଭଳି ଉଚ୍ଚଦରର ଯୁକ୍ତି ଉତରେ ପଶିବା ମୋ ଭଳି ଅନୁଦାର, ଚିନ୍ତାହୀନ, ନିର୍ବୋଧ ଲୋକ ପକ୍ଷରେ ଏକାବେଳେକେ ଅସମ୍ଭବ । ମୋ ମୋଟାବୁଦ୍ଧିରେ ମୁଁ ଯେତେଦୂର ଜାଣେ, ଗୋପବନ୍ଧୁ, ଫକୀରମୋହନ, ମେହେର ଓ ପ୍ରହରାଜ ପ୍ରଭୃତି ସେ କାଳର ଲେଖକମାନେ ବରାବର ଲୋକପ୍ରିୟ ହୋଇଆସିଚନ୍ତି । ଆଜି ସେ ତାଙ୍କ ଜୀବନ ଥାଇଁ ଥାଇଁ ଗାଉଁଲି ଲୋକ ଯେ ତାଙ୍କ ଲେଖା ପଢ଼ିବାର ସୌଭାଗ୍ୟ ପାଇଚ, ସେ ଲେଖାକୁ କହିଚ ଭଲ । ପାଠୁଆଙ୍କ ଭିତରୁ ଯେ ପଢ଼ିଚନ୍ତି ସେ କହିଚନ୍ତି ଭଲ, ଏବେ ମଧ୍ୟ କହୁଚନ୍ତି ଓ ଆଗକୁ ମଧ୍ୟ କହିବେ । ଲୋକପ୍ରିୟ ଅର୍ଥ ବୁଝେଁ ଯେ, ଓଡ଼ିଶାର କୋଟିଏ ଲୋକ ଭିତରୁ ଜଣ ଜଣ କରି ସମସ୍ତେ ତାକୁ ଭଲ କହିବେ । ଲୋକପ୍ରିୟ ଅର୍ଥ ସାର୍ବଜନୀନ—ଯେ ପଢ଼ିଲା, ସେ ଯୁ ଦଳର ହେଉ ବା ଯୁ ଗୋଷ୍ଠୀର ହେଉ, ସେ ସେ ଲେଖାକୁ ଭଲ କହିଲା । ମନେରଖିବେ ଲେଖାକୁ—ଲେଖାବସ୍ତୁକୁ ବୁଝେଁ । ଏହି ଭାବରେ ଲୋକପ୍ରିୟ

ବୁଝାଯାଏ । ଆଉ ମୁଁ ସେଇ ଭାବରେ କହୁଚ, ଆଜକାଲିର ଲେଖା ଏ ଦାବୀ କରିପାରେ କି ?

୪-ମୁଁ କୁଆଡ଼େ କହୁଚ ଯେ ଓଡ଼ିଆ ସାହିତ୍ୟ ରମା ଶ୍ୟାମା ଯେ ଭାଷାରେ କହନ୍ତି ଓ ବୁଝନ୍ତି ସେହି ଭାଷାରେ ଲେଖାହେବା ଉଚିତ୍ । ଏହିଟା ମଧ୍ୟ ଏକାବେଳେକେ ମିଛ । ମୁଁ କହିଥିଲି ଓ ଉଦାହରଣ ଦେଇ ଦେଖେଇ ଦେଇଥିଲି ଯେ, ସାହିତ୍ୟ ଏପରି ଭାଷାରେ ଓ ଭାଷାଭଙ୍ଗୀରେ ଲେଖାହେବା ଉଚିତ, ଯେପରି ଦେଶର ରମା ଶ୍ୟାମା ଅର୍ଥାତ୍ ଜନସାଧାରଣ ବୁଝିପାରିବେ । ଲୋକଙ୍କ ବୁଝିବା ଭାଷା ଓ ଲୋକଙ୍କ କହିବା ଭାଷା ଭିତରେ ଯଥେଷ୍ଟ ପ୍ରଭେଦ । ସେ ଗୋଟାଏ ଉଦାହରଣ ଦେଇଚନ୍ତି—ଓ୍ୱାର୍ଡ଼ସ୍‌ଓ୍ୱାର୍ଥଙ୍କର ମେଣ୍ଢା ଜଗୁଆଳୀ ପିଲାଙ୍କ ଭାଷାରେ ଗୀତ ଗାଇବାରେ ବିଫଳ ହେବା । ଓ୍ୱାର୍ଡସ୍‌ଓ୍ୱାର୍ଥ ବିଫଳ ହୋଇ-ଥିଲେ, ହେବା ମଧ୍ୟ ଉଚିତ୍ । ଇଂଲଣ୍ଡ ଗୋଟାକଯାକ ମେଷପାଳକ ନୁହନ୍ତି । ଅତଏବ, ସେ ବିଫଳ ହେବେ । ମୁଁ ତ କହୁନାହିଁ ଯେ ହରିଆ ବାଉରି ଭାଷାରେ ସାହିତ୍ୟ ଲେଖାଯାଉ । ଏ ଉଦାହରଣଟା ଦିଆଗଲା କାହିଁକି ? ତା'ପରେ ବସନ୍ତ-ଗାଥା, ମାମୁ, ତପସ୍ୱିନୀ ଏ ସବୁର ସମାଲୋଚନା ମୁଁ କରିନାହିଁ । ମୁଁ କହୁନାହିଁ ଯେ ଏଗୁଡ଼ିକ ନିକୃଷ୍ଟ ଧରଣର ସାହିତ୍ୟ, ଏ ସବୁର ନାମ ମାତ୍ର ମୁଁ ଧରିନାହିଁ । ମୁଁ ଆଜକାଲି ଲେଖକଙ୍କ ଭାଷା କହିଥିଲି । ମାମୁ, ତପସ୍ୱିନୀ, ଚିଲିକା, ଦରବାର ଯେ ଆଉ ଗୋଟାଏ ଯୁଗର । ଯେ ପ୍ରକୃତ ସମାଲୋଚକ ସେ ଦେଖିପାରିବେ ରାଧାନାଥ ଯୁଗ ଯେପରି ଦୀନକୃଷ୍ଣ ଯୁଗଠାରୁ ଭିନ୍ନ, ମାନସିଂହ ଯୁଗ ସେହିପରି ରାଧାନାଥ ଯୁଗଠାରୁ ଭିନ୍ନ । ମୁଁ ମାନସିଂହ ଯୁଗ କଥା କହିଥିଲି ମାତ୍ର । ଦୁଇଟାଯାକ ଗୋଳିଆ ପୋଳିଆ କରି ମୁଣ୍ଡ ଖରାପ କରିବାର କୌଣସି ଦରକାର ନ ଥିଲା ବୋଧହୁଏ ।

୫-ମଧୁବାବୁଙ୍କ ଜୀବନଚରିତ୍ରର ଅମର୍ଯ୍ୟାଦା ମୁଁ କରିନାହିଁ । ମୋର ଲେଖାରେ ମୁଁ ତା'ର ଯଥେଷ୍ଟ ମର୍ଯ୍ୟାଦା ଦେଇଚ । ଟିକିଏ ଦେଖିଲେ ଜାଣିପାରିବେ ।

୬-ଇଂରେଜ ସାହିତ୍ୟ ଆଜକାଲିର ଭାଷା, ରାଣୀ ଏଲିଜାବେଥ୍‌ଙ୍କ ସମୟର ସାହିତ୍ୟ ଭାଷାଠାରୁ ଭିନ୍ନ ସତ, ତଥାପି ଆଜକାଲିର ଇଂରେଜୀ ଭାଷା ଯେତେ Anglo-Saxon, ଆଜକାଲି ଓଡ଼ିଆ ସାହିତ୍ୟରେ ମାନସିଂହ ଭାଷା ତା'ର ଶହଗୁଣରୁ କମ୍ ଓଡ଼ିଆ । ତା'ପରେ ସେକ୍‌ସପିଅର ତାଙ୍କ ଯୁଗ ପାଇଁ ଲେଖିଥିଲେ । ତାଙ୍କର ଏତିକି ବୁଦ୍ଧି ନ ଥିଲା ଯେ, ସେ ତାଙ୍କ ଯୁଗକୁ ହୀନକରି ଖାଲି ଭବିଷ୍ୟତ ପାଇଁ ସେଗୁଡ଼ାକ ଲେଖି ନ ଗଲେ ।

୭-ଲେଖାଭଙ୍ଗୀ ପ୍ରତ୍ୟେକ ଲେଖକଙ୍କର ଅଲଗା, ମାନୁଚ, କିନ୍ତୁ ଲେଖକ ଯେବେ ଓଡ଼ିଆ ଲେଖକ ହୁଏ, ତା'ହେଲେ ସେ ଲେଖାଭଙ୍ଗୀ ଓଡ଼ିଆ ହେବା ଉଚିତ୍ । ଫକୀରମୋହନଙ୍କ ଲେଖାଭଙ୍ଗୀ ଗୋପବନ୍ଧୁଙ୍କ ଲେଖାଭଙ୍ଗୀରୁ ଭିନ୍ନ ଓ ଗୋପବନ୍ଧୁଙ୍କ

ଲେଖାଭଙ୍ଗୀ ପ୍ରବନ୍ଧକଙ୍କ ଲେଖାଭଙ୍ଗୀଠାରୁ ଭିନ୍ନ । ଲେଖାଭଙ୍ଗୀ ଅର୍ଥ, ଓଡ଼ିଆ ଅକ୍ଷରରେ ବଙ୍ଗାଳୀ ବା ହିନ୍ଦୁସ୍ତାନୀ ଲେଖା ଲେଖିବା ନୁହେଁ ।

୮—ଆଜକାଲ୍ ଯାହା ଲେଖାହେଉଛି—ତା'ର ସବୁ ପଖାଳଖିଆ ଓଡ଼ିଆଙ୍କ ମୁଣ୍ଡରେ ପଶୁନାହିଁ । ଏ କଥାଟା ବୁଝାହେବ, ତାହା ମୁଁ ଆଗରୁ ଅନୁମାନ କରି ନେଇଥିଲି ଓ ମୋ ଲେଖାରେ କହିଥିଲି । ଭବିଷ୍ୟତରେ ଯେ ଆଜକାଲିର ଲେଖା ସ୍ଥାନ ପାଇବ, ସେ କଥା କିଏ ଜାଣେ ? ସେ ବିଷୟରେ କୁଳମଣିବାବୁ ସ୍ପଷ୍ଟୋକ୍ତ ଜବାବ ଦେଇଚନ୍ତି ତାଙ୍କ ପ୍ରବନ୍ଧରେ । ତେବେ ମୁଁ ପଚାରେ କେଉଁ କବି ବା ଲେଖକ, ସେ ଯଦି ପ୍ରକୃତ ଲେଖକ ହୋଇଥାଏ—ତା ଯୁଗରେ ତା'ର ସମୟରେ ସମ୍ମାନ ଓ ଆଦର ନ ପାଇଛି ?

୯—ଯେ କଲମ ଧରିଲା ସେ ହେଲା ସାହିତ୍ୟିକ । କଥାଟା କୁଆଡ଼େ ଅନୁଦାର, ସାହିତ୍ୟ ହେଉଛି Republic of letters, ମାନୁଛି । କିନ୍ତୁ, ସାହିତ୍ୟ ତ Anarchy of letters ନୁହେଁ । Republic ହେଲେ ମଧ୍ୟ କେତେଗୁଡ଼ାଏ ଆଇନ୍ କଟକଣା ତ ରହିବ ? ନା ଯେ ଯାହା ପାରିଲା, ସେ ତା' ଲେଖିଯିବ ? କେହି କିଛି କହିବେ ନାହିଁ, ତା'ହେଲେ ବୈଷ୍ଣବ ପାଣି ତ ନୂଆ ଓଡ଼ିଆ ଗ୍ରାମୋଫୋନ୍ ରେକର୍ଡବାଲାଙ୍କ ପ୍ରିୟ ନାଟକଟେକା କାହିଁ ? ଆଜି ମୋ ଉପରେ କୋରଡ଼ାମାଡ଼ କାହିଁ ? ତୁମର ଯେବେ ଯାହା ଇଚ୍ଛା ତାହା ଲେଖିବାର ଅଧିକାର ଅଛି, ତାହେଲେ ମୋର ନାହିଁ କାହିଁକି ? ତୁମେ ଲେଖିଲେ ତା'କୁ ଶୁଣିବାକୁ ଅଧିକାର ଯେବେ ମୋର ନାହିଁ, ମୁଁ ଲେଖିଲେ ତାକୁ ଶୁଣିବାର ଅଧିକାର ବା ତୁମକୁ ଦେଲା କିଏ ?

ନବଭାରତ
ଜୁଲାଇ—୧୯୪୩
୩ୟ ବର୍ଷ—୭ମ ସଂଖ୍ୟା



# ମିଛକଥା (୧)

ବଡ଼ ବଡ଼ ପଣ୍ଡିତମାନେ କହିଯାଇଛନ୍ତି 'ନ ମିଥ୍ୟାତ୍ ······ପରମ୍' । ବଡ଼ ପଣ୍ଡିତଙ୍କର ବଡ଼ କଥା, ଅତଏବ ମାନିବାକୁ ପଡ଼ିବ । କିନ୍ତୁ ଧରିବାନ୍ଧି ଝିଙ୍କି ଗିଳେଇଲେ ତ ଆଉ ଝିଙ୍କି ଗିଳି ହେବ ନାହିଁ । ଯେବେ ବା କେହି ଡର ଭୟରେ ବା ବାହାପିଆ ପଣରେ କହେ ଯେ ମୁଁ ଗିଳିଛି, ତା'ହେଲେ ଆମେ କହିବୁ—ସେ ଗୋଟାଏ ନିଆଁଗିଳା, ଅସତିଆ । ମିଛକୁ ବାଦ୍ ଦେଲେ ସଂସାର ଅସମ୍ଭବ । କାରଣ ମିଛରେ ଏକା ମିଠା । ସତ, ଖାଣ୍ଟି ସତ ଗ୍ରୀଷ୍ମ ଦିନରେ ମରୁଭୂମିର ନିସ୍ୱଟ ଝରାପତ୍ର ଶୁଖିଲା, ହତାଶିଆ । ପଦେ ଅଧେ ମିଛ ସେହି ମରୁଭୂମିରେ ଟୋପାଏ ପାଣି ଭଳି । ଏଇ ଝଣ୍ଟିଆ ଦଦରା ସଂସାରଟା ଦିନେ ଅମାପ ମାପ ପାଣି ଭିତରୁ ବାହାରି ମୁଣ୍ଡ ଟେକିଲା । ସେହିଦିନଠାରୁ ଆଜିଯାଏ ମିଛଟା ହିଁ ଦଳବଉର ହୋଇ ଆସନ ପାଡି ବସିଛି । ଆମର ସତିଆ ଆର୍ଯ୍ୟ ଋଷିମାନେ ଲେଖିଗଲେ—ଆଦିମକାଳରେ ଚାରିଆଡ଼େ ଥିଲା ଖାଲି ପାଣି; ମହାପ୍ରଭୁ ଗୋଟିଏ ବଟପତ୍ରରେ ଡଳ ଡଳ ହୋଇ ସେହି ପାଣି ଉପରେ ଭାସୁଥିଲେ । ଦିନେ ଇଚ୍ଛା ହେଲା ଖେଳିବେ । ସେହିହେତୁରୁ ସେ ଏ ସଂସାରଟାକୁ ଗଢ଼ି ପକାଇଲେ । ଆମେ ପାଠ ଶାଠ ପଢ଼ିଛୁ, ଆମେ ଏଇନେ ବୁଝୁଛୁ, ଏ କଥାଗୁଡ଼ାକ କଞ୍ଚା ମିଛ । ବାଇବେଲ କହିଲେ ପ୍ରାୟ ଏକା କଥା 'ପ୍ରଥମତେ ଖାଲି ଥିଲା ପାଣି, ଚାରିଆଡ଼େ ଅନ୍ଧାର । ସେଇ ଅନ୍ଧାର ଭିତରେ ଭଗବାନ୍ ବସିଥିଲେ । ବସି ବସି ଚଟା ଲାଗିଲା ବୋଧହୁଏ, ଭାବିଲେ ଗୋଟେ କିଛି କରାଯାଉ । ତା'ପରେ ବକଙ୍ଗ୍ ଫାଟ୍ । ଭଗବାନ୍ କହିଲେ—ଆଲୁଅ ହୋଇଯାଉ, ଆଲୁଅ ହୋଇଗଲା, ପବନ ବହି ଆସୁ, ପବନ ବହିଆସିଲା । ଆମେ ଯେ ସବୁ ବିଜ୍ଞାନ ପଢ଼ିଛୁ, ସେଥିରୁ ବୁଝିଛୁ ଏ ସବୁ ମିଛ । ତେବେ ଆମେ ଦେଖିଲୁ, ଆମ ଧର୍ମର ଯେ ମୂଳକଥା, ସେଇଟା ଗୋଟାଏ ମିଛ ହାଉଆ ଉପରେ ତିଆରି ହୋଇଛି । ଲୋକେ କହନ୍ତି, ସତ୍ୟ ଯୁଗରେ ଯେଉଁମାନେ ଥିଲେ—ସେମାନେ କୁଆଡ଼େ ଆଦୌ ମିଛ କହୁ ନ ଥିଲେ । ମିଛଟା କୁଆଡ଼େ ଏଇ କଳିଯୁଗର ସ୍ୱୋପାର୍ଜିତ ସମ୍ପତ୍ତି । ଏହିଟା ବି ଅସତ । ରାମଚନ୍ଦ୍ର କୁଆଡ଼େ ଭାରି ସତ୍ୟପରାୟଣ । ଅଗ୍ନିପରୀକ୍ଷା କରି ସେ ଦେଖିଲେ ସୀତା ସତୀ । ରାଜ୍ୟକୁ ଆଣିଲେ; କିଏ କ'ଣ ପଦେ କହିଦେଲା ତ ସେ ସୀତାଙ୍କୁ ଅସତୀ ବୋଲି ବଣରେ ଛାଡ଼ିଦେଇଆସିଲେ । ଏଇଟା କୋଉ ସତ କଥାରେ ଯାଏ ? ଶ୍ରୀକୃଷ୍ଣ କୁଆଡ଼େ ମହାପ୍ରଭୁ ନିଜେ । ଏତେବଡ଼ ମହାଭାରତ ଯୁଦ୍ଧରେ ଜୀଅନ୍ତା ଅଶ୍ୱତ୍ଥାମାଟାକୁ ମରିଗଲାଣି ବୋଲି ହୁର କରିଦେଲେ । କେତେ ବା ଲେଖିବ ? ଏ' ତ କମଳଡାକର ବାଳ—ଗୋଟି ଗୋଟି କରି ଗଣିବାକୁ ବେଳ କାହିଁ ?

ଅସଲ କଥାଟା କ'ଣ କି, ମିଛ କଥା କହିବାରେ ହିଁ ମନୁଷ୍ୟର ବାହାଦୁରି । ଗଲ୍ପ ଅଇଲି, ଯାହା ଦେଖିଥିଲି ତା' କହିଲି—ସେ କ'ଣ ହାଣ୍ଡି, ପାଣି କଣ୍ଡ଼ି କହିବେ । ପାଠ ପଢ଼ି ମୁଣ୍ଡରେ ଗୁଡ଼ାଏ ଅଲଅଲିଆ ମାଲ ଦହି, ତୁମେ ଆଉ ଅଧିକାଟା ଭଲ କ'ଣ ? ଏଇ ମିଛ କହିବାରେ ହିଁ ପାଠର ପରୀକ୍ଷା । ବୁଦ୍ଧିର ଚମତ୍କାର ମିଛକଥାଟାକୁ ସଜେଇ ବୁଜେଇ ଯେତେ ସତ ଭଳି ଥୋଇପାରିବ ତୁମର ବାହାଦୁରି ସେତିକି । ଆମର ଏ ଆର୍ଯ୍ୟଭୂମି ଭାରତବର୍ଷରେ ବଡ଼ ମିଛୁଆ ହେଲେ ବାଲ୍ମୀକି ଋଷି । ତାଙ୍କ ପିଛା ପିଛା ଧରି ଦୌଡ଼ିଲେ ବ୍ୟାସଦେବ । ତା'ପରେ ଯେତେକ ଆସିଛନ୍ତି, କାଳିଦାସ, ଭବଭୂତି, ଭାରବି, ଶ୍ରୀହର୍ଷ—ଏ ସମସ୍ତେ ତାଙ୍କ ପଛରେ ଝିଣିଣ-ବଣ୍ ହୋଇ ଦୌଡ଼ିଛନ୍ତି । କଥା ହେଲା—ଏତେ ବଡ଼ ବଡ଼ ଋଷି ପଣ୍ଡିତଗୁଡ଼ାକ ହୋଇ ମିଛ କହିବା ପାଇଁ ଏତେ ଧାଁ ଧପଡ଼ କାହିଁ ? କଥାଟା କ'ଣ କି, ମନୁଷ୍ୟର ବୁଦ୍ଧିଟା ମଜାମଜା ହୋଇ ଯେତିକି ଦାଉ ଦାଉ କରି ଉଠେ, ତା'ର କଳ୍ପନା ସେତିକି ସେତିକି ନାଚକୁଦ ହୁଏ । ମନୁଷ୍ୟ ଜୀବନର ଯାହାକିଛି ସୁନ୍ଦର, ଯାହା କିଛି ମଧୁର, ସମସ୍ତେ ଏହି କଳ୍ପନା ଉପରେ ଭର ହୋଇ ରହିଛନ୍ତି । ପଇସା ରୋଜଗାର କରିବାରେ ସୁଖ ନ ଥାଏ । ପଇସା ରୋଜଗାର କଲେ ମୁଁ କ'ଣ କ'ଣ କରିବି, ତାହାର କଳ୍ପନା ରୋଜଗାର କରିପାରି ସେହି କଳ୍ପନାର ପୂରଣ, ଏଇଥିରେ ହିଁ ଆମୋଦ, ଏଇଥିରେ ହିଁ ଆନନ୍ଦ । ପ୍ରିୟାର ଓଠ ଚୁମ୍ବନ କରିବାରେ ସେତିକି ଆନନ୍ଦ ନ ଥାଏ, ପ୍ରିୟାଠାରୁ ଦୂରରେ ରହି ତା'ର ଓଠ ଚୁମ୍ବନ କରିବାର କଳ୍ପନାରେ ହିଁ ବେଶୀ ସୁଖ । ମୋର ତ ଯେପରି ମନେହୁଏ, କାର୍ଯ୍ୟ କରି ଫଳ ପାଇବାରେ କିଛି ମାତ୍ର ସୁଖ ନାହିଁ । ପ୍ରକୃତ ସୁଖ କାର୍ଯ୍ୟ କରିବା ଆଗରୁ ସେ ସମ୍ବନ୍ଧରେ ଯାହା କଳ୍ପନା ଜଳ୍ପନା କରାଯାଇଥାଏ, ତହିଁରେ । ତା'ମାନେ କାର୍ଯ୍ୟର ଫଳ ଆମ୍ଭେମାନେ କାର୍ଯ୍ୟ କରିବା ଆଗରୁ ପାଇଯାଇଥାଉ । କୃଷୀ ବାପୁଡ଼ା ଯେତେବେଳେ ବିଲକୁ ହଳ କରେ, ସେତେବେଳେ କେତେପ୍ରକାର କଳ୍ପନା ନ କରେ ? ତା' ବିଲରେ ଏମିତି ଧାନ ହେବ, ସେ ତାକୁ କେତେ ପଇସାରେ ବିକିବ, ସେ ପଇସା ପାଇଲେ କେତେ କ'ଣ କରିବ, ଏଇସବୁ କଳ୍ପନାରେ ସେ ଜୀବନର କେତେ ବାଧା ଗୋଇଠା, କେତେ ଦୁଃଖ-ଶୁଖର ପିଠିକି ପକାଇଦିଏ । ଯେତେବେଳେ ଧାନ ମୂଠାକ ଅମଳ କରି ଘରକୁ କରେ, ସେତେବେଳେ ତା' ମୁଣ୍ଡରେ ଯେପରି ପର୍ବତ ମାଡ଼ିଆସେ । ମାଲ ତ ଏତିକି; ମହାଜନକୁ ଶୁଝିବ କେତେ, ଖଜଣା ଦେବ କେତେ, ହାତ ଉଧାର ଶୁଝିବ କେତେ, ଆଉ ଖାଇବ କ'ଣ ? ଫସଲ ପାଇ ତା'ର ସୁଖ ନାହିଁ । ଯାହା କିଛି ସୁଖ ମାରିନେଇଥାଏ, ସେ ଫସଲ ପାଇବା ଆଗରୁ, କିନ୍ତୁ ତା'ର ସେ ସୁଖ ମିଛ । ଖାଲି କଳ୍ପନାର କୁହୁକ, କେଳାର କାଉଁରୀ ଅନ୍ଧାର । କିନ୍ତୁ ଏଇ ମିଛଟା ଅର୍ଥାତ୍ କଳ୍ପନାର ଏଇ ଖେଳଟା ତା' ଜୀବନର ଏକମାତ୍ର ଭରସା ।

ଏଇ ମିଛଟାକୁ ବାଦ୍ ଦଅ, ତାକୁ କହ ଯେ, "ବାପା ! ତୁ ବର୍ଷ ସାରା ମାଟି ସାଙ୍ଗରେ ମାଟି ହୋଇ ମିଶିବୁ । ଯାହା ପାଇବୁ ସବୁ ଯିବ ପରର କୋଠି ପୂରେଇବାକୁ । ତୋ ପେଟରେ ଆଜି ଯେଉଁ ଓଦାକନା, ସେତିକ ମଧ୍ୟ ସେଇ ଓଦାକନା ।' ଏଇଟା ହେଲା ନଗ୍ନ ସତ । ଏଇ ନଗ୍ନ ସତଟା ତମେ ଯଦି କହ, ତାହାହେଲେ ଚାଷୀ ମୁଣ୍ଡରେ ହାତଦେଇ ଘର କଣରେ ବସିବ । କହିବ—ନା' ହୋ, ଏମିତି ମରିବ ସେମିତି ମରିବ, କାମ କରିବ କାହିଁକି ?

ତେବେ ଆମ୍ଭେମାନେ ଦେଖିଲୁଁ—ଏଇ କଳ୍ପନା ଅର୍ଥାତ୍ ଏଇ ମିଛ ଜୀବନର ଖାଲି ସୁଖ ନୁହେଁ, ଜୀବନର ଏ କାମ କରିବାର ଏକ ବଳ, ଗୋଟାଏ ଉତ୍ସାହ, ଗୋଟାଏ ସୃଷ୍ଟିର ମାତ୍ର । ଏଇ ଜିନିଷଟାକୁ ବୁଝିବାପାଇଁ ଶୁଖିଲା ପ୍ରାଣ ମୁନି ଋଷି ଦର୍କାର ନୁହେଁ । ଦରକାର, ରସରସିଆ କବି, ସାହିତ୍ୟିକ । ଏଇ ଶୁଖିଲା ମୁନିଋଷି-ମାନଙ୍କ ପରି ନିମକ୍ ହାରାମ୍ ଆଉ କେହି ନାହିଁ । ସେମାନେ ଈଶ୍ୱର ବୋଲି ଗୋଟାଏ ଶକ୍ତିର କଳ୍ପନାକରି ତାକୁ ପାଇବା ପାଇଁ ବାଘ ଭାଲୁଙ୍କ ସଙ୍ଗେ ରହନ୍ତି । କଳ୍ପନାରେ ଦେଖନ୍ତି—ଏପରି ଯୋଗ ସାଧିଲେ ବୈକୁଣ୍ଠକୁ ଯିବେ । କ୍ଷୀର-ସମୁଦ୍ରରେ ଅନନ୍ତ ଶଯ୍ୟାରେ ମହାପ୍ରଭୁଙ୍କୁ ଦେଖିବେ । କେହି କେବେ ଦେଖିନାହିଁ । ଈଶ୍ୱର ଅଛନ୍ତି ବୋଲି ଯଦି କେହି କେବେ ଅନୁଭବ କରିଥାଏ, ସେ କେବଳ କଳ୍ପନା ବଳରେ । ଆମେ ଶୁଣିଛୁ ରାମକୃଷ୍ଣ ପରମହଂସ ବିବେକାନନ୍ଦଙ୍କୁ ଈଶ୍ୱରଙ୍କର ଅନୁଭବ କରାଇଥିଲେ । ତା'ର କାରଣ ବିବେକାନନ୍ଦଙ୍କର କଳ୍ପନାର ଶକ୍ତି ଥିଲା ବହୁତ । ସେ ଧର୍ମର କଳ୍ପନାରେ ଭାସିଯାଇ ନ ଥିଲେ, ଜଣେ ଉଚ୍ଚ ଦରର କବି ବା ଔପନ୍ୟାସିକ ହୋଇପାରିଥାନ୍ତେ । କଥାରେ କହନ୍ତି, ଗାଲିଲିଓ ଯେତେବେଳେ କହି ବୁଲିଲେ ପୃଥିବୀ ବୁଲୁଚି, ସୂର୍ଯ୍ୟ ରହିଚି ସ୍ଥିର, ସେତେବେଳେ ସେ କାଳର ସଉଆ ମୁନିଋଷିମାନେ, ସେ ଅଧର୍ମ କହୁଛନ୍ତି ବୋଲି ତାଙ୍କୁ ନେଇ ବାନ୍ଧି ରଖିଲେ କଏଦୀଖାନାରେ, ସେଠାରେ ଜଣେ ପଣ୍ଡିତ ଯାଇଥିଲେ ତାଙ୍କ ସଙ୍ଗେ ଦେଖାକରିବା ପାଇଁ । ତାଙ୍କୁ ଗାଲିଲିଓ କହିଥିଲେ—ଏଇ ଦେଖ, ମୁଁ ଅନୁଭବ କରିପାରୁଚି ପୃଥିବୀଟା ବୁଲୁଚି । ତାଙ୍କର ସେ ଯେ ଅନୁଭୂତି ସେ କେବଳ କଳ୍ପନା । ଆମ ଦେଶରେ ଜଣେ ଋଷି ଥରେ ଗୋଟାଏ ସଭାରେ କହିଥିଲେ, —ମୁଁ··· ଚଢ଼େଇ ଡେଣା ଫଡ଼ଫଡ଼ ଶୁଣିବାକୁ ପାଇଛୁ", ସେ ମଧ୍ୟ କଳ୍ପନା । କଳ୍ପନା ଅର୍ଥାତ୍ ମିଛ । କିନ୍ତୁ ଏଇ ଋଷିମାନେ ମିଛଟାକୁ ଧରି ଡାକପକାନ୍ତି—ସତ୍ୟଂ, ଶିବଂ, ସୁନ୍ଦରଂ । ସେଥିପାଇଁ କହିଥିଲି ଏ ମୁନିଋଷିଗୁଡ଼ାକ ନିମକ୍ ହାରାମ୍ । ଏମାନେ ଖାଇବେ ମିଛର, କିନ୍ତୁ ଗାଇବେ ସତର । ଅବଶ୍ୟ ସେମାନେ ଯେବେ ମାନନ୍ତି ଯେ, କଳ୍ପନା ବଳରେ ଯେ ସତ୍ୟ ମିଳେ, ସେଇ ସତ୍ୟଟା ହିଁ ଭଗବାନ୍, ତା'ହେଲେ ମୁଁ ସେମାନଙ୍କର ପାଦ ଘଷିବାକୁ ରାଜିଅଛୁ, କାରଣ ଏହି ମିଛ କଳ୍ପନାର ଭିତର ଦେଇ ଜୀବନର ନଗ୍ନ ସତକୁ ପାଇବାକୁ ହେବ ।

ତୁମେ କହିବ, ଜୀବନରେ ନଗ୍ନ ସତ୍ୟ ଓ ସତ କଥା, ଏହା ମଧ୍ୟରେ ପ୍ରଭେଦ କ'ଣ ? ପ୍ରଭେଦ ଏଇ—ମନୁଷ୍ୟର ଶରୀର ଓ ଆତ୍ମା ମଧ୍ୟରେ ଯେ ପ୍ରଭେଦ, ଚନ୍ଦ୍ରର ଆଲୁଅ ଓ ଚନ୍ଦ୍ର ଉପଗ୍ରହର ମଧ୍ୟରେ ଯେ ପ୍ରଭେଦ, ଫୁଲର ବାସନା ଓ ଫୁଲ ମଧ୍ୟରେ ଯେ ପ୍ରଭେଦ । ସତକଥା ଅର୍ଥାତ୍ ଦେଖିବା ସତ୍ୟ ଓ ଜୀବନର ନଗ୍ନ ସତ୍ୟ—ଅର୍ଥାତ୍ ଅନୁଭବଯୋଗ୍ୟ ସତ୍ୟ ମଧ୍ୟରେ ସେଇପ୍ରଭେଦ । ମୁଁ ମଣକର ପଡ଼ୁଛି, ରାମ ଆସିଲା, ମୋତେ ଦେଖିଲା, ଫେରିଗଲା । ଶ୍ୟାମକୁ ଯାଇ କହିଲା—ମୁଁ ଗୋବିନ୍ଦକୁ ଯାଇ ଦେଖିଆସିଲି । ଲୌକିକ ମତରେ ସେ ଅବଶ୍ୟ ସତ କହୁଛି । କିନ୍ତୁ ପ୍ରକୃତରେ ସେ କହିଚି ଗୋଟାଏ ମସ୍ତବଡ଼ ଅସତ୍ୟ, କାରଣ ଗୋବିନ୍ଦ କାହିଁ ।

ତେବେ ଆମ୍ଭେମାନେ ଦେଖିଲୁ ତିନୋଟା କଥା—ସତ୍ୟ, ଅସତ୍ୟ ଏବଂ ମିଥ୍ୟା ବା କଳ୍ପନା । ମିଛ ସତର ବିପରୀତ ନୁହେଁ । ବରଂ ମିଛ ଦେହ, ସତ ପ୍ରାଣ । ଏଇ ମିଛକୁ ଭେଦକରି ବା ଏଇ ମିଛର ସାହାଯ୍ୟନେଇ ସତ୍ୟ ଲାଭ କରିବାକୁ ହେବ । ଅସତ୍ୟ ହେଲା ସତ୍ୟର ବିପରୀତ । ଯେ ସାହିତ୍ୟିକ, ସେ ଏକଥା ବୁଝେ । କାରଣ ପ୍ରକୃତ ସାହିତ୍ୟର କାର୍ଯ୍ୟ ହେଲା ସତ୍ୟ, ଅସତ୍ୟ ଏବଂ ମିଛ ମଧ୍ୟରେ ଯଥାଯୋଗ୍ୟ ଆସନଦାନ । ଖ୍ରୀଷ୍ଟିୟାନ ବାଇବେଲ ଲେଖକ, ଗୀତାକାରକ ବ୍ୟାସକବି, ରାମାୟଣ ଲେଖକ ବାଲ୍ମୀକି କବି, ଏମାନେ ହେଲେ ଏହି ମିଛ ଦେବତାଙ୍କର ଆଦି ପୂଜାପଣ୍ଡା । ମତେ ଆପଣମାନେ ଠେଙ୍ଗାପେନ୍ଥ ମାରିବାକୁ ଗୋଡ଼ାଇପାରନ୍ତି ଏକଥା ଶୁଣି । ଗୀତାକାରକ ଓ ବାଇବେଲ ଲେଖକ ଠାଏ ନୁହେଁ, ଦ'ଠା ନୁହେଁ, ହଜାର ଠା କହିଛନ୍ତି—ସତ କହ, ସତ କହ, ମିଛ କହନାହିଁ । ଆପଣଙ୍କର ଭୁଲ । ସେମାନେ କହିଚନ୍ତି ଅସତ୍ୟ କହନାହିଁ । କଥାଟା ଠିକ୍ ଆପଣମାନେ ବୁଝି ନପାରି ଯଦି ଅସତ୍ୟକୁ ମିଛ ବୋଲି କହୁଥାନ୍ତି, ତେବେ ସେ ଆପଣଙ୍କ ବୁଦ୍ଧି ଦୋଷ । ଆମର ପୁରୁଣା ଋଷିକବିମାନେ ଏହି ଅସତ୍ୟଟାର ଗନ୍ଧ ପାଇଲେ ମାରଣା ଷଣ୍ଢ ପରି ତେର୍ଛିପଡ଼ୁଥିଲେ । ପ୍ରକୃତ କବି ପକ୍ଷରେ ମିଛକଥା ଯେପରି ସୁନ୍ଦର, ଅସତ୍ୟ ସେହିପରି କଦର୍ଯ୍ୟ । କାହିଁକି ନା, ଯାହା ସତ୍ୟ ତାହା ଅସୁନ୍ଦର, ଆଉ ଯାହା ଅସୁନ୍ଦର ତାହା ଅପ୍ରିୟ । ଆମର କଥାରେ କହନ୍ତି, "ସତ୍ୟ ବ୍ରୂୟାତ୍, ପ୍ରିୟଂ ବ୍ରୂୟାତ୍, ମା ବ୍ରୂୟାତ୍ ସତ୍ୟମ ପ୍ରିୟମ" । ସତରେ; କଥା ଯଦି କହିବାକୁ ପଡ଼ିବ, ତା'ହେଲେ ଯେ କଥା କାନକୁ ଓ ମନକୁ ଭଲଲାଗିବ, ସେହିପରି କଥା ସିନା କହିବା ଉଚିତ୍ ! ଖାଲି ନଗ୍ନ ସତକଥା କହିବାକୁଗଲେ ମୁହଁରେ ପାଲଚୂଣ୍ଡା ମାଡ଼ ବସି ରହିବାକୁ ପଡ଼ିବ, କାରଣ ନଗ୍ନ ସତ ଏ ସଂସାରରେ ଅତି କମ୍ । ଆଉ ଖାଲି ମନ ବହଲାଣିଆ ଅସତକଥା ଗୁଡ଼େ କହିଲେ ଲାଭ ଯୋଡାମାଡ଼ । କାରଣ ମୁଁ କହୁଛି, ଅସତ ଅସୁନ୍ଦର । ଆମେ ସମସ୍ତେ ଜଣେଜଣେ କବି । କାରଣ ସମସ୍ତେ ସୁନ୍ଦର ଜିନିଷଗୁଡ଼ିକୁ ପାଇବାକୁ ଇଚ୍ଛା କରନ୍ତି । ସୁନ୍ଦରୀ ସ୍ତ୍ରୀଟିଏ ହବ, ସୁନ୍ଦର ପିଲାଛିଲାଗୁଡ଼ିଏ ହେବେ, ସୁନ୍ଦର ଘରଟିଏ ଥିବ, ସେଥିରେ ସୁନ୍ଦର ପଲଙ୍କ ଉପରେ ସୁନ୍ଦର କଅଁଳ ଶେଯ ପଡ଼ିଥିବ, ସୁନ୍ଦରୀ ପ୍ରିୟା ସୁନ୍ଦର ବେଶ ପିନ୍ଧି ବସିଥିବ, ସୁନ୍ଦର ଜହ୍ନ ପଡ଼ିଥିବ—

ଦାଣ୍ଡରେ ହାଣ୍ଡି ମଧ୍ୟ ଫଟେ ଏ ଆଶାକରେ । ଏଇ ସୁନ୍ଦର-ଲୋଭ କବିତାର ମୂଳଦୁଆ ଅବଶ୍ୟ ସୁନ୍ଦର । ବୋଇଲେ, ଖାଲି ବାହାର ଚକଚକ ନୁହେଁ । ଆମ ଭିତରେ ଯେଉଁମାନେ ଯୋଗୀଋଷିଙ୍କ ଗ୍ରୁପରେ କଲାପଞ୍ଜ ଯାଇଚନ୍ତି, ସେମାନେ କହିବେ, ଏ ବାହାର ଚକଚକରେ କ'ଣ ଅଛି ? ଅସଲ କଥା, ଭିତର ଭଲ ହେଲେ ସବୁ ସୁନ୍ଦର । କିନ୍ତୁ ଯୋଗୀଋଷିମାନେ ମଧ୍ୟ ତାଙ୍କ ଭଗବାନଙ୍କୁ 'କୋଟିଏ ରବି ପରି ......ମୂରତି ଜନ୍ମୁଛି' ବୋଲି ବର୍ଣ୍ଣନା କରନ୍ତି । ବାହାର ସୌନ୍ଦର୍ଯ୍ୟଟା ଅବଶ୍ୟ ଦେଖିବାକୁ ହେବ । ତେବେ ହଁ, ମୋର ପ୍ରିୟା ବୋଧହୁଏ ଗୋଷ୍ଟ ନୁହେଁ; କମଳ-ବଦନା, ଡାଳିମ୍ବ-ଦନ୍ତୀ, ଶୁଆ-ନାକୀ, ପଲ୍ଲଣ-ଆଖି, ମନ୍ଦାର ଓଠୀ, ପର୍ବତ-ବକ୍ଷା, ସିଂହ-ଅଣ୍ଟା ବା କଦଳୀଗଛ ଜଙ୍ଘା ନୁହେଁ । କାଳୀଟା ହେ କାଳୀଟା । କିନ୍ତୁ ତାଙ୍କର ଗୁଣଗୁଡ଼ାକ ବଡ଼ ସୁନ୍ଦର । ଅର୍ଥାତ୍......ସେ ମୋ ଗୋଡ଼ ହାତ ଘଷି ଦିଅନ୍ତି, ମତେ ସାତ ତିଅଣ ନଅ ଭଜା କରି ଗ୍ରାସକୁ ଗ୍ରାସ ଗିଳିବାକୁ ଦିଅନ୍ତି, ମୋର ଦିହ ଇସ୍‌କିନ ହେଲେ, ସେ ବସି ପକାନ୍ତି ଇତ୍ୟାଦି । ଅତଏବ, ଗୋଷ୍ଟଭୋଷ୍ଟ ଯୁବତୀଟିଏ ଦେଖିଲେ, ମୁଁ କଣଆଖିରେ ଚାହିଁ ଦୀର୍ଘ ନିଃଶ୍ୱାସଟିଏ ପକାଇଲେ ମଧ୍ୟ ମୋର ପ୍ରିୟା ସୁନ୍ଦରୀ । ଏହି ସୌନ୍ଦର୍ଯ୍ୟ ମାତ୍ର ଭିତରେ ଟିକିଏ ସ୍ୱାର୍ଥ ଗୁଡ଼େଇ ହୋଇ ରହିଲେ ମଧ୍ୟ ଏହା ଯେ ସୌନ୍ଦର୍ଯ୍ୟ, ସେଇଟା ମାନିବାକୁ ପଡ଼ିବ । ବାହାର ଚକଚକ ଓ ଭିତର ଗୁଣ ଉଭୟେ ସୁନ୍ଦର । ତେବେ କଥା କ'ଣ କି, ବାହାର ଚକଚକଟା ଆଖିକୁ ଭଲ ଦେଖାଯାଏ, ଆଗ-ହୋଇ ଆଖିରେ ପଡ଼େ । ଭିତର ମାଲଟାକୁ ଖୋଜି ବାହାରକରିବା ପାଇଁ ଟିକିଏ ଧୈର୍ଯ୍ୟ ଦରକାର । ପ୍ରିୟା ଯଦି ମୋର ସୁନ୍ଦରୀ ହୋଇଥାନ୍ତେ, ତା'ହେଲେ ତାଙ୍କଠାରୁ ଦି'ଚାରି ଖଡ଼ୁମୂଷା ପର୍ଯ୍ୟନ୍ତ ମଧ୍ୟ ସହିବାକୁ ମୁଁ ରାଜିଅଛି । କିନ୍ତୁ ପ୍ରିୟା ତ ମୋର କାଳୀ । ସେ ବୁଝନ୍ତି ଯେ, ମୁଁ ଯେ ତାଙ୍କୁ ଭଲପାଏ, ସେ ମୋର ଅନୁଗ୍ରହ । ଅତଏବ, ଦି'ଚାରି ଖଡ଼ୁମୂଷା ଦବାଭଳି ଯୋର ତାଙ୍କର ନଥାଏ, କି ତାଙ୍କଠାରୁ ଖଡ଼ୁମୂଷା ଖାଇ ପିଠି ଆଉଁସି ଦେବାର ସୁଯୋଗ ମଧ୍ୟ ମୋର ପଡ଼େନାହିଁ । ସେହି ହେତୁରୁ କବିଙ୍କୁ ବାହାର ଚକଚକଟା ଆଣିବା ପାଇଁ ଚେଷ୍ଟା କରିବାକୁ ପଡ଼େ । ବିଚରା କବି ଦଶବର୍ଷ ଗର୍ଭ ବେଦନା ସହି ଜନ୍ମ କରେ ଗୋଟିଏ ସାହିତ୍ୟ । ତା' ଭାଗ୍ୟରେ ପୁଣି ଲେଖା ଯେ ସେ ହବ ଆମ 'ପଞ୍ଚ କନ୍ୟା'ରୁ ଗୋଟିଏ । ଦାଣ୍ଡରେ ହାଟରେ ଯେ ଦରକାରକଲା, ସେ ହେବ ତା'ର ପ୍ରଣୟିନୀ । ପଇସା ଦେଣ ନ ଦବାର କଥା ନାହିଁ । ହେଇ ହେଇ ଏ... ପ୍ରଣୟୀଗୁଡ଼ାଙ୍କର '.....' ସବୁଠାରୁ ବେଶି । ଅତଏବ, ବାହାର ଚକଚକଟା ନ ଥିଲେ ବିଚାରୀ ହୁଏତ ବାପ ପେଟରୁ ବାହାରି ଜଣେ ଅଧେ ପ୍ରକାଶକଙ୍କ ଦୁଆରେ ଅଧିଆପଡ଼ି ଶେଷରେ ଯାଏ ବାପାଙ୍କ ବସ୍ତାନିକୁ, ନହେଲେ ପ୍ରକାଶକମାନଙ୍କ ହାତ ଏଡ଼ି ଦାଣ୍ଡକୁ ବାହାରିପଡ଼ି ମଧ୍ୟ କିହି ଦୋକାନର ଅଳିଆ ଗଦାରେ । ତେବେ ବାହାର ଚକଚକ ଫେରେ ଅନେକପ୍ରକାର । ଲୁଗାପଟା ପିନ୍ଧିବାକୁ ବାହାର ଚକଚକ କହନ୍ତି, ଗୋଷ୍ଟ

ତୋଷ୍ଣ ରୂପକୁ ମଧ୍ୟ ବାହାର ଚକଚକ କରନ୍ତୁ । ମୁଁ ଏଠି ଏହି ଗୋଷ୍ଣ ତୋଷ୍ଣ କଥା କହୁଚି । ଲୁଗାପଟା କଥା ତ କବି ହାତରେ ନଥାଏ, ସେ ପ୍ରକାଶକ ହାତର କଥା । ଝିଅ ଶାଶୁ ଘରକୁ ଗଲବେଳେ ଯଦି ଭଣ୍ଡାରୁଣୀଟା ଫେସନ୍‌ବାଲୀ ହୋଇଥାଏ, ତେବେ ସେ ଝିଅକୁ ଭଲକରି ଫେସନନ୍‌ବାଲା ଲୁଗା ପିନ୍ଧାଇ ଛାଡ଼ିଦେବେ । ନହେଲେ କାଣିଆ କଣ୍ଣ, ମେଞ୍ଚ ଚୂନା, ନୋଥ, ବସୁଣି, ହଳଦୀ...... । ଆମ ପ୍ରକାଶକ ଭଣ୍ଡାରୁଣୀମାନେ କି ରୂପରେ ଆମ ଝିଅମାନଙ୍କୁ ଘାଣ୍ଟକୁ ଛାଡ଼ିବେ, ସେ ସେକଥା ଜାଣନ୍ତୁ । ଆମେ ଜାଣୁ, ଦେହର ସୌନ୍ଦର୍ଯ୍ୟ । ଚତୁର ଜନ ସେହି ହେଉଛି ଦେହର ଚହଟ ଚକ୍‌କଣଆଡ଼କୁ ଦୃଷ୍ଟି ଦିଏ । ସାହିତ୍ୟର ଦେହ ହେଲା ଭାଷା ଓ ବର୍ଣ୍ଣନା ଶୃଙ୍ଖଳା ହେଲା ତା'ର ଲାବଣ୍ୟ । କିନ୍ତୁ ଏହି ଚହଟଚକ୍‌କଣ ରୂପ, ଆଉ ଲାବଣ୍ୟ ଆଣିପାରେ କବି—ଏକା ମିଛକଥା ବା କଳ୍ପନା ବଳରେ । ଆମ ଦେଶ କବିମାନଙ୍କର ଧାରଣା ଯେ, ଭାଷା ଯଦି ଲଳିତ ହୁଏ ତା'ହେଲେ ସୁନ୍ଦର ହୋଇଗଲା । ଏହିଟା ହେଲା ଅସତ । ଖାଲି ଲଳିତ ଭାଷା ସ୍ତୁଷ୍ଟେ ଦ'ପୃଷ୍ଠା ପାଇଁ ହେଲେ ସୁନ୍ଦର ହୋଇପାରେ, କିନ୍ତୁ ଯୁଠି ଶହ ଶହ ପୃଷ୍ଠା ଲେଖିବାକୁ ପଡ଼ିବ, ସେଠାରେ ଲଳିତ ଭାଷା ପଢ଼ୋଶୀ ଶଅରକୁ ଝରଣାର କୁଳୁକୁଳୁ ପରି ଚଟା ଲାଗିବ । ଲାଳିତ୍ୟ ଦରକାର, କିନ୍ତୁ ଲାଳିତ୍ୟ ମୁଖ୍ୟ ନୁହେଁ । ଭାଷା ଛାଇଲ ହେବା ଦରକାର । ସତ୍ୟବାଦୀ ଗୋପୀନାଥଙ୍କର ମୂର୍ତ୍ତି ଲଳିତ, କିନ୍ତୁ ସେ ନିର୍ଜୀବ, ଅରେ, ଦ' ଅର. ନେଥର ପର୍ଯ୍ୟନ୍ତ ସେ ମୂର୍ତ୍ତିରେ ସୌନ୍ଦର୍ଯ୍ୟ ଉପଭୋଗ କରାଯାଇପାରେ । କିନ୍ତୁ, କୌଣସି ବ୍ୟକ୍ତିଙ୍କୁ ପଚାରି, ସେ ଯାହା ମୂର୍ତ୍ତି ସମ୍ବନ୍ଧରେ କହିବେ ସେଥିରୁ କବିତା ବାହାରିବ ନାହିଁ । କାରଣ ସେ ମୂର୍ତ୍ତି ନିର୍ଜୀବ । ନିର୍ଜୀବ ମୂର୍ତ୍ତିକୁ 'ନିତି ଦେଖୁଥିଲେ ପ୍ରୀତି ବଢ଼ୁଥାଇ' ଆସିବ ନାହିଁ ।

ନବଭାରତ—୧୩୪୨
ପୃ—୬୭୫



# ମିଛକଥା (୬)

## ( ପୂର୍ବାନୁବୃତ୍ତି )

ମାଅନ୍ତା, ଛଇଳା ଭାଷା ମିଛକଥାରେ ମୃତର ପ୍ରାଣ ଫୁଟାଇବାର ଏକମାତ୍ର ଉପାୟ । ତୁମେ କହିବ, ଭାଷାଟା ପୁଣି ମାଅନ୍ତା, ତା' ଉପରେ ପୁଣି ଛଇଳା ହବ କିମିତି ମ ? ମୁଁ କିମିତି କହିବି ଭଲ ? ଏକା କବି ଜାଣେ, କିନ୍ତୁ କବି କହିପାରିବ କି ନାହିଁ ସେ ବିଷୟରେ ମୋର ଢେର ସନ୍ଦେହ । କୌଣସି କବି କେବେ କହିବାର ମୁଁ ଶୁଣିନାହିଁ । କେବଳ ରବୀନ୍ଦ୍ର କହିବାକୁ ଚେଷ୍ଟା କରିଥିଲେ । ଯାହା କହିଚନ୍ତି, ସେଗୁଡ଼ାକ ଖାଲି ଅଲଅଗଦା ମାଲ । ଯାହା ଗାଇଚନ୍ତି, ତା'ଠାରୁ ଢେର ପୃଥକ ଓ ଢେର ଉତ୍କୃଷ୍ଟ । ଧର, ମୁଁ କହିବି, ତୁମେ ବଡ଼ ଆଶାକରି ବସିଚ, ପଢ଼ଶା ଘରର ସେହି ପ୍ରାଣ ପ୍ରତିମାଟି ତୁମର, ଆଜି ଏଇ ନୀରବ ସ୍ନିଗ୍ଧ ରାତିରେ, ଏଇ ଲତା କୁଞ୍ଜତଳ ଆସନଟି ଉପରେ ବସି ତୁମ ପଟାପରି ଗ୍ରୀବା ଉପରେ ତା'ର ସଜଫୁଲ ମୁହଁଟି ରଖି କେତେ ମନମୋହିନୀଆ କଥା କହିସିବ । ତୁମେ କୁମାରୀଙ୍କ ସଙ୍କେତ ଅନୁସାରେ କୁଞ୍ଜ ତଳେ ରାତିଟା ସାରା ଜଗି ବସିଲ । କିଏଶୋଖି ଆସିଲେ ନାହିଁ । ରାତିଟା ପାହିଗଲା । ତହିଁ ଆରଦିନ ସକାଳୁ ନିଦ୍ରା-ଅଳସ ତୁମ ମୁହଁରୁ କ'ଣ କଥାଟା ବାହାରି ପଡ଼ିବ, ତୁମେ ବର୍ତ୍ତମାନ କହିପାରିବ ? କହିବ କି "Oh, damn !" ନା, କହିବ, "ମୁଁ କେଡ଼େ ଗଧଟାଏ ହୋ, ଏ କାଳର ଟୋକୀଟା କଥାରେ ବିଶ୍ୱାସ କରି କେତେ ହନ୍ତସନ୍ତ ନହେଲି !" ଅବା ଭାବିବ "ହଉ, ଆସିଲା ନାହିଁ ତ, ମୁଁ ଯେବେ ତାଙ୍କୁ ଆଉ ଦିନେ କଥା କହିଚ ?" ନା, ଆଶଙ୍କା କରିବ ଯେ "ତା' ଦିହ କିଛି ଖରାପ ହେଲାପରା, ସେଇଥିପାଇଁ ଆସିପାରିଲା ନାହିଁ । ଯାଏଁ ବୁଝିଆସେଁ ।" ସ୍ଥା' ଭିତରୁ କେଉଁ କଥାଟା ଯେ ତୁମ ତୁଣ୍ଡରୁ ବାହାରିବ, ତା' ବୋଧହୁଏ ତୁମେ ବର୍ତ୍ତମାନ କହିପାରିବ ନାହିଁ ।

ତେବେ ସତରେ ଯେବେ ତୁମ ଭାଗ୍ୟରେ ଏ ଆଶା କାମୁଡ଼ା ପଡ଼ିଥାଏ ଆଗରୁ, ଆଉ ସେତେବେଳେ ତୁମ ପାଟିରୁ ଯେ କିଛି ବାହାରି ପଡ଼ିଥିଲା, ସେ କଥା ଯଦି ତୁମର ମନେଥାଏ, ତାହେଲେ ତୁମେ କହିପାରିବ । ତୁମ ଜୀବନରେ ବୋଧହୁଏ ଏପରି ଘଟିଚି । କିନ୍ତୁ ତୁମେ କେତେବେଳେ କେଉଁ ଭାବ ଆବେଗରେ କିଛି କହିପକାଇଚ, ତାକୁ କିଛି ମନେରଖିଚ ଯେ ତାପରେ ଯେତେବେଳେ ଇଚ୍ଛା ସେତେବେଳେ ପଗ୍ଭର-ଦେଲେ ସେଇ କଥାଟା କହି ପକାଇବ ? ବିଶେଷରେ ଭାବର ଆବେଗ ଯାହା, ନିଶା ଖାଇବା ମଧ୍ୟ ସେଇଆ । ନିଶା ଦାଉରେ କିଏ କିଛି ପଦେ ଅଧେ କହିଦେଲା, ନିଶା ଛାଡ଼ିଲେ କିଛି ତା ମନେଥାଏ ? ସେହିପରି ଭାବ ଆବେଗରେ ଯାହା କହିହୋଇଗଲା,

ତା କଣ ମନେରହେ ? ତୁମର ଆମର ମନେ ରହି ନ ପାରେ, କିନ୍ତୁ କବି ସେଗୁଡ଼ିକ ଗଣ୍ଠିଧନ କରି ବାନ୍ଧି ରଖିଥାଏ । କବି ବା ସାହିତ୍ୟିକ ଗୋଟାଏ ଅଦ୍ଭୁତ ଜନ୍ତୁ । ସେ ନିଘାତ, ନିଘାତଗ୍ରସ୍ତ ଲତାଟି ପରି ସଂସାରର ପ୍ରତ୍ୟେକ ନିଃଶ୍ୱାସରେ ଚମକିପଡ଼େ, ଥରିଉଠେ । ସାମାନ୍ୟ ସାମାନ୍ୟ କଥାଟିକରେ ତା ହୃଦୟରେ ପ୍ରବଳ ଝଞ୍ଜା ତୋଫାନ ବହିଯାଏ । ସେ ଭାବାବେଶରେ ଡାକ ପକାଏ "I faint, I die"—"ମୋ ଦେହ କଣ ହୋଇଗଲା, ମୁଁ ମରିଗଲି ।" କିନ୍ତୁ ତାର ହୃଦୟ ଯେପରି କୋମଳ, ତାର ବୁଦ୍ଧି ସେହିପରି କଠିଣ । ସାଧାରଣ ମନୁଷ୍ୟମାନଙ୍କଠାରେ ବୁଦ୍ଧି ଓ ହୃଦୟ ଯେପରି ହାତ ଧରାଧରି ହୋଇ ଚାଲିଥାନ୍ତି, କବି ବା ସାହିତ୍ୟିକଠାରେ ସେପରି ନ ଥାଏ । ତାର ବୁଦ୍ଧି ତାର ହୃଦୟଠାରୁ ଅଲଗା ହୋଇ କାମ କରୁଥାଏ । ଭାବାବେଶରେ ଯେତେବେଳେ ତାର ହୃଦୟ ବ୍ୟାକୁଳ ହୋଇଉଠେ ତାର ବୁଦ୍ଧି ସେତେବେଳେ ଲେଖନ ତାଳପତ୍ର ଘେନି ତାର ପ୍ରତ୍ୟେକ କଥାଟି, ପ୍ରତ୍ୟେକ ଚାହାଁଣିଟି, ପ୍ରତ୍ୟେକ ଅଙ୍ଗଭଙ୍ଗିଟି ଲେଖି-ପକାଉଥାଏ । ଆଉ ସେ ଲେଖା, ଗ୍ରାମୋଫୋନ୍ ରେକର୍ଡ ପରି । ଟିକିଏ ଚାବି ଦେଲେ ହିଁ ଠିକ୍ ସେହି କଥାଟି ବାହାରିପଡ଼ିଲା । ଏଇ ହେଲା କବିର ବା ସାହିତ୍ୟିକର ବିଶେଷତ୍ୱ । ସେହି ହେତୁରୁ କୌଣସି କବି ବା ସାହିତ୍ୟିକ କେବେ କୌଣସି ଦେଶରେ କୌଣସି ଗୋଟିଏ ବିଷୟରେ ବାନ୍ଧି ହୋଇ ରହିପାରନ୍ତି ନାହିଁ । 'ପୁରୁଷ ଭ୍ରମର ଜାତି' ବୋଲି ପୁରୁଷ ଜାତିର ଏ ଯେ ନିନ୍ଦା, ତା'ପାଇଁ ଏ କବି ସାହିତ୍ୟିକମାନେ ଦାୟୀ । ସାଧାରଣ ମନୁଷ୍ୟ ତାର ଭାର୍ଯ୍ୟା, ତାର ପିଲାଝିଲାଙ୍କୁ ନେଇ ବୁଡ଼ିରହେ । ପର ସ୍ତ୍ରୀକୁ ଚାହିଁବାପାଇଁ ତାର ବେଳ ନ ଥାଏ କି ମନ ନ ଥାଏ, ଅଧିକାଂଶ ସମୟରେ ସାମର୍ଥ୍ୟ ମଧ୍ୟ ନ ଥାଏ । କିନ୍ତୁ କବି ଯେ ସବୁବେଳେ ନୂଆ ନୂଆ ଅନୁଭୂତି ପାଇଁ ବ୍ୟାକୁଳ । ସେ କାହିଁ ଗୋଟିଏ ପ୍ରଣୟିନୀର ପଣତକାନିରେ ବାନ୍ଧିହୋଇ ରହିବ ? ତା ଦୃଷ୍ଟିରେ 'ଦ୍ୱୈର୍ଯ୍ୟହିନ କାମ୍ୟଦଥବାପ୍ତି ନିରୁଢ଼ା, ସୈବସା ଚଳତି ଯାତି ହି ଚରମ୍ ।' ତାର ମନ ଯେଉଁଆଡ଼େ ଯାଏ, ସେ ସଂସାର ଦୃଷ୍ଟିରେ ଭଲ ହେଉ, ମନ୍ଦ ହେଉ, ସେହି ହିଁ ତାହାର ସ୍ୱର୍ଗ ।

କାଳିଦାସ ଆମ ସଂସ୍କୃତ କବିଙ୍କର ମୁକୁଟମଣି । ସେ ମଲେ ବେଶ୍ୟା ଘରେ । ସେକ୍ସପିୟର ଜଣକୁ ବାହାହେଲେ, କିନ୍ତୁ ଅନ୍ୟପାଇଁ ଝୁରି ଝୁରି କେତେ କବିତା ନ ଲେଖିଗଲେ ! ଶେଲି ଗୋଟିଏ ଅପ୍ରାପ୍ତବୟସ୍କା ବାଳିକାକୁ ପ୍ରେମରେ ଭୁଲାଇ ତା ଇସ୍କୁଲରୁ ନେଇ ବାହାହୋଇପଡ଼ିଲେ । ସେ ଅନୁଭୂତି ସରିଗଲା । ପୁଣି ନୂଆ ଅନୁଭୂତିପାଇଁ ଯେତେବେଳେ ମନ ଖେଳିଲା, ସେ ତାଙ୍କୁ ଫୋପାଡ଼ିଦେଇ ଉଡ଼ିଗଲେ ଆଉ ଫୁଲକୁ । ବାଇରନ୍ ତାଙ୍କ ଡନ୍ ଜୁଆନରେ ନିଜର ଜୀବନ ପ୍ରତିଫଳିତ କରି ଯାଇଛନ୍ତି । ଏପରିକି ଇଂରେଜୀ ସାହିତ୍ୟର ନୈତିକ କବି ମିଲ୍‌ଟନ ଓ ଓ୍ୱାର୍ଡସ୍‌ୱର୍ଥ ମଧ୍ୟ ଏହି 'ଫୁଲୁଁ ଫୁଲେ ଉଡ଼ି ବୁଲେ ଭ୍ରମର' ନୀତିରୁ ରକ୍ଷା ପାଇନାହାନ୍ତି ।

ଏଇ ଭାବୁକ ଓ ସାହିତ୍ୟିକମାନେ ପୁରୁଷ ଜାତିର ଅଳଙ୍କାର ଆଉ ଏହିମାନଙ୍କର ଅସ୍ଥିର ମନ ହେତୁରୁ ତମେ ସବୁ ପ୍ରତିଦିନ ଆମ ପ୍ରଣୟିନୀଙ୍କ ପାଖରୁ ଉଲୁଗୁଣା ପାଉଁ ଯେ 'ପୁରୁଷ ଭ୍ରମର ଜାତି ।' କିନ୍ତୁ ସାହିତ୍ୟିକର ଏହି ଭିନ୍ନ ଭିନ୍ନ ଅନୁଭୂତି ପାଇବାର ଆଗ୍ରହ ନ ଥିଲେ, ସେ ମିଛକଥାଟାକୁ ଏପରି ସଜେଇଗୁଜେଇ ସତ କରି ଥୋଇପାରନ୍ତା ନାହିଁ । କବିର ତୁଣ୍ଡରେ ଅନୁଭୂତିର ଏଇ ଗ୍ରାମୋଫୋନ୍ ଯେତେବେଳେ ବାଜିଉଠେ ସେତେବେଳେ ସେ ଭାଷା ଜୀଅନ୍ତା ହୋଇପଡ଼େ । କିନ୍ତୁ କବି ଯେତେବେଳେ ନିଜର ଅନୁଭୂତି ବାହାର କଥା ଲେଖିବାକୁ ଯାଏ, ସେତେବେଳେ ତାର ଭାଷା ମଲା ଭାଷା । ଗୋଟିଏ ଉଦାହରଣ ଦିଏଁ—ସେଲିଙ୍କର କ୍ଷୁଦ୍ର କବିତାଗୁଡ଼ିକ ପ୍ରେମର କବିତା । ସେ ପ୍ରେମର ଅନୁଭୂତି ଯଥେଷ୍ଟ ପାଇଥିଲେ । ସେହି ହେତୁରୁ ସେଗୁଡ଼ିକ ବଡ଼ ସୁନ୍ଦର, ବଡ଼ ମର୍ମସ୍ପର୍ଶୀ, ଆଶା ଓ କଳ୍ପନାର ପଡ଼ିଆ ଉଠିଆ ଜୁଆର ମଧ୍ୟରେ ବ୍ୟତିବ୍ୟସ୍ତ ହୋଇ ଉଠିଥିଲା ତାଙ୍କର ପ୍ରାଣ । ସେହି ହେତୁରୁ ତାଙ୍କର 'Ode to the west wind' ଗୀତଟି ବଡ଼ ସୁନ୍ଦର । କିନ୍ତୁ, ସମାଜନୀତି ଓ ରାଜନୀତି ସମ୍ବନ୍ଧରେ ତାଙ୍କର ଜ୍ଞାନଥିଲା ବଡ଼ କମ୍ ଆଉ ଅନୁଭୂତି ଥିଲା ତାଠାରୁ ମଧ୍ୟ କମ୍ । ସେହି ହେତୁରୁ ତାଙ୍କର Prometheus Unbound ବା Epipsyctidion ବଡ଼ ନିରାଟ, ବଡ଼ ନୀରସ । ସେ ଏଗୁଡ଼ାକ ଲେଖିଥିଲେ ହୃଦୟର ଆବେଗରେ ନୁହେଁ, ମସ୍ତିଷ୍କର ତାଡ଼ନାରେ । କାଳିଦାସ ଥିଲେ ପ୍ରେମର ପୁରୋହିତ । ତାଙ୍କ ମୁହଁରେ ପ୍ରେମର ମନ୍ତ୍ର ଯେପରି ସୁନ୍ଦର ଶୁଭୁଥିଲା, ଅନ୍ୟ କିଛି ସେପରି ସୁନ୍ଦର ଶୁଭୁନାହିଁ । ଧର, ଶକୁନ୍ତଳାର ପ୍ରଥମ ଶ୍ଳୋକ । ଏ ହେଲା ଧର୍ମଭାବ, ଈଶ୍ୱର ସ୍ତୁତି । 'ଯା ସୃଷ୍ଟି ସ୍ରଷ୍ଟୁରାଦ୍ୟା ବହତି ବିଧିହୁତଂ ଯା ହବିର୍ଯାଚ ହୋତ୍ରୀ' ଇତ୍ୟାଦି । କାଳିଦାସ ଯଦି ତାଙ୍କ ସ୍ୱାଧୀନ ହୃଦୟରେ ବନ୍ଦନା ବୋଲିଥାନ୍ତେ, ତା'ହେଲେ ବୋଧହୁଏ ସେ କାମଦେବଙ୍କ ବନ୍ଦନା କରିଥାନ୍ତେ । କିନ୍ତୁ ସେ ସମୟ ଦରକାର କରିଥିଲା ଯେ ନାଟକର ଆଦ୍ୟରେ ଗୋଟିଏ ଈଶ୍ୱର ବନ୍ଦନା ଦେବାକୁ ପଡ଼ିବ । ସେ ଲେଖିଲେ, ତାଙ୍କର ସେହି ଭାଷା ସହିତ 'ନ ଖଲୁ ନ ଖଲୁ ବାଣଃ ସନ୍ନିପାତ୍ୟୋଽୟ ମସ୍ମିନ୍ ।' ଶ୍ଳୋକଟିର ଭାଷା ତୁଳନା କଲେ ଆପଣମାନେ ଦେଖିବେ ଗୋଟିକର ଭାଷା ମୃତ, ଆଉ ଗୋଟିକର ଭାଷା ଜୀବନ୍ତ । କେହି କେହି ହୁଏତ କହି-ପାରନ୍ତି ଯେ ଧର୍ମଭାବର ଶ୍ଳୋକ ବା ଗୀତ ଟିକିଏ କର୍କଶ ନହେଲେ ତାହାର ସ୍ୱାଭାବିକତା ନଷ୍ଟ ହୋଇଯିବ । ଖାଲି ଭୁଲ କଥା । ଉଦାହରଣ ସ୍ୱରୂପ-ଗୀତଗୋବିନ୍ଦ ଓ ମୋହମୁଦ୍‌ଗର ଦ୍ରଷ୍ଟବ୍ୟ । ସେ ଭାବ ମଧ୍ୟ ଧର୍ମଭାବ, ନୀରସ ଶୁଷ୍କ ସନ୍ନ୍ୟାସୀଭାବ । ତଥାପି 'ତବ କର କମଳେ ବର ନଖ ମଦ୍ଭୁତ ଶୃଙ୍ଗଂ ।' ବା 'ନଳିନୀ ଦଳଗତ ଜଳମିବ ତରଳଂ,' ପଦଗୁଡ଼ିକ କେଡ଼େ ଲଳିତ, କେଡ଼େ ମଧୁର, କେଡ଼େ ଜୀବନ୍ତ ।

ତେବେ ମୁଁ ଯାହା କହିଲି ସେଥିରୁ ଯେପରି କେହି ମନେ ନ କରନ୍ତୁ ଯେ ଜୀବନ୍ତ ଭାଷାମାନେ ଲଳିତ ଭାଷା । ଭାଷା ଲଳିତ ହୋଇପାରେ କିନ୍ତୁ ମନକୁ ଛୁଇଁ ନ

ପାରେ । ଯାହା କାନକୁ ଭଲଲାଗିବ ସେ ଯେ ମନକୁ ନିଶ୍ଚୟ ଭଲଲାଗିବ, ଏପରି ଭାବିବା ଅନ୍ୟାୟ । ଭାଷା ଯେତେବେଳେ ମନକୁ ଓ କାନକୁ ଭଲଲାଗେ ସେତେବେଳେ ସେ ଜୀବନ୍ତ । ଉଦାହରଣ ସ୍ୱରୂପ, ଆପଣମାନେ ଦେଖନ୍ତୁ, ସାମନ୍ତସିଂହାରଙ୍କ କଳା ମାଣିକ ଗୀତଟା—

"ନେଲୁନାହିଁ କାହିଁପାଇଁ ତୋ କଠାଉ ଛତା
ବନେ କଣ୍ଟା ଲଗି ପଦେ ହେବ ଗୁରୁବ୍ୟଥା,
କଳାମାଣିକରେ ।"

ଅଥବା

"ସୁଦାମା ପାଣିକ, ଧରି ସେ ପୁଣିକ, ମନ୍ଥରେ ପୁଚ୍ଛେ ଥିଲୁ କାହିଁ
ଗୋବିନ୍ଦ ପାଶରେ, ଥିଲି ଏ ସ୍ୱପ୍ନରେ ପୁଲକ ଉଠଇ ସ୍କନ୍ଦମୁହିଁ
ଆହେ ଗିରିଧାରି, ନନ୍ଦ ଗ୍ରାମ ଯାଏ ଯେତେ ନାରୀ
ତାଙ୍କ ପଦ ଧରି, ବୋଲେ ବମ୍ବାଧରୀ,
ତୁମ୍ଭେ ମୋର ଗୁରୁଜନ ପରି ।

ଏ ପଦଗୁଡ଼ିକ ସହିତ ଭଞ୍ଜଙ୍କର—

"ଦେଖି ନବକାଳିକା, ବକାଳିକା ମାଳିକା, ଆଲିକାଳିକା କାନ୍ତି ସ୍ମରି ।" ଇତ୍ୟାଦି ପଦମାନଙ୍କର ତୁଳନା କଲେ ଆପଣମାନେ ବୁଝିପାରିବେ ଯେ ସାମନ୍ତ-ସିଂହାରଙ୍କ ପଦାବଳୀ ଯେପରି କାନକୁ ଭଲଲାଗେ, ସେହିପରି ମଧ୍ୟ ମନକୁ ନାଚଏ, ଅତଏବ, ତାହା ଜୀଅନ୍ତା ଭାଷା, ଆଉ ଭଞ୍ଜଙ୍କର ପଦାବଳୀଗୁଡ଼ିକ କାନକୁ ଭଲଲାଗେ, ପାଠକର ବୁଦ୍ଧିକୁ ସ୍ପର୍ଶ କରେ କିନ୍ତୁ ମନକୁ ଛୁଏଁନାହିଁ । ଅତଏବ, ଠିକ୍ ଜୀବନ୍ତ ନୁହେଁ । ଭଞ୍ଜଙ୍କର ଏ ଭାଷା ସମ୍ବନ୍ଧରେ ମୁଁ ପରେ କହିବି ।

ତାପରେ ଭାଷା ଖାଲି ଜୀବନ୍ତ ହେଲେ ଚଳିବ ନାହିଁ । ଆପଣମାନେ ରାସ୍ତାରେ କେତେ ଜୀଅନ୍ତା ଟୋକା ସିବାର ଦେଖିଛନ୍ତି । କିନ୍ତୁ କାହା ପ୍ରତି ଆପଣଙ୍କର ନଜରଟା ବେଶୀ ଯାଏ ? ଯେ ଟୋକାର ଛଇଛଟକ ବେଶୀ, ଆପଣଙ୍କ ଶନି ନଜରଟା ଚମକ-ଯାଏ ତାହାରି ଆଡ଼କୁ । ସେହିପରି ଭାଷା ଛଇଲା ନହୋଇ ଖାଲି ଜୀବନ୍ତ ହେଲେ ମନୁଷ୍ୟର ଆଦରଣୀୟ ହୋଇ ନ ପାରେ । ତେବେ ଛଇଲା ଭାଷା ବୋଲି ମୁଁ କାହାକୁ କହୁଛି ? ଯେ ଭାଷା ପଢ଼ିଗଲେ ମନରେ ଗୋଟାଏ ଛବି ଆଙ୍କିଯାଏ । ଆପଣମାନେ କହିବେ ଗୋଟାଏ ବିଷୟର ବର୍ଣ୍ଣନା ପଢ଼ିଲେ ତାର ଛବି ତ ମନରେ ଆଙ୍କି ହୋଇଯିବ ଆପଣା ଛାଏଁ, ସେଥିରେ ପୁଣି ବାହାଦୁରି ଗୋଟାଏ କଣ ? ସ୍ୱା ବା ନ ଥାଏ କେଉଁ ସାହିତ୍ୟରେ ? ଏଇଠି ଟିକିଏ ଭୁଲିକଲେ ଆପଣ । ଧରନ୍ତୁ ଏଇ ପଦଟା 'ପର୍ବତ ପ୍ରମାଣେ ପଡ଼ିଅଛୁ ଦୁଃଶାସନ'—ଏଠାରେ ଗୋଟାଏ ବର୍ଣ୍ଣନା ଦିଆହୋଇଛି । ଏହା ଗୋଟାଏ ଛବି ଆଙ୍କିପାରୁଛି । ଅତଏବ ଏ ଭାଷା ଛଇଲା । ପର୍ବତ ବୋଇଲେ ଆମେ

କଣ ମନେକରନ୍ତୁ ? ଗୋଟାଏ ମନ୍ତ୍ରବଦ୍ଧ ଉଚ୍ଚ ଜନପଦ, ବଣ ଜଙ୍ଗଲ ଅଛି, ବାଘ ଭାଲୁ ଅଛନ୍ତି । ଭୀମ ଦୁଃଶାସନକୁ ମାଡ଼ିବସିଛନ୍ତି । ଦୁଃଶାସନ ଭୂଇଁରେ ଚତ୍ପଟାଙ୍ଗ ହୋଇ ପଡ଼ିଛନ୍ତି । ଏପରି ଅବସ୍ଥାରେ ପର୍ବତ ଶବ୍ଦଟି ଦେଇ ଆପଣ ମନରେ କି ଚିତ୍ରଟା ପାଇଲେ ? ଏପରି ଗୋଟାଏ ଉପମା ଦେବା ଯାହା, "ଆମ୍ବଗଛଟା ପାଣିପରି ବୋହିଗଲା" କହିବା ମଧ୍ୟ ସେଇଆ । ଭାଷାକୁ ଛବିଳ କରାଯାଏ ତିନୋଟି ଉପାୟରେ । ୧ମ—ବର୍ଣ୍ଣନାରେ ଉପଯୁକ୍ତ ଉପମାର ପ୍ରୟୋଗ, ୨ୟ—ଶବ୍ଦଚୟନ, ୩ୟ—ଉପମା ଉପମେୟ ନଦେଇ ମଧ୍ୟ ଖାଲି ସାଧାରଣ ବିଷୟକୁ ସାଧାରଣ ଭାଷାରେ ବର୍ଣ୍ଣନା କରି ।

କବିସୂର୍ଯ୍ୟଙ୍କର—

"ଭିଡ଼ି ରଦନେ ବସନାଞ୍ଚଳ
ତଡ଼ିଲ୍ଲତାରୁ ହୋଇ ଚଞ୍ଚଳ
ବଳା ଶିଞ୍ଜିତ କରି ପ୍ରବଳ
ପଳାଇ ଯା ମଣ୍ଡିଦେଲୁ ଯାଇ ମଣ୍ଡପ ସୀମା ରେ ।"

ଏହି ପଦଟିରେ ଏ ତିନିପ୍ରକାର ଉପାୟରେ ଭାଷା ଛବିଳା ହେବାର ଚେଷ୍ଟା କରାଯାଇଛି । ପ୍ରଥମ ଓ ଶେଷ ଦୁଇ ଧାଡ଼ିରେ ୩ୟ ଉପାୟଟି, ଦ୍ୱିତୀୟ ଧାଡ଼ିରେ ୧ମ ଉପାୟ ଓ ତୃତୀୟ ଧାଡ଼ି 'ବଳା ଶିଞ୍ଜିତ କରି' ରେ ଦ୍ୱିତୀୟ ଉପାୟ ପ୍ରୟୋଗ କରାଯାଇ, ଭାଷା ଓ ଗୀତଟି ଏପରି ଛବିଳ ହୋଇଛି ଯେ, ଥରେ ପଢ଼ିଗଲେ ବା ଶୁଣିଗଲେ ସେମାନଙ୍କର ଅବିକୃତ ଆକୃତି ଆଖି ଆଗରେ ଚହଟିଯାଏ । କଥାଟା ତ ଅତି ସାଧାରଣ । ରଜାଘର ଝିଅ ଗାଧୋଉଛନ୍ତି, ଦେହରୁ ମୁଣ୍ଡରୁ ଲୁଗା ଖସିଯାଇଛି । ଏହିପରି ଅବସ୍ଥାରେ ଅତର୍କିତ ଭାବରେ ଜଣେ ଲୋକ ଅଥବା କବି ପଶିଯାଇଛନ୍ତି । ସେମାନଙ୍କ ଆଖି ତାଙ୍କ ଉପରେ ପଡ଼ିଯାଇଛି । ସେ କାତର ହୋଇପଡ଼ିଲେ । ତାଙ୍କ ଆଖି ଛନଛନ ହୋଇଗଲା । ସେ ଦାନ୍ତରେ ଲୁଗାଟା ଖୁଣ୍ଟି ଉପରକୁ ଭିଡ଼ିନେଇ ତରବର ହୋଇ ମଣ୍ଡପଆଡ଼କୁ ଚମକିଗଲେ । ଏଇ ତ ହେଲା ମୋଟକଥା । ସ୍ତ୍ରୀମାନଙ୍କ ଦେହରୁ ଲୁଗାପଟା ଖସି ଯାଇଥିଲାବେଳେ କୌଣସି ପୁରୁଷର ଦୃଷ୍ଟି ପଡ଼ିଗଲେ, ସେମାନେ ଯେ ଦାନ୍ତରେ ଲୁଗା ଭିଡ଼ି ଖୁଣ୍ଟି ଘୋଡ଼ାଇ ପକାନ୍ତି—ଏ ଜିନିଷଟା ଲକ୍ଷ୍ୟ କରି ମନେରଖିଛି ଯେ, ସେ ବିନା ଏ କଥା ଗାଇବ, ଯେ ଦେଖିନାହିଁ ସେ କାହୁଁ ଗାଇ ପାରିବ ଏପରି ? ସେହିପରି ସେତେବେଳ ଅବସ୍ଥାରେ ସ୍ତ୍ରୀର ସେ ଯେ ଚକିତ ଗୁହାଣି ତାକୁ ମଧ୍ୟ ଲକ୍ଷ୍ୟ କରିବ । ଆଉ ସୁନାଗୋଡ଼ ତରବର ହୋଇ ପଳାଇଗଲାବେଳେ ଯେ ବଳାକୁ ଝଟକ ବଜିଯିବ, ତାକୁ ମଧ୍ୟ ଲକ୍ଷ୍ୟ ରଖିବ, ଇତ୍ୟାଦି ଇତ୍ୟାଦି । ଲକ୍ଷ୍ୟ ରଖି ତାକୁ ଉପଯୁକ୍ତ ଭାଷାରେ ବର୍ଣ୍ଣନା କଲେ ସେ ଭାଷା ହେବ ଛବିଳା । ଅତଏବ, ଆମ୍ଭେମାନେ ଦେଖିଲୁଁ, ଭାଷାକୁ ଜୀବନ୍ତ କରିବାକୁ ହେଲେ ବ୍ୟକ୍ତିଗତ ଅନୁଭୂତି ଯେପରି ଦରକାର, ଭାଷାକୁ ଛବିଳ କରିବାକୁ ଗଲେ ବାହାର କଥା ସେହିପରି ଦେଖି ଶୁଣି ମନ ମଧ୍ୟରେ ଆଙ୍କିରଖିବା ପ୍ରୟୋଜନୀୟ ।

ବାହାରେ ଦୁଇଟା ଜିନିଷ ଅଛି—ପ୍ରକୃତି ଏବଂ ମନୁଷ୍ୟ ସମାଜ । ଜଣେ ଇଂରେଜ ଲେଖକ କହିଥିଲେ—"A man is the proper study of man", ମନୁଷ୍ୟର ପଢ଼ିବା ବିଷୟ ମନୁଷ୍ୟ । ଗୋଟିଏ ଲୋକର ଜୀବନକୁ ଆଲୋଚନା କରି, ତାକୁ ଭଲ ଭାବରେ ଲକ୍ଷ୍ୟ କରି—ତା ଭିତରୁ ସୁନ୍ଦର ଓ ଅସୁନ୍ଦର ବାହାର କରି ନେବା ଯେତେ କଷ୍ଟକର, ମନୁଷ୍ୟ ସମ୍ବନ୍ଧରେ ଶହେଖଣ୍ଡ ବହି ପଢ଼ିବା ତା ଅପେକ୍ଷା ବେଶ ସହଜ; ମାତ୍ର କମ୍ ଉପାଦେୟ । ମୋର, ତୁମର, ତାଙ୍କର ଏ ସଂସାରରେ କାମ କଣ ? ପେଟ ପୋଷିବା ଆଉ ପରର ଚୁଗୁଲି କରିବା । ତୁମେ, ମୁଁ, ସେ, ଯେତେବେଳେ ଏକାଠେଇ ହେଉ—ସେତେବେଳେ କଣ ଆମେ କାଠଯୋଡ଼ି କୂଳରେ ସନ୍ଧ୍ୟାବେଳଟା କମିତି ଦିଶେ ବା କୋଣାର୍କ ପାଖରେ ସୂର୍ଯ୍ୟ ଉଦୟଟା କମିତି ଦିଶେ, ଏ ବିଷୟରେ କଥାବାର୍ତ୍ତା ହଉଁ ? ଯଦି ବା ସେ କଥା ପଡ଼େ ତାହେଲେ "ଆଃ, କି ସୁନ୍ଦର—ଏଇ ଅକ୍ଷର ଦୁଇଟାରେ ସେ କଥା ତୁଟିଯାଏ । ତାପରେ ପଡ଼ିଯାଏ ସେଇ ଅସରନ୍ତି କଥା—ରାମ ସେ ଟୋକାଟା ପଛରେ କମିତି ଗୋଡ଼େଇଥିଲା, ଶ୍ୟାମଙ୍କ ଝିଅ ତାଙ୍କୁ କମିତି ଚାହିଁଲା, ହରି କମିତି ମିଛ ଭିତଙ୍ଗ କରୁଥିଲା, ମାଗୁଣି କମିତି ଲାଞ୍ଚ ଖାଇଲା" ଇତ୍ୟାଦି ।

ମନୁଷ୍ୟ ଜୀବନର ଏହି ଯେ ସ୍ୱାଭାବିକ ବ୍ୟବହାର, ଯା ମୂଳରେ ଅଛି ସେଇ ଅନ୍ୟକୁ ପଢ଼ିବାର ବା ଆଲୋଚନା କରିବାର ପ୍ରବୃତ୍ତି । ତୁମ ଆମ ଭଳିଆ କ୍ଷୁଦ୍ର ଜୀବ-ମାନେ ଅପରର ଦୁର୍ଗୁଣଟିକୁ ବାଛିନେଇ ଅଥବା ତାର କୌଣସି କଥାରେ ଗୋଟାଏ ଦୁର୍ଗୁଣର ଗନ୍ଧଟା କଳ୍ପନା କରି ବସୁଁ । କବି ବା ଲେଖକ ତାର ପ୍ରତ୍ୟେକ କାର୍ଯ୍ୟରେ ଭଲ ମନ୍ଦ ଦୁଇଟାକୁ ବାଛି ବସେ, ସେ କାହିଁକି କଣ କଲା, ତାହାର ପ୍ରକୃତ ମୂଳ କାରଣଟାକୁ ଖୋଳି ତାଡ଼ି ବାହାରକରିବାକୁ ଯତ୍ନ କରେ । ସେହି ହେତୁରୁ କବିର ଜୀବନଟା ସବୁବେଳେ ସବୁଦିନେ ନିଷ୍ଫଳ ଯାଇଚି । ବାବୁ ହେ, ସଂସାରରେ ସଫଳ ହେବାପାଇଁ, ଧନଜନ, ଗୋପଲକ୍ଷ୍ମୀ ଯେନି ଘର କରିବାକୁ ମନଥିଲେ ତୁମେ ଇଂରେଜ ନୌସେନାପତି ନେଲସନ୍‌ଙ୍କ ଭଳି ଗୋଟିଏ ଆଖି ବୁଜିଦେଇ ଆଉ ଗୋଟିଏ ମାତ୍ର ଆଖିରେ ପରକୁ ଦେଖ । ଦେଖ ଯେ ରାମ ହୁଏତ ଭଲ, ନ ହେଲେ ମନ୍ଦ । ରାମ ଦେଲା ପରି ତା ଭିତରେ ଭଲ ମନ୍ଦ ଦୁଇଟାଯାକ ଦେଖନାହିଁ । ତାହେଲେ ତୁମେ ଚଳିପାରିବ ନାହିଁକି ସେ ତୁମକୁ ଭଲପାଇବ ନାହିଁ । କିଏ କହେଁ ଯେ ତାର ଜୀବନଟା ମହାଶୂନ୍ୟ, ନିରାଟ ବ୍ୟର୍ଥତା ହେବ ? ମୁଁ ଯଦି ଭଲ ଆଉ ମନ୍ଦ ଦୁଇ କଥା ହୁଏଁ, ତାହେଲେ ତ ମୋର ଭଲକୁ ମନ୍ଦ କଟିଗଲା । ମୋର ଆଉଁ ରହିଲା କଣ ? ଖାଲି ଗୋଟାଏ ଶୂନ୍ୟ, ଗୋଟାଏ ବ୍ୟର୍ଥତା । ନା ବାବୁ, ମୁଁ ବରଂ ମନ୍ଦର ପର୍ବତ ହେବି, ନହେଲେ ମଧୁର ସାଗର ହେବି । କିନ୍ତୁ ନିରାଟ ସମତଳ ପଡ଼ିଆ ଭୂଇଁ ହେବନାହିଁ । ହିଟ୍‌ଲର୍‌ମାନ ତାଙ୍କ ନିରାଟ ନୃଶଂସତାରେ ଗର୍ବ ଅନୁଭବ କରନ୍ତି, ମୁସୋଲିନି ତାଙ୍କର ସ୍ୱାର୍ଥପରତାରେ ଆନନ୍ଦ ଅନୁଭବ କରନ୍ତି, ଗାନ୍ଧି ତାଙ୍କର ଋଷିତ୍ୱରେ ବିଭୋର ଥାନ୍ତି । ଏଇ ହେଲା ସାଂସାରର

ଜୀବନ । କିନ୍ତୁ କବି—ସେ ତ ଆଉ ଏ ସଂସାରର ନୁହେଁ, ସେ ଯେ ନନ୍ଦନକାନନର ଅପ୍‌ସରା—ଏ ମର୍ତ୍ତ୍ୟଭୂମିରେ ପକ୍ଷୀକଟା ଜଟାୟୁ ପରି ଛଟପଟ ହୁଏ, ମାତ୍ର ନିଜର ଦେବତ୍ୱ ଭୁଲିପାରେ ନାହିଁ । ସେ ସୁମେରୁ ପର୍ବତର ଉଚ୍ଚ ଶିଖରରେ ବସି ମନୁଷ୍ୟର ଜୀବନ ଆଲୋଚନା କରେ, ଭଲ ମନ୍ଦ ବାଛିନିଏ, ମନୁଷ୍ୟକୁ ଚହ୍ନିନିଏ, ଏହି ବିରାଟ ବିଶ୍ୱ ସଂସାରରେ ଏହି ମନୁଷ୍ୟ ବୋଲି କ୍ଷୁଦ୍ରକୀଟର ସ୍ଥାନ ନିରୂପଣ କରିପକାଏ । ଚିତ୍ରକାର ଯେପରି ଲୋକର ମୁହଁରୁ, ଆଖିର ଝଲସରୁ ଅଧର ଭଙ୍ଗୀରୁ ତାର ହୃଦୟ ବୁଝିନିଏ, କବି ସେହିପରି ମନୁଷ୍ୟର କାର୍ଯ୍ୟକଳାପରୁ, ତାହାର କଥାବାର୍ତ୍ତାରୁ ତାର ହୃଦୟ ଜାଣିପାରେ । ତାର କିଛି କାମରେ ଆସେ ସେ ? କିଛି ଆସେନାହିଁ । ସଂସାରୀ ଦୃଷ୍ଟିରେ ତାର ଜୀବନ ନିରର୍ଥକ । ସେକ୍‌ସପିୟର, ମିଲ୍‌ଟନ, ସେଲି, କିଟସ୍, ଓ୍ୱାର୍ଡସ-ଓ୍ୱାର୍ଥ, ବାଇରନ୍, ସ୍ୱିନବର୍ଣ୍ଣ, ବ୍ରାଉନିଂ, କାଳିଦାସ, ଭବଭୂତି, ବାଣ, ରାମଲିଙ୍ଗସିଂହାର, ଦୀନକୃଷ୍ଣ, କବିସୂର୍ଯ୍ୟ, ଗୋପାଳକୃଷ୍ଣ, ମାଇକେଲ ମଧୁସୂଦନ ନବୀନ ଏ ଯେତେ ତୁମେ ଦେଖିବ—ସେ ସମସ୍ତଙ୍କର ଜୀବନ ସଂସାରୀ ଦୃଷ୍ଟିରେ ନିତାନ୍ତ ଅସାର । କିନ୍ତୁ କବି ଦୃଷ୍ଟିରେ ସାର ଅସାର କିଛି ନାହିଁ । ଏ ବିଷୟରେ ମନୁଷ୍ୟ ଜୀବନ ଆଲୋଚନା କରିବା ତାହାର କର୍ତ୍ତବ୍ୟ, ତା ଜୀବନର ଏକ ଅଙ୍ଗ—ସେ କରିବ । ତାର ଜୀବନ ସେ । ସେଥିପାଇଁ ସେ ସମାଜରେ ମିଶେ, ମନୁଷ୍ୟ ସାଙ୍ଗରେ ପ୍ରୀତି କରେ । ତୁମେ ହୁଏତ ଏଠି କହିବ, ଏ ସବୁ ମିଛ କଥା, କାହିଁକି ନା, ସେଲି ଆଉ ବାଇରନ୍ ସମାଜ ଛାଡ଼ି ସ୍ୱିଜରଲଣ୍ଡ ହ୍ରଦ ପାଖରେ ଲୁଚି ରହିଥିଲେ, ଓ୍ୱାର୍ଡସଓ୍ୱାର୍ଥ ଲଣ୍ଡନ ସହର ଛାଡ଼ି ହ୍ରଦ ଜିଲ୍ଲାରେ (lake district) କୁଡ଼ିଆ ଘର କରି ରହିଥିଲେ, ରବୀନ୍ଦ୍ରନାଥ କଲିକତା ଛାଡ଼ି ବୋଲପୁର ଶାନ୍ତିନିକେତନରେ ରହିଚନ୍ତି । ଯେ ସବୁ କଥା ମୁଁ ଜାଣେ । ଆଉ ମଧ୍ୟ ଜାଣେ ଓମାରଙ୍କ ହୃଦୟର ସେହି ଚିରନ୍ତନ ଅଭିଳାଷ—ପ୍ରିୟା ପାଖରେ ଥିବ, ସାକୀ ବୋତଲ ବଢ଼ାଇଦେଉଥିବ, ନୀରବ କୁଞ୍ଜ ତଳେ, ନିର୍ଜନ ପ୍ରଦେଶରେ କବି ବସି ସାକୀର କୋଡ଼ରେ ଢଳୁଥିବ । କିନ୍ତୁ କବିର ସେ ଅବସ୍ଥା ଆସେ କେତେବେଳେ ? କବି ଆଦ୍ୟ ଯୌବନରେ ସଂସାରରେ ମିଶେ । ସଂସାର ଦେହରେ ନିଜର ଦେହ ମିଶାଇଦିଏ । ସଂସାରର ହୃଦୟରେ ନିଜର ହୃଦୟ ମିଳାଇଦବାକୁ ଚେଷ୍ଟାକରେ । ଦେବତା ସେ, ଦେବତ୍ୱର ଭାବନେଇ ଆସେ ଏ ସଂସାରକୁ । ଦେବତାର ଉଚ୍ଚ ମନରେ ସେ ସଂସାରଟାକୁ ଦେଖେ । ସେଲି ଭାବୁଥିଲେ, ହ୍ୱାଇଏଟ୍ ସ୍ୱର୍ଗର ଅପସରା, ଦେବତ୍ୱର ଭଣ୍ଡାର । ତାଙ୍କ ସହିତ ମିଶି ଦେଖିଲେ ସେ ଦେବତା ଗୋଟାଏ ମାଟି ଢିଅ । ଗୋପାଳକୃଷ୍ଣ ତାଙ୍କ ପ୍ରଣୟିନୀଙ୍କି ଭାବୁଥିଲେ—

ରାଧାପରି ରାଧା ସିନା ରେ ସଙ୍ଗିନୀ
ରାଧାପରି ରାଧା ସିନା
ତ୍ରିଭୁବନ ମାତରକ ଅଛନ୍ତି ଯେତେକ
ସର୍ବେ ପିତଳ ସେ ସୁନା

କିନ୍ତୁ ସେ ମୋହ ତୁଟିଗଲା ଅଳ୍ପକେ । ତାପରେ କବି ମନକୁ ଡାକି କହିଲେ—

"ଭ୍ରମନା ଭବ ଭୋଗ ଲୋଭରେ, ଲଭି ଧନ ପ୍ରମଦାରେ ।" ଏହିପରି ସ୍ୱରରେ କବି ଯେତେବେଳେ ଠକିହୁଏ, ସେ ଶିଖେ ଯେ, ଏଇ ଯେ ମନୁଷ୍ୟ ଜାତି, ଏଗୁଡ଼ାକ ମାଙ୍କଡ଼ବିଶେଷ । ସେତେବେଳେ ସଂସାର ପ୍ରତି ସବୁ ମାୟାମମତା ଏଡ଼ିଦେଇ ନିଜ ନିଜ ସ୍ଥାନରେ ନିଜ ଭିତରର ସୌନ୍ଦର୍ଯ୍ୟରେ ନିଜେ ବୁଡ଼ିରହେ । କିନ୍ତୁ ଏ ଅବସ୍ଥାକୁ ଆସିବା ଆଗରୁ କବି ମନୁଷ୍ୟ ଜାତିକୁ ଭଲକରି ପଢ଼ି ଶୁଣି ନିଏ । ଅବଶ୍ୟ ବିଶ୍ୱସଂସାରଟା ବୁଲି ଗୋଟି ଗୋଟି କରି ମନୁଷ୍ୟମାନଙ୍କୁ ଚିହ୍ନିନବାର ସୁଯୋଗ ତାର ଘଟେନାହିଁ । ସେପରି କରିବା ମଧ୍ୟ ଦରକାର ନାହିଁ । ଖିଚିହାଣ୍ଡିରୁ ଗୋଟାଏ ଚିପିଲେ ଯାହା, ପାଞ୍ଚଟା ଚିପିଲେ ମଧ୍ୟ ସେଇଆ ।

ତାପରେ କବି ମନୁଷ୍ୟସମାଜରେ ଯାହା ଦେଖେ ତାକୁ ପ୍ରକୃତିର ରୂପ ସାଙ୍ଗରେ ତୁଳନା କରେ । ଦେଖ, ମନୁଷ୍ୟ କେତେଦୂର ପ୍ରକୃତି ପାଖରେ ନିଜକୁ ବିକି ଦେଇଚି, କେତେଦୂର ଅବା ପ୍ରକୃତିର ରୁଦ୍ରମୂର୍ତ୍ତି ପାଖରେ ନିଜର ବ୍ୟକ୍ତିତ୍ୱ ବଜାଏ ରଖିପାରିଚି । ଏହିଥିରେ ହିଁ ମନୁଷ୍ୟର ବାହାଦୁରି, ମନୁଷ୍ୟର ଦେବତ୍ୱ । ସେହି ହେତୁରୁ କବି ବା ଭାବୁକ ଏହାକୁହିଁ ଦେବତ୍ୱର ମାପକାଠି କରି ଧରିନେଇଚି । ଯେତେବେଳେ ସେ ଏ ଦୁଇଟା କାମ କରିପାରେ ସେତେବେଳେ ତାର ଜୀବନ ସମାଲୋଚନା (Criticism of life) ସମ୍ପୂର୍ଣ୍ଣ ହୁଏ । ସେତେବେଳେ ତାର କବିତା ପିଲ୍ହର ନିଜ ଗୀତ ନ ହୋଇ ଅପ୍‌ସରାର ସଙ୍ଗୀତରେ ସଂସାରର ଲୋକଙ୍କୁ ମୁଗ୍‌ଧ କରେ । ସେତେବେଳେ ସେ ବୋଧକରିପାରେ ଜୀବନରେ ସତ କେଉଁଟା, ଅସତ କେଉଁଟା, ଆଉ ମିଛ କେଉଁଟା । ଏ ଭାବ ଆସିଚି ଯାହାର, ଏ ଜୀବନ ସମାଲୋଚନାରେ ସେ ଯେ ବାହାଦୁରି କରିପାରିଚି, ତାର ଭାଷା ସେତେ ଲଳିତ, ସେତେ ଜୀବନ୍ତ, ସେତେ ଛବିଳ ହବ । ସଙ୍ଗୀତ ଓସ୍ତାଦମାନେ କହନ୍ତି, ଅଙ୍ଗେ ନ ନିଭେଇଲେ କୌଣସି ଗାୟକର କଣ୍ଠରେ ସୁସ୍ୱର ମୂର୍ଚ୍ଛନା ଆସିବ ନାହିଁ । ଗୀତର ଭାବ ସାଙ୍ଗରେ ନିଜ ଅନ୍ତରର ଭାବ ଏକ ନ ହେଲେ ଗାୟକ ଗୀତର ଶ୍ରୋତାମାନଙ୍କୁ ମତୁଆଲ କରିପାରିବ ନାହିଁ । ସେହିପରି ସାହିତ୍ୟରେ 'ଅନୁଭବ' ନ ହେଲେ ସାହିତ୍ୟର ଭାଷା ଓ ଭାବ ସୁନ୍ଦର ଓ ଦେବଦୁର୍ଲ୍ଲଭ କରିହେବ ନାହିଁ ।

ତେବେ ଯେପରି କେହି ନ ଭାବନ୍ତି ଯେ, କବି ବା ସାହିତ୍ୟିକ ଚୌକି ପକେଇ ବସି, କାଳି, କଲମ, କାଗଜ ଧରି ପ୍ରକୃତି ଓ ମନୁଷ୍ୟ ସମାଜ ସାଙ୍ଗରେ ଗୋଟାଏ ଖିଅମତ କସରତ କରେ । କବି ପକ୍ଷରେ ମନୁଷ୍ୟ ସମାଜର ବାହିଗିରି ଓ ପ୍ରକୃତିର ରଙ୍ଗଭଙ୍ଗି ମଧ୍ୟରେ ଗୋଟାଏ ବୁଝାପଢ଼ା କରିବା ଯେପରି ସହଜ, ନିଜର ଭାଷାକୁ ଛବିଳ ଓ ଜୀବନ୍ତ କରିନେବା ମଧ୍ୟ ସେହିପରି ସ୍ୱାଭାବିକ । ତେବେ ସମସ୍ତେ ତ, ଆଉଜନ୍ମରୁ କବି ହୋଇ ନଥାନ୍ତି ! କେତେକ ସାହିତ୍ୟିକ ଅଛନ୍ତି, ଯେଉଁମାନଙ୍କୁ କି ଚେଷ୍ଟା କରି

ସାହିତ୍ୟିକ ହେବାକୁ ପଡ଼େ । ଆଜିକାଲି କବିତା, ଉପନ୍ୟାସ, ଗଳ୍ପ ଇତ୍ୟାଦି ଲେଖି ଶିଖିବାପାଇଁ ଇସ୍କୁଲ ହେଲାଣି । ଏ ଇସ୍କୁଲଗୁଡ଼ାକ ଏହି କାଗଜ ସାହିତ୍ୟସେବୀଙ୍କ ପାଇଁ । ଏହି କାଗଜ ସାହିତ୍ୟିକଙ୍କ ସେହି ହେତୁରୁ ଭାଷା କି ରକମ ଛଇଳ ଓ ଜୀବନ୍ତ କରିବାକୁ ହୁଏ, ତାହା ଶିଖିବାକୁ ପଡ଼େ । ଅତଏବ, ସେ ବିଷୟରେ ପଦେଅଧେ କହିବା ବୋଧହୁଏ ଦରକାର ।

ଭାଷାକୁ ଛଇଳ ଏହି ତିନି ପ୍ରକାରରେ କରାଯାଏ—ଉପମା, ଶବ୍ଦଚୟ ଓ ସାଧାରଣ ଭାଷା । ଏ କଥା ମୁଁ ଆଗରୁ କହିଯାଇଛି । ଉପମା ବ୍ୟବହାର କଲାବେଳେ ଗୋଟାଏ କଥା ମନେରଖିବାକୁ ପଡ଼ିବ । ତୁମେ ଗୋଟିଏ ସତ ଗପ ତୁମ ସାଙ୍ଗ ହରିକୁ କହିଲ । ସେ ଶୁଣି ଭାରି ଖୁସିହେଲା, ତା ମନରେ ଭାରି ଫୁର୍ତ୍ତି ଆସିଲା । ସେଇ କଥାଟାକୁ ତୁମେ ପୁଣି ତହିଁଆରଦିନ ତାକୁ କହିଲ । ତାର ଆଉ ସେ ଫୁର୍ତ୍ତି ରହିବ ନାହିଁ କି ସେ ସୁଖ ରହିବ ନାହିଁ । ତୁମେ ଯଦି ସବୁଦିନେ ଅକାଳେ ସକାଳେ ସେ କଥାଟା ତାକୁ କହ, ତାହେଲେ ଶେଷରେ ସେ ତୁମକୁ ମାରିବାକୁ ଗୋଡ଼େଇବ । ସେହିପରି ଉପମା । ଯେ ଉପମା ଅନ୍ୟ କବି କହିଯାଇଛି, ସେହି ଉପମାକୁ ପୁନରାବୃତ୍ତି କରିବାରେ କବିତା ଜୀବନ୍ତ ହୁଏ ନାହିଁ ଏବଂ ବହୁଶ୍ରୁତ ହେତୁ ତାର ଛଇଳତା ନଷ୍ଟ ହୁଏ । ଧରନ୍ତୁ ରାଧାନାଥଙ୍କର—

"ମଗଧେ କଳିଙ୍ଗେ ଅଙ୍ଗେ ବଙ୍ଗେ ପୁଣି
ଦେଖିଛୁ କେତେ ସୁନ୍ଦରୀ
ଏ ଯୋଷା ଚରଣ- ଘଷା ପଥରକୁ
ଅଛନ୍ତି କି କେହି ସରି ?"

ଏଇକଥା ଉପେନ୍ଦ୍ରଭଞ୍ଜ କହିଚନ୍ତି, ତାଙ୍କ ପରେ ଅନ୍ୟାନ୍ୟ କବିମାନେ କହିଚନ୍ତି । ସେଇ କଥାଟା ରାଧାନାଥଙ୍କ ମୁହଁରୁ ଶୁଣି ମନରେ ବେଶି କିଛି ଆମୋଦ ହେଉନାହିଁ । ଅବଶ୍ୟ କବିପ୍ରଥା କଷ୍ଟ । କବି ଏତେ ଏତେ କଥା କହିଯାଇଚନ୍ତି ଯେ, ଆଉ ନୂଆ ଉପମା ମଧ୍ୟ ସହଜ ଜିନିଷ ନୁହେଁ । କଥାରେ କହନ୍ତି 'ବାଣୋଚ୍ଛିଷ୍ଟ ମିଦଂ ଜଗତ୍' । ସେହିହେତୁରୁ ମୁରାରି ବ୍ୟସ୍ତହୋଇ ଆଉ କିଛି ନ ପାଇ ମୁହଁକୁ 'ଠାକାର' ସଙ୍ଗେ ତୁଳନା କରିଥିଲେ । ବଡ଼ପଣ୍ଡିତ କି ନା, ମୁହଁକୁ ଅନ୍ୟ କବିମାନେ ଚନ୍ଦ୍ରସହିତ ବର୍ଣ୍ଣନା କରିଯାଇଚନ୍ତି । ଚନ୍ଦ୍ରଟା କଣ ! ନା, ଗୋଲ, ଆଉ ଗୋଲ ଜିନିଷ ସଂସାରରେ କଣ ଅଛି ? ନା 'ଠ' । ଅତଏବ ମୁହଁଟା 'ଠାକୃତ' । ଜାହିଁକି ବାବୁ, କିଛି ତ ପାରିଥାନ୍ତ 'ଶକଟ ଚକାକୃତ' । ମୁରାରି ହେଲେ ପଣ୍ଡିତବୋକାଙ୍କର ଗୋଟାଏ ବଡ଼ ନମୁନା । ପୁରୁଣା କବିମାନେ ଅବଶ୍ୟ ବହୁତ ଉପମା ବ୍ୟବହାର କରିଯାଇଚନ୍ତି; କିନ୍ତୁ ତା'ଲାଗି ହତାଶ ହେବାର କିଛି କାରଣ ନାହିଁ । ତାଙ୍କ ବେଳେ ସଂସାର ଯାହା ଥିଲା, ବର୍ତ୍ତମାନ ତା ଅପେକ୍ଷା ସଂସାର ବହୁତ ଭିନ୍ନ ହୋଇଯାଇଛି । ଯାହା ତାଙ୍କ ଆଖି ଆଗରେ ଥିଲା, ତା ଅପେକ୍ଷା ବହୁତ ବେଶୀ ଆମ ଆଖି ଆଗରେ ଅଛି । ଟିକିଏ ଇଚ୍ଛା କଲେ, ଆମର

ସ୍ୱଭାବସୁଲଭ ପରମ୍ପରାକୁ ଗ୍ରହିବା ଅଭ୍ୟାସଟି ଗ୍ରନ୍ଥ ଟିକଏ କଷ୍ଟକର ନିଜ ଭିତରରୁ ଗ୍ରହିଲେ, ନୂଆ ଉପମାର ଅଭାବ ହେବନାହିଁ । ଯଦି ନିତାନ୍ତ ସେ କଥା ସମ୍ଭବ ନ ହୁଏ, ତାହେଲେ ଉପେନ୍ଦ୍ରଭଞ୍ଜଙ୍କ ନାଡ ଧରିଲେ ହବ । ଭଞ୍ଜେ ଦେଖିଲେ ଯାହା ହୋଇଚ ତା'ଠାରୁ ନୂଆ କିଛୁ କରିବା କଷ୍ଟକର ସେଇ ଧରଣରେ । ଅଥଚ ପାଠକର ମନ ଟାଣିବାକୁ ହବ । ସେଥି ହେଉରୁ ସେ ଏପରି ଭାଷା ଲେଖିଲେ ଯେ—ତାହା ଗୁଆଁର ପାଠକ ପ୍ରତି ଗୋଟାଏ ଯୁଦ୍ଧ ଡାକରା ।

"ବାଷ୍ଟୁପଦୀ ବାଷ୍ଟୁପଦ, 'ଗ୍ର'କାର ଭେଦ ଶବଦ
ତରଣୀର ଗତାଗତ ତହିଁ ଉଚତ ।"

ପଦଟା ପାଠକ ଆଖିରେ ପଡ଼ିଗଲା । ପାଠକ କହିଲେ, 'ଏ, କ'ଣଟା ଲେଖିଲ ହେ ? ଦେଖତ ହେ' । ପାଠକ ଚକା ପକାଇ ଅଣ୍ଟାଭିଡ଼ି ବସିଲେ । ନିଜର ବୁଦ୍ଧି ଓ ପାଣ୍ଡିତ୍ୟ ଲଗାଇ ପଦଟାରୁ ଅର୍ଥ ବାହାର କଲେ । ମନରେ ଗୋଟାଏ ବଡ଼ ଆନନ୍ଦ ହେଲା, ଯେପରି ସେ ଗୋଟାଏ ଗଡ଼ ଜିଣି ଆସିଚନ୍ତି । ଭଞ୍ଜଙ୍କର ସାହିତ୍ୟ ଲେଖିବା ସାର୍ଥକ ହେଲା । ଅବଶ୍ୟ ଆଜିକାଲି ଦାନ୍ତଭଙ୍ଗା ଶବ୍ଦନେଇ ସାହିତ୍ୟ ଲେଖିଲେ କେହି ବୁଝିବେ ନାହିଁ । କିନ୍ତୁ ଦାନ୍ତଭଙ୍ଗା ଶବ୍ଦ ନଦେଇ, ଡାନ୍ତଭଙ୍ଗା ଓ ତାଳୁ ଫଟାଭାବ ନେଇ ସାହିତ୍ୟ ଲେଖିଲେ ଆଜିକାଲି ବହୁତ ଆଦର ମିଳିବ । ଯେ ଜାଅନ୍ତା ଓ ଛବିଲ ଭାଷାରେ ସଜାଇ ମିଛକଥାକୁ ସତ କରି ଥୋଇ ନ ପାରିବ, ସେ ବର୍ଣ୍ଣିତସଙ୍କ ପରି ସତ ଭାବକୁ ମିଛ ଭାବର ହାଉଦା ଉପରେ ସଜାଇ ଥୋଇପାରିଲେ ମଧ୍ୟ ସଫଳ ହୋଇପାରିବ ।

ତାପରେ ଛଇଳା ଭାଷାର ଦ୍ୱିତୀୟ ଉପାୟ ଶବ୍ଦଚିତ୍ର । ଶବ୍ଦଚିତ୍ର ବୋଇଲେ ବର୍ଣ୍ଣନା ଚିତ୍ର, ଅର୍ଥ—ଗୋଟିଏ କଥାକୁ ପାଞ୍ଚ କଥାରେ ବର୍ଣ୍ଣନା କରି ତାହାର ଗୋଟାଏ ଛବି ପାଠକ ମନରେ ଠିଆରି କରିବା । କିନ୍ତୁ ଶବ୍ଦଚିତ୍ର ମାନେ ଗୋଟାଏ ଶବ୍ଦଦ୍ୱାରା ଗୋଟାଏ ଭାବର ଜୀବନ୍ତ ଚିତ୍ର କରି ଥୋଇବା । ଯେପରି—

"ଚୋଳି ମୁଁ ଧଇଲେ ଗୋଳି ହୋଇଯାଉ ରୁହ ।" ଏ ସ୍ଥଳରେ 'ଗୋଳି ହୋଇଯାଉ' ଶବ୍ଦଦ୍ୱାରା କବି ଖାଲି କୃଷ୍ଣଙ୍କର ନୁହେଁ, ବାଳକ ସଂସାରର ସ୍ୱାଭାବିକ ଅଳିର ଗୁଣ ସୁନ୍ଦର ଭାବରେ ଚିତ୍ର କରି ଦେଇଅଛନ୍ତି । ସେହିପରି ଟେନିସନଙ୍କର "Ring out the old, Ring in the new."



# ମିଛକଥା (୩)

ଶବ୍ଦଚୟନରେ ବାହାଦୁରୀ ଦେଖାଇବାର ଇଚ୍ଛା ହେଲେ ଲେଖକର ନିଜ ଭାଷା ଉପରେ ଯଥେଷ୍ଟ ଦଖଲ ଥିବା ଦରକାର । ପ୍ରତ୍ୟେକ ଲୋକ ନିଜ ଭାଷା କିଛି କିଛି ଜାଣେ । ଦାଣ୍ଡର ରଦୁଆ ପାଣ ଓ ମଙ୍ଗୁଳିଆ ହାଡ଼ି ଉଣା ଅଧିକେ ନିଜ ମନର କଥା ନିଜ ଭାଷାରେ କହିପାରେ, ଆମ୍ଭେମାନେ ତା'ଠାରୁ ବେଶୀ କହିପାରୁ କି ? ଯଦି ଶାମା ପ୍ରଧାଣ ଓ ଆମ ଲବ୍‌ଧପ୍ରତିଷ୍ଠ ସାହିତ୍ୟିକମାନଙ୍କ ମଧ୍ୟରେ ଗୋଟାଏ ପରୀକ୍ଷା କରାଯାନ୍ତା ଯେ, କିଏ ନିଜ ଜାତିର ଭାଷା କେତେ ଜାଣେ, ଆଉ କିଏ ନିଜ ଜାତିର ବିଶୁଦ୍ଧ ଭାଷାରେ ନିଜର ଭାବ କେତେ ଜଲ୍‌ଦି ଓ ତତ୍ପରତାର ସହିତ ପ୍ରକାଶ କରିପାରେ— ତା'ହେଲେ ଦେଖନ୍ତୁ ଶାମା ପ୍ରଧାଣ ଶହେରୁ ନବେ ପାଇଲେ, ଆମ ଲବ୍‌ଧପ୍ରତିଷ୍ଠ କବିବର, ସାହିତ୍ୟ ସମ୍ରାଟ, ଲେଖକ ମଣ୍ଡିତମଣିମାନେ ଶହେରୁ ପଚିଶ ଉପରକୁ ଯାଇ-ପାରନ୍ତେ ନାହିଁ । ଆମର ଭାଷାଜ୍ଞାନ ଏତେ ଦୂର, ଆଉ ଆମେ ଉଣ୍ଡିମ ଦେଇ ବୁଲୁ କ'ଣ ନା, ଅମେ ଜାତୀୟ ସାହିତ୍ୟ ଲେଖୁ । ଦୁଃଖ କରୁ ଯେ, ଏ ଦେଶରେ ସାହିତ୍ୟର ଆଦର ନାହିଁ । ହାୟରେ, ହତଭାଗ୍ୟ ଦେଶ ! ବିଦେଶୀ ଆସିଲେ, କହିଲେ, 'What damned Country' ତାକୁ ପିଠିକି ପକାଇଦେଲୁ । ନିଜର ଲୋକେ କହିଲେ ପ୍ରକାରାନ୍ତରେ ମଧ୍ୟ ସେଇଆ, ତାକୁ ମଧ୍ୟ ପିଠିକି ପକାଇଦେଲୁ ।

ଆମର ଅବସ୍ଥା ହେଲା ଏଇ ଯେ—ଆମେ ନିଜ ମନ କଥା ନିଜ ଭାଷାରେ କହିପାରୁନାହିଁ, ଅଥଚ ପାଠଶାଠ ପଢ଼ିକୁ—କେତେଗୁଡ଼ାଏ ନୂଆ ଭାବ, ଅଜଣା କଥା, ପ୍ରାଣ ମତାଣିଆ ଧାରଣା ଆମଦାନୀ କରନ୍ତି । ସେଗୁଡ଼ାକ ବାହାରିପଡ଼ିବା ପାଇଁ ପେଟ ଭିତରୁ ଉବୁକେଇଉଠୁଚି । ଦେଶବାସୀଙ୍କୁ ନୂଆକଥା ଶିଖାଇ ପାଞ୍ଚ ସାତ ହାତ ଉପରକୁ ଉଠାଇ ଦେବାର ଇଚ୍ଛା ସାଙ୍ଗେ ସାଙ୍ଗେ ନିଜ ପାଣ୍ଡିତ୍ୟର ବଢ଼େଇ ଦେଖାଇ ହେବାର ଇଚ୍ଛା ଆମକୁ କାହିଲା କାହିଲା କରିପକାଉଚି । କିନ୍ତୁ ଉପାୟ କ'ଣ ? ନିଜ ଭାଷାରେ ତ ଏସବୁ କହିହେବ ନାହିଁ । ଅତଏବ ଆମର ମହାରଥୀମାନେ ସଂସ୍କୃତରୁ, ବଙ୍ଗଳାରୁ, ହିନ୍ଦୀରୁ ଓ ଉର୍ଦ୍ଦୁରୁ ସୋଡ଼ପେ ସୋଡ଼ପେ ମାଗିଆଣି ଦେଶବାସୀଙ୍କୁ ପରଶି ଦେଲେ । ଦେଶବାସୀ ଯଦି ସଂସ୍କୃତର ସେ ସୋମରସ ଓ ଇଙ୍ଗୁଦି ତେଲ, ବଙ୍ଗଳାର ସେ ଜାଉ ଖିଚୁଡ଼ି ଓ ଚଡ଼ଚଡ଼ି ଘଣ୍ଟଘାଣ୍ଟ, ହିନ୍ଦୀର ସେ ବଧେ ବଦହଳର ରୁଟି ଓ ଲଙ୍କାମରିଚ ପଣା ଏବଂ ଉର୍ଦ୍ଦୁର ସେ ଗୋମାଂସ ତରକାରୀ ପସନ୍ଦ ନ କଲେ, ତା' ହେଲେ ଦୋଷଟା ଦେଲା ଦେଶବାସୀଙ୍କର । ସେ ପୁଣି 'ମାଗି ଆଣିଲା, ଢଅଣ' । 'ଯଦି ଜଣେ ଅଧେ କେହି କହିଦେଲା, "କାହିଁକି ରେ ବାବୁ, ଆମ ଓଡ଼ିଶୀ ମହୁର, ବେସର

କାନକା, ଶାକର ଏ ଏଗୁର କ ଦୋଷ ଯେ, ସ୍ୱାଙ୍କୁ ଫୋପାଡ଼ି ଦେଇ ଆମେ ବିଦେଶୀ ଚଡ଼ଚଡ଼ି, ଚପାଚି ଖାଇବୁ ?''—ତା' ହେଲେ ବୁଦ୍ଧି ବଳରେ କେତେ ଅଣ୍ଡା ପରିହାସ କେତେ ହସ କରିବୁକ, କେତେ ନାକଟେକା ମୁହଁମୋଡ଼ା—କ'ଣ ନା ଏଇଟା ନିତାନ୍ତ ଅଜବ ଗଣ୍ଡମୂର୍ଖଟା, ସ୍ୱାର ମନଟା ଯେପରି ଛୋଟ, ବୁଦ୍ଧିଟା ସେହିପରି ମୋଟ । ଋତୁ ଯେଉଁଠାରୁ ପାଇବ, ଅଳିଆ ଗଦାରୁ ହେଲେ ମଧ୍ୟ ଆଣିବ । ଆମର ନଥିଲେ ପଡ଼ଶା ଘରୁ ଷ୍ଟେଲକରିବାରେ ବା ମାଗି ଆଣିବାରେ କିଛି ମାତ୍ର ଦୋଷ ନାହିଁ । ଅନ୍ୟମାନେ କରୁଚନ୍ତି, କରି ବଡ଼ଲୋକ ହୋଇଚନ୍ତି । ଅତଏବ ଆମେ ନ କରିବୁ କାହିଁ ? ବିଶେଷରେ ବିଦେଶୀ ହୋଇ ଯଦି ସେ ଓଡ଼ିଆ ସାହିତ୍ୟ ଲେଖିଲେ, ତା'ହେଲେ ତାଙ୍କ ଭାଷାରେ ବିଦେଶୀ ଶବ୍ଦ ବା ବିଦେଶୀ ପଦ୍ଧତି ଦେଖି ତାକୁ ଦୂଷି ବସିବା ନିତାନ୍ତ 'ଖାଇ ନନ୍ଦା, ପତର ମାରୁ'ର କଥା ହେବ···ଇତ୍ୟାଦି ଇତ୍ୟାଦି । ଏ କଥା ଉପରେ ଆଉ କଥା ନାହିଁ । ଯେଉଁମାନେ କଥାରେ କଥାରେ ଏ ଦେଶ ସେ ଦେଶ ଭାବ ଏ ଜାତି ସେ ଜାତି ଭାବ ଆଣି ଥୋଇବେ, 'ପାଦେ ମୋର କୋଟି ନମସ୍କାର' । ଅଥଚ କଥାଟା ଏପରି ସହଜ ଯେ, କୌଣସି ବୁଦ୍ଧିମାନ ବିବେକୀ ଲୋକ ଏ ବିଷୟରେ ଭୁଲରେ ମଧ୍ୟ ଜାତି କଥା ଆଣି ନ ପାରେ । ଓଡ଼ିଆରେ ବହି ଲେଖା ହଉଚି । ଅତଏବ ବହିର କଥା, ବର୍ଣ୍ଣନା, ଭାଷା, ସବୁ ଓଡ଼ିଆ ଲୋକଙ୍କ ଲାଏକ ହେବା ଉଚିତ । ଯଦି କୌଣସି କଥା ଓଡ଼ିଆରେ କହିବାର ଉପାୟ ନାହିଁ, ତା' ହେଲେ ବିଦେଶୀ ଶବ୍ଦ ପ୍ରୟୋଗ କରାଯାଇପାରେ । କିନ୍ତୁ ଏପରି ଭାବରେ କରାଯିବା ଉଚିତ ଯେ, ପଢ଼ାଳିମାନେ ଶବ୍ଦର ଅର୍ଥ ନ ବୁଝିଲେ ମଧ୍ୟ ବିଷୟର ଭାବଟା ଧରିନେଇପାରିବେ । ମୁଁ ଗୋଟାଏ ଉଦାହରଣ ଦଉଁ—'ଛନଛନ ହେଲା ମନ, ଅପଘନ କମ୍ପନ ।' ଏଥିରେ ପ୍ରଥମ ପାଦଟା ଯେପରି ଖାଣ୍ଟି ଓଡ଼ିଆ, ଦ୍ୱିତୀୟ ପାଦଟା ସେହିପରି ଖାଣ୍ଟି ସଂସ୍କୃତ । ଅଥଚ ମୁଁ ଦେଖିଛି କୌଣସି ଗାଉଁଲି ଲୋକର ଭାବଟା ବୁଝିନେବାରେ କଷ୍ଟ ହୁଏନାହିଁ । ସେହି ପାଦଟାକୁ ଏପରି ଭାବରେ ଲେଖ— 'ଶିହରି ଉଠିଲା ମନ, ଥରିଗଲା ତନୁ ।' ଦେଖିବ ଅଧିକାଂଶ ଗାଉଁଲି ଲୋକ କଥାଟା ବୁଝିପାରିବେ ନାହିଁ । ବିଦେଶୀ ଭାଷାର ପ୍ରୟୋଗ ଯେ ଆଗେ ଓଡ଼ିଆ ସାହିତ୍ୟରେ ନ ଥିଲା, ସେଇଟା ଯେ ଖାଲି ଏ ଯୁଗର କଳଙ୍କ, ଏ କଥା ଆଦୌ କହୁନାହିଁ । ମୁଁ କହୁଚି ଏତିକି ଯେ, ବିଦେଶୀ ଭାଷାର ବ୍ୟବହାର ଯେବେ କରିବା ନିତାନ୍ତ ଦରକାର, ତା' ହେଲେ ସେଗୁଡ଼ାକ ଓଡ଼ିଆ ଭୂଣ୍ଡରେ ଶୋଷ ପାଇଲାପରି ଓ ଓଡ଼ିଆର ପଖାଳଖିଆ ବୁଦ୍ଧିରେ ପଶିଲା ପରି ହେଉ । ଆଗକାଳରେ କବିସୂର୍ଯ୍ୟ ତାଙ୍କ ଗୀତରେ ବହୁତ ବଙ୍ଗଳା ଓ ଉର୍ଦ୍ଦୁ ଶବ୍ଦ ମିଶାଇଥିଲେ । ତଥାପି ଗାଁର ରାମା ଶାମା ଧିମାଙ୍କଠାରୁ ଆରମ୍ଭ କରି ସହରର ମିଷ୍ଟର ଆର୍ତ୍ତତ୍ରାଣ, ମିଷ୍ଟର ଲକ୍ଷ୍ମୀଧର, ମିଷ୍ଟର ବିଚିତ୍ରାନନ୍ଦ, ମିଷ୍ଟର ନିଶାମଣିଙ୍କ ପର୍ଯ୍ୟନ୍ତ କାହାରି ସେ ଗୀତ ବୁଝିବାରେ ଓ ବୁଝି ଆନନ୍ଦ ପାଇବାରେ ଟିକିଏହେଲେ କଷ୍ଟ ହେବାର ଆମେ ଶୁଣିନାହୁଁ । ତା'ର କାରଣ କ'ଣ ? ଆଉ ରାଧନାଥ, ମଧୁସୂଦନ,

ପଦ୍ମଚରଣ, କାଳିନ୍ଦୀ, ବୈକୁଣ୍ଠ, ହରିଶ୍ଚନ୍ଦ୍ରଙ୍କର ସରସ କବିତା-ପାଠୁଆ କେଉଁଟାଙ୍କର ଲାଇବ୍ରେରୀ ଗ୍ରନ୍ଥଦେଲେ ଗାଁଗହଳରେ ଏ ପର୍ଯ୍ୟନ୍ତ ପଶିପାରିନାହିଁ, ତା'ର ବା କାରଣ କ'ଣ ? ବୋଧହୁଏ ଆମର ସାହିତ୍ୟ ମହାରଥୀମାନେ କହିବେ—"ଏ ଲେଖାର ଭାବ ଉଚ୍ଚ । ଏ ଲେଖାର ଭାରସାମ୍ୟ ଉଚ୍ଚ । ମୂର୍ଖ ପଖାଳଖିଆ ଓଡ଼ିଆଗୁଡ଼ାକ ବୁଝିବେ କାହୁଁ ?" କଥାଟା ମୂଳରୁ ଶେଷ ପର୍ଯ୍ୟନ୍ତ ଅସତ୍ୟରେ ପୂର୍ଣ୍ଣ । ସାହିତ୍ୟ ଯଦି ମନୁଷ୍ୟ ଜୀବନର ଚିତ୍ର ହୁଏ, ତା'ହେଲେ କୌଣସି ସମାଜ ତା'ର ସାହିତ୍ୟର ଅନୁପଯୁକ୍ତ ହୋଇ ନ ପାରେ । ଆଉ ଯେ ସାହିତ୍ୟ ମନୁଷ୍ୟ ଜୀବନର ମୂଳଦୁଆ ଉପରେ ଠିଆ ନୁହେଁ, ସେ ସାହିତ୍ୟ ନାମ ନେବା ଅନୁଚିତ । ପରକୁ ଗାଳିଦେଇ ଓ ନିଜର ବଢ଼େଇ କରି କଥା କହିବା ବଡ଼ ସହଜ । ତା' ଆମ ଗୋପାଳପୁର ଗାଲୁଆ ମଧ୍ୟ ପାରନ୍ତି । ତା'ଲାଗି ବିଦ୍ୟା, ବୁଦ୍ଧି, ଚିନ୍ତନ ଦରକାର ନାହିଁ । ଆମର ସାହିତ୍ୟସେବୀମାନେ ସବୁ କଥା ପରି ଏ କଥାରେ ମଧ୍ୟ ଏପରି ସହଜ ପନ୍ଥା ଧରିବା ଉଚିତ୍ ନୁହେଁ । ଯଦି ନିଜର ଲେଖାକୁ ପ୍ରକୃତରେ ଲୋକପ୍ରିୟ କରିବାକୁ ଏବଂ ନିଜର ଲେଖାଦ୍ୱାରା ଜାତିର କିଛି ଉପକାର କରିବାକୁ ଇଚ୍ଛା କରନ୍ତି, ତା'ହେଲେ ସେମାନଙ୍କର ଏ ବିଷୟଟାକୁ ଖିନଭିନ କରି ପରୀକ୍ଷା କରିବା ଉଚିତ୍ । ଲୋକପ୍ରିୟ ପୁରୁଣା ସାହିତ୍ୟଠାରୁ କିଷୟରେ ଆଜି-କାଲିକାର ସାହିତ୍ୟ କିପରି ଭାବରେ ଅଲଗା ହୋଇଚି ଏବଂ କେଉଁ କାରଣରୁ ଆଜିକାଲିର ସାହିତ୍ୟ ଲୋକପ୍ରିୟ ହୋଇପାରୁନାହିଁ, ତାହା ବର୍ତ୍ତମାନ କେତୋଟା ଉଦାହରଣ ନେଇ ବୁଝିବାକୁ ଚେଷ୍ଟା କରାଯାଉ ।

ପ୍ରଥମ ଉଦାହରଣଟି ହେବ—ଭକ୍ତକବି ମଧୁସୂଦନଙ୍କର 'ଜୀବନଚିନ୍ତା' । ଏ କବିତାଟିର ମୋଟ କଥା ହେଲା—"ଏ ଜୀବନ କିଛି ନୁହେଁ, ଭୋଗ, ବିଳାସ, ଧନ, ଜନ, ଗୋପ, ଲକ୍ଷ୍ମୀ, କାମିନୀ, କାଞ୍ଚନ ସବୁ ମିଛ । ସତ ଏକା ଭଗବାନଙ୍କର ଶ୍ରୀଚରଣ ।" କବି ନାନା ଉଦାହରଣ ଦେଇ, ନାନା ଉପମା ଅଳଙ୍କାର ଖଞ୍ଜି କବିତାଟିକୁ ଲେଖିଚନ୍ତି—ଯେପରି କରୁଣ ଓ ହୃଦୟସ୍ପର୍ଶୀ ହେବ । ଠିକ୍ ସେହି ଭାବଟି ଆମର ଗୋଟିଏ ଅତି ପୁରୁଣା ଚଉତିଶାରେ ଅଛି । ବୋଧହୁଏ ପାଠକମାନଙ୍କ ଭିତରୁ ବହୁତ ଏ ଗୀତଟି ଶୁଣି ନ ଥିବେ । ସେହି ହେତୁରୁ ପଦେ ଅଧେ ଦେଲି—

"କହଇ ମନ ଆରେ ମୋ ବୋଲ କର,
କଳାଶ୍ରୀମୁଖ ବାରେ ଦେଖିବା ଚାଲ ରେ ।
କେତେଦିନକୁ ମନ ବାନ୍ଧିଛୁ ଆଣ୍ଡ,
କି ଦେଇନଥିବୁ ତୋର ଛୁଟିଲେ ଘଟରେ ?
ଖଣ୍ଡିକି ଖଣ୍ଡି ତୋର ପଞ୍ଜରକାଠି,
ଖାଉଣ ଥିବେ ଶ୍ୱାନ ଶୃଗାଳ ବାଣ୍ଟିରେ ।

ଖଟ ପଲଙ୍କେ ମନ ଶେଯାର ଶୋଭ,
ଖଳ ଦୁର୍ଗନ୍ଧ ହେବ ଏ ତୋର ଦେହୁରେ ।
ଗଲେଣି ତୋ ସଙ୍ଗରୁ ଯେତେକ ଜନ,
ଗଣ୍ଠିରେ ବାନ୍ଧନେଲେ କେ କେତେ ଧନରେ ।
ଗୁରୁ ଗୋବିନ୍ଦ ନାମ ତୁଣ୍ଡେ ନ ବୋଲୁ,
ଗଙ୍ଗ ବୋହୁଣ ସଦା ଧନ ଅର୍ଜିଲୁ ରେ ।''

ଦୁଇଟିଯାକ ଗୀତ ଏକାଠି ରଖି ପଢ଼ିଲେ, ଆପଣ ଦେଖିବେ, ଚଢ଼ଉଣାଟା ହୃଦୟର ଆବେଗଭରା ସଂସାର ବିରାଗୀ ଭକ୍ତର ଅନ୍ତରର କଥା—ବଡ଼ କରୁଣ, ବଡ଼ ମର୍ମସ୍ପର୍ଶୀ । ଯେ ଉଦ୍ଦେଶ୍ୟ ଓ ଭାବର ଆବେଗରେ ଲେଖକ ଗାଇଚ । ସେ ଉଦ୍ଦେଶ୍ୟ ଓ ଭାବାବେଶ ନିମନ୍ତେ ଖୁବ୍ ଉପାଦେୟ । ଆଉ 'ଜୀବନଚନ୍ଦ୍ରା'—ସେ ଖୁବ୍ ପଣ୍ଡିତିଆ, ସେଥିରେ ବୁଦ୍ଧିର ଓ ବିଦ୍ୟାର ଯଥେଷ୍ଟ ବାହାଦୁରୀ ଅଛି, କବିତ୍ୱର ଝଲକ ଅଛି କିନ୍ତୁ ସେଥିରେ ନାହିଁ ଆନ୍ତରିକତା, ସେଥିରେ ନାହିଁ ବ୍ୟାକୁଳ ହୃଦୟର ଆକୁଳ ଶୋକାଶ୍ରୁ । ସେହିପରି ଦେଖନ୍ତୁ, କବିସୂର୍ଯ୍ୟଙ୍କର ଯେ କେତୋଟି ଜଣାଶୁଣା ଗୀତ—

''କି ହେଲରେ, କହି ତ ନୁହଇ ଭାରଥରେ''
''ଖରାପ ତୁ ହେଲୁରେ,
ରମା ଖରାପ ତୁ ହେଲୁରେ,
ଖେଳ ଲୋଳ ଖଞ୍ଜନାକ୍ଷୀ
କି ସାହସ କଲୁରେ ।''
''ଗଲଣି ତ ଗଲ କଥାରେ ସଙ୍ଗାତ,
ରୁପତେ ପିନା ମୁଁ ତୋତେ ପଚ୍ଚରିଲି,
ବଲ ପଡ଼ିବାରୁ ବ୍ୟଥା,''
'ଯେନାଇ ଆମ୍ଭେ ଯେତେ କହିଲୁ ଗୋ
ଯେନଲୁ ନାହିଁ ବାଲା ପହିଲୁ ଗୋ,
'ନୂଆ ନଟ ପଟଳ ମୁକୁଟ ହେ,
ନାହିଁ କି ଶ୍ରୀଅଙ୍ଗ ସୁଖ ।''

ଏ ସବୁରୁ ଗୋଟିଏ କଥା ବଡ଼ ସ୍ପଷ୍ଟ ହୋଇ ମନରେ ବାଜେ—ଗୀତର ଆରମ୍ଭ-ଗୁଡ଼ିକ ଖାଣ୍ଟି ଗାଉଁଲି ଓଡ଼ିଆ ଭାଷାରେ ଲେଖା । ତା'ପରେ ଗୀତ ମଝିରେ ମଝିରେ

''ଯଦୁନାଥ ନନ୍ଦନା ଅନା ଭଣିକ ମନା—
କର କର ଯେ ଆଉ ହୃଦି ଗୁହିଲୁରେ
ଖମଣିମଣ୍ଡଳକୁ ତୁ କର ବଢ଼ାଇଲୁରେ ।''

ଇତ୍ୟାଦି ଭଳି କଠିଣ ସଂସ୍କୃତଆ ଶବ୍ଦ ଅଛି, କିନ୍ତୁ କୌଣସିଠାରେ ଅର୍ଥ ଅବୁଝା ରହେ ନାହିଁ । କାରଣ ପ୍ରଥମ ପଦରୁ ଗୀତର ମୋଟାମୋଟି ଭାବ ସରଳ ଓଡ଼ିଆ ଭାଷାରେ ବୁଝି ହୋଇଗଲା । ତା'ପରେ ମଝିରେ ମଝିରେ ଯେ ସଂସ୍କୃତ ବା ବିଦେଶୀ ଶବ୍ଦ ବ୍ୟବହାର କରାଯାଇଚି, ତାହା ସାଧାରଣତଃ ଏପରି ଭାବରେ ପ୍ରୟୋଗ କରାଯାଇଚି ଯେ ସେହି ସେହି ଶବ୍ଦମାନଙ୍କର ପାଖଆଖ ଶବ୍ଦଗୁଡ଼ିକରୁ ସମୁଦାୟ ପାଦର ଅର୍ଥ ଅନୁମାନ କରି ନିଆଯାଇପାରେ । ଯେପରିକି, ''ଖମଣିମଣ୍ଡଳକୁ ଭୁଜ କରି ବଢ଼ାଇଲୁରେ''—ଖମଣି ଶବ୍ଦର ଅର୍ଥ ହୁଏତ ଅନେକ ଜାଣି ନ ଥିବେ କିନ୍ତୁ ମଣ୍ଡଳ ଶବ୍ଦ ତାକୁ ବୁଝେଇଦଉଚି । କାରଣ ମଣ୍ଡଳ ବୋଇଲେ ଦେଶୀ ଭାଷାରେ ସୂର୍ଯ୍ୟମଣ୍ଡଳ ନହେଲେ ଚନ୍ଦ୍ରମଣ୍ଡଳ । ସେଇଥିରୁ ଗାଉଁଲି ଲୋକ ଅର୍ଥ କରି କହିଲେ—ଆରେ ହଁ, ହଁ,—କହିଲା କ'ଣ ନା ରୁ କେଡ଼େ ସାହସୀ ମାଇପିଟେଲେ, ରୁ ଚନ୍ଦ୍ରମଣ୍ଡଳକୁ ହାତ ବଢ଼ାଇଦେଲୁ । ବାମନ ହୋଇ ଚନ୍ଦ୍ର ଧରିବାର ଆଶା । କବିଙ୍କ ଅର୍ଥଟା ଠିକ୍ କରି ନ ବୁଝିଲେ ମଧ୍ଯ ହାରାହାରି ମୋଟାମୋଟି ଭାବଟା ସେମାନେ ଧରିନେଇପାରନ୍ତି । ଏ କବିତା ସ୍ଥାନରେ ଆଜିକାଲି କବିତାର ସ୍ଥାନ ଦେଖାଯାଉ । ମୁଁ ବିଗତ ସଂଖ୍ୟା ନବଭାରତ ଓ ସହକାରରୁ କେତୋଟି ପଦ ଦେଉଚି । ଲେଖକମାନେ ମତେ ଅନୁଗ୍ରହ କରି କ୍ଷମା କରିବେ ।

''ସନ୍ଧ୍ୟା ଆଲୋକ ଲିଭିଲା ଚକିବାଲେ
ଆସିଲା ନିବିଡ଼ କନ୍ଦନ ଗହନ ରାତି,
ଦୂର ଦୂରନ୍ତେ ମୁକ୍ତ ଆଲୋକ ଲାଗି
ଚଳ ଦୁର୍ମଦ ନବୀନ ତରୁଣ ମାତି ।
( ସହକାର, ୧୧୬ )

ଶ୍ୟାମଳ ମାଳ ମାଳ ତମାଳ ତଳେ,
ଗୋକୁଳ ନୀଳକାନ୍ତ ମଣିଟି ଝଲେ ।
( ସହକାର, ୧୩୬ )

ମୋର ନନ୍ଦନ ବିହାର, ପାରିଜାତ ତୋଳା
ସନ୍ଧ୍ୟାରେ ସେ ନୀରବ ସପନ,
ଯୌବନର ଅଧ-ଫୁଟା (କେଉଁ) ଅଜଣା ଅତନ୍ଦ୍ରା,
ନିଭୃତ ନୀରବେ, କେଣେ ହୋଇଥିଲା ମ୍ଳାନ ।
( ସହକାର, ୧୫୪ )

ଆମ୍ରକାନନ ଛୁଇ ପରି ତା'ର ଡାଳୁର ଗୁରୁ
ଆଶାରେଖା ସମ ମଧୁର ମନ୍ଦହାସ,
ପବିତ୍ର ତନୁ ପ୍ରଭାତ ଶିଖରଠାରୁ
ଗତି, ସଚଳିତ ଲାବଣ୍ୟ ଅନୁପ୍ରାସ ।
( ନବଭାରତ, ୮୭୯ )

"ଦୁରନ୍ତ ଦୁର୍ଗମ ମୋ ଜୀବନର ଦୂରପଥେ ।
କ୍ଳାନ୍ତ ମନେ ପ୍ରିୟ ସଖି, ଖୁଞ୍ଜୁଛ କି କେବେ ସଙ୍ଗେ !
ଜୀର୍ଣ୍ଣ ମୋର ଭଗ୍ନ ବାହୁ ଦୁସ୍ତର ଏ ପାରାବାରେ,
ଆଗୋ ମୋର ଧ୍ରୁବତାରା ରହିଛ କି ଅନ୍ୟପାରେ ?"
( ନବସ୍ୱରଭ, ୯୧୦ )

ଆଉ ଗୁଡ଼ାଏ ଉଦାହରଣ ଦେବା ଅନାବଶ୍ୟକ । ଏଇ କେତୋଟିରୁ ଶୁଣିଲେ ଲୋକ ବୁଝିପାରିବ ଯେ, ପୁରୁଣା ସାହିତ୍ୟ ଓ ନୂଆ ସାହିତ୍ୟ ମଧ୍ୟରେ ଛାଡ଼ ବାଡ଼ କେଉଁଠି, ଆଉ କି ହେତୁରୁ କବିସୂର୍ଯ୍ୟ, ସାମନ୍ତସିଂହାର ଓ ଗୋପାଳକୃଷ୍ଣଙ୍କ ତୁଳନାରେ ଆଜିକାଲିର ଲେଖାଗୁଡ଼ାକ ସେତେ ମର୍ମସ୍ପର୍ଶୀ ଓ ଲୋକପ୍ରିୟ ହୋଇପାରୁନାହିଁ ।

ଆମର ସାହିତ୍ୟ-ସେବୀମାନଙ୍କ ପାଖରେ ମୋର ନିବେଦନ, ସେମାନେ ଭାଷାକୁ ସବଳ କରିବା ପାଇଁ ଇଚ୍ଛାକଲେ ନିଜ ଜାତିର ଭାଷା ପଢ଼ିବାକୁ ଆରମ୍ଭ କରନ୍ତୁ । ଦେଶର ଭାଷା, ଗାଁ ଲୋକର ଭାଷା ବେଶି ସବଳ । କାରଣ ସେ ସଂସ୍କୃତ ଜାଣେନାହିଁ, ବିଦେଶୀ ଭାଷା ଜାଣେନାହିଁ । ଯାହା ଆବହମାନ କାଳରୁ ସେ କହି ଆସିଛି, ସେଇଆ ଜାଣେ । ଆଉ ଯାହା ଦେଖିଛି ସେଇଆ ଜାଣେ । ସେ ପ୍ରକୃତିର ଛବି ନେଇ ନିଜ ଭାଷା ତିଆରି କରେ । ତା'ର ପ୍ରତ୍ୟେକ କଥା ଗୋଟିଏ ଗୋଟିଏ ଛବି । ଏହା ମନୁଷ୍ୟର ସ୍ୱଭାବ, ମନୁଷ୍ୟର ମନସ୍ତତ୍ତ୍ୱ । ଗାଉଁଲି ଲୋକ ଯେତେବେଳେ କହେ, 'କଳାହାଣ୍ଡିଆ ମେଘ ଆସୁଛି' ସେତେବେଳେ ସେ ଗୋଟିଏ ଠିକ୍ ଛବି ଆଙ୍କିଦିଏ, କୁମ୍ଭାର ଉହାରୁ କଳାପୋଡ଼ା ହାଣ୍ଡିର । ଆଉ ସେ ଉଦାହରଣଟା 'କଜଳକଳା ବଉଦ' ଅପେକ୍ଷା ବେଶୀ ଖାପଖାଇ । କଜଳ ଓ କଳାହାଣ୍ଡିକୁ ପାଖରେ ରଖି ପାଣିଭରା ବଉଦ ସାଙ୍ଗରେ ତୁଳନା କଲେ, ଯେ ଇଚ୍ଛା ସେ କଥାଟାର ସତ ଅସତ ବୁଝିପାରିବ ।

ମୋର ଏ କଥା ଶୁଣି କେହି କେହି କହିପାରନ୍ତି ଯେ, "ସାହିତ୍ୟକୁ ଯଦି କେବଳ ସରଳ ଓ ଗାଉଁଲି ଭାଷାରେ ଲେଖାଯାଏ, ତା'ହେଲେ ତାହା ମଧ୍ୟରେ ଅଳଙ୍କାର, ସାଜସଜ୍ଜା, ଜାକଜମକ ରହି ହେବନାହିଁ । ସାହିତ୍ୟ ଗୋଟାଏ କଳା, ସେଥିରେ ଖାଲି ଅନ୍ତରିକତା ରହିଲେ ଯଥେଷ୍ଟ ହେବ ନାହିଁ । କଳାର ଆନୁଷଙ୍ଗିକ ଅଳଙ୍କାରାଦି ଅବଶ୍ୟ ପ୍ରୟୋଜନୀୟ ।" କଥାଟା କେବଳ ଶୁଆଁର ମୁହଁରେ ଶୋଭାପାଏ ।

ଆମ୍ଭେମାନେ ତାଲବୁଡଲପା ଯାଏ ୫୦ ଭରି ସୁନାର ଅଳଙ୍କାର ପିନ୍ଧା ମାଇକିନିଆ ଦେଖିଛୁ, 'ପୁଣି ଯେ ମେଚଙ୍ଗ୍ ପାଉଡର, ଲିପଷ୍ଟିକ୍, ସ୍ନୋ, ଲିଭେଣ୍ଡର ଢଆ ମେମ୍‌ସାହେବ ମଧ୍ୟ ଦେଖିଛୁ । ଏଗୁଡ଼ାକ ସୁନ୍ଦର ବୋଲି ଯେ କହିବ, ତା'ର କଳା ବୁଦ୍ଧି ବା କଳାବୋଧ ମୋଟେ ନାହିଁ ବୋଲି କହିଲେ ହେଲା । କାଳିଦାସ ଭାରତର କଳାଗୁରୁ । ତାଙ୍କ ଭାଷାରେ "କିମିବ ହି ମଧୁରାଣାଂ ମଣ୍ଡନେନାକୃତୀନାମ୍" ଯାହା

ସୁନ୍ଦର—ତାହା ଯେତେ ସରଳ ଓ ପ୍ରାକୃତିକ ହେବ ତେତେ ସୁନ୍ଦର । ସୁନ୍ଦରକୁ ଅଳଙ୍କାର ଲଦି ଅସୁନ୍ଦର କରିବା କଳା ନୁହେଁ । ସେଇ ହେତୁରୁ ଭଲ କାରିଗର ରୂପେ ଇଂରେଜୀ ସାହିତ୍ୟରେ ଟେନିସନ୍, ଷ୍ଟିଭେନ୍‌ସନ୍, ମରିସ୍, ରସ୍କିନ୍, ଚେଷ୍ଟରଟନ ଇତ୍ୟାଦିଙ୍କର ବେଶୀ ଆଦର । ଆମେ ତ ପାଞ୍ଚ ସାତ ଖଣ୍ଡ ଇଂରେଜୀ ବହି ପଢ଼ି ଏତେ ବଡ଼ ସଭ୍ୟ ଓ ପଣ୍ଡିତ ହୋଇଯାଉଛୁଁ ଯେ ଗାଁ କଥା ପଢ଼ିଲାବେଳେ ନାକଟାକୁ ସ୍ୱର୍ଗକୁ ବଢ଼େଇ ଦଉ । କିନ୍ତୁ ଏଇ ବିଂଶ ଶତାବ୍ଦୀର ବଡ଼ ଧରଣର ଇଂରେଜୀ ପଢ଼ୁଆ ଟମାସ୍ ହାର୍ଡ଼ି ଗାଁରେ ରହୁଥିଲେ, ଗାଁ କଥା ଲେଖୁଥିଲେ, ଗାଉଁଲି ଭାଷା କହୁଥିଲେ ।

ଜଳକରିବା ଆମ ଜାତିର ଏପରି ଗୋଟାଏ ସହଜ ସ୍ୱଭାବ ଯେ କେହି କେହି ହୁଏତ କହିପାରନ୍ତି—"ଲୋକପ୍ରିୟ କରିବା ପାଇଁ ଯଦି ଆମେ ଗାଉଁଲି ଭାଷାରେ ସବୁ ଲେଖୁଁ, ତା'ହେଲେ କ'ଣ ଆମେ ଶାଶୁ ବୋହୂ କଳି, ଦିଅର ଭାଉଜ ରହସ୍ୟ ବା ପାଣିଙ୍କ ସୁଆଙ୍ଗ ଲେଖିବୁ ? ଲୋକପ୍ରିୟ ସାହିତ୍ୟ ଓ ଲୋକପ୍ରିୟ ଆଲମାନିକା ଭିତରେ ବହୁତ ପ୍ରଭେଦ । 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ଲୋକପ୍ରିୟ ସାହିତ୍ୟ ଓ 'ସୁଶୀଲା ମାଳତୀ ଗୀତାଭିନୟ' ଲୋକପ୍ରିୟ ଆଲମାନିକା ।' ଏ କଥାର ଅର୍ଥ ବୁଝାଇକହିବା ନିରର୍ଥକ; କାରଣ ଏ ଯେ ନ ଜାଣେ, ତା'ର ସାହିତ୍ୟ ସେବା କରିବାକୁ ଯିବା ଭଣ୍ଡାମି ମାତ୍ର ।

ତା'ପରେ ଖାଲି ଗାଉଁଲି ଭାଷାରେ ଲେଖିଲେ ଚଳିବ ନାହିଁ, ସେଇ ଗାଉଁଲି ଭାଷାକୁ ଭର୍ତ୍ତି କରି ସେଥିରୁ ଗୋଟିଏ ଭାଷା ତିଆରି କରିବାକୁ ପଡ଼ିବ, ଯାହା ହେବ ସୁନ୍ଦର ଅଥଚ ଗାଉଁଲି । ସେ କିପରି କରାଯିବ ? ଯେ ନୀତିରେ ଆମେ ଆଜିକାଲିର ଏଇ ବାରପଣ ସଂସ୍କୃତ-ଦୁଇପଣ ବଙ୍ଗାଳି-ଏକପଣ ଉର୍ଦ୍ଦୁ-ଏକ ପଣ ଓଡ଼ିଆ ଭାଷାକୁ ଜାତି ମୂଲ୍ୟମ ଓ ମନଲାଏକ କରୁ, ସେହି ନୀତି ଏଠାରେ ମଧ୍ୟ ଖାଟିବ । ସେଗୁଡ଼ାକ ଅଲଗାରେ ଲେଖି ପାଠକମାନଙ୍କଠାରୁ ଗୁପ୍ପୁଡ଼ା ମୁଲାଇବାକୁ ମୁଁ ଅନ୍ତତଃ ଚାହୁଁନାହିଁ । ତେବେ ଗୋଟିଏ କଥା ଆଉ ମୋର କହିବାର ଅଛି—ଭାଷାକୁ ସହଜ କରିବାର ଚେଷ୍ଟା ଯେପରି କରିବା ଉଚିତ, ସେହିପରି ଭାଷା ବ୍ୟବହାରରେ ସଂଯମ ହେବା ଯଥେଷ୍ଟ ବିଧେୟ । ବେଶୀ କହିବ ନାହିଁ; ଅଥଚ ଅଳୀକ କଥାରେ ସବୁ ବିଷୟ ଏପରି ଭାବରେ କହିବ ଯେ, ପାଠକ ମନରେ ସେଇଟା ଜଡ଼ାତେଲକୁ ମେଣ୍ଢାବାଳ ପରି ଲାଗିରହିବ । କବିସୂର୍ଯ୍ୟଙ୍କର, 'ଗଲାଣି ତ ଗଲା କଥା' ପଦକ କେତେ ଛୋଟରୁ କେତେ ଭାବରେ ବାହାରେ । ସେହିପରି ଭଞ୍ଜଙ୍କର, 'କିସ ପୁଣି ଦେଖା ନ ଯାଇ ଯେବେ ଥାଇ ଜୀବରେ' । ପୁରୁଣା ଓଡ଼ିଆ ସାହିତ୍ୟରେ ଏପରି ପଦ ହଜାର ହଜାର ପାଇବ । ହେଇ ହେଇ ଜଗନ୍ନାଥ ଦାସେ ଓଡ଼ିଆ ଭାଷା ଯେ ଏପରି ପ୍ରାଣ୍ଡିଗର୍ଭ ଅଥଚ ଏପରି ଲଳିତ ହୋଇପାରେ, ତାହାର ଅମର ନିଦର୍ଶନ । ଯେଉଁମାନେ କହନ୍ତି ଯେ, ଗୁରୁଗମ୍ଭୀର ଭାଷା ଏକା ଟାଣୁଆ ସଂସ୍କୃତ ଭାଷାରେ ହୋଇପାରେ, ସେମାନଙ୍କ ପାଇଁ ମୁଦ୍‌ଗର ।

ମିଛ କଥାକୁ କିପରି ସତ୍ୟର ରୂପରେ ଲେଖିବାକୁ ହୁଏ, ସେ ବିଷୟରେ ଅନେକ କହିଛି । ଆହୁରି ମଧ୍ୟ ଅନେକ କହିବାର ଅଛି । କହି ବସିଲେ ଦିନ ଅଣ୍ଟିବ ନାହିଁ । କହି କି ଲାଭ ? ଏ ଦେଶରେ ଯେ କଲମ ଧରି ଜାଣିଲା, ସେ ଜଣେ ସାହିତ୍ୟିକ । ମୁସଲମାନ ଜଗତର ସେହି ଅନାମଧେୟ ରାଜାଙ୍କ ପରି ତାଙ୍କ ଆଖିରେ, ଏ ସଂସାରରେ ତାଙ୍କର ବା ତାଙ୍କ ଭକ୍ତସଙ୍ଗୀମାନଙ୍କ ଲେଖା ଛଡ଼ା ଆଉ କୌଣସି ଲେଖାର ସ୍ଥାନ ନାହିଁ । କାହା ଲେଖା କିଏ ପଢ଼ିଛି ? ଅତଏବ ମୁଁ ବା କାହିଁକି ଏ ପଥର କାନ୍ଥରେ ମୁଣ୍ଡ ବାଡ଼େଇ ହୋଇ ମରିବି ? ସହିହୁଏ ନାହିଁ, ସେଥିପାଇଁ ଦି' ଚାରିପଦ କହିଦେଲି । ଏ ଦୂର ବିଦେଶରେ ମୋ ପାଖରେ ବହି ନାହିଁ । ଯାହା ମନେଥିଲା ଓ ଯାହା ମନକୁ ଲାଗିଲା, ସେଇୟା କହିଛି । ଅତଏବ ଯଦି ଅଗୁଁଆର ଏ କଥାଗୁଡ଼ାକ ପଢ଼ନ୍ତି, ଗୁଆଁରମାନେ ତ ପଢ଼ିବେ ନାହିଁ, ମୁଁ ଜାଣେ—ତା'ହେଲେ ତାଙ୍କୁ ମୋର ଅନୁରୋଧ—

ଶୁଦ୍ଧ ଅଶୁଦ୍ଧ ପୂରାଇ ଗାଇବ ।
ଲେଖନକାର ଦୋଷ ନ ଧରିବ ।

ନବଭାରତ—୧୩୪୩
ପୃ—୧୩୪



# ଛୋଟ କଥାଟିଏ

ବିଶାଳ ଉତ୍କଳର ଗୋଟିଏ ଛୋଟ ଜାଗା । ସେଠି ହେଉଥିଲା କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଛୋଟ ଜୟନ୍ତୀଟିଏ । ସେହି ଛୋଟ ଉତ୍ସବଟିରେ ସଭାପତି ହୋଇଥିଲି ଏଇ ଛୋଟ 'ମୁଁ', ପ୍ରଧାନ ବକ୍ତା ଥିଲେ ଜଣେ ବିଶିଷ୍ଟ ପଣ୍ଡିତ । ଏଇ ଛୋଟ ବଡ଼ର ଛାଇ ଆଲୁଅ ମଧ୍ୟରେ ବାହାରିପଡ଼ିଲା ଗୋଟାଏ ପ୍ରକାଣ୍ଡ ସମସ୍ୟା···ପ୍ରଧାନ ବକ୍ତା ତାଙ୍କର ବକ୍ତୃତା ଶେଷ କରିଥାନ୍ତି·· ରାତି ହେଲାଣି ପ୍ରାୟ ନ'ଟା···ସଭାପତିଙ୍କ ଭାଷଣ ଆଉରି ବାକି ଅଛି···ଏତିକିବେଳେ ଜଣେ କେହି ପଚାରିଲେ, "ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟରେ କି ଜୀବନଦର୍ଶନ ଅଛି ?" ଅବଶ୍ୟ ଏ ପ୍ରଶ୍ନର ଜବାବ ସେ ଯାହାଠାରୁ ଆଶା କରନ୍ତି, ସେ କହିଲେନି···ସୁତରାଂ ଛୋଟ 'ମୁଁ' ମୋ ବଡ଼ ଆସନର ସୁବିଧା ନେଇ ତାର ଦାୟିତ୍ୱ ପକେଇଦେଲି ପ୍ରଧାନ ବକ୍ତାଙ୍କ ଉପରେ । ସେ ତାଙ୍କ ବଡ଼ମୁଣ୍ଡର ବଡ଼ ମଗଜରୁ ଗୋଟାଏ ଜବାବ ଦେଲେ, ତା ଉପରେ ଆଉ କୌଣସି ପ୍ରଶ୍ନ ହେଲାନି, ସୁତରାଂ କଥାଟା ସେଇଠି ସରିଗଲା, ମୁଁ ମାନେ ମାନେ ନିଷ୍କୃତି ପାଇଗଲି ।

କିନ୍ତୁ ମନେ ମନେ ଗୁଁ ଘୁଁ ହୋଇ ଚାଲିଲି···ଠିକ୍ ବୁଝି ହେଲାନିତ !! ଏ ପୁଣି କି କଥା ? ସାହିତ୍ୟରେ ଜୀବନଦର୍ଶନ ? ମାନେ, କଥାଟା ମୂଳରୁହିଁ ମୋ ମଗଜ ଭିତରେ ପଶିପାରିଲାନି, ବହୁତ ବିଚାରି ଦେଖିଲି, ଠିକ୍ କାଲି ଏଇଟା ବିଂଶ ଶତାବ୍ଦୀର ଭାରତ, ତା ଭିତରର ଏ ଓଡ଼ିଶା ଆମ ନାଁରେ ଓ ଦେହରେ ଆମ ନିଜର···କିନ୍ତୁ ଆମର ଭାବନା, ଚିନ୍ତା, ସଂସ୍କୃତି, ଏପରିକି ଆମର ପୋଷାକ ପର୍ଯ୍ୟନ୍ତ ସବୁ ବିଲାତର, ୧୯୪୭ ପର୍ଯ୍ୟନ୍ତ ବିଲାତ ଆମର ଦେହଟାକୁ ଆୟତ୍ତ କରିଥିଲା । ମାତ୍ର ତା'ପରେ ସେ ଆମର ଦେହଟାକୁ ଛାଡ଼ିଦେଇ ଆମ ଭିତରେ ପଶିଯାଇଚି, ଆମର ଦେହ ଓ ନାମ ଛଡ଼ା ଆଉ ସବୁ ବିଲାତର ଇଲଗେ; ମିଛ କହୁଚି ? ଦିନେ କଟକରେ ଗୋଟାଏ ଜାଗାରେ ବସି ମୁଁ ଗୋଟାଏ ସୁମାରି ନେଲି, ଦେଖିଲି ଯେତେ ଲୋକ ସେ ବାଟ ଦେଇ ଗଲେ, ତା ଭିତରୁ ଶତକଡ଼ା ୬୫ ବିଲାତି ପୋଷାକ, ଅର୍ଥାତ୍ ପ୍ୟାଣ୍ଟ୍ କୋଟ ପିନ୍ଧା, ଯାହା ୧୯୪୭ ଆଗରୁ ନ ଥିଲା, ମୁଁ ବାଜିରଖି କହିପାରେ, ଇଲେ ତୁମେ ଗାଁକୁ ଯାଅ, ଅତି ଗହନ ଗାଁକୁ, ସେଠାରେ ମଧ୍ୟ ଏଇ ପ୍ୟାଣ୍ଟ ପିନ୍ଧା ଲୋକ ଦେଖିବ · ସେ ଆମ ପ୍ରଗତିର ଚିହ୍ନ ହୋଇ-ପାରେ, କି ବିଲାତର ବିଜୟ ପତାକା ହୋଇପାରେ, ସେ ବିଷୟ ମୁଁ କହିବାକୁ ଯାଉନି । ଦିନ ଥିଲା, ଯେତେବେଳେ ଲୁଙ୍ଗି ପିନ୍ଧିବାକୁ ହିନ୍ଦୁ ମାନେ ଘୃଣା କରୁଥିଲେ । କାରଣ ସେ ମୁସଲମାନ ଭାଇମାନଙ୍କର ପୋଷାକ, ସେତେବେଳେ ମୁସଲମାନ ରାଜୁତି ଥିଲା, ବା ତା'ର ଧାଁସ ଲାଗିରହିଥିଲା···ଇଲେ ମୁସଲମାନ ରାଜୁତି ନାହିଁ, ତା'ର ଧାଁସ ମଧ୍ୟ

ଉଭେଇଗଲଣି, ସୁତରାଂ ଆମେ ସମସ୍ତେ ଆବ୍ରାହ୍ମଣଚଣ୍ଡାଳ ଲୁଙ୍ଗି ପିନ୍ଧିବାକୁ ଆରମ୍ଭ କରିଦେଇଚୁଁ । ଘରେ ମୁସଲମାନ, ବାହାରକୁ ଯାଇବ, ଏଇଆ ହୋଇଚ ଇଲେ ଆମର ବୃତ୍ତି, ଏଇ ବୋଧହୁଏ ପ୍ରଗତିର ବନ୍ଧନ—ବିଶ୍ୱପ୍ରେମ ।

ଏଇ କଥା ଭାବି ମୁଁ ଏଇ ଓଡ଼ିଆ କଥା ଜୀବନଦର୍ଶନର ଇଂରେଜୀ ତର୍ଜମା କରିବସିଲି···କାହିଁକନା, ଆମେ ଖାଲି ଇଂରେଜୀ କହୁନୁ, ଯୁଠେଇଁ ଓଡ଼ିଆ କହୁଚୁଁ ସେଠି ଏଇ ଇଂରେଜୀ କଥା, ଉପକଥା, ରୂପକଥା, ଓ ଲୋକକଥାକୁ ଓଡ଼ିଆରେ ତର୍ଜମା କରି କହୁଚୁଁ···ଦେଖିଲି ଏ ଜୀବନ ଦର୍ଶନର ଇଂରେଜୀ ଅର୍ଥ ହେଲା Philosophy of Life ଏଥରକ ଠିକ୍ ଏ ଠିକ୍ ଏ ବୁଝିଲି, କିନ୍ତୁ ଉପେନ୍ଦ୍ରଭଞ୍ଜଙ୍କ ସାହିତ୍ୟରେ ଏ Philosophy of Life । ଖୋଜିବାର ଉଦ୍ଦେଶ୍ୟ ? ଅଥବା କୌଣସି ଓ କାହାର ସାହିତ୍ୟରେ ଏ ଦର୍ଶନ ଖୋଜିବାର ତାତ୍ପର୍ଯ୍ୟ ? ସାହିତ୍ୟ କ'ଣ ଦର୍ଶନଶାସ୍ତ୍ର ନା ଦର୍ଶନଶାସ୍ତ୍ରର ଅଙ୍ଗବିଶେଷ ? ଦାର୍ଶନିକ ନ ହେଲେ କ'ଣ ସାହିତ୍ୟିକ ହୋଇ-ପାରିବନି ? ଯଦି ସାହିତ୍ୟରେ ଦର୍ଶନ ରହିଲା; ତାହେଲେ ସେଥିରେ ବିଜ୍ଞାନ, ନ୍ୟାୟଶାସ୍ତ୍ର, ନୀତିଶାସ୍ତ୍ର, ଇତିହାସ, ଭୂଗୋଳ ଓ ଅଙ୍କ, ଜ୍ୟୋତିର୍ବିଦ୍ୟା ଇତ୍ୟାଦି ନ ରହିବ କିଆଁ ? ମାନେ ରହିବା ନିତାନ୍ତ ଆବଶ୍ୟକୀୟ ନ ହବ କିଆଁ ? ତା'ପରେ ଉପେନ୍ଦ୍ରଭଞ୍ଜଙ୍କଠାରେ ଜୀବନ-ଦର୍ଶନର ଅର୍ଥ କ'ଣ ? ତାଙ୍କ ଜୀବନର ଦର୍ଶନ ନା, ସାଧାରଣ ଜୀବନଦର୍ଶନ ଯଦି ତାଙ୍କ ଜୀବନ ଦର୍ଶନ ହୁଏ, ତାହେଲେ ତାଙ୍କର କେଉଁ ଜୀବନର ଦର୍ଶନ ?

ସାହିତ୍ୟ କ'ଣ ଦର୍ଶନ, ନୀତିକାବ୍ୟ, ବୈଜ୍ଞାନିକ କାବ୍ୟ ଇତ୍ୟାଦି ଲେଖେ ? ମୁଁ ଏ ଗୋଲକଧନ୍ଧାରେ ପଡ଼ି ବଡ଼ ବ୍ୟତିବ୍ୟସ୍ତ ହୋଇଯାଇଚ । ଆଜ୍ଞା, ଆପଣ ମତେ ଠିକ୍ ଏ କହିଦେବେ ଏସବୁ କ'ଣ ? ଏସବୁ କ'ଣ ହଉଚ ? ଏସବୁ ବଡ଼ ବଡ଼ କଥା ଆମ ଛାତ୍ର ଓ ଯୁବକମାନଙ୍କ ମୁଣ୍ଡରେ କିଏ ପୂରାଉଚ ? ଆଉ କାହିଁକି ? କି ମହତ୍ ଉଦ୍ଦେଶ୍ୟ ରଖି ?

ମୁଁ ତ ବୁଢ଼ା ମଣିଷକୁ ବଡ଼ ମରହଟ୍ଟି କାଳରେ କୁ ମରହଟ୍ଟି ସାହିତ୍ୟ ପଢ଼ିଥିଲି; ସେତେବେଳେ ମୁଁ ବୁଝିଥିଲି ସାହିତ୍ୟ ସୌନ୍ଦର୍ଯ୍ୟ ତିଆରିକରେ, ରସର ଝରଣା ବୁହାଏ । 'ସାହିତ୍ୟ ଦର୍ଶନ ନୁହେ ଏପରିକି ସାହିତ୍ୟ ନୈତିକତା ମଧ୍ୟ ନୁହେ' । ଆଉରି ବେଶୀ ଉପରକୁ ଯାଇ କେତେକ ସାହିତ୍ୟିକ ଓ ସମାଲୋଚକ କହିଚନ୍ତି, ସାହିତ୍ୟ ଅନୈତିକ (Amoral) । ଏଗୁଡ଼ାକ କ'ଣ ଭୁଲ ?

ହୋଇଥିବ ଅବା ଏ ଆଣବିକ ବୋମା, ହାଇଡ୍ରୋଜେନ ବୋମା ଓ ପ୍ରଖର ବାସ୍ତବର ଯୁଗରେ ସବୁତ ଓଲଟପାଲଟ ହୋଇଯାଇଚ । ମଣିଷଗୁଡ଼ାକ ଦେବତା ପାଲଟି ଗଲେଣି, ପବନ ମୋଟା ହୋଇଗଲାଣି, ପାଣି ସରବତ ବନିଗଲାଣି, ମାଟି ସୁନା ବନିଗଲାଣି, ପଶୁ ମଣିଷ ପାଲଟିଗଲେଣି, ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ର ଏ ସବୁ

କ'ଣ ହୋଇଗଲେଣି କେଜାଣି, ସୂର୍ଯ୍ୟ କିରଣରେ ଆଉ ତାତି ନାହିଁ କି ଚନ୍ଦ୍ରକିରଣରେ ଆଉ ଶୀତଳତା ନାହିଁ । ଆଜିକାଲି କେହି ନ ଖାଇ ମରୁନାହାନ୍ତି । ଅଭାବରେ ମରୁଛନ୍ତି ଅବଶ୍ୟ, ଅଭାବ ହେତୁ ରୋଗ ବୈରାଗ୍ୟରେ ମରୁଚନ୍ତି ଅବଶ୍ୟ, କିନ୍ତୁ ନ ଖାଇ କିଏସୁ ମରୁନାହାନ୍ତି । ଆମେ ପ୍ରକୃତିକୁ ଜୟ କରିସାରିଚୁଁ । ପ୍ରକୃତି ଆମରି ହାତରେ ବନ୍ଧା । ସୁତରାଂ ଝଡ଼, ତୋଫାନ, ବଢ଼ି, ମରୁଡ଼ି, ଭୂମିକମ୍ପ, ଅଗ୍ନ୍ୟୁତ୍ପାତ ଇତ୍ୟାଦି ପ୍ରାକୃତିକ ବିପର୍ଯ୍ୟୟ ଆଉ ଆମକୁ ଦେଖାପଡ଼ୁନି । ଆମେ ହେବା ଜୟୀ, ପ୍ରକୃତି ବିଜୟୀ କି ନା ! ସବୁ ଯେତେବେଳେ ଓଲଟପାଲଟ ହୋଇଯାଇଚି, ସେତେବେଳେ ସାହିତ୍ୟର ସ୍ୱରୂପ ହୁଏତ ଓଲଟପାଲଟ ହୋଇଯାଇଚି କିଏ ଜାଣେ ?

ଆମେ କିନ୍ତୁ ବାବୁ ସେଇ ମରହଟ୍ଟି କାଳିଆ ଲୋକ । ଆମେ ଏସବୁ ବୁଝୁନୁ, ବୁଝିନୁ, ବୁଝିପାରିବୁନି; କାହିଁକି ନା, ଏସବୁ ଆମଦୃଷ୍ଟିରେ କେବଳ ଠକାମି, କେବଳ ଭଣ୍ଡାମି । ଆମେ ଦେଖୁନୁଁ, ମାଟି ମାଟି ହିଁ ଅଛି, ସୁନା ହୋଇନି, ପାଣି ପାଣି ହିଁ ଅଛି, ପଣା ପାଲଟିନି, ସାହିତ୍ୟ ସାହିତ୍ୟ ହିଁ ଅଛି, ବିଜ୍ଞାନ ବା ଦର୍ଶନ ପାଲଟିନି, ପାଲଟି ପାରେନି । ଦର୍ଶନ, ଦର୍ଶନ—ସାହିତ୍ୟ, ସାହିତ୍ୟ । ଦର୍ଶନ ତିଆରି କରେ ଗୋଲକ-ଧନ୍ଦା, ସାହିତ୍ୟ ତିଆରି କରେ ସୌନ୍ଦର୍ଯ୍ୟର ମାୟାଜାଲ, ମଦମୋହର ମରୀଚିକା । ବୈଜ୍ଞାନିକ ବା ଦାର୍ଶନିକ ଗୋଟିଏ କଥାକୁ ଧରି ତାର ତେଣାପର ଛିଣ୍ଡେଇ, ତା ପେଟ ମୁଣ୍ଡ ଚିରି, ତା'ର ଶିରା ପ୍ରଶିରା ପ୍ରତ୍ୟେକ ଅଂଶକୁ ଯୁକ୍ତି ଓ ନ୍ୟାୟ ମାପ କାଠିରେ ଓଜନ କରି, ସେ କ'ଣ କିପରି ହେଲା, କାହିଁକି ହେଲା ଇତ୍ୟାଦି ପ୍ରତ୍ୟେକ ବିଷୟ ଭିନ୍ନଭିନ୍ନ କରି ପରୀକ୍ଷା କରି ବସେ । ଅଗାଧ ଭାବନା, ଅପରିମିତ ଚିନ୍ତା ତା'ର । ସାହିତ୍ୟିକ କିନ୍ତୁ ତା କରିପାରେନି, ତା କରିବା ଲାଗି ତା'ର ସମୟ ଓ ଧୈର୍ଯ୍ୟର ବଡ଼ ଅଭାବ । ଗୋଟାଏ ଚିନ୍ତା, ଗୋଟାଏ ଭାବନାର ଝଲକ ତା ଆଖି ଆଗରେ ଖେଳିଯାଏ । ସେଇ ଝଲକ ମଝିରେ, ସେଇ ମୁହୂର୍ତ୍ତିର ଝଲକରେ ସାରାବିଶ୍ୱର ଖେଳ ତା ଆଖି ଆଗରେ ମେଲିଯାଏ, ସେ ବିମୁଗ୍ଧ ହୋଇଯାଏ, ଉନ୍ମତ୍ତ ହୋଇଯାଏ । ଯାହା ଦେଖେ, ଯାହା ଅନୁଭବ କରେ, ସେଇଆ ସେ ତା'ର ହୃଦୟର ଭାଷାରେ ପ୍ରକାଶ କରିପକାଏ । ଯାହାର ଅର୍ଥ ବୁଝେଁ ଯେ କବି ଗୋଟାଏ କବିତା, ଗୋଟାଏ କାବ୍ୟ, ଔପନ୍ୟାସିକ ଗୋଟାଏ ଗପ, ବା ଗୋଟାଏ ଉପନ୍ୟାସ ଏକାଦିନକେ, ଏକା ବୈଠକରେ ଶେଷ କରିଦିଏ । ଯାହାର ମାନେ, ସାହିତ୍ୟିକର ମୁଣ୍ଡରେ ଯେଉଁ ଭାବର ତରଙ୍ଗ ଉଠେଁ, ସେସବୁ ତରଙ୍ଗକୁ ଧରିପାରେନି, ତାକୁ ରୂପରେଖା ଦେଇପାରେନି । ଯେ ତାକୁ ବୁଝେଇ ଦେଇପାରିଲା, ଗଢ଼େଇ ଚଢ଼େଇ ଦେଇପାରିଲା, ସେ ତା'ର କଥା ହିଁ ଭାବିହୁଏ, ଭାବୁଥାଏ, ଲେଖୁଥାଏ । ସେ ଗଢ଼ିଆ, ଚଢ଼ିଆ, ସେ ବୁଢ଼ା ବୁଢ଼ିର ଦରଦ ତା ହୃଦୟରୁ ଓ ମନରୁ ଲିଭି ନ ଯିବାଯାଏଁ । ଏଇଠି କଥାଟାକୁ ଟିକିଏ ବୁଝେଇ ନକହିଲେ, ହୁଏତ ତୁମେ କହିବ, ଖାଲି ବାଜେ ଗପ । ତୁମପାଇଁ ସେସବୁ ସହଜ ଓ ସରଳ ହବାରୁ ହିଁ ତୁମର ଏ ବୈଜ୍ଞାନିକ,

ବ୍ୟାବହାରିକ ଯୁଗରେ, ତୁମର ଏ ପ୍ରଗତିର ଆବହାଓ୍ୱାରେ ସେ କଷ୍ଟରେ ନଷ୍ଟ । ନହିଁଆ ସ୍ୱେତେଇ ସେଥିରୁ ରସଖାଇବା ଲାଗି ତୁମ ତିଆରି ଯନ୍ତ୍ରରେ କୋଉନାହିଁ, କି ତୁମ ପତଳା ହୃଦୟରେ ସାହସ ନାହିଁ । ନହିଁଆ ଚପୁଡ଼ି ତା ଦୋରୁଅଟା ଦେଲେ ତୁମେ ହୁଏତ ଦଦ୍ୱାକରି କଷ୍ଟପାଟ ଫିଙ୍ଗିଦେଇ ପାରିବ । ଦର୍ଶନ କି ଦର୍ଶନଶାସ୍ତ୍ର ବଡ଼ କଷ୍ଟ, ସେ ରଚକ ଓ ପାଠକର ମୁଣ୍ଡକୁ, ମଗଜକୁ ଦୋହଲାଇ ଦିଏ, ଚକଟାଚକଟି କରି କାଦୁଅ କରିଦିଏ । କାବ୍ୟ କବିତା ଓ ସାହିତ୍ୟରସିକତା ମଧ୍ଯ କଷ୍ଟ, କାରଣ ସେ ସାହିତ୍ୟକର, ସାହିତ୍ୟ ଲେଖାଳି ଓ ପଢ଼ାଳିର ହୃଦୟକୁ, ଅନ୍ତଃକରଣକୁ ଘାଣ୍ଟିଘୂର୍ଣ୍ଣି ଦଳାଦଳି କରି ରସ ନିଗାଡ଼ିପକାଏ । ସେ ଯେ କି କଷ୍ଟ, ସେକଥା ଅନୁଭବିବାର ଶକ୍ତି ଓ ସାମର୍ଥ୍ୟ ତୁମର ନାହିଁ । କଷ୍ଟରେ ଇଷ୍ଟ—ଏ କଥାଟା ଆଜି ନାହିଁ । 'ଇଲେ କଷ୍ଟରେ ନଷ୍ଟ' ଦାର୍ଶନିକ ମୁଣ୍ଡରେ ଗୋଟାଏ କଥା ପଶିଲା, ଏଇ ଯେପରି ଗୋଲାପ ଫୁଲଟିଏ ଫୁଟିଚି, ମହକି ଦଉଚି, ପବନରେ ହଲୁଚି ତା'ପରେ ପାଖୁଡ଼ା ପାଖୁଡ଼ା ହୋଇ ଝଡ଼ିପଡ଼ୁଚି । ଦାର୍ଶନିକ ଦେଖିଲା, ଦେଖି ଭାବିଲା, ଏପରି ହେଲା କାହିଁ ? ସୁନ୍ଦର ଜିନିଷଟିଏ ତ ଥିଲା, କେତେ ଆନନ୍ଦ ଦେଇଥିଲା ସେତ କାହାରି କିଛି କ୍ଷତି କରିନି, ତାହେଲେ ସେ ଝଡ଼ିପଡ଼ିଲା କାହିଁ ? ଯାହାର ମୂଳରେ ନିଶ୍ଚୟ କିଛି ନିଗୂଢ଼ ରହସ୍ୟ ଅଛି । ଦାର୍ଶନିକ ଖୋଜିବୁଲିଲା, ଅନ୍ୟାନ୍ୟ ଜିନିଷ ସହିତ ତୁଳନା କଲା, ମିଳାଇଲା ଦେଖିଲା; ସବୁତ ଏଇଆ ଅଛି ଓ ନାହିଁ, ଥିଲା ଓ ନଥିଲା, ଥିବ ଓ ନଥିବ, ଜୀବନ ଓ ମରଣ, ସବୁ ଏଇ ନୀତିର, ଏଇ ପ୍ରାକୃତିକ ନିୟମର କାମ-ଭଲ ହବ, ମରିବ, ମନ୍ଦ ମଧ୍ଯ ହବ ଓ ମରିବ । ଏ ପ୍ରକୃତି କ'ଣ ଓ କାହିଁକି ? କେହି କହିଲେ ଏ ସୃଷ୍ଟି ନିୟମ, କେହି କହିଲେ ଏ ଭଗବାନଙ୍କର ମାୟା, ବା ଈଶ୍ୱରଙ୍କ ବିଧି । ତା'ପରେ ଗୁଡ଼ିଲା କେତେ ଆଧ୍ୟାତ୍ମିକ, ଆଧିଭୌତିକ ଯୁକ୍ତିତର୍କ, ପ୍ରମାଣ, ବେଦ, ବେଦାନ୍ତ, ଉପନିଷଦ, କ୍ୟାଣ୍ଟ, ସୋପେନହୋର, ହିଉମ୍ ମିଲ ଇତ୍ୟାଦି—ସୃଷ୍ଟି ହେଲା, ଦର୍ଶନ, ଦାର୍ଶନିକର ପନ୍ଥା ।

ସେଇ ଫୁଲଟିକି ଦେଖିଲା ବୈଜ୍ଞାନିକ । ସେ ଲାଗିଗଲା, ସେଇ କାହିଁ ଓ କାହିଁକିକୁ ନେଇ ସେ ଅଣୁବୀକ୍ଷଣ ଯନ୍ତ୍ର ଆଣିଲା, ଗୋଲାପ ଫୁଲର ପାଖୁଡ଼ାଗୁଡ଼ିକୁ, ତାର ଡେମ୍ଫଟିକୁ ପତଳା ପତଳା କରି କାଟି ସେ ଅଣୁବୀକ୍ଷଣ ଯନ୍ତ୍ର ଦେଇ ପରୀକ୍ଷା କଲା, ଦେଖିଲା ଫୁଲ ବି କିଛି ସମୟ ଫୁଟି ରହିଲେ ସୂର୍ଯ୍ୟର ତାପରେ ତା ଦେହରେ ଥିବା ଜଳମାନ ଶୁଖିଯାଏ, ସେ ସୂର୍ଯ୍ୟକିରଣକୁ ଯେତେ ଅନୁପାତରେ ଅକ୍ସିଜନ ନିଏ, ଚେର ସେତିକି ବା ସେଇ ଅନୁପାତରେ ଜଳଯାନ ଯୋଗାଇପାରେନି ତାକୁ, ସେଇହେତୁରୁ ସେ ଝଡ଼ିପଡ଼େ । ତାର ପାଖୁଡ଼ାଗୁଡ଼ିକୁ ଧରି ରଖିଥିଲା ତା'ର ଡେମ୍ଫ । ଯେତେବେଳ-ଯାଏ ତା ଦେହରେ ରସ ଥିଲା, ସେ ଭାରି ଓଜନ ଥିଲା, ଡେମ୍ଫ ସହିତ ପାଖୁଡ଼ାର ଭାର ସାମ୍ୟ ଥିଲା ବୋଲି ଦୁହେଁଯାକ ଲାଗି ରହିଥିଲେ, ଯେଉଁ ମୁହୂର୍ତ୍ତରେ ପାଖୁଡ଼ା ଶୁଖିଗଲା,

ତା'ର ରସ ମରିଗଲା ସେଇ ମୁହୂର୍ତ୍ତରେ । ସେ ହାଲୁକା ହୋଇଗଲା, ଓଜନ କମିଗଲା, ସ୍ଥିରସାମ୍ୟ ଭାଙ୍ଗିଗଲା, ପାଖୁଡ଼ାଟି ଡେମ୍ଫରୁ ଅଲଗା ହୋଇଗଲା, ତା'ପରେ ମାଧ୍ୟାକର୍ଷଣ ଶକ୍ତି ବଳରେ ସେ ଖସିପଡ଼ିଲା ତଳକୁ । ବୈଜ୍ଞାନିକ ଏହିପରି ମତ ଓ ଯୁକ୍ତି ଖଟେଇ ସୌରଜଗତ ସ୍ଥିରସାମ୍ୟ ଓ ମାଧ୍ୟାକର୍ଷଣ ଶକ୍ତି ଇତ୍ୟାଦି ବଡ଼ ବଡ଼ କଥା ଆବିଷ୍କାର କଲା, ସେଇ ବଡ଼ ବଡ଼ କଥାରୁ ଆହୁରି ବଡ଼ ବଡ଼ କଥା ଆବିଷ୍କାର କରିଯାଉଛି, ସ୍ପୁଟ୍‌ନିକ କୃତ୍ରିମ ଉପଗ୍ରହ ଇତ୍ୟାଦି ।

କିନ୍ତୁ କବି ଏସବୁ ଦେଖେନି, ଏ ସବୁ ବୁଝେନି, ସେ ଗୋଲାପ ଫୁଲ ବି ଦେଖିଲା; ଦେଖିଲା ପାଟଳ କୋମଳ ଗୋଲାପ ଫୁଲ ବି ତା'ର ମହକରେ ଚାରିଆଡ଼ ମତାଇଦେଇଛି. ପବନର ତାଳେତାଳେ ନାଚି ଚାଲିଛି । କବି ଦେଖିଲା, ସେଥିରେ ଅପସରାର ନୃତ୍ୟ, ପାଇଲା ଅପ୍‌ସରାର ଅଙ୍ଗଗନ୍ଧ, ସେ ମୁଗ୍‌ଧ ହୋଇଗଲା ସେଇଠିକରେ, ତାର ବୁଦ୍ଧି ବିବେକ ଶୋଇପଡ଼ିଲା ସେ ଆମୋଦରେ । କେବଳ ବଞ୍ଚିରହିଲା, ଚେଇଁ-ରହିଲା, ତା'ର କଳ୍ପନା । ତାର ହୃଦୟସ୍ଥ ସେଇ କଳ୍ପନାର ବଳରେ ଏଇଠିକରୁ ଦେଖିଲା ସାରାବିଶ୍ୱର ସୁଆଙ୍ଗ । କେହି କବି ଏ ସୌନ୍ଦର୍ଯ୍ୟକୁ ନାୟିକା ସହିତ ତୁଳନା କରି ବସିଲା, କେହି ହୁଏତ ଫୁଲ ନାଚର ତାଳେତାଳେ ନିଜେ ନାଚିଗଲା । ଅନ୍ୟ କେହି ଏ ସୌନ୍ଦର୍ଯ୍ୟର ସମ୍ମୁଖରେ ବିଭୋର ହୋଇ ଡାକ ପକେଇଲା, ମୁଁ ମୂର୍ଚ୍ଛା ହୋଇଗଲି, ମୁଁ ମରିଗଲି । କବି କୋଟିକେ ଗୋଟିଏ, ଯାହାର ହୃଦୟର ଗଭୀରତା ଯେତେ ସେ ସେତିକି ଉନ୍ନତ ହୋଇଉଠେ, ଯାହାର ଅନୁଭୂତି ଯେତେ, ସେ ସେତିକି କାନ୍ଦେ ବା ହସେ । ବୈଜ୍ଞାନିକ ବା ଦାର୍ଶନିକମାନଙ୍କଠାରେ ଏହି ଏକ କଥାରେ ବହୁଭାବ ନ ଥାଏ । ଗୋଟିଏ ଗୋଲାପ ଫୁଲ ଦେଖିଲେ ଜଣେ ବୈଜ୍ଞାନିକ ଯାହା କରିବ ଓ ଭାବିବ, ଆଉ ଜଣେ ମଧ୍ୟ ସେଇଆ କରିବ ଓ ଭାବିବ; ଜଣେ ଦାର୍ଶନିକ ମୁଣ୍ଡରେ ଯେ ଭାବନା ପଇଁତ୍ରା ମାରିବ ଆଉ ଜଣକ ମୁଣ୍ଡରେ ମଧ୍ୟ ସେଇଆ ହେବ । ସୁତରାଂ ତୁମେ ଦେଖୁଛ, ବୈଜ୍ଞାନିକ, ଦାର୍ଶନିକ ଓ କବି ସାହିତ୍ୟିକ ମଧ୍ୟରେ କ'ଣ ପ୍ରଭେଦ ? ବିଜ୍ଞାନ ଓ ଦର୍ଶନ ବୁଦ୍ଧିକୁ ଉସୁକାଏ, କବିତ୍ୱ କିନ୍ତୁ ତତାଏ ହୃଦୟକୁ—ଅନୁଭବୀ ହୃଦୟକୁ । ବିଜ୍ଞାନ ଓ ଦର୍ଶନ ପାଖରେ ଅନୁଭବ କିଛି ନୁହେଁ, ଯେ ପର୍ଯ୍ୟନ୍ତ କାଚନଳୀ ଭିତରେ ତା'ର ପରୀକ୍ଷା କରିଯାଇନି ବା ନ୍ୟାୟ ତର୍କଶାସ୍ତ୍ରର ନିୟମମାନଙ୍କଦ୍ୱାରା ତା'ର ପୁଙ୍ଖାନୁପୁଙ୍ଖ ଅନୁଶୀଳନ ହୋଇପାରିନି । କବି ବା ସାହିତ୍ୟିକ ପକ୍ଷରେ କିନ୍ତୁ ଅନୁଭୂତି ହିଁ ସବୁ ।

ସୁତରାଂ କବିଠାରେ, ସାହିତ୍ୟିକ ପାଖରେ ବିଜ୍ଞାନ ଦେଖିବାକୁ ଯିବା ଯେପରି ଅବିଚାର, ତାର ଦର୍ଶନ କଥା ପଚାରିବା ମଧ୍ୟ ସେହିପରି ଅହେତୁକ । ସାହିତ୍ୟିକ ହୃଦୟ-ସର୍ବସ୍ୱ, ଅନୁଭୂତି ପ୍ରାଣ, ବିଜ୍ଞାନ ଓ ଦର୍ଶନ ବୁଦ୍ଧି ସର୍ବସ୍ୱ, ଭାବନା ପ୍ରାଣ । ସ୍ୱା ବୋଲି କେହି ଯେପରି ନ ଭାବନ୍ତି, ମୁଁ କହୁଛି ଯେ କବି ଓ ସାହିତ୍ୟିକ କୌଣସି ସୌନ୍ଦର୍ଯ୍ୟ

ଦେଖିଲା ମାତ୍ରକେ ତାକୁ ଲେଖି ପକାଏ, ସେ ବିଷୟରେ ଗୋଟାଏ କାବ୍ୟ ବା ନାଟକ ବା ଉପନ୍ୟାସ ରଚନା କରିବସେ । ସେ ଭାବମୁଗ୍‌ଧ; ସବୁବେଳେ ଗୋଟାଏ କିଛି ସୌନ୍ଦର୍ଯ୍ୟ ନେଇ ସେ ବିଭୋର ଥାଏ । ଯେତେବେଳେ ଅନ୍ୟ ସୌନ୍ଦର୍ଯ୍ୟ ତା ଆଖି ଆଗକୁ ଆସିଲେ, ସେ ସାଙ୍ଗେ ସାଙ୍ଗେ ସ୍ୱାଙ୍କୁ ଛାଡ଼ି ସେଥିରେ ବିଭୋର ହୋଇଯାଏନି । କିନ୍ତୁ ତା ମନର ସେଇ ଚିତ୍ରପଟରେ ଏ ନୂତନ ସୌନ୍ଦର୍ଯ୍ୟର ଛାଇ ଆଙ୍କି ହୋଇ ରହିଯାଏ । ତା'ର ବର୍ତ୍ତମାନ ଭାବର ତା ଉପରୁ ଓହ୍ଲାଇଗଲେ, ଆଉ ଯେ ସବୁ ଛାଇ ଅଙ୍କା ହୋଇ ରହିଥାଏ ସେଥିଭିତରୁ ତା ହୃଦୟର ଓ ଅନୁଭୂତିର ଅବସ୍ଥା ନେଇ ଆଉ ଗୋଟିଏ ତାକୁ ଗ୍ରାସ କରେ । ଲୋକେ କହନ୍ତି, ରବୀନ୍ଦ୍ର ଠାକୁରଙ୍କ ହାତରେ ସବୁବେଳେ ଖଣ୍ଡେ ବହି ଓ କଲମ ରହୁଥିଲା । ରେଲଗାଡ଼ିରେ ବସିଲାବେଳେ, ମଟର ଚଢ଼ି ଗଲାବେଳେ, ବେଳ ନାହିଁ, କାଳ ନାହିଁ, ସ୍ଥାନ ନାହିଁ, ଅସ୍ଥାନ ନାହିଁ, କୌଣସି ସୌନ୍ଦର୍ଯ୍ୟ ତାଙ୍କ ହୃଦୟରେ ପଡ଼ିଲାକ୍ଷଣି ସେ କଥାଟା ସାଙ୍ଗେସାଙ୍ଗେ ତାଙ୍କ ନୋଟ ବହିରେ ଟିପି ନେଉଥିଲେ । କେହି କେହି କହନ୍ତି, ରାଧାନାଥ ମଧ୍ୟ ପାଇଖାନାକୁ ଖାତା କଲମ ଧେନି ଯାଉଥିଲେ । କି'ଣ କେତେବେଳେ ମନକୁ ଆସିବ, ସେଉଟା ସେମାନେ ଲେଖିପକାଇବେ । ମନ ଖାଲି ଥିଲାବେଳେ ସେଇସବୁ ଆପାତ ଗୁପ୍ତ ଭାବନା ପଡ଼ୁପଡ଼ୁ ହଠାତ୍ କିଛି ଗୋଟାଏ ତାଙ୍କୁ ଗିଳିବସିବ । ପୁଣି ଭୁଲିଲା କିଛିଦିନ ସେଥିରୁ ମୁକ୍ତ ହେବାଯାଏ, ଏଇ ହେଲା ସାହିତ୍ୟିକର ଜୀବନ ।

ମୁଁ ଗୋଟିଏ ଉଦାହରଣ ଦେବି । ରଜା ଦୁଷ୍ମନ୍ତ ଗୋଟିଏ ମୃଗ ପଛରେ ଗୋଡ଼ାଇଚନ୍ତି, ଧନୁ ଧରି ଟାଣିଚନ୍ତି, ଶର ସନ୍ଧାନ ହୋଇସାରିଚି, ଖାଲି ବାଗରେ ପାଇଲେ ଛାଡ଼ିବେ । ଏହିପରି ଭାବରେ ସେ ଆସି କଣ୍ୱ ମୁନିଙ୍କ ଆଶ୍ରମରେ ପହଞ୍ଚିଗଲେ । ମାଲୁମ୍ ନାହିଁ ଋଷି ଆଶ୍ରମ ବୋଲି । ଏଇଠି ବୈଜ୍ଞାନିକ ହୁଏତ କଳଣା କରିବସିବ, ମୃଗର ଗତିବେଗ କେତେ ଓ ରଜାଙ୍କ ଗତିବେଗ କେତେ, ସେ ଦୁହିଙ୍କ ଭିତରେ ତଫାତ୍ କେତେ । ତାଙ୍କର ଶର ମୃଗ ପର୍ଯ୍ୟନ୍ତ ପହଞ୍ଚିପାରିବ କି ନା ସେଉଟା ଠିକ୍ କରିନବା ହିଁ ତା' ପକ୍ଷରେ ବଡ଼କଥା । ମୃଗଟା ମରିବ କି ନ ମରିବ, ତା'ଲାଗି ତା'ର ଭାବନା ନାହିଁ । ସେ ଅଙ୍କ କଷି ଭୁଲିବ । ଦାର୍ଶନିକ ହୁଏତ କହି ବସିବ, ରଜାର ମୃଗୟା ଧର୍ମ । ମୃଗୟା କରିବାକୁ ଯାଇ ସେ ଗୋଟାଏ ଅଧେ ଜନ୍ତୁ ମାରିବାଟା ବଡ଼ କଥା କିଛି ନୁହେଁ । ମରିବାତ ସବୁଦିନିଆ, ଧର୍ମପାଳନଲାଗି ମୃତ୍ୟୁ ବା ହତ୍ୟା ଏକାକୋଟିର । କିନ୍ତୁ କବି ଏକଥା ଭାବି ପାରିଲାନି । ମୃଣ୍ଡକୁ ଏ ସବୁ ଗଲାନି । ସେ ଦେଖିଲା—କଅଁଳ ଦେହ, ଛନ ଛନ ଜୀବନ, ଲମ୍ବା ଲମ୍ବା ଆଖି, ଭୟରେ ଥରହର ଚଞ୍ଚଳ ମୃଗଟିଏ । କି ସୁନ୍ଦର ସେ, କି ଚମତ୍କାର !

ଋଷି କୁମାରଙ୍କ କଣ୍ଠରେ ଡାକ ପକାଇଲ—
"ନ ଖଳୁ ନ ଖଳୁ ବାଣଃ ସନ୍ନିପାତ୍ୟୋଽୟମସ୍ମିନ୍
ମୃଦୁନି ମୃଗଶରୀରେ ତୂଲରାଶାବିବାଗ୍ନିଃ
କ୍ୱ ବତ ହରିଣକାନାଂ ଜୀବିତଂ ଚାତିଲୋଲଂ
କ୍ୱ ଚ ନିଶିତନିପାତାଃ ବଜ୍ରସାରାଃ ଶରାସ୍ତେ ।"

ଆଉ ଗୋଟିଏ ଉଦାହରଣ ଦେବି—ରଜାପୁଅ, ବାପ ମରିଯାଇଛି, ମା କକାଙ୍କୁ ବିବାହ କରିଛନ୍ତି । କକା ଏବେ ରଜା, ସେ ଆଉ ଯୁବରାଜ ନୁହେଁ, ମାତ୍ର ଜଣେ ପରିତ୍ୟକ୍ତ ରାଜକୁମାର । ବୁଝିପାରୁଥିବ ମୁଁ କାହା କଥା କହୁଛି, ସେକ୍ସପିଅରଙ୍କ ହାମଲେଟ ଓ ବାଲ୍ମୀକିଙ୍କର ଅଙ୍ଗଦ । ବିଜ୍ଞାନର ମନସ୍ତାତ୍ତ୍ୱିକ ଅଂଶର ବିଷୟବସ୍ତୁ ଏ । ମନସ୍ତାତ୍ତ୍ୱିକ ଦେଖିବସିବ ସ୍ୱାଙ୍କର Compelx କ'ଣ, ସ୍ୱାଙ୍କର Subconscious କ'ଣ କହୁଛି । ସେ ତାଙ୍କୁ ପ୍ରଶ୍ନ ପଚାରିବ, ସମ୍ମୋହିତ କରି ତାଙ୍କୁ ପରୀକ୍ଷା କରିବ । ବହୁ ଗବେଷଣା ପରେ ସେ ହୁଏତ କହିବ ହାମଲେଟ୍‌ଙ୍କ Subconsciousର ବେଦନା ତାଙ୍କୁ ପାଗଳ କରିଦେବ । ଅଙ୍ଗଦକୁ ମଧ୍ୟ ଦାର୍ଶନିକ କହିବ, ପିତୃହନ୍ତା ପାଖରେ ଗୋଲାମି । ଏଉଟା ମଣିଷ ନୁହେଁ ପଶୁ, କିନ୍ତୁ କବି କରିଛି ଗୋଟିଏ ଅମର ଲେଖାର ନାୟକ ହାମଲେଟ୍‌ଙ୍କୁ, ସେ ପାଗଳ ବନିଯାଇଛନ୍ତି । ଏକ ପକ୍ଷରେ ମା'ଙ୍କ ପ୍ରତି ସ୍ନେହ, ରାଜା ପ୍ରତି ସମ୍ମାନ, ଅନ୍ୟ ପକ୍ଷରେ କକାଙ୍କ ଦ୍ୱାରା ନିହତ ନିଜ ପିତାଙ୍କର ଭୂତ ଆସି ତାଙ୍କୁ କହୁଛି ଗୃହ ପ୍ରତିହିଂସା, ଗୃହ ପ୍ରତିଶୋଧ । କ'ଣ କରିବ ? ହେବ ନା ହେବନି, ବଞ୍ଚିବ ନା ମରିବ, ଅନ୍ୟାୟର ବୋଝ ମୁଣ୍ଡପାତି ଗ୍ରହଣ କରିଯିବ ? ନା, ଅନ୍ୟାୟ ବିରୋଧରେ ଅସ୍ତ୍ରଧରି ତା'ର ବା ନିଜର ଶେଷ କରିନେବ ? ବିଷମ ସମସ୍ୟା ଏ, ଭାବନାରେ ପଡ଼ି ପଡ଼ି ସେ ନିଷ୍କର୍ମା ହୋଇଯାଉଛି । ଶେଷରେ ଠିକ୍ କରିଛି ଏ ସବୁ ଶେଷ କରିବାକୁ ପଡ଼ିବ । ଆତତାୟୀର ହତ୍ୟା, ଅନ୍ୟାୟର ପ୍ରତିଶୋଧ ସବୁ ଠିକ୍ । କିନ୍ତୁ ଶେଷମୁହୂର୍ତ୍ତରେ ପୁଣି ସେଇ ଅନିଶ୍ଚିତତା । ଫଳ ନିଜ ପ୍ରେୟସୀଙ୍କର ମୃତ୍ୟୁ ଓ ନିଜର ଆତ୍ମହତ୍ୟା । ସେ ହେଲ ପାଶ୍ଚାତ୍ୟ କବିଙ୍କର କଥା । ପ୍ରାଚ୍ୟ କବି ବାଲ୍ମୀକି ମଧ୍ୟ ଠିକ୍ ସେଇ ରକମ ଗୋଟାଏ ଘଟଣା ସୃଷ୍ଟିକଲେ ବାଲିର ପୁତ୍ର ଅଙ୍ଗଦ । ରାମ ବାଲିକୁ ମାରିଲେ ସୁଗ୍ରୀବର ପ୍ରରୋଚନାରେ, ମା' ତାର ସୁଗ୍ରୀବକୁ ବିବାହ କଲେ । ତଥାପି ଅଙ୍ଗଦ ରହିଲେ ରାମଚନ୍ଦ୍ରଙ୍କର ଦାସ, ଗୋଲାମ ସବୁ ସହିନେଲେ । କାରଣ ଜାତିର ଓ ଦେଶର ମଙ୍ଗଳ ଲାଗି ତାଙ୍କୁ ତାଙ୍କ ହୃଦାବେଗକୁ ବଳି ଦବାକୁ ପଡ଼ିବ । କିନ୍ତୁ ମନେ-ମନେ କଥାଟା ଗୁମୁରେଇ ହେଲା । ରାମଚନ୍ଦ୍ର ଜାଣିଲେ ବୁଝିଲେ, ଏ କେତେ ବଡ଼ ତ୍ୟାଗ, କେତେ ଆଦର୍ଶ । କହିଲେ, "ବାପା, ଏ ଜୀବନରେ ନୁହେଁ, ଅନ୍ୟ ସମୟରେ କୃଷ୍ଣ ଅବତାରରେ ତୁମେ ଜରାଶବର ରୂପରେ ତୁମ ଏ ପିତୃହତ୍ୟାର ପରିଶୋଧ ନବ ମୋ

ଉପରେ ।'' ଭକ୍ତ ଜ୍ଞାନୀ ପ୍ରାଚ୍ୟ ସଂସ୍କୃତିର ବିଧାତ୍ମକ ଅଙ୍ଗ, ଜନ୍ମଜନ୍ମାନ୍ତରରେ ବିଶ୍ୱାସ ଥିଲା । ଗୋଟାଏ ଦୁଇଟା ଜନ୍ମ କିଛି ନୁହେଁ । ସେ ସେଥିକରେ ସନ୍ତୁଷ୍ଟ ହୋଇଗଲେ, ପ୍ରାଚ୍ୟ କବିର ଏ ପରିଣତି ବିଜ୍ଞାନ ଓ ଦର୍ଶନର ପରିଣତିଠାରୁ କେତେ ତଫାତ୍, ପ୍ରାଚ୍ୟ: ପରିଣତିଠାରୁ ପାଶ୍ଚାତ୍ୟ ପରିଣତିର ମଧ୍ୟ କେତେ ତଫାତ୍ ।

ସାହିତ୍ୟ କଥା ଭାବିଲାବେଳେ ତୁମକୁ ଏ କଥାଟି ମନେରଖିବାକୁ ପଡ଼ିବ । ପାଶ୍ଚାତ୍ୟ ସାହିତ୍ୟର ରୂପ ଓ ରେଖା ପ୍ରାଚ୍ୟସାହିତ୍ୟ ଠାରୁ ଭିନ୍ନ ହବାର କଥା, ବେଷ୍ଟନୀ ଅଲଗା, ଆବହାଓ୍ୱା ଅଲଗା ।

ତାହେଲେ ମୁଁ କ'ଣ କହିବାକୁ ଚାହେଁ ଯେ, କାବ୍ୟ, ଉପନ୍ୟାସ, ନାଟକ, ସମାଲୋଚନା ଇତ୍ୟାଦି ସାହିତ୍ୟର ଭିନ୍ନ ଭିନ୍ନ ବିଭବରେ ଦର୍ଶନ ଇତ୍ୟାଦି ରହି ନ ପାରେ ? ନା, ନା, ମୁଁ ସେ କଥା କହୁନି । ରହିବନି କାହିଁକି ? ଲେଖକର ଜ୍ଞାନ ଓ ଅଭିଜ୍ଞାନ ଉପରେ ସେ ସବୁ ନିର୍ଭର କରେ । ସାହିତ୍ୟିକ ଜଣେ କଳାକାର, ସେ କଳ୍ପନାର କୋଣାର୍କ ତିଆରିକରେ । ସେ କୋଣାର୍କ ତିଆରି ଲାଗି ଅଙ୍କଶାସ୍ତ୍ରଠାରୁ ଆରମ୍ଭ କରି କାମଶାସ୍ତ୍ର ପର୍ଯ୍ୟନ୍ତ ସବୁଶାସ୍ତ୍ରର ଜ୍ଞାନ ଦରକାର କରିପାରେ । କିନ୍ତୁ ସେ ଦେଉଳ ନୁହେଁ, ସେ ଦେଉଳର ସୌନ୍ଦର୍ଯ୍ୟ ନୁହେଁ, ଦେଉଳର କବିତା ନୁହେଁ, ନିର୍ମିତ ଦେଉଳର ପଥର, ଚୂନ, ବାଲି ଦେଉଳ ନୁହେଁ ବା ଦେଉଳର ସୌନ୍ଦର୍ଯ୍ୟ ନୁହେଁ । ତୁମେ ଦେଉଳଟି ଦେଖିଲାବେଳେ ସେଥିରେ ଗଣିତଶାସ୍ତ୍ରର କି ନିୟମ ଦରକାର ହୋଇଥିଲା, ସେକଥା ଭାବିବସନି । ସେ ମୂର୍ତ୍ତି ସବୁ ଦେଖି କଳାକାର ବାତ୍ସାୟନଙ୍କ କାମଶାସ୍ତ୍ରର ସଠିକ ଅନୁକରଣ କରିଚନ୍ତି କି ନାହିଁ ସେକଥା ଭାବିବସନି । ତୁମେ ଦେଖ ତା'ର ସାମୂହିକ ସୌନ୍ଦର୍ଯ୍ୟ । ସାହିତ୍ୟିକର ରଚନାରେ ସେଇ ସୌନ୍ଦର୍ଯ୍ୟବୋଧ ଓ ଶୋଭା-ପ୍ରକାଶ ହିଁ ପ୍ରାଣ, ସେଥିରେ କବି ଯେବେ ଦର୍ଶନ, ବିଜ୍ଞାନ ଇତ୍ୟାଦି ପ୍ରୟୋଗ କରିଥାଏ, ତା'ହେଲେ ସେସବୁ ଆନୁଷଙ୍ଗିକ ବିଷୟବସ୍ତୁର ଆବହାଓ୍ୱା, ବେଷ୍ଟନୀ ମାତ୍ର । ଦରକାର ପଡ଼ିପାରେ, ନ ପଡ଼ିପାରେ ବି ।

ଏକଥା ମୁଁ ନୂଆକରି କହୁନି । ଅଗରୁ ଆମ ବଡ଼ବଡ଼ଆମାନେ ମଧ୍ୟ ଏଇ କଥା କହିଚନ୍ତି । ଭାରତୀୟ କବି କହିଥିଲେ—'ସତ୍ୟଂ ଶିବଂ ସୁନ୍ଦରଂ' ସତ୍ୟ ଶିବ ଓ ସୁନ୍ଦର, ଏଇ ହେଉଚି କବିତା । ପାଶ୍ଚାତ୍ୟ କବି କହିଥିଲେ—Truth is beauty, beauty truth. ସତ୍ୟ ହେଲା ସୌନ୍ଦର୍ଯ୍ୟ, ସୌନ୍ଦର୍ଯ୍ୟ ମଧ୍ୟ ସତ୍ୟ, ସତ୍ୟ ଓ ସୌନ୍ଦର୍ଯ୍ୟ ମଧ୍ୟରେ ପ୍ରଭେଦ ହେଉଛି, ଯାହା ସୁନ୍ଦର ତାହା ସତ୍ୟ, ଯାହା ସତ୍ୟ ତାହା ନିଶ୍ଚୟ ସୁନ୍ଦର । ଆର୍ଯ୍ୟଋଷି ଅଗତରେ ଆଉ ଗୋଟିଏ ଜିନିଷ ଯୋଡ଼ିଦେଲେ—ଶିବ, ମଙ୍ଗଳ, ଶୁଭ । ଏ ଗୋଟାଏ ପ୍ରାଚ୍ୟ ପାଶ୍ଚାତ୍ୟର ପାର୍ଥକ୍ୟ, ଏଇ ପାର୍ଥକ୍ୟ ହେତୁରୁ ପୁରୁଣା ଭାରତୀୟ କାବ୍ୟ ନାଟକ ଦୁଃଖାତ୍ମକ ହେଉ ନ ଥିଲା । ସଂସ୍କୃତ ସାହିତ୍ୟର ବିଶିଷ୍ଟ କାବ୍ୟ ନାଟକ

ସୁଖାବହ ନୁହେଁ । କିନ୍ତୁ ପାଶ୍ଚାତ୍ୟ ସାହିତ୍ୟରେ ସୃଜନାତ୍ମକ ଉଚ୍ଚକୋଟିର ସାହିତ୍ୟ ସରଳ, ସଂଯମ ସୃଷ୍ଟି ଶିଳ୍ପ ସତ୍ୟ ଓ ସୁନ୍ଦର ସହିତ ଶିବ । ସେମାନେ ସୃଷ୍ଟି ଥିଲେ ମାତ୍ର ସତ୍ୟ ଓ ସୁନ୍ଦର ।

କିନ୍ତୁ ମୁଁ ଏ ସବୁ କ'ଣ କହୁଚି ? କିଛି ତ ଜାଣିନି, ଏ ବିଷୟ ଏତେ ବିରାଟ, ଏତେ ମହାନ୍ ଯେ କହିବାକୁ ବସିଲେ ଚତୁର୍ମୁଖ ବ୍ରହ୍ମା ମଧ୍ୟ ପାରିବେନି, ହୁଃ, ବ୍ରହ୍ମା, ସତ୍ୟ, ଶିବ, ସୁନ୍ଦର ! ରଖିଦିଅ ତୁମର ଏ ସବୁ । ଏ ବ୍ୟାବହାରିକ ଯୁଗରେ ସାହିତ୍ୟର ଏ ସବୁ ବିଚାର କରିବାକୁ ବେଳ ଅଛି କାହାର ? ଦି ପଇସା ଭ୍ୟାଇ ପେଟ ପୋଷିବା ଲାଗି ସାରାଦିନର କାମଧନ୍ଦା ପରେ ଭଲ ଏ ସବୁ ଭାବିବା ଲାଗି ମନରେ ଓ ମୁଣ୍ଡରେ ବଳ ଆସିବ କୁଆଡ଼ୁ । ଖଣ୍ଡେ ଅଧେ ଶସ୍ତା ପ୍ରେମ କାହାଣୀ, ଗୋଟାଏ ଦି'ଟା ଆଉରି ଶସ୍ତା ରହସ୍ୟ କାହାଣୀ, ଏତିକି ହେଲେ ପଢ଼ୁ ପଢ଼ୁ ଶୋଇପଡ଼ିଲେ ହେଲା । ମନଟା ଟିକିଏ ହାଲୁକା ହୋଇଯିବ ତ, ନିଦ ତ ଆସିଯିବ ! ଆମେ ତା'ର ଭିତରେ ବିଜ୍ଞାନ ପାଉଁ, ଶସ୍ତା ବଜାର ବିଜ୍ଞାନ, ଦର୍ଶନ ପାଉଁ, ଶସ୍ତା ବଜାର ଦର୍ଶନ, ହୋଇଗଲା ସବୁ, ରଖିଦିଅ ତୁମର ଏସବୁ ସାହିତ୍ୟ । ଫିଙ୍ଗିଦିଅ ଦୂରେ ତବ ଏହି ଅବୋଧ ବକ୍ତୃତା, ହେଲା ଏବେ, ଆମ କଥା ଆମଠି ଥାଉ । ଦରକାର ପଡ଼ିଲେ ମୁଣ୍ଡି ଫିଟିବ ଯେ ।



# ଆମ୍ଭ

ବିଲାତର ଜଣେ ବଡ଼ କବି କୁଆଡ଼େ କହିଛନ୍ତି ଯେ ଗୋଟାଏ ନା'ରେ କଣ ଅଛି ? ଗୋଲାପ ଫୁଲକୁ ଗୋଲାପ ନ କହି ଆଉ ଯାହା ଇଚ୍ଛା ତା ନାମ ଦେଇ କହିଲେ ମଧ୍ୟ, ତାର ସୁନ୍ଦରପଣ ଓ ମହକଟି ତ ଲୁଚିଯିବନି ? ବଡ଼ କବି, ବିଶେଷତଃ ବିଲାତର ତାଙ୍କର କଥା ଅବଶ୍ୟ ସତ ହବା ଉଚିତ । ସେ କିନ୍ତୁ ପୁରୁଣା ମରହଟ୍ଟି-କାଳିଆ । ଏ ସ୍ପୁଟ୍ନିକ ଯୁଗରେ ସେ ପୁରୁଣା କଥାଗୁଡ଼ାକୁ ମାନିବା ପାଇଁ ଆମ୍ଭେମାନେ, ବିଶେଷତଃ ଏ ସ୍ୱାଧୀନ ଭାରତର ସ୍ୱାଧୀନ ସାହେବମାନେ ଆଦୌ ପ୍ରସ୍ତୁତ ନୁହନ୍ତି । ଠିକ୍ କି ନା ଏକଥା ଯେବେ ସତ ହୁଏ, ସ୍ୱାକୁ ଯେବେ ମାନିନିଆଯାଏ, ତାହେଲେ ଆମକୁ ଧରିନବାକୁ ହବ ଯେ, ଆମ ଗୋଷ୍ଠି ବାହାରେ ମଧ୍ୟ ଭଲଲୋକ ଅଛନ୍ତି । ଆମ ଗୋଷ୍ଠୀ ଛଡ଼ା ଅନ୍ୟ କୌଣସି ଗୋଷ୍ଠୀ ଭଲ ହୋଇଯାଇପାରେ । ତୁମେ ମୋଟେ ବୁଝୁନ । ଆମେ ଯେବେ ଏ କଥା ସ୍ୱୀକାର କରୁ, ତାହେଲେ ଆମେ ଏକଚ୍ଛତ୍ର ଓ ଚିରନ୍ତନ ଶାସକ ହୋଇ ରହିବୁ କିପରି ? ତୁମ ଭିତରେ ପଣ୍ଡିତ, ବିବେକୀ, ସାଧୁ, ସଚ୍ଚୋଟ, ବୁଦ୍ଧିମାନ, ଶକ୍ତିମାନ ଲୋକ ଥିଲେ ମଧ୍ୟ ଆମେ ତାଙ୍କୁ ସ୍ୱୀକାର କରି ନପାରୁ, ତାଙ୍କର ପାଣ୍ଡିତ୍ୟ ବା ବୁଦ୍ଧିମତ୍ତାକୁ ଆମେ ମାନିନେଇ ନପାରୁ । ସେ ଯେତେବେଳେ ଆମ ଗୋଷ୍ଠୀ ଭିତରକୁ ଆସିନାହାନ୍ତି, ସେ ବୁଦ୍ଧିମାନ ବା ପଣ୍ଡିତ ହୋଇ ନ ପାରନ୍ତି । ସେ ଯେ ନ ଆସିଚନ୍ତି ଆମ ଭିତରକୁ, ତାହା ହିଁ ତାଙ୍କ ମୂର୍ଖତାର ପରିଚୟ । ଏକଥା ହିଟଲର ଓ ମୁସୋଲିନି ମଧ୍ୟ କହୁଥିଲେ । ଏକଥା ମାକିଆଭେଲି ତାଙ୍କ ଅମର ଶାସ୍ତ୍ର 'ଦ ପ୍ରିନ୍ସ'ରେ କହିଯାଇଛନ୍ତି । ଯେ ହିଟଲରଙ୍କ ମତ ଅନୁସାରେ ଆର୍ଯ୍ୟ ହୋଇ ଗଣ୍ୟ ନୁହେଁ, ତାର ଅସ୍ତିତ୍ୱ ପର୍ଯ୍ୟନ୍ତ ଆମେ ସ୍ୱୀକାର କରିବୁନି । ସେହି ହେତୁରୁ ଆଇନ୍‌ଷ୍ଟାଇନ୍‌ଙ୍କ ଭଳି ବୈଜ୍ଞାନିକମାନଙ୍କର ପ୍ରାଣନେଇ ଦେଶ ଛାଡ଼ି ପଳାୟନ, ନିର୍ବାସନ । ଏହି ହେତୁରୁ ହିଁ ହିଟଲରଙ୍କ ପରାଜୟ । ତାଙ୍କ ମତରେ ଏହିପରି ଅନାର୍ଯ୍ୟ ଜାତୀୟ କେତେଗୁଡ଼ାଏ ବୈଜ୍ଞାନିକ ଜର୍ମାନୀରୁ ପଳାଇଯାଇ ମାର୍କିନରେ ଓ ବିଲାତରେ ରହି ଯେଉଁସବୁ ଅସ୍ତ୍ରଶସ୍ତ୍ର ଆବିଷ୍କାର କଲେ, ତାରି ବଳରେ ହିଟଲର ମୁସୋଲିନି-ହିରୋହିଟୋ ଚକ୍ରର ଧ୍ୱଂସ ଓ ବିନାଶ ।

ଆମେ କିନ୍ତୁ ତା କରୁନୁ । ଆମ ଭିତରେ ରହି କେହି ଯେବେ ଆମ ମତ ବାହାରେ କିଛି କହେ, ତାହେଲେ ଆମେ ତାକୁ ଆମ ଦେଶରୁ ବାହାର କରି ଦଉନୁ । କିନ୍ତୁ ତା'ର ସେ କହିବାର ବାହାଦୁରି ଅନ୍ୟମାନେ ତାକୁ ଦବାଲାଗି ପ୍ରସ୍ତୁତ ଥିଲେ ମଧ୍ୟ, ଆମେ ତାକୁ ଦ୍ୟାଇ ଦଉନୁ । ସେ ନୋବେଲ ପୁରସ୍କାର ଭଳି ଉଚ୍ଚ ସମ୍ମାନ ଆମ ଗୋଷ୍ଠୀ ବାହାରୁ ପାଇଲେ ମଧ୍ୟ ଆମେ ତାକୁ ତାହା ହାସଲ କରିବାର ସୁବିଧା ଦଉନୁ । ଘରେ

ଅସ୍ଥାନ ମାତ୍ରବସି କେତେ କେତେ ନଜର ଆଦର୍ଶ ଓ ନୀତି ସହିତ ଛକାପଞ୍ଝା ନୀତି ଧଇନାହାନ୍ତି । ନୀତି ଓ ଆଦର୍ଶର ଛକାପଂଝା ନୀତିରେ ହିଁ ରାଜନୀତିର ବ୍ୟଭିଚାର ।

ଅନ୍ତତଃ ସେହିକଥା ପଶ୍ଚିମ ରାଜନୀତିକମାନେ କହନ୍ତି । ପିଟ, ଗ୍ଲାଡ୍‌ଷ୍ଟୋନ୍‌ଙ୍କ-ଠାରୁ ଆରମ୍ଭକରି ଚର୍ଚ୍ଚିଲ୍‌ଙ୍କ ପର୍ଯ୍ୟନ୍ତ ବିଲାତି ରାଜନୈତିକ ନେତାମାନେ ଓ ଆବ୍ରାହାମ ଲିଙ୍କନଠାରୁ ଆରମ୍ଭକରି ଆଇଜେନ୍ ହାଓ୍ୱାରଙ୍କ ପର୍ଯ୍ୟନ୍ତ ମାର୍କିନ ରାଜନୈତିକମାନେ ଏକଥା କରିଆସିଚନ୍ତି । କିନ୍ତୁ ସେମାନେ ତ ପୁରାଣିକ ଯୁଗର କଥା ଜାଣନ୍ତିନି । ଯାହା ଜାଣିଚୁ ଆମେ, ଆମର ବାଢ଼ିଆଢ଼େ, ଦାଣ୍ଡ ଦୁଆରେ ପୁରାଣିକଗୁଡ଼ାକ ଗଡ଼ଗଡ଼ହଉଚନ୍ତି କି ନା !

ଯାହାହଉ ତୁମେ ଦେଖିଲ, ଆମ ଏ ସ୍ୱାଧୀନ ଭାରତରେ ବିଲାତି କବିଙ୍କର ସେଇ ପୁ କଥା—ନାରେ କିଛି ନାହିଁ, ଗୁଣରେ ହିଁ ସବୁ—ମୋଟେ ଲାଗୁ ହବନି । ଆମ ମତରେ ଗୁଣରେ କିଛି ନାହିଁ, ନାମରେ ହିଁ ସବୁ । ମାନେ ଗୋଲାପ ଫୁଲଟାକୁ ଯେବେ ଗନ୍ଧ-ଗେନ୍ଦୁଗ ଫୁଲ ବୋଲି କୁହାଯାଏ, ତାହେଲେ ସେ ଗନ୍ଧଗେନ୍ଦୁଗ ଭଳି ଭଣ ଭଣ ଗନ୍ଧେଇବ । ଏ ଦେଶର ଲୋକେ କହନ୍ତି, ପାଞ୍ଚଜଣରେ ଛେଳି କୁକୁର । ପାଞ୍ଚଜଣ କହିଲେ, ଆରେ ଏଟାତ ଛେଳି ନୁହେଁ, କୁକୁରଟାଏରେ । ସତକୁ ସତ ଛେଳିଟା କୁକୁର ହୋଇଗଲା । ସେମାନେ ଅବଶ୍ୟ ଗୋଟାଏ ମତଲବ ପରି ସେକଥା କହିଥିଲେ । ଦେଖିଲେ ଭଲ ଛେଳିଟାଏ, ଧପ୍‌ପାମାରି ନେଇପାରିଲେ, ଗୋଟାଏ ଭୋଜିକରି ମଜ୍ଜା ଉଡ଼ାନ୍ତେ । କହିଲେ, ଛେଳି ନୁହେଁ କୁରର । ସେ କୁକୁର ହୋଇଗଲା ତା ମାଲିକ ପାଖରେ । ସେ ଫୋପାଡ଼ିଦେଲା ତାକୁ ଘୃଣାରେ । ସେଇ କୁକୁର ପୁଣି ଛେଳି ହୋଇଗଲା ଏ ପାଞ୍ଚଜଣଙ୍କ ପେଟରେ ଓ ପାଟିରେ । ବୁଝିପାରୁଚନ୍ତି ତ କଥାଟା ? ଏକଥା କଳି ଓ କପଟ ଏ ଯୁଗରେ, ଆମରି ଭିତରେ ଏଇ ଭାରତବର୍ଷରେ ହଉଛି, ସେକଥା ନିଶ୍ଚୟ ଜାଣିପାରୁଥିବେ । କେତେ ବଖାଣି କରି କହିବ । ଧପ୍‌ପାମାରି ତୁମେ ପଞ୍ଚାଏ ଯାହା କହିବ, ସେକଥା ହୋଇଯିବ । ପ୍ରକୃତ ସତ୍ୟ, ସତ୍ୟ ବିଶ୍ୱାସ ଓ ବିଶ୍ୱସ୍ତବାଣୀର କୌଣସି ମୂଲ୍ୟ ନାହିଁ । ସବୁକଥା କଥାଏ, ନାମ ଆଉ ଏକ କଥା, ସବୁଠାରୁ ବଡ଼କଥା । 'ନାମୈବ କେବଲଂ' ।

ଏହାର ବିଶେଷ ପ୍ରମାଣ ଆପଣମାନେ ପାଇବେ ଆମର ଧର୍ମ ନେତାମାନଙ୍କ-ଠାରୁ । ସେମାନଙ୍କ ମତରେ ନାମ ଜପରେ ସବୁ ଅଛି । ବିଶ୍ୱାସ ଓ ସହୃଦୟତାରେ କିଛି ନାହିଁ । ଟପ ଟପ ମାଳି ଗଡ଼ୁଥିବ, ପକ୍ ପକ୍ ଓଠ ଓ ଜିଭ ହଲୁଥିବ । ହରେ ରାମ ହରେ ରାମ, ନିତାଇ ଗୌର ରାଧେଶ୍ୟାମ । ଯେ ଯେତେ ଜପିପାରିଲା ଏଇ ନାମକୁ ତାର ସେତିକ ପୁଣ୍ୟ । ଅବଶ୍ୟ ମଝିରେ ମଝିରେ ରାମକୃଷ୍ଣ, ମହାତ୍ମା ଗାନ୍ଧି ଇତ୍ୟାଦି ଜଣେ ଅଧେ କହିଯାଇଚନ୍ତି, ନାମରେ କିଛି ନାହିଁ । ଈଶ୍ୱର ଆଲ୍ଲା ତେରେ ନାମ । ଭଗବାନଙ୍କ

ଉପରେ ବିଶ୍ୱାସ କଲେ ହିଁ ହେଲା, ମନପ୍ରାଣ ଦେଇ ଡାକଲେ ହିଁ ହେଲା । ଯୁ ଇଚ୍ଛା ସେ ନାଁ ଦିଅ ପଛକେ, ରାମ, କୃଷ୍ଣ, ଖ୍ରୀଷ୍ଟ, ଶିବ, ଗଡ୍, ଆଲ୍ଲା । କିନ୍ତୁ ତାଙ୍କ କଥା ଶୁଣିବ କିଏ ? ଫଳହେଲା, ପଞ୍ଚାଏ ନା ଜପି ବସିଲେ ତ, ଆଉ ପଞ୍ଚାଏ କହିଲେ, ସ୍ୱେ କହୁଚନ୍ତି ଇମିତ, ସେ କହୁଚନ୍ତି ସିମିତ । ଏତେ ଗୋଳମାଳକୁ କିଏ ଯାଏ ହୋ । ମାର ଗୁରୁ ସେ ଭଗବାନଙ୍କୁ । ଆମର ନେତା ହିଁ ଆମର ଭଗବାନ । ନେତାମାନେ ଗୁରୁ । ଗୁରୁ ଯେ ଭଗବାନଙ୍କଠାରୁ ବଡ଼, ଏକଥା ମଧ୍ୟ ଆମ ଧର୍ମଧାଣ୍ଡମାନେ ବାସ୍ତବର କହି ଆସୁଚନ୍ତି । ସୁତରାଂ ଏଇ ନାମରେ ହିଁ ଜୟ ।

ନାମ ଯେତେବେଳେ ଅଛି, ତାର ଅର୍ଥ ଅଛି । ସେ ଅର୍ଥ ସେ ନାମର ବସ୍ତୁ ସହିତ ନିଶ୍ଚୟ ସମ୍ବନ୍ଧ । ଚୈତନ୍ୟ ଥିଲେ ଗୋରା । ସୁତରାଂ ସେ ଗୌରାଙ୍ଗ । କୃଷ୍ଣ ଥିଲେ କାଳିଆ । ସୁତରାଂ ସେ କୃଷ୍ଣ, ଶ୍ୟାମ, ଘନକାଳିଆ ଇତ୍ୟାଦି । ଏଇ ହିସାବରେ ଦେଖିଲେ ମୋ ନା ଗୋବନ୍ଦ । ଗୋ ମାନେ ଗୋରୁ, ସୁତରାଂ ମୁଁ ଗୋଟାଏ ଗୋରୁ ବା ଗୋରୁ ସହିତ ସମ୍ବନ୍ଧ । କାହାର ନା ଯେବେ ଚନ୍ଦ୍ରା ହୋଇଥାଏ, ସେ କାଳୀ ହୋଇପାରେନ । ହେଲେ ମଧ୍ୟ ତାକୁ କାଳୀ ବୋଲି ତୁମେ କହିପାରିବନି । ସେ ନିଶ୍ଚୟ କନକବରଣୀ । ତୁମେ ଯେବେ ସେହିପରି ଭାବରେ ତାକୁ ନ ଦେଖିପାରୁଥାଅ, ସେ ତୁମ ଆଖିର ଦୋଷ । ଏ କଥା ତାହେଲେ ସାବ୍ୟସ୍ତ ହୋଇଗଲା । ଆଉ ଏ ବିଷୟରେ ଉଁ ଚୁଁ ହବାର ଉପାୟ ନାହିଁ ତୁମର ।

ତାହେଲେ ଏଥର ଯେ ଆମ୍ବ କଥା ମୁଁ କହିବାକୁ ଯାଉଚି, ଏ ଆମ୍ବ ନାମର ନିଶ୍ଚୟ ସାର୍ଥକତା ଅଛି । ନିଶ୍ଚୟ, ନିଶ୍ଚୟ, ତୁମେ ଜାଣ ଓଡ଼ିଆମାନେ ଯାକୁ କହନ୍ତି ଆମ୍ବ, ସଂସ୍କୃତ ପଣ୍ଡିତେ କହନ୍ତି ଆମ୍ର, ବଙ୍ଗାଳି ଓ ହିନ୍ଦୁସ୍ତାନି କହନ୍ତି ଆମ୍, ଇଂରାଜମାନେ ମ୍ୟାନ୍‌ଗୋ । ଏହି ଫଳର ଏଇ ଯେ ଜାତି ଜାତି ଭେଦରେ ଭିନ୍ନ ନାମକରଣ ହୋଇଛି, ତାର ଅର୍ଥ କଣ ଜାଣ ? ତାର ଉଦ୍ଦେଶ୍ୟ ହଉଛି, ସେଇ ନା', ସେଇ ଜାତିର ପରିଚୟ ଦିଏ । ସଂସ୍କୃତ କହିଲା ଆମ୍ର । ମାନେ ସଂସ୍କୃତଶାସ୍ତ୍ର କହେ, ସବୁ ଆମର । ମୋର ସବୁ । ଏ ବିଶ୍ୱସଂସାର ସବୁ ମୋର, ସେ ଏକଥା କହିଲାବେଳେ ସୂଚେଇଦେଲା ଦ୍ୱୈତ ଭାବ । ମୁଁ ଆଉ ମୋର ଅଛି । ତୁମେ ମୋର । ତୁମେ ଯେତେବେଳେ ମୁଁ ହେଇଗଲ, ସେତେବେଳେ ମୁଁ ମଧ୍ୟ ହେଇଗଲି ତୁମର । ଏକ କୁଟୁମ୍ବ । ଏକ ଘର, ଏକ କଥା । ସଭ୍ୟତାର ପ୍ରଥମ ଯୌବନରେ ଯୌବନର ମାଦକତା ଏ, ବିଶ୍ୱପ୍ରେମରେ ଭରି-ଯାଇଥିଲା ଗୋଟାଏ ଛଳ ଛଳ ତରଳ ଭାବ, ଗୋଟାଏ ଉନ୍ମାଦନା । ସେଥିରେ ମଣିଷ ଆତ୍ମପର ଭୁଲିଯାଇ ସବୁକୁ ଆପଣାର ଓ ଆପଣାକୁ ସବୁର କରିପାରିଥିଲା । ବେଦ, ବେଦାନ୍ତ ଓ ଉପନିଷଦର ପ୍ରତ୍ୟେକ ସ୍ତୋତ୍ର, ପ୍ରତ୍ୟେକ ଋକ ଓ ପ୍ରତ୍ୟେକ ମନ୍ତ୍ରରେ ଏହି ଭାବ ଅଂମେ ପାଇଁ । ତାପରେ ଆସିଗଲା ହିନ୍ଦି ସଭ୍ୟତା । ସେ କହିଲା, ଆମ ଆମ୍, ଆମି । ସବୁ ମୁଁ । ମୋ'ଛଡ଼ା ଆଉକିଛି ନାହିଁ । ମୋର ସ୍ୱାର୍ଥ ହିଁ ପୁଣ୍ୟ । ମୋର ଅଭିଳାଷ

ହିଁ ଏକମାତ୍ର କାମ୍ୟ । ତୁମେ କହିବ, ଏହି ତ ଅଦ୍ୱୈତବାଦ, ଏହି ମଧ୍ୟ ସେହି ବେଦ ବେଦାନ୍ତର ଶିକ୍ଷା । କିନ୍ତୁ ନୁହେଁ । ତୁମେ ଯେ ଭାବରେ ସ୍ୱା'ର ଅର୍ଥ କରୁଚ, ସେ କଥା ବେଦ ବେଦାନ୍ତ କେବେ କହିନ । ତୁମେ କହୁଚ ତୁମେ, ତୁମର ବ୍ୟକ୍ତିତ୍ୱ, ତୁମର କ୍ଷୁଦ୍ର ମନୁଷ୍ୟତ୍ୱ ହିଁ ସବୁ । ତୁମେ କହୁଚ ଏତେବଡ଼ ଗୋଟାଏ ଦେଶରେ ହିନ୍ଦି ଭାଷା ବା ବଙ୍ଗଳା ଭାଷା ହିଁ ସବୁ, ତୁମର ହିନ୍ଦି ସଭ୍ୟତା ବା ବଙ୍ଗଳା ସଭ୍ୟତା ହିଁ ଏକମାତ୍ର ସଭ୍ୟତା । ଆଉ ସବୁ ଅସଭ୍ୟ, ଆଉ ସବୁ କିଛି ନୁହେଁ । ସମସ୍ତେ ତୁମଛଡ଼ା ଆଉ ସମସ୍ତେ, ତୁମର ଭକ୍ତ ହେବେ, ତୁମର ପଛରେ ଧାଇଁବେ, ତା ନହେଲେ ସେମାନେ ଅଛନ୍ତି ବୋଲି ମଧ୍ୟ ତୁମେ ମାନିବନି । ଏ ଅଦ୍ୱୈତବାଦ ନୁହେଁ । ଏହି ହେଉଚି ସ୍ୱାର୍ଥବାଦ । ଏହି ହେଉଚି ଅସ୍ମପଚନବାଦ । ଠିକ୍ ଅଦ୍ୱୈତବାଦର ବିପରୀତ । ଏହି ହେଉଚି ନାମ ପୂଜା, ନାମବାଦ । ନାମୈବ କେବଳଂ । ହିନ୍ଦ୍ ଏବ କେବଳଂ ବଙ୍ଗ୍ ଏବ କେବଳଂ । ହିନ୍ଦି ନାମର ପୂଜା, ନ ହେଲେ ବଙ୍ଗନାମର ପୂଜା । ସେହିପରି ଓଡ଼ିଆ କହେ ଆମ୍ଭ । ତା ମାନେ ଓଡ଼ିଆ ଯାହାକୁ ପାଇଲା; ତାକୁ କହିଲା, ଆସ ମ, ବସ । ଆମ୍ଭ କଥାଟା ଯେ ବିଲକୁଲ୍ ସତ, ଏଥିରେ କୌଣସି ସନ୍ଦେହ ନାହିଁ । ଏ ଓଡ଼ିଶାକୁ ଯେ ଆସିଲା, ଓଡ଼ିଆ ତାକୁ ଡାକିଆଣି ନିଜ ଘରେ ବସେଇଲା । ସାପ ହେଲେ ଅଣ୍ଟିକି ଆସ, ନେଉଳ ହେଲେ ମଧ୍ୟ ଅଣ୍ଟିକି ଆସ । ତା ଅଣ୍ଟିରେ ସାପ ନେଉଳ ଏକାଠି ବସିଗଲେ, ତାଙ୍କ ନିଜ ଜନ୍ମଗତ ଶତ୍ରୁତା ଭୁଲିଯାଉଚନ୍ତି । ସାପ କାମୁଡ଼ୁଚି ଓଡ଼ିଆକୁ, ନେଉଳ ମଧ୍ୟ କାମୁଡ଼ୁଚି ସେହି ଓଡ଼ିଆକୁ । ସମସ୍ତେ ତାକୁ ମାରୁଚନ୍ତି, କାମୁଡୁଚନ୍ତି । ତଥାପି ସେ କହୁଚି ଆମ୍ଭ । ଭାରତବର୍ଷର ପ୍ରତ୍ୟେକ ପ୍ରାନ୍ତର ଲୋକେ ଏଇ ଓଡ଼ିଶାରେ ଆସି ହଜାର ହଜାର ସଂଖ୍ୟାରେ ଗାଦମାଡ଼ି ବସୁଚନ୍ତି । ସେ ଓଡ଼ିଶା ଯାଙ୍କରେ ଏକ ହୋଇନାହାନ୍ତି । ଓଡ଼ିଆ ତାଙ୍କ ପାଇଁ ତାଙ୍କ ଭାଷାରେ ପାଠଶାଳୀ ବସଉଚି, ତାଙ୍କ ପାଇଁ ଭୂକିଶ ସାଇତ ରଖୁଚି । କିନ୍ତୁ ଓଡ଼ିଆ ଅନ୍ୟ ପ୍ରାନ୍ତକୁ ଗଲେ, ତାକୁ କୁହାଯାଉଚି—ତୁମେ ଯୁ ପ୍ରାନ୍ତକୁ ଯାଉଚ, ସେହି ପ୍ରାନ୍ତର ହୋଇ ଯା । ଯେ ବିହାରରେ ରହିଲେ, ସେ ହିନ୍ଦି ହୋଇଯାଆନ୍ତୁ, ଯେ ବଙ୍ଗଳାରେ ରହିଲ, ସେ ବଙ୍ଗାଳି ହୋଇଯାଆନ୍ତୁ । ହିନ୍ଦିଭାଷି ଲୋକେ ବା ବଙ୍ଗଳା ଭାଷି ଲୋକେ ଓଡ଼ିଶାର ଛାତି ଉପରେ କଳକାରଖାନା ବସଉଚନ୍ତି । ପାଠଶାଳୀ ଖୋଲୁଚନ୍ତି ତାଙ୍କ ଓଡ଼ିଆ କୁଲିଙ୍କୁ ପାଠ ପଢ଼େଇବା ଲାଗି । ସେଠି ପଢ଼ା-ହଉଚି ଏଇ ଓଡ଼ିଆ କୁଲିଙ୍କୁ ହିନ୍ଦି ବା ବଙ୍ଗଳା । ସ୍ପଷ୍ଟ କୁହାଯାଉଚି ତୁମେ ଓଡ଼ିଶାକୁ ଆସିଚ, ଓଡ଼ିଆ ବନିଯାଅ । ତା କିପରି କୁହାଯିବ ? ସେମାନେ ଯେ ରାଘବ ଜାତି । ଓଡ଼ିଆ ଯେତେହେଲେ କୁଲି ମଜୁରିଆ । ଓଡ଼ିଶାକୁ ଆସିଲେ ବଙ୍ଗାଳି ଚୈତନ୍ୟ, ସେ ଏଠି ଘରଦ୍ୱାର ମଠବାଡ଼ି କରି ରହିଗଲେ । ଆସିଲେ ରାମାନୁଜ, ଶଙ୍କର, ନାନକ । ଯେ ଆସିଲା ସେ ଏଠି ମଠ ବାଡ଼ି କରି ରହିଗଲା । କିନ୍ତୁ ଓଡ଼ିଶାର ଜଗନ୍ନାଥଧର୍ମୀ ତ କେହି ଓଡ଼ିଶା ବାହାରେ ମଠ କରି ରହିପାରିଲେନି ? ଓଡ଼ିଶାରେ ବଙ୍ଗାଳି ଗାଁ, ହିନ୍ଦୁସ୍ଥାନି ଗାଁ,

ତେଲେଙ୍ଗା ଗାଁ, ତାମିଲ ନା—ସବୁପ୍ରକାର ଗାଁ କୁ ଗାଁ ରହିଛି । କାହିଁ ହିନ୍ଦୁସ୍ଥାନି ପ୍ରାନ୍ତରେ, କି ବଙ୍ଗଳାରେ, କି ଆନ୍ଧ୍ରରେ ତ ଗୋଟିଏ ହେଲେ ଓଡ଼ିଆ ଗାଁ ନାହିଁ ? କମିତି ହବ, ତାଙ୍କର ମନ୍ତ୍ର ହେଲା ହାମ, ଆମି, ଓଡ଼ିଆର ମନ୍ତ୍ର ଯେ ହେଲା ଆ, ମ, ବ ।

ତାପରେ ଦେଖ ଏଇ ବିଲାତ ଦେଶର କଥା । ସେ ଆମ୍ବକୁ କହନ୍ତି, Mango ମାଙ୍ଗୋ, ମ୍ୟାନ୍ ଗୋ । ଯା'ର ଅର୍ଥ ହେଲା ଆରେ ବେଟା, ଯା, ପଳା । ଏ ସବୁ ଦେଶକୁ ତୁମେ ଯେବେ ଯିବ, ସେ କହିବେ ଦୂର୍ ପଳା, ଦୂର୍ ପଳା । ସେସବୁ ଦେଶରେ ନାଗରିକ ଅଧିକାର ପାଇବାର ନିୟମକାନୁନ ଏତେ ଟାଣ ଯେ, ସେଠି ଆମରି ଏ କଳା ଆଦ୍‌ମି ଯାଇ ଘରଦ୍ୱାରକରି ରହିବା ଏକାବେଳକେ ଅସମ୍ଭବ ନ ହେଲେ ମଧ୍ୟ କାଠିକର-ପାଠ । ଏତେଦିନର ପ୍ରିୟାପ୍ରୀତି ସମ୍ପର୍କ । ତଥାପି ମଧ୍ୟ ବିଲାତର କୌଣସି ଗୋଟାଏ ଜାଗାରେ ଜଣେ ଭାରତୀୟ ଘରକରିବାକୁ ଚେଷ୍ଟାକଲାରୁ, ପାର୍ଲିଆମେଣ୍ଟ ଯାଏ କଥା ଗଲା । ଭାରତର କଳା ଆଦ୍‌ମିମାନଙ୍କୁ ଏବେ ମଧ୍ୟ ବିଲାତର କେତେକ ହୋଟେଲରେ ପଶିବାକୁ ମନା । ମାର୍କିନ ଦେଶ କଥା ବା କ'ଣ କହିବା ? ଆଫ୍ରିକାରେ ଭାରତୀୟ-ମାନଙ୍କ ପ୍ରତି ଯେ ବ୍ୟବହାର ହଉଛି, ତା' ତ ତୁମେ ନିଶ୍ଚେ ଠିକିଏ ଜାଣିଥିବ । ସୁତରାଂ ବିଲାତ ମାଙ୍ଗୋ ଯେ ତାଙ୍କ ଦେଶର ପ୍ରକୃତି ଓ ସ୍ୱରୂପ ଚିହ୍ନାଇଦିଏ, ଏଥିରେ କିଛି ସନ୍ଦେହ ଅଛି ?

ତା'ପରେ ଅନ୍ୟ ଦିଗରୁ ମଧ୍ୟ ଆମ୍ବକୁ ବିଚାର କରାଯାଉ । ଆମ ଦେଶରେ ମାନେ ଏଇ ଓଡ଼ିଶାରେ ଅନେକପ୍ରକାର ଆମ୍ବ ଅଛି, ଯଥା—କଦଳୀଆ, ଭେଲୁଆ, ଗୁଡ଼ପାଣିଆ, ସୁନ୍ଦ୍ରୀ, କର୍ପୂର, ଦେଲୁଆ, ଗିରଡ଼ି ଇତ୍ୟାଦି । ଅନ୍ୟ ପ୍ରାନ୍ତରେ ଏହିପରି ଭିନ୍ନ ପ୍ରକାରର ଆମ୍ବ ଥିବା କଥା ଆମେ ଜାଣୁନି । ଆମେ ଜାଣୁ ଏତିକି ଯେ ଦକ୍ଷିଣର ବାଇଗଣପଲ୍ଲୀ, ବଙ୍ଗଳାର ମାଲ୍‌ଦା, ବିହାରର ସୁନ୍ଦରୀ ଓ ୟୁ. ପିର ଲେଙ୍ଗେଡ଼ା । ଏସବୁ ପ୍ରାନ୍ତରେ ଭିନ୍ନ ଭିନ୍ନ ପ୍ରକାର ଆମ୍ବ ଥିଲେ ନିଶ୍ଚୟ ଆମ ଦେଶକୁ ଆସନ୍ତା । ତା' ଯେତେବେଳେ ଆସେନି, ଆମେ ଅନୁମାନ କରିନେଇପାରୁ ନିରାପଦରେ, ନିର୍ବିବାଦରେ ଯେ ସେମାନଙ୍କ ଦେଶରେ ଏତେପ୍ରକାରର କିସମ ନାହିଁ । କିନ୍ତୁ ଓଡ଼ିଶାରେ ପ୍ରକାରର ସୀମା ନାହିଁ । ସେ ମଧ୍ୟ ଓଡ଼ିଆ ଜାତିର ଗୋଟାଏ ଲକ୍ଷଣର ସୂଚନା । ଏ ଦେଶରେ ମଣିଷ ଗୋଟିକେ ଦଳ ଗୋଟିଏ, ଦଳ ଗୋଟିକେ ମତ ଗୋଟିଏ । ଏମାନଙ୍କୁ ସବୁ ଭାଙ୍ଗିରୁଜି, ମାରି, କାଟି, ଛେଚି, ପେଷି, ଚପି ଅନ୍ୟ ପ୍ରାନ୍ତମାନଙ୍କ ଭଳି ଗୋଟିଏ ଗୋଟିଏ ନମୁନାରେ ପକାଇବାର ପରଚେଷ୍ଟା ଖୁବ୍ ଜୋର୍‌ସୋର୍‌ରେ ଲାଗିଛି ଅବଶ୍ୟ ଅନେକ ଦିନୁ । କିନ୍ତୁ ସେମିତି ସୁବିଧା ହେଇପାରୁନି । ତୁମେ ଦେଖ, ଏ ପ୍ରାନ୍ତରେ କେତେପ୍ରକାର ରାଜନୈତିକ ଦଳ, ସେ ହିସାବ ତୁମେ ରଖିଥିବ । ମୁଁ ରାଜନୈତିକ ନୁହେଁ । ମୁଁ ଅନୈତିକ । ଏସବୁ ନୀତି ଫିତି କିଛି ବୁଝେନି । ତା'ର ଧାର ମଧ୍ୟ ଧାରେନାହିଁ । ତା'ର ତ୍ରିସୀମା ତ ସ୍ପର୍ଶ

କରେନ । ତେବେ ଏଡକ ନିଶ୍ଚୟ ନୁହେଁ, ଏତେଗୁଡ଼ାଏ ରାଜନୈତିକ ଦଳ ହୋଇ ମଧ୍ଯ ମନ ମାନନ୍ତ । ପ୍ରତି ରାଜନୈତିକ ଦଳରେ ୫/୬ଟା କରି ଉପଦଳ । ସେ ଉପଦଳମାନଙ୍କ ଭିତରେ ପୁଣି ଜାତି, ଗୋଷ୍ଠୀ ଇତ୍ୟାଦି ଭିନ୍ନ କେତେ ଅନୁପଦଳ । ବଙ୍ଗ, ବିହାର, ଉତ୍ତରପ୍ରଦେଶ ଇତ୍ୟାଦିରେ ଅବଶ୍ୟ ରାଜନୈତିକ ଦଳ ଅଛନ୍ତି । କିନ୍ତୁ ଇମିତି ମାରାତ୍ମକ ଭାବରେ ନୁହେଁ । ପୁଣି ସେ ଦଳମାନଙ୍କ ଭିତରେ ଏତେ ଉପଦଳ ଓ ଅନୁପଦଳ ମଧ୍ଯ ନାହିଁ । ସବୁ କଥାବାର୍ତ୍ତା ଉପରେ, ସେମାନଙ୍କ ଭିତରେ ଯେତେ ଦଳାଦଳି ଥାଉ ପଛକେ, ବାହାରକୁ କଥା ପଡ଼ିଲାବେଳେ ବା ପ୍ରାନ୍ତର ସ୍ୱାର୍ଥପ୍ରଶ୍ନ ଆସିଲାବେଳେ, ସମସ୍ତେ ଏକ । ମଇଁଷି ଶିଙ୍ଗ ଫଟା, ଯୁଝିଲା ବେଳକୁ ଗୋଟା, କିନ୍ତୁ ଓଡ଼ିଶାରେ ? ଅନ୍ୟ ପ୍ରାନ୍ତର ସ୍ୱାର୍ଥ କଥା ପଡ଼ିଲାବେଳେ ଆମେ ସମସ୍ତେ ଏକମତ । ଓଡ଼ିଶା ପ୍ରାନ୍ତର ସ୍ୱାର୍ଥ କଥା ପଡ଼ିଲାବେଳକୁ ଆମେ ସମସ୍ତେ ବହୁମତ, ବହୁମୁଖ ଓ ବହୁବାଦ ।

ତୁମେ କହିବ ହୁଏତ, ତୁମେ ଯାହା କହନା ପଛକେ, ବାଇଗଣପଲ୍ଲୀ, ମାଲ୍‌ଦା, କି ଲେଙ୍ଗେଡ଼ା ଆମ୍ବ ଆଗରେ ଆମ ଆମ୍ବ କିଛି ନୁହେଁ । ସେ ସବୁ ସିମିତି ବଡ଼, ସିମିତି ରସାଳ, ସିମିତି ସୁଆଦ । ଆମ ଆମ୍ବଗୁଡ଼ାକ—ଛୋଟ, ଏତେଟିକିଏ ଆମ୍ବରେ ଗୋଟାଏ ଏତେ ବଡ଼ ଟାକୁଆ ବାହାରିଲାବେଳକୁ ରସ ସୋରପେ ବି ହୁଏନି । ଓଡ଼ିଶାରେ ଏକା ଗାଁ କନିଆ ସିଙ୍ଘାଣିନାକ । ତୁମ୍ଭକୁ ସ୍ୱେ ଆମ୍ବ ଭଲଲାଗିବ କିମିତି ? ଏ ଓଡ଼ିଶାରେ ମଧ୍ଯ ପଇଡ଼ ଭଳି ବା ବଡ଼ ବେଲ ଭଳି ଆମ୍ବ ହୁଏ ଆଜ୍ଞା, ଏ ଦେଶର ଆମ୍ବରେ ମଧ୍ଯ ରସ ବେଶୀ ଥାଇ ଟାକୁଆ କମ୍ ଥାଏ, ମଣାଇ । କିନ୍ତୁ ସେ ବୁଡ଼ିଯାଉଚି । ଆମେ ଆମ୍ବ ଚାଷ କରୁଚୁ, କରାଉଚୁ, ସେଇ ବିଦେଶୀ ବା ବିପ୍ରାନ୍ତ ଆମ୍ବକୁ । ଆମ ନିଜ ଘର ଆମ୍ବର ଜାତି କିପରି ଭଲ ହେବ, ଆମ ଆମ୍ବ ବଗିଚାଗୁଡ଼ିକ କିପରି ଉଧେଇବ, ସେ ଦିଗରେ ଆମର ଲକ୍ଷ୍ୟ ତ ମୋଟେ ନାହିଁ । ପୁରୁଣାକାଳର ଅତ୍ୟାଚାରୀ ପ୍ରଜାପୀଡ଼କ ରାଜା ଓ ଜମିଦାରମାନେ ପ୍ରଜାମାନଙ୍କର ଓ ପରବମାନଙ୍କର ଉପକାର ଲାଗି ଯେଉଁ ବଡ଼ ବଡ଼ ଆମ୍ବତୋଟା ସବୁ ଲଗେଇଥିଲେ, ସେଗୁଡ଼ିକୁ କାଟିକୁଟି ସଫାକରିଦବାରେ ଆମର ଉଦ୍ୟମ ହେଉଚି ବେଶୀ । ପ୍ରାନ୍ତୀୟ ଲୋକଙ୍କ ଜମିରେ ବସି ତାଙ୍କ ଶ୍ରମର ରକ୍ତ ଖାଇବା ଲାଗି ଆମେ ଯେପରି ବିପ୍ରାନ୍ତୀୟମାନଙ୍କୁ ବହୁ ସାଧ୍ଯ ସାଧନା କରି ଯୋଗାଡ଼ କରି ଆଣୁଚୁ, ସିମିତି ଆମର ପ୍ରାନ୍ତୀୟ ବଣ ବଗିଚା ଭାଙ୍ଗି ଆମେ ବିପ୍ରାନ୍ତୀୟ ବଗିଚା କରିବାରେ ଧୁରନ୍ଧର ହୋଇଉଠିଚୁଁ । ମୋର ମନେପଡ଼ୁଚି, ଯେତେବେଳେ ନୂଆ ମାର୍କିନ ଦେଶର ଫୁଲଫଳ ବିଲାତକୁ କେହି କେହି ଆଣିବାର ପ୍ରୟାସ କଲେ, ସେତେବେଳେ ବିଲାତରେ ତା' ବିରୋଧରେ କେତେବଡ଼ ଆନ୍ଦୋଳନ ହୋଇଥିଲା । ଏବେ ମଧ୍ଯ ବିଲାତରେ ତାଙ୍କ ଦେଶର ଫଳ ଫୁଲ ଗଛକୁ ବୈଜ୍ଞାନିକ ପ୍ରକ୍ରିୟା ଦ୍ୱାରା ଉନ୍ନତ କରିବା ପାଇଁ ବିଲାତିମାନେ ଯେତେ ଆଗ୍ରହୀ, ବିଦେଶୀ ଗଛସବୁ ରୋପିବାକୁ ସେତେ ଆଗ୍ରହୀ ନୁହନ୍ତି ।

ତା'ର କାରଣ ନିଶ୍ଚୟ ବୁଝିପାରୁଥିବ, ତାଙ୍କର ଆମ୍ବ, ମ୍ୟାନ୍ ଗୋ, ଆମର ଆମ୍ବ, ଆମ୍ ବ । ଏସବୁ ଉଦାହରଣ ପରେ ତୁମେ ଯେବେ କହ ଯେ ଖାଲି ନାମଟାରେ କିଛି ନାହିଁ, ତା'ହେଲେ ସ୍ୱୟଂ ବ୍ରହ୍ମା ଆସିଲେ ମଧ୍ୟ ତୁମ ମୁଣ୍ଡରେ ବୁଦ୍ଧି ପୂରାଇ ପାରିବେନି । ନାମଟି ହିଁ ସାର, ନାମବ୍ରହ୍ମ ହିଁ ଭଗବାନ ଓ ପରମ ସତ୍ୟ, ନାମୈବ କେବଳଂ ମହାମନ୍ତ୍ର । ବିଲାତି କବି ଯୁ କଥା କହିଥିଲେ ସେ ବିଲ୍‌କୁଲ ମିଛ । ତୁମେ ଆମ୍ବକୁ ପଣସ କହିଦେଲେ କ'ଣ ଚଳିବ ? ଆମ୍ବ ଶବ୍ଦଟା ଆମ ଜାତିର ପ୍ରାଣ, ଆମ ଜାତିର ଚହ୍ନଟ । ତୁମେ ସେ ଶବ୍ଦଟାକୁ ଉଡ଼ାଇଦେଇ ତାକୁ ଅନ୍ୟ ନାମରେ କହିଲେ ଯେ ଏ ଜାତିଟା ଆଉ ଚହ୍ଲି ହବନି ଭାଇ । ହଁ, ଏ ଫୁଟାଣିକ ଯୁଗ । ଅବଶ୍ୟ ଏଥିରେ ମାର୍କିନ, ମାର୍କିନ ରାଷ୍ଟ୍ର ପାଇଁ ଲଢ଼ିପାରୁଥାଏ, ରୁଷିଆ ତା' ନିଜ ନୀତି ଓ ଆଦର୍ଶ ପାଇଁ ଲଢ଼ିପାରୁଥାଏ । କାହିଁକି ନା ତାଙ୍କର ଅଛି ସବୁ ଟନକ । ଆମର ତ ସେ ନାହିଁ, ଆମର ଅଛି ମାତ୍ର ଫୁଟାଣି । ସେଥି ହେତୁରୁ ଆମେ ଆମ ଦେଶ ପାଇଁ ଲଢ଼ିବୁନି । ବିଶ୍ୱସଂସାର ଗୋଟାଏ, ଆମେ ସମସ୍ତେ ବିଶ୍ୱବାସୀ । ଆମର ପ୍ରଥମ କର୍ତ୍ତବ୍ୟ ବିଶ୍ୱ ଲାଗି । ଭାରତ ଲାଗି ନୁହେ । ଚିନ୍ ଯଦି ଭାରତରୁ ଖଣ୍ଡେ ନିଏ, ତା'ହେଲେ ଆମେ ତା'ଲାଗି ଲଢ଼ିଯିବୁ ଚିନ୍‌ର ସପକ୍ଷରେ ଓ ଭାରତର ବିପକ୍ଷରେ । ପାକିସ୍ଥାନ ଯେବେ ଲଦାଖ ଅଞ୍ଚଳଟା ଭୁହେଁ, ତାହେଲେ ଆମେ ନେହେରୁଙ୍କ ସହିତ କଳି କରିଯିବୁଁ ପାକିସ୍ଥାନ ସପକ୍ଷରେ । କାରଣ ଓଡ଼ିଆଙ୍କର ଏଇ ଆମ୍ ବ ଗାଡିଟା ଭାରତ ବ୍ୟାପିଗଲାଣି । ଓଡ଼ିଶାର ଏଇତ ବାହାଦୁର ।

ଆମ୍ ବ ଓଡ଼ିଶା ଜିନ୍ଦାବାଦ୍ ।

# ମାଗେଣା ଦାନ

କଥାଟା ଟିକିଏ ଅଦ୍ଭୁତ୍‌ ଅଦ୍ଭୁତ୍‌ ଭଳି ଜଣାପଡ଼ୁଚି ନାଁ ? ଦାନ ତ ଦାନ, ସେ ପୁଣି ମାଗେଣା ବା ପଇସାଦିଆ ହେବ କିମିତି ? ମୁଁ ଯଦି ଭିକାରୀକୁ ମୁଠାଏ ଚାଉଳ ଦିଏ, ତା'ହେଲେ ଭାବିବି, ମନେ ମନେ କୁରୁ କୁରୁ ହେବି ଯେ, ଏଥରକ ସ୍ଵର୍ଗ ଆଡ଼କୁ ମୁଁ ଦ'ପାହୁଣ୍ଡ ଆଗେଇଚି । ମୁଁ ଯେବେ ପ୍ରଧାନମନ୍ତ୍ରୀଙ୍କ ପାଣ୍ଠିକି ଶହେ ଟଙ୍କା ଦିଏଁ, ତା' ହେଲେ ଭାବିବି ଯେ, ଏଇଥରକ ତାଙ୍କ ସହିତ କଥାବାର୍ତ୍ତା କରିବାର ସୁବିଧା ହୋଇ-ପାରିବ ଓ ସେହି ସୁବିଧାରୁ ଅନ୍ତତଃ ମୋର ଦିଆ ଶହେ ଟଙ୍କାକୁ ମୁଁ ଶହେ ପାଞ୍ଚଟଙ୍କା କରି ଫେରି ପାଇପାରିବି । ସେଦିନ ଭୂଦାନ କାମରେ ଭୂଦାନ ନେତା ଜଣେ ଦି'ଜଣ ଜଣେ ବ୍ୟବସାୟୀଙ୍କ ଦୋକାନକୁ ଯାଇଥିଲେ କିଛି ଦାନ ଉଦ୍ଦେଶ୍ୟରେ, ମାନେ ତାଙ୍କ-ଠାରୁ କିଛି ଦାନ ପାଇବା ଉଦ୍ଦେଶ୍ୟରେ । ଯେଉଁ ନେତାମାନେ ଯାଇଥିଲେ, ସେମାନଙ୍କୁ ଦେଖିଦେଲେ ତାଙ୍କ ଗୋଡ଼ତଳେ ପଡ଼ିଯିବାକୁ ମୋର ସବୁବେଳେ ମନହୁଏ । ତାଙ୍କ ସାଙ୍ଗରେ ପୁଣି ଆଥାନ୍ତି ସ୍ଥାନୀୟ ଅନାହାରୀ ହାକିମ ଜଣେ, ବେପାରୀ କହିଲେ, "ଆଜ୍ଞା ! ଆପଣମାନେ ବଜାରକୁ ଯାଆନ୍ତୁ । ଅନ୍ୟମାନଙ୍କୁ ବୁଝନ୍ତୁ, କିଏ କ'ଣ ଦଉଚନ୍ତି ଦେଖନ୍ତୁ, ଆଉ ମୁଁ ତ ସବୁବେଳେ ହାଜର ଅଛି ।" ନେତାମାନେ ଚାଉଳ ମୁଠାଏ ବି ପାଇଲେନି, ଚାଲିଗଲେ । ତା'ପରେ ବେପାରୀ, ମୋତେ କହିଲେ ଆଜ୍ଞା, "ଆପଣ ଦେଖନ୍ତୁ, ଆମେ ତ ବେପାର କରିବସିନୁ । ପଇସାକୁ ଦି ପଇସା କରିବା ଲାଗି ସ୍ୱାଙ୍ଗୁ ଆମେ ଯୁ ଟଙ୍କେ ମଧ୍ୟ ଦବୁଁ, ତା ଲାଗି କ'ଣ କଣା କଉଡ଼ିଟାଏ ଲାଭ ଆମକୁ ମିଳିବ ?"

ସତ କଥା, ଦାନର ସବୁବେଳେ ଗୋଟାଏ ପ୍ରତିଦାନର ଆଶା ଥାଏ । ସୁତରାଂ ମାଗଣା ଦାନ କଥାଟା ନିଶ୍ଚୟ ଅବାସ୍ତବ । ଏ ବ୍ୟାବହାରିକ ଯୁଗ ଆଜ୍ଞା, ବୈଜ୍ଞାନିକ ଯୁଗ । ଏ ଯୁଗରେ ନିସ୍ୱାର୍ଥ କାର୍ଯ୍ୟ, ନିଷ୍କାମ କର୍ମ, ସ୍ୱର୍ଗବାସ, ନରକ ଗମନ ଏପରି ଗୁଡ଼ାଏ କହି ତୁମେ ଆମକୁ ଭଣ୍ଡାଇ ପାରିବନି, ସୁତରାଂ ତୁମର ଏ ମାଗେଣା ଦାନ କଥା ବିଲ୍‌କୁଲ୍ ଯୋଗାଯୋଗ୍ୟ ଓ ଅଗଣତାନ୍ତ୍ରିକ ।

କ୍ଷମାକରିବେ ଆଜ୍ଞା, ମୁଁ ନିର୍ଦ୍ଦୋଷ । ମୁଁ ଏ କଥା ମୋଟେ କହିନି । ମୁଁ ଯୁଗପୁରୁଷ ଯୁଗଯୋଗ୍ୟ । ଲୋକ ଏ କଥାଟା କହୁଛନ୍ତି, ଖାଲି କହୁନାହାନ୍ତି, କରିଚନ୍ତି ମଧ୍ୟ, ଏ ଦିଗନ୍ତର ସମ୍ପାଦକ ମହାଶୟ, ତାଙ୍କର ସମ୍ପାଦକୀ ସ୍ତମ୍ଭରେ, ତାଙ୍କ କାଗଜର ପ୍ରଥମ ସଂଖ୍ୟାରେ । ବାବୁ ହେ, ତୁମେ ଟୋକା । ସଂସାର ବୁଦ୍ଧି ତୁମର ହୋଇନି । ତା' ହୋଇ-ଥିଲେ ତୁମେ କଣ ବୁଝନ୍ତି "ସାହିତ୍ୟର ବିକାଶ ଭିତରେ ହୃଦୟବୃତ୍ତି ଦରକାର କରେ । ଭବିଷ୍ୟତ ସ୍ରଷ୍ଟାମାନଙ୍କୁ ଆଜିର ଗୋଷ୍ଠୀ ସମ୍ବାଦ, ବିରୋଧ, ବିସମ୍ବାଦ ଭିତରେ ବିଷାପ୍ଳୁତ

କରି ଦଆନଯାଉ ? ତୁମର ଘଡ଼ଘଡ଼ିଆ ଶବ୍ଦ, ବଡ଼ବଡ଼ିଆ ଭାବନାକୁ ଭାଙ୍ଗି ମୁଁ ତ ଏଥିରୁ ଏଇଆ ବୁଝୁଚି ଯେ, ତୁମେ କହୁଚ, "ସାହିତ୍ୟ ଯେ ଲେଖିବ ତାର ମନଟା ବଡ଼ ହେବା ଦରକାର । ଆଉ ତାର କୌଣସି ଦଳ, ମେଳ, ବାଡ଼ ବା ଗୋଷ୍ଠୀ ଭିତରେ ରହିବା ଠିକ୍ ନୁହେଁ ।" ଏଇଆ ନା ? ସେ ଖାଲି 'ଆ କଣ୍ଟୁଣ୍ଟ, ବେକରେ ବସ' ନୀତି । ସମ୍ପାଦକ ମହାଶୟ ଭୁଲିଯାଇଚନ୍ତି ଯେ, ସେ ଆଉ ବିକ୍ରମାଦିତ୍ୟ, ରାମଚନ୍ଦ୍ର, ଆକବର ଏପରିକି ବିଶ୍ୱନାଥ ଦେବବର୍ମାଙ୍କ ରାଜ୍ୟରେ ନାହାନ୍ତି । ସେ ଅଛନ୍ତି ଭଲେ ଗୋଟାଏ ଗଣତାନ୍ତ୍ରିକ ରାଜ୍ୟରେ, ସେ ପୁଣି କପରି ଗଣତନ୍ତ୍ର !! ଏପରି ଗଣତନ୍ତ୍ର ଏ ପୃଥିବୀରେ ନାହିଁ ନ ଥିବ । ଲଙ୍କାଶାୟରର ଗଣତନ୍ତ୍ର ଓ ମାର୍କିନର ଚିକାଗୋ ଗଣତନ୍ତ୍ରର ମହାମିଳନ ସହିତ ମିଶିଛି ବୌଦ୍ଧସଙ୍ଘର ଗଣପଦ୍ଧତି । ସ୍ୱାଦ ମଜା ବୋଧହୁଏ ସମ୍ପାଦକେ ଏ ପର୍ଯ୍ୟନ୍ତ ପାଇନାହାନ୍ତି । ଏଥିରେ ମଶଲା ହେଇ ପ୍ରୟୋଗ କରାଯାଇଛି, ରାମରାଜ୍ୟର ନୀତି ଓ ଯାଦବ ରାଜ୍ୟର ଗଣତନ୍ତ୍ର । ଏ ସମସ୍ତର ମର୍ମ ବୁଝ, ତାପରେ କହ । ବୁଝିନ ତ, ମୁଁ ବୁଝେଇଦଉଚ ।

ସମ୍ପାଦକେ ଯାହା କହିଲେ, ସେ କଥା ବିଚାର କରାଯାଉ । ସମ୍ପାଦକଙ୍କର ପ୍ରଥମ ଶବ୍ଦ ହେଲା 'ସାହିତ୍ୟ' । ଏ ସାହିତ୍ୟ ଶବ୍ଦର ଗୋଟାଏ ଟିକ୍କା ଟିପ୍ପଣୀ ଦବାର ବିଧି ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ଠାରୁ ଆରମ୍ଭ ହୋଇଆସିଚି । କଥାଟା ଯେତେ ସହଜ ଓ ସରଳ ହେଲେ ମଧ୍ୟ ତା ଉପରେ ଦ୍ୱି, ଚାରି ପୃଷ୍ଠାର ଟିପ୍ପଣୀ ନଦେଲେ କାହାରି ମନରେ ସନ୍ତୋଷ ଆସେନି । ତୁମେ ତୁମ ମନମୁତାବକ ଟିପ୍ପଣୀ ଦବ । ମୁଁ ମୋ ମନ-ମୁତାବକ ଦେବ । ତା'ପରେ ଲାଗିଲା ଘୋର ଲଢ଼େଇ । ଶଙ୍କରାଚାର୍ଯ୍ୟ ଓ ରାମାନୁଜ, କବୀର୍ ଓ ଚୈତନ୍ୟ, ବୁଦ୍ଧ ଓ ଶଙ୍କରାଚାର୍ଯ୍ୟ । ଏକା ବେଦ, ଏକା ବେଦାନ୍ତ, ଏସବୁ ଦେଖି ପାଠକ କହିଲା, 'ନାନା ମୁନୀନାଂ ମତସ୍ୟଷ୍ଟ ଭିନ୍ନା' । ଏ ଯୁଗରେ ମଧ୍ୟ ସେଇଆ । ଅତି ସହଜ ସରଳ ଗାୟତ୍ରୀ ମନ୍ତ୍ରର ଅର୍ଥ କରିବାଲାଗି କେତେ ପୃଷ୍ଠାବ୍ୟାପୀ ଟିପ୍ପଣୀ ଦରକାର । ମହାତ୍ମାଗାନ୍ଧୀଙ୍କ କଥାଗୁଡ଼ିକ ଉପରେ ଦୁଇ ପ୍ରକାର ଭାଷ୍ୟ ଏ ପର୍ଯ୍ୟନ୍ତ ବାହାରିପଡ଼ିଲାଣି । ନେହେରୁଙ୍କ ଭାଷ୍ୟ ଓ ବିନୋବାଙ୍କ ଭାଷ୍ୟ । ଭାଷ୍ୟର ସଂଖ୍ୟା ଯେତିକି ଯେତିକି ବଢ଼ି ବଢ଼ି ଯାଉଥିବ, ଅସଲ କଥା ଉପରୁ ଲୋକଙ୍କ ବିଶ୍ୱାସ ସେତିକି ସେତିକି ତୁଟି ଯାଉଥିବ । ଲୋକଙ୍କର କି ଦୋଷ ? ନେହେରୁ ବଡ଼, ବିନୋବା ମଧ୍ୟ ବଡ଼ । ଏ ବଡ଼େଁଯାକ ଯେତେବେଳେ ଭିନ୍ନ ଭିନ୍ନ ପ୍ରକାର ଅର୍ଥ ବାଢ଼ନ୍ତି, ସେତେବେଳେ ଲୋକେ ଭାବନ୍ତି—ଏ ମହାତ୍ମାଗାନ୍ଧୀଙ୍କ କଥାଗୁଡ଼ାକ ପାଗଳର ବାଉଳାମି । ସ୍ୱାଦ ଗଣ୍ଡି ମୁଣ୍ଡ କିଛି ନାହିଁ । ମାର୍ ଗୁଲି ତାକୁ । ସୁତରାଂ ସମ୍ପାଦକଙ୍କର ସାହିତ୍ୟ ଶବ୍ଦର ଗୋଟାଏ ଟିପ୍ପଣୀ ଦରକାର ।

ସାହିତ୍ୟ ଶବ୍ଦର ଅର୍ଥ କ'ଣ ଶବ୍ଦଟାକୁ ବିଶ୍ଳେଷଣ କଲେ ଦେଖାଯାଏ, ସ+ଅହିତ+ଯ । ଅର୍ଥାତ ଅହିତ ବା ଅଶୁଭ ବା ଅମଙ୍ଗଳ ସହିତ ଯାହା, ତାହାରି ଭାବ । ଅର୍ଥାତ୍ ସାହିତ୍ୟର ଅର୍ଥ ହେଲା, ଯାହା ଅହିତ କରାଏ । ତୁମେ କହିବ,

ଏଇଟା ଗୋଟାଏ ନୂଆ କଥା ମୁଁ କହୁଚି । ଏପରି ଅର୍ଥ ତ କେହି କେବେ ଦେଇ-ନାହାନ୍ତି ? ମୋ ଅର୍ଥଟା ଠିକ୍ ହେବ କି ଭୁଲ ହେବ, ସେ ଅନ୍ୟ କାହାରି କହିବା ଉପରେ ନିର୍ଭର କରିବା ଉଚିତ୍ ନୁହେଁ । ଏ ଶବ୍ଦର ଇତିହାସ ଯାହା କହିବ, ତାହା ସତ ହେବା ଉଚିତ । ବର୍ତ୍ତମାନ ସାହିତ୍ୟ ଶବ୍ଦର ଇତିହାସ ବିଚାର କରାଯାଉ । ଆବହମାନ କାଳରୁ ଶୁଣାଯାଏ, ବେଦ ସବୁଠାରୁ ପୁରୁଣା ସାହିତ୍ୟ । ସେ ବେଦରେ ଋଷିଗୁଡ଼ାକ ଖାଲି ଡାକ ପକାଇଚନ୍ତି, ହେ ମହାପ୍ରଭୁ ଏ ଅସୁରଗୁଡ଼ାଙ୍କୁ ମାରି, ସ୍ୱାଙ୍କୁ ମାରିଦେବାକୁ ଆମ ଚିହ୍ନରେ ବଳ ଦିଅ । ଆମେ କମିତି ନିରୋଗ ରହୁ । ଆମ ଘରେ କମିତି ଘଡ଼ାଘଡ଼ା ଧାନ ଗହମ ଭରିଯାଉ । ତୁମକୁ ହୋମ କରିବା ପାଇଁ ଆମକୁ ସବୁବେଳେ ଭରେଭରେ ଘିଅ ମିଳୁଥାଉ । ଖାଲି କାନ୍ଦେଣା, ଅସୁରଙ୍କଠୁଁ ମାଡ଼ ଖାଉଥିଲେ, ବୋବାଳି ପକାଉ-ଥିଲେ । ଦୁର୍ଭିକ୍ଷ ଦୁର୍ନସ୍ୱରେ ଦୁର୍ଗତ ଲଭ ଡାହି ଡାହି ଡାକ ଛାଡ଼ୁଥିଲେ । ସ୍ତେ ବେଦ ଥିଲା କେବଳ ଅହିତର ଗୋଟାଏ ପ୍ରକାଣ୍ଡ ଗର୍ଜନ । ତାପରେ ଆସିଲେ ଉପନିଷଦ ବାଲା । କହିଲେ ସମସ୍ତେ ସୁଖରେ ରହନ୍ତୁ । ସମସ୍ତେ ନୀରୋଗ ହୁଅନ୍ତୁ । ସମସ୍ତେ ଭଲ କଥା ଦେଖନ୍ତୁ, କାହାରିକୁ ଦୁଃଖ କଷ୍ଟ ନ ହେଉ, ଓଁ ଶାନ୍ତି, ଓଁ ଶାନ୍ତି, ଓଁ ଶାନ୍ତି । ଅଶାନ୍ତି ଅଭାବ ଅନାଟନର ଅକଥନୀୟ ଅତ୍ୟାଚାରରେ ଅତିଷ୍ଠ ହୋଇ ବେଦାନ୍ତ ଓ ଉପନିଷଦର ଋଷି ଡାକ ପାରୁଥିଲେ ଓଁ ଶାନ୍ତି, ଓଁ ଶାନ୍ତି, ଓଁ ଶାନ୍ତି । ସେଠି ମଧ୍ୟ ଆପଣମାନେ ଦେଖୁଚନ୍ତି ଅହିତର ଉଆଁସ ଅନ୍ଧାର । ଗୋଟି ଗୋଟି କରି କହିଲେ ଏ ଗୋଟାଏ ବେଦ ହୋଇଯିବ । ମୋଟ ଉପରେ ପରବର୍ତ୍ତୀ କବି ଓ ସାହିତ୍ୟିକମାନଙ୍କ ଜୀବନ ଓ ଲେଖା ଆଲୋଚନା କଲେ ଆପଣ ଦେଖିବେ ଯେ ସେମାନେ ସାହିତ୍ୟର ଆଶ୍ରୟ ନେଇ କେବଳ ଅହିତର କାଳି ମୁହଁଆଡ଼କୁ ଟାଣି ହୋଇଯାଇଚନ୍ତି ମାତ୍ର ।

କାଳିଦାସ ନ ଖାଇ ନ ପିଇ ବେଶ୍ୟା ଦ୍ୱାରେ ମଲେ । ଏ ଭୁଆଡ଼େ ଆମ ପୁରୁଣା ଭାରତର ବଡ଼ କବି ଓ ସାହିତ୍ୟିକ ଥିଲେ । ଅନ୍ୟ ଦେଶର କଥା ମଧ୍ୟ ଟିକିଏ ଭାବିନିଅ । ଲର୍ଡ ବେକନ୍ ଆତ୍ମହତ୍ୟା କରିଥିଲେ । ସେକସ୍‌ପିଅର ଗୋଟାଏ ରଙ୍ଗମଞ୍ଚର ପରଦା-ଟଣାଳି କାମ କରୁଥିଲେ । ମିଲ୍‌ଟନ କ୍ରମ୍‌ୱେଲ ପାଖରେ ଚାକରି କରି ପେଟ ପୋଷି ମଧ୍ୟ ନିସ୍ତାର ପାଇଲେନି, ଶେଷକୁ ଅନ୍ଧ ହୋଇ କାନ୍ଦି କାନ୍ଦି ମଲେ । ଗୋଲ୍‌ଡ ସ୍ମିଥ୍ ବି'ଦିନ, ଦିନଦିନରେ ମୁଠାଏ ପେଟଭରି ଖାଇବାକୁ ପାଉ ନ ଥିଲେ । ସେଲି ଓ ବାଇରନ୍ ନିଜ ଦେଶରୁ ତଡ଼ାଖାଇ ପରଦେଶରେ ଦେହି ଦେହି ହୋଇ ମଲେ । କିଟ୍‌ସଙ୍କର ଡାକ୍ତର ତାଙ୍କ ରୋଗୀ ଓଷୁଧ କରିବାକୁ ମଧ୍ୟ ପଇସା ନ ଥିଲା । ରୁଷୋ ଓ ଭଲଟେୟାର ସର୍ବହରା ହୋଇ ପରଦେଶରେ ଆତ୍ମଗୋପନ କରି ଚଳୁଥିଲେ । ହୋମର୍ ଅନ୍ଧ । କେତେ କ'ଣ କହିବି ? ଡି. ଏଚ୍. ଲରେନ୍‌ସଙ୍କ ଜୀବନୀ ଯେ ପଢ଼ିଥିବେ ସେ ବୁଝିଥିବେ, ସାହିତ୍ୟର ଆଶ୍ରୟ ନେଲେ କିପରି ପରର ଅଇଁଠା ଓ ଅନୁଗ୍ରହତା ଉପରେ ନିର୍ଭରକରି ଜୀବନ ବିତାଇବାକୁ ହୁଏ । ଆମ ଓଡ଼ିଶାର ଦୀନକୃଷ୍ଣ, ଅଭିମନ୍ୟୁ,

ଗୋପାଳକୃଷ୍ଣ, କବିସୂର୍ଯ୍ୟ ଇତ୍ୟାଦିଙ୍କର କଥା ତ ଦାଣ୍ଡରେ ପଡ଼ି ହାଟରେ ଗଡ଼ ଗଡ଼ହେଉଛି । ଆଜିକାଲି ଯୁଗର କେତେ ସାହିତ୍ୟିକ ବେମାରରେ ପଡ଼ି ଔଷଧ ଓ ପାଣି ଟିକିଏ ଖାଇବାକୁ ପଇସା ପାଉନାହାନ୍ତି । ଦାଣ୍ଡରେ ଭିକ ମାଗିବାକୁ ହେଉଛି, ତଥାପି ମଧ୍ୟ ଅଭାବ ମେଣ୍ଟୁନି । ଏସବୁ ପରେ ଆଉ କ'ଣ କିଛି କହିବାକୁ ହେବ, ପ୍ରମାଣ କରିବା ପାଇଁ ଯେ ସାହିତ୍ୟର ଅର୍ଥ—ଅହିତର ଭଣ୍ଡାର ।

ଅବଶ୍ୟ ତୁମେ କେତେଗୁଡ଼ାଏ ନଜିର ଦେବ ଯେପରି ଶ୍ରୀହର୍ଷ, ଲର୍ଡ ଟେନିସନ୍, ଉପେନ୍ଦ୍ରଭଞ୍ଜ, ରବୀନ୍ଦ୍ରନାଥ ଠାକୁର ଇତ୍ୟାଦି । ଦେଖୁଛ, ତୁମର ନଜିର ସଂଖ୍ୟା ମୋ ନଜିର ସଂଖ୍ୟାଠାରୁ କମ୍, ଅନେକ କମ୍ । ଏ ସବୁକୁ ମୁଁ ଉଡ଼ାଇଦେଇ ପାରେ । କିନ୍ତୁ ମୁଁ ତା କହୁନି, ମୁଁ କହୁଛି ସାହିତ୍ୟର ଆଉ ଗୋଟାଏ ଅର୍ଥ ଅଛି । ସେ ହେଉଛି ସହିତର ଭାବ । ମୁଁ କହୁନି, ଆଉମାନେ ବି ଏ ଯୁଗର ବଡ଼ ବଡ଼ ନେତାମାନେ ବି ଏ କଥା କହୁଛନ୍ତି । ସ୍ୱାର ଅର୍ଥ କ'ଣ ? ସ୍ୱାର ଅର୍ଥ ତ ହେଲା ଅନ୍ୟମାନଙ୍କ ସହିତ ଯେଉଁ ଲେଖା ରଚନା କରାଯାଏ ତାହା ହିଁ ସାହିତ୍ୟ । ମାନେ ? ମାନେ ଏଇଆ ଯେ, ତୁମେ ଗୋଟାଏ ଦଳର ହୋଇଥିବ, ତୁମ ପଛକୁ ଅଣ୍ଟାଇଦେବା ପାଇଁ ପୁଞ୍ଜାଏ ଲୋକ ଥିବେ । ତୁମେ ତାଙ୍କର ବଡ଼େଇ କରୁଥିବ । ସେ ତୁମକୁ ଟେକୁଥିବେ, ବେଶ୍, ତା'ହେଲେ ତୁମେ ବଡ଼ ସାହିତ୍ୟିକ ହୋଇଯିବ । ଲର୍ଡ ଟେନିସନ୍ ଥିଲେ ଜାଠ ଦଳର କବି । ସେ ସବାଧିମାନଙ୍କର କଥା ଲେଖିଯାଇଛନ୍ତି, ସେଇମାନଙ୍କ ଭାଷାରେ ଜାଠମାନେ ତାଙ୍କୁ ଟେକିଛନ୍ତି । ରାଜନୀତି ତାଙ୍କର । ଅତଏବ ସେ ବଡ଼ ହୋଇଗଲେ । ଶ୍ରୀହର୍ଷ ଓ ଭଞ୍ଜ ଦିହେଁ ଜଣେ ଜଣେ ରାଜବଂଶୀୟ । ଆମ ଦେଶରେ ମଧ୍ୟ ବହୁତ କବି ଓ ସାହିତ୍ୟିକ ଅଛନ୍ତି । ତାଙ୍କ ପଛରେ ଗୋଟାଏ ଗୋଟାଏ ଲଡ଼ୁଆ ଦଳ । ସେ ଲଡ଼ୁଆମାନଙ୍କର ପ୍ରଶସ୍ତି କରୁଛନ୍ତି । ଏ ଲଡ଼ୁଆ ଦଳ ତାଙ୍କୁ ଠେଙ୍ଗାବାଡ଼ି ଧରି ଟେକି ଚାଲିଛନ୍ତି । ତାଙ୍କ ପାହି ତାଙ୍କ ଚରଣରେ ବିଚରା ପାଠକ ମରିଯାଉଛି । କହୁଛି, ଭଲ, ଭଲ । ବେଶ୍ ବେଶ୍ ।

ମୁଁ ବୋଲି କେହି ନ ବୁଝନ୍ତୁ ଯେ ଟେନିସନ୍ ଇତ୍ୟାଦି ଭଲ କବି ନ ଥିଲେ । ଥିଲେ, ନିଶ୍ଚୟ ଥିଲେ । କିନ୍ତୁ ତାଙ୍କ ଅମଳରେ ସେ ଯେପରି ପ୍ରଶଂସା ପାଇଥିଲେ, ତା'ର ଅନୁରୂପ ସାହିତ୍ୟିକ ମାପ ସେମାନଙ୍କର ନ ଥିଲା । ଆଉ ତାଙ୍କଠାରୁ ସାହିତ୍ୟିକ ମାପରେ ଯେଉଁମାନେ ବଡ଼ ଥିଲେ, ସେମାନେ କୌଣସି ଦଳ ସହିତ ମିଶି ନଥିବାରୁ ସେମାନଙ୍କ ଅପେକ୍ଷା ଆହୁରି ବହୁତ କମ୍ ସମ୍ମାନ ପାଇଥିଲେ । ସେତେବେଳେ ଏହା ହିଁ ମୋର କହିବାର କଥା, ତୁମେ ଯେବେ କୌଣସି କୁହାଳିଆ ଦଳ ସହିତ ମିଶି ସାହିତ୍ୟ ଲେଖ, ତା'ହେଲେ ସେଇ ଏକା ହେବ ସାହିତ୍ୟ । ଆଉ ସବୁ ହେବ ଖାଲି ଅସାହିତ୍ୟ ।

ସମ୍ପାଦକଙ୍କ ଲେଖାଟି ଯେକୌଣସି ଦୃଷ୍ଟିକୋଣରୁ, ସାହିତ୍ୟର ଏ ଦୁଇଟି ସଂଜ୍ଞା ମଧ୍ୟରୁ, ଯେଉଁଟିର ବିଚାରରୁ, ଏକାବେଳେକେ ଆ କଣ୍ଟୁଆ ବେକରେ ବ ! କାହିଁକି ନା ସାହିତ୍ୟ ଦଳଗତ ବା ଗୋଷ୍ଠୀଗତ ନହେଲେ ଅହିତ ହିଁ ହୁଏ । ସୁତରାଂ ସମ୍ପାଦକ ମହାଶୟଙ୍କର ଏଇ ଯେ ଗୋଷ୍ଠୀ ବିସମ୍ବାଦ ବା ବିରୋଧ ପ୍ରତି ବୈରାଗ୍ୟ ଓ ବିତୃଷ୍ଣା, ଏଇଟା ତାଙ୍କର ଅହିତ । ବାବୁ ହେ, ଚଟ୍ କରି ଗୋଟିଏ ଗୋଷ୍ଠୀ ବା ଦଳ ସହିତ ମିଶିଯାଅ । ସେ ଗୋଷ୍ଠୀର ଓ ଦଳର ଯେ ମୁଖିଆ ଅଛନ୍ତି, ତାଙ୍କ ପିଠି କୁଣ୍ଡେଇଦିଅ । ଦରକାର ପଡ଼ିଲେ ତାଙ୍କ ପାଇଁ ବାସର ଶେଜ ସାଜ, ବାସର ଦୀପ ଜାଳ, ଲୁହିଁ ବସ । ତା'ହେଲେ ତୁମେ ନିଶ୍ଚୟ ଜଣେ ସାହିତ୍ୟିକ, ନେତା, ସାରଥୀ, ରଥୀ, ମହାରଥୀ, ସାଜସିବ ତନେ । ତା' ଯେବେ ନ କର, ତା'ହେଲେ ବାବୁ ଖଣ୍ଡେ ଗଣ୍ଡା ଚମଡ଼ା କୋଠୁଁ ଯୋଗାଡ଼ କରିନିଅ ଏବେଠୁ ।

ତୁମେ କହିପାର, ଏସ୍ବ ସବୁ ଖାଲି ନୈରାଶ୍ୟର ବିଷ ବାନ୍ତି, ବା ଅକୃତକର୍ମୀର ଈର୍ଷାପ୍ରକାଶ । ତା' ଯେବେ ନ ହୁଏ, ତା'ହେଲେ କ'ଣ ? ସାହିତ୍ୟର ତୁମ ମତରେ ପ୍ରକୃତ ସଂଜ୍ଞା କ'ଣ ? ସ୍ୱରୂପ କାହିଁକି ? ସାହିତ୍ୟ ନହେଁ—ବେଦ, ମହାଭାରତ, ରାମାୟଣ, ଶକୁନ୍ତଳା ନାଟକ, ନୈଷଧୀୟ ଚରିତ, କାଦମ୍ବରୀ, ମାଘ କାବ୍ୟ, ଗୀତାଞ୍ଜଳି, ବିଦଗ୍ଧ ଚିନ୍ତାମଣି, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ହ୍ୟାମ୍ଲେଟ୍, ଓଡ଼େ ଟୁ ଦ ଓ୍ୱେଷ୍ଟ ଉଇଣ୍ଡ୍, ଓଡ଼େ ଟୁ ଇମର୍ଟାଲିଟି, ଇନ୍ ମେମୋରିୟମ, ଜନ୍ ନୂଂନ, ଓଲ୍ଡର ଫଷ୍ଟ, ଲମିଜରବ୍ଲସ, ଟେଲ୍ ଅଫ୍ ଟୁ ସିଟିଜ୍, ଅଙ୍କଲଟମ୍ସ କ୍ୟାବିନ୍, ଆନା କାରେନିନା ଇତ୍ୟାଦି ଇତ୍ୟାଦି ଏଇ, ସାହିତ୍ୟ ।

କିନ୍ତୁ ଏଥିରୁ ଆମେ କିମିତି ଜାଣିବୁ ସାହିତ୍ୟର ସଂଜ୍ଞା, କିମିତି ବୁଝିବୁ ସାହିତ୍ୟର ରୂପ ଓ ଆକାର ? ପଢ଼, ଅନ୍ୟଲେଖା ସହିତ ଓଜନ କର, ବୁଝ, ଜାଣିବ । ତା' କରିବାର ଶକ୍ତି ଯେବେ ତୁମର ନାହିଁ, ତାହାହେଲେ ସାହିତ୍ୟ ବିଷୟରେ ଭାବିବାର ଓ କହିବାର ଅଧିକାର ତୁମର ନାହିଁ ।

ଯେ ଆମ୍ବ ଖ୍ରେଇ ଆଖୁରସର ମିଠା ବୁଝିପାରେନି, ତା ଜିଭରେ ନିଶ୍ଚୟ କିଛି ଦୋଷ ଅଛି । ସୁତରାଂ ଆମ୍ବ ଖାଇବାର ଚେଷ୍ଟା ନ କରି ଆଗ ତା ଜିଭ ଲାଗି ଡାକ୍ତର ପରାମର୍ଶ କରିବା ଦରକାର । ଯେ ନିମକାଠି ଖ୍ରେଇ ସେଥିରୁ ଆଖୁରସର ସୁଆଦ ପାଏ, ତା ପାଇଁ ତ ରାଞ୍ଚି ବେଡ୍ଲାମରେ ବ୍ୟବସ୍ଥା ହବା ଉଚିତ । ଯେ ଗୋଲାପ ଫୁଲଟି ନାକ ପାଖରେ ଅଛି, ସେଥିରୁ ମଧ୍ୟ ଗନ୍ଧ ପାଏନି ବା ଦୁର୍ଗନ୍ଧ ପାଏ, ଅଥଚ କଖାରୁ ଫୁଲର ମହକରେ ତା'ର ପ୍ରାଣ ଭରିଯାଏ, ତାର ପାରୁଡ଼ା ପୋକ ହେଇ ଜନ୍ମହେବା ଉଚିତ୍, ସାହିତ୍ୟ ରସିକ ହେଇ ନୁହେଁ । ତୁମେ ଯେବେ ସାହିତ୍ୟ କଥାଟିର ମର୍ମ ବୁଝିବାକୁ ଚାହୁଁ, ତା' ହେଲେ ଯୁ ବହି ସବୁର କଥା କହିଲି, ସେ ସବୁ ଭଲ ଖଣ୍ଡିଏ ବହି ନେଇ ପଢ଼ି ବୁଝାଇଦିଅ, ତା' ବାହାରେ, ତା' ଭିତରେ କି ମାଲ ମସଲା ଅଛି । ଗୁଡ଼ାଏ

ଅସାହିତ୍ୟକୁ ସାହିତ୍ୟ ବୋଲି କହନ୍ତି । ଗୁଡ଼ାଏ କଖାରୁ ଫୁଲକୁ ସୁମନ ସନ୍ଦର୍ଭ ବୋଲି ଲୋକଙ୍କ ଆଗରେ ଥୁଅନ୍ତି । ମାଠିଆ ମାଠିଆ ଜମ୍ମୁରସକୁ ଆଖୁରସ ବୋଲି ଲୋକଙ୍କୁ ପିଆଅ ନାହିଁ । ତୁମେ ପାଠୁଆ, ତୁମେ ବଡ଼ଲୋକ, ତୁମେ ନେତା, ଲୋକେ ତୁମ ମୁହଁକୁ ଚକାଇ ବସିଚନ୍ତି । ତୁମେ ଗନ୍ଧଭେଣ୍ଡିରକୁ ପାରିଜାତ ବୋଲି କହିଲେ, ଜ ଚରେଇଚା ପାଣିକୁ ଅଙ୍ଗୁର ରସ ବୋଲି ବଢେଇଦେଲେ, ଲୋକେ ହୁଏତ ଡର ବା ଉଦ୍ରାମିର ଖାତିର୍‌ରେ ତୁମକଥାକୁ କାଟି ପାରିବେନି । ଫଳରେ ଯେଉଁମାନେ ଛୁଆଁ ବାଛବିଚର ଶିଖିନାହାନ୍ତି, ସେମାନେ ତୁମର ଏ ପସନ୍ଦ ଓ ଅନ୍ୟମାନଙ୍କର ଏ ନୀରବ ଭାବରେ ଭୁଲିଯାଇ ହୁଏତ ସତକୁ ସତ ଗନ୍ଧଭେଣ୍ଡିରକୁ ଗୋଲାପ ଫୁଲ ବୋଲି, ଚରେଇତାକୁ ଅଙ୍ଗୁର ରସ ବୋଲି ମାନିନେବେ, ଧରିନେବେ ।

ସେଇଆ ହିଁ ହଉଚି ଇଲେ ଏ ଦେଶରେ । ଦଳଗତ ଓ ଗୋଷ୍ଠୀଗତ ଲେଖାକୁ ସାହିତ୍ୟ ବୋଲି ଗ୍ରହଣକରିବା ଦ୍ୱାରା ଲୋକଙ୍କର ରୁଚି ଖରାପ ହୋଇଯାଉଚି । ସାହିତ୍ୟରେ ଯୁ କଥା, ସାହିତ୍ୟର ଅନୁରୂପି ଅନ୍ୟାନ୍ୟ କଳାରେ ମଧ୍ୟ ସେଇ କଥା । ଆଜିକାଲି ରଙ୍ଗମଞ୍ଚମାନଙ୍କରେ ଯାହା ଅଭିନୟ କରାଯାଉଚି, ଚଳଚ୍ଚିତ୍ର ଭାବରେ ଯାହା-ସବୁ ପ୍ରଶଂସା ପାଉଚନ୍ତି, ସେ ସବୁ କେବଳ ରୁଚି ହତ୍ୟା, ଫଞ୍ଚୁଡର ଖଣି । ଏ ସାହିତ୍ୟିକ ଅଭିନେତା ଓ ଚଳଚ୍ଚିତ୍ରକାମାନେ ତ ଜଣୁସୁ ନରହନ୍ତାଙ୍କଠାରୁ ମଧ୍ୟ ବେଶୀ ଅପରାଧି । ଏସବୁକୁ ଯେଉଁମାନେ ପ୍ରଶସ୍ତି ଦିଉଚନ୍ତି, ସେମାନେ ତାଙ୍କଠାରୁ ମଧ୍ୟ ବେଶୀ ଅପରାଧି । କାରଣ ସେମାନେ ଗୋଟାଏ ଦି'ଟା ଜୀବନର ହତ୍ୟା କରିବାରେ ହସ୍ତାନ୍ତ ଦଉନାହାନ୍ତି, ଦଉଚନ୍ତି ଗୋଟାଏ ଜାତିର ଅତୀତ, ବର୍ତ୍ତମାନ, ଭବିଷ୍ୟତର ନିର୍ମମ ନିରଙ୍କୁଶ ଓ ସ୍ୱାର୍ଥ-ଜଡ଼ିତ ହତ୍ୟାର ପ୍ରଶସ୍ତି ।

କ୍ଷମା କରିବେ, ମୋର ଗୋଟିଏ ଭୁଲ ହୋଇଯାଇଚି । ଏ ଗଣତନ୍ତ୍ରର ଯୁଗ । ଏଥିରେ ରମା ବାଉରୀର ସ୍ଥାନ ଯେପରି ଉଚ୍ଚ, ଆଗପଡ଼ାର ରାଜାଙ୍କ ଆସନ ମଧ୍ୟ ସେତିକି ଉଚ୍ଚ । ସମସ୍ତେ ସମାନ । ତା ଯେବେ ହୁଏ, ତା' ହେଲେ କଖାରୁ ଫୁଲ ଓ ଗୋଲାପ ମଧ୍ୟରେ, ଜମରସ ଓ ଆଖୁରସ ମଧ୍ୟରେ କୌଣସି ପ୍ରଭେଦ ରହିବା ଉଚିତ ନୁହେ । ସେଇ ହିସାବରେ ବୈଷ୍ଣବ ପାଣିଙ୍କ ସୁଆଙ୍ଗ ଓ ରବୀନ୍ଦ୍ରଙ୍କ ଗୀତାଞ୍ଜଳି ଭିତରେ, ମୋର ଏ ଲେଖା ଓ ବର୍ଟ୍ରାଣ୍ଡ ରସେଲଙ୍କ ଲେଖା ଭିତରେ କୌଣସି ପ୍ରଭେଦ ରହି ନ ପାରେ । ବାହାରେ ମୁଁ, ସାବାସ୍ ମୁଁ, ମୁଁ ତାହାହେଲେ ବର୍ଟ୍ରାଣ୍ଡ ରସେଲଙ୍କ ସାଙ୍ଗରେ ସମାନ ହେଇଗଲିଣି । ତୁମେ ଯେବେ ଏତିକି କରିପାରନ୍ତି, ମତେ ନେଇ ବର୍ଟ୍ରାଣ୍ଡ, ଆଲଡୁଅସ୍ ହକ୍‌ସଲି, ଜି. କେ. ଚେଷ୍ଟରଟନ୍, ଷ୍ଟିଫେନ୍ ଲିକକ୍ ଇତ୍ୟାଦିଙ୍କ ସହିତ ଏକା ଆସନରେ ବସାଇପାରନ୍ତି, ତା'ହେଲେ ମୁଁ ସବୁବେଳେ ତୁମର ଏ ଗଣତନ୍ତ୍ରର ଜିନ୍ଦାବାଦ କରିଚାଲନ୍ତି । ଏ ଜୀବନ ନୁହେଁ, ମରି ନରକକୁ ଗଲେ ମଧ୍ୟ ସେଠାରେ ଖାସ୍ ଯମରାଜାଙ୍କ ସାମନାରେ 'ଯାବତ ଚନ୍ଦ୍ରାର୍କେ ।'

କିନ୍ତୁ ତା ତୁମେ କରିପାରିବନି । ଏପରିକି ମତେ ତୁମର ପ୍ରିୟ ଅର୍ଦ୍ଧଲୀ ସହିତ ସମାନ ଆସନ ଦବାକୁ ତୁମେ କୁଣ୍ଠାବୋଧ କରିବ । କାହିଁକି ନା, ତୁମେ ଗଣତନ୍ତ୍ର । ତୁମ ମତରେ ତୁମେ ହେଲ ଶ୍ମଶାନବାସୀ ମହାଦେବ, ଆଉ ତୁମ ପଛରେ ଯେଉଁମାନେ ଧାଇଁ ବୁଲୁଚନ୍ତି ସେଇମାନେ ହିଁ ଗଣ । ତାଙ୍କ ଛଡ଼ା ଗଣ ନାହିଁ । ସୁତରାଂ ଗଣତନ୍ତ୍ର ତାଙ୍କୁ ହିଁ ପୋଷାଏ । ଯେ ସେ ଗଣଙ୍କ ଭିତରେ ନାହାନ୍ତି, ତାଙ୍କ ଉପରେ ଗଣପତିର କ୍ରୂରଦୃଷ୍ଟି ଯେପରି ମହାଦେବଙ୍କ ନିଆଁ କ'ଣ ଦୃଷ୍ଟି ମଧ୍ୟ ସେହିପରି ।

ଏ ଗଣତନ୍ତ୍ରର ଯୁଗ ହୋଇଥିବାରୁ ପ୍ରତ୍ୟେକ ଲୋକର, ଅର୍ଥାତ ତୁମ ଏ ଗଣଙ୍କ ଭିତରୁ ପ୍ରତ୍ୟେକଙ୍କର ଲେଖିବାର ଅଧିକାର ଅଛି । ଆଉ ସେ ଯାହା ଲେଖିବେ, ତା'ତ ନିଶ୍ଚୟ ହବ ସାହିତ୍ୟ, କାରଣ ସେ ଆମରି ଗହଣରେ ଅର୍ଥାତ ଆମରି ସହିତରେ ରହି ଲେଖିଚନ୍ତି । ସେ କଥା ମାନୁଚି ଆଜ୍ଞା, କିନ୍ତୁ ଗୋଟାଏ କଥା ମୁଁ ମାନିବାକୁ ଟିକିଏ ପଛଉଚି । ଆପଣ ଖଣ୍ଡିଏ ମାସିକ ପତ୍ରିକା ବାହାରକଲେ । ସେଥିରେ ଆପଣଙ୍କ ଗଣମାନେ ବହୁତ ବହୁତ ଲେଖା ଦେଲେ । ଭଲ କଥା । ଆପଣଙ୍କ କାଗଜ, ଆପଣଙ୍କ ଗଣ । କିନ୍ତୁ ଆଜ୍ଞା, ମୁଁ କିଆଁ ତାକୁ ପଇସାଦେଇ କିଣିବି ଓ ମୋର ଆଖି ଉପରେ ଜୋରଦେଇ, ମୋର ସମୟ ନଷ୍ଟକରି ତାକୁ ପଢ଼ିବି ? କହିବ ତୁମେ ନ କିଣିପାର, ନ ପଢ଼ିପାର; ଆଜ୍ଞା, ସେ କିମିତି ହବ ? ଭଲ ବହି, ଭଲ ବନ୍ଧେଇ, ଲୋଭହେଲି । ତା ଭିତରେ ଭଲ ଅଛି କି ଭେଲ ଅଛି ମୁଁ ନ ପଢ଼ିଲେ ଜାଣିବି କିପରି ? ଆଗେ ତ ପଇସାତକ ଗଣିବି । ସମୟ ତ ଖର୍ଚ୍ଚହେବ । ତା'ପରେ ଆଜ୍ଞା, ଆପଣଙ୍କ କାଗଜ, ଆପଣ କହୁଚନ୍ତି, କିଣିବାକୁ ଭଲ । ମୁଁ ନାହିଁ କରିବି କେମିତି ? ମୋର ପଇସା ନେଇ ଏ ସୁ ନକଲି ଜିନିଷ ତୁମେ ଦଉଚ । ଏ ଯୁ ପସ୍ତ ବାଦାମ ତେଲର ମିଠେଇକୁ ଗୁଆଘିଅ ଛଣା ବୋଲି ମତେ ଭଣ୍ଡଉଚ, ସ୍ୱା ଲାଗି ତୁମେ Food Adulteration Act ଅନୁସାରେ ଦଣ୍ଡନୀୟ ହବନାହିଁ କାହିଁକି ? ଆଉ ତୁମର ଏ ପଚ୍ଚାଗନ୍ଧିଆ ଜିନିଷଗୁଡ଼ାକୁ ପୋଡ଼ି ପୋଡ଼ି ଦିଆଯିବ ନାହିଁ କାହିଁକି ତା ହୋଇପାରେ କି ? ଏ ନିତାନ୍ତ ଅଗଣତାନ୍ତ୍ରିକ କଥା । ଏ ବଲ୍‌କୁଲ୍ ଆମ ସମ୍ବିଧାନର ଖିଲାପ । ଗଣର ଉପକାର ଲାଗି, ଗଣର ସନ୍ତୋଷ ଲାଗି ତୁମକୁ ଦରକାର ପଡ଼ିଲେ ସର୍ବସ୍ୱ ତ୍ୟାଗ କରିବାକୁ ପଡ଼ିବ । ପ୍ରୟୋଜନ ହେଲେ ମହାଦେବଙ୍କ ଶ୍ମଶାନରେ ମଡ଼ା ଉପରେ ବସି ତୁମର ଆଖି ଓ ଜିଭକୁ ବଳିଦବା ମଧ୍ୟ ଅସଙ୍ଗତ ହବନି ।

କଥାଟା ବିଲକୁଲ ଯୁକ୍ତିଯୁକ୍ତ । ଗଣଙ୍କର ସନ୍ତୋଷ ଓ ଆନନ୍ଦ ଲାଗି ସବୁ କରିବାକୁ ପଡ଼ିବ । ବୁଝିଲେଟି ସମ୍ପାଦକ ମହାଶୟ, ଏ ମହାଦେବଙ୍କର ଆଜ୍ଞା । ମୋର ଏସବୁ ଉପଦେଶ ଯେତେବେଳେ ମାଗେଣା ଦାନ ଆପଣଙ୍କ ଉପକାରାର୍ଥେ, ସେତେ-ବେଳେ ଏ ଗଣ କିଏ ଓ କେତେପ୍ରକାର କହିଦେଇଥିବା ନିତାନ୍ତ ଦରକାର ।

ମହାଦେବଙ୍କ ଗଣ, ଗଣେଶଙ୍କ ଗଣ, କାର୍ତ୍ତିକେୟଙ୍କ ଗଣ ଓ ମା ଦୁର୍ଗାଙ୍କ ଗଣ । ବର୍ତ୍ତମାନ ଏ ପର୍ଯ୍ୟନ୍ତ ଚାରିପ୍ରକାର ଗଣ ଏ ଦେଶରେ ପରିଚୟ ମାରୁଛନ୍ତି । ଚାରିପ୍ରକାର, ବାପରେ ବାପ, ଏତେକଗୁଡ଼ାଏ ଲୋକଙ୍କର ରୁଚି ଓ ସ୍ୱାର୍ଥ ନେଇ ମଣିଷ କମିଟି ସାହିତ୍ୟ ବା କଳା ଗଢ଼ିବ ? ଉତରଯାଅନ, ଖାଲି ଉତରଯାଅନ । କନିଷ୍ଠା ସ୍ୱର ସହଜ ସତରେ । ସ୍ୱାଙ୍କ ଚଳମେ, ଅଧ ଚଳମେ ଚଟ୍ଟେଇ, ଅଧିଗିଳେ ପିଛି. ଗିଲାସେ ଖଣ୍ଡେ ସୋମରସ ବା ସରେ ଖଣ୍ଡେ ଗୁହଳରସ ଦେଇଦେଲେ, ଏମାନେ ବେଶ୍ ପରିତୃପ୍ତ. ଠିକ୍ ବାଟକୁ ଆସିଯିବେ । ଅସଲ ଲୋକ ହେଉଛନ୍ତି ମହାଦେବ, ଗଣେଶ, କାର୍ତ୍ତିକେୟ, ବା ମା'ଚଣ୍ଡୀ । ଯାହାର ଯେତେବେଳେ ପାଳି ପଡ଼ିଲା, ଯେତେବେଳେ ତାଙ୍କର ଏଇ ଗଣ ପାଲଟଗଦା ଉପରେ ଠିଆ ହୋଇ ନିଜକୁ ବଡ଼ ବୋଲି କହିପାରିଲେ, ସେତେବେଳେ ତାଙ୍କୁ ଟିକିଏ ବିଶିଷ୍ଟ ପୂଜା କରିଦେଲେ, ଆପଣଙ୍କ ସାହିତ୍ୟିକ ଗାଡ଼ି ଠିକ୍ ବଜାୟ ରହିଯିବ । ସେତିକି ଆପଣଙ୍କୁ କରିବାକୁ ପଡ଼ିବ; କିନ୍ତୁ ଟିକିଏ ବୁଦ୍ଧିର ମାରପେଞ୍ଚ, ବେଶ ମହାଦେବଙ୍କୁ ଗଣେଶଙ୍କୁ, ଗଣେଶଙ୍କଠୁଁ କାର୍ତ୍ତିକେୟଙ୍କୁ ପୂଜା କରିବାରେ ବେଶୀ କିଛି ଅସୁବିଧା ହେବନି । ବୁଝିଲେ, ଏଇତକ ଯେବେ କରି ନ ପାରିବେ, ତା'ହେଲେ ଏ ବ୍ୟବସାୟ ଛାଡ଼ିଦିଅନ୍ତୁ । ଆପଣଙ୍କ ହାତରେ ହେବନି ମୋଟେ । ନିତ୍ୟାନ୍ତ ଅନାଡ଼ି ।

☐

ଦିଗନ୍ତ
ଡିସେମ୍ବର—୧୯୫୯
୧ମ ବର୍ଷ—୪ର୍ଥ ସଂଖ୍ୟା
ପୃଷ୍ଠା—୧୩

# 'କଳାଧଳା'

ସମସ୍ତେ ଜାଣନ୍ତି କଳା କଳା, ଧଳା ଧଳା । କପିଳିଙ୍ଗଙ୍କର ପୂର୍ବ ପଶ୍ଚିମ ଭଳି ଏ କାଳିଆ କପିଳାଙ୍କର ଭେଟ ଅସମ୍ଭବ । ଏକଥା ସମସ୍ତେ କହନ୍ତି । କିନ୍ତୁ ଏ ସ୍ପୁଟ୍‌ନିକ ଯୁଗରେ ଅସମ୍ଭବ ମଧ୍ୟ ସମ୍ଭବ ହେଉଥିଲାବେଳେ, ଏ ବା କାହିଁକି ସମ୍ଭବ ନ ହେବ ? ଆମ୍ଭେ ପୁରବୀ, ଆମେ ତ ପୁଣି ପଚ୍ଛିମା ଭୈରବୀ ହବା ଲାଗି ଉଦ୍ୟମ କରୁଛୁଁ ଓ ସେ ଉଦ୍ୟମରେ କୃତକାର୍ଯ୍ୟ ହୋଇଯାଇଚୁଁ ବୋଲି ତାହା ଫୁଟାଣି ମାରୁଚୁଁ !! ଧୋତିର ହେଲା ବନବାସ ଆସିଲା ଲୁଙ୍ଗି, ଇଲେ ଲୁଙ୍ଗିର ମଧ୍ୟ କତଲ ହୋଇ ଆସିଚି ପେଣ୍ଟ, କୋର୍ଟ ସ୍ଲାକ୍, ଲଉଞ୍ଜ୍‌ସୁଟ୍ ଇତ୍ୟାଦି । ବେଶଭୂଷାର ଦେଶ ପାଲଟିଯାଇଚି କଳକାରଖାନା ଦେଶରେ । ଶୁଣୁଚୁଁ, ଯୁଆଡ଼େ ଚାହଁ ଏ ଦେଶର ମୁହଁ ବିଲ୍‌କୁଲ୍ ବଦଳିଯାଇଚି । କୁମରହଟ୍ଟୀ କାଳିଆଣୀ ବୁଢ଼ୀ ମାଇପିଟାର ମୁହଁ ସ୍ନୋ ପାଉଡର୍, ଲିପ୍‌ଷ୍ଟିକ୍‌ଲଗାରେ ଲାବଣ୍ୟମୟ ହୋଇଉଠୁଚି; ଶୁଖିଲାଗଛରେ ପତ୍ର କଅଁଳ ଛନ ଛନ ଦିଶୁଚି । ଗୋବି ମରୁଭୂମି ଗହମ କ୍ଷେତରେ ଶ୍ୟାମଳତାରେ ଉଠୁଚି ପଡୁଚି, ଶୁଣୁଚି, ତୁମେ କହୁଚ । ଶୁଭୁଚି ମତେ, ମାତ୍ର ଆଖିକି ଦିଶୁନି, ଦେଖିପାରୁନି । ପରଳ ମାଡ଼ିଯାଇଚି ନା କଣ ? କେଜାଣି ? କାହାର ? ମୋର ନା ତୁମର ? ମୁଁ ଦେଖୁଚି ସେଇ ପୁରୁଣା ଭୁଇଁଟାର ରୂପ ଓ ଓ କାନ୍ତି, ଶୁଷ୍କତା ଓ ସରସତା, ମୁଁ ଶୁଣୁଚି ତୁମର ଏଇ କଳକାରଖାନାର ସାଇରେନ୍‌ରେ ସେଇ ପୁରବୀର ତାନ ଓ ମୂର୍ଚ୍ଛନା ।

କିଛି ବଦଳିନି । ବଦଳିପାରେନି । ସେହି ସିଧା ଅଛି । ତାର ସ୍ୱର, ତାର ଆକୃତି । ମୁହଁରେ ମାଟିକ ଗୋଟାଏ ମୁଖା, ରାମଙ୍କର ବା ରାବଣଙ୍କର । ତୁମେ କଳା ଉପରେ ଧଳା ବୋଳି ତାକୁ ଧଳା କରିବାର ଯେତେ ଚେଷ୍ଟା କର, ଅଙ୍ଗାରଃ ଶତଧୌତେନ ମଳିନତ୍ୱଂ ନ ଯାସ୍ୟତେ । ତୁମେ ଧଳା ଉପରେ କଳାପୁଟ ବୋଳିଦେଲେ ସେଥିରେ ଯାହୁ ଫୁଟିଥିବ ସିନା, କଳା ହୋଇପାରିବନି ।

ବହୁତ ବହୁତ ଚେଷ୍ଟା ହୋଇଯାଇଚି ତୁମଠାରୁ ମଧ୍ୟ ଧୁରନ୍ଧର ବ୍ୟକ୍ତିମାନଙ୍କ ଦ୍ୱାରା । ଆଠଗଡ଼ର ରାଜା, ଟଙ୍କା ପଇସାର ପ୍ରଭାବରେ ଗୋଡ଼ଠାରୁ ମୁଣ୍ଡଯାଏ ସବୁ ଧଳା । 'ଅଷ୍ଟଦୁର୍ଗ ନୃପ ଭଣେ' ବୋଲି କେତେ ଗୀତ ତାଙ୍କ ନାଁରେ ହୋଇଗଲା । କିନ୍ତୁ ସେ କଳାକାର ହୋଇପାରିଲେନି । ଯେଉଁ କବିସୂର୍ଯ୍ୟଙ୍କୁ କଳାକାର ବୋଲି ସମସ୍ତେ କହିଲେ । ତାଙ୍କ ଦେହକୁ ଧଳା ଛୁଇଁ ପାରିଲାନି, ଏତେ କରି ମଧ୍ୟ ।

ତୁମର ଧଳାକଳା ଭଣ୍ଡାର ଅଛି । ତୁମେ ତା'ରି ବଳରେ ଗରିବ କଳାକାର ଉପରେ ଚଢ଼ି ତା'ଠାରୁ ସାହିତ୍ୟ, ଇତିହାସ, ନାଟକ ଅନେକ କିଛି ଲେଖାଇ-

ନେଇପାର, ତୁମ ନାଁରେ ତଥାପି ଲୋକେ ଦେଖିବେ ତୁମର ଧଳାକାରଙ୍କୁ, ତୁମର କଳାକାରଙ୍କୁ ଦୃଷ୍ଟି ହିଁ ଦେବେନି । ବଡ଼ ବଡ଼ ନେତାମାନେ, କ୍ରୁଶ୍ଚେଭ୍, ଆଇଜେନ୍ ହୋଭର୍, ମାକମିଲାନ୍, କେନେଡ଼ି ଇତ୍ୟାଦି ବିଶ୍ୱଗୁରୁକମାନେ ଖୁବ୍ ବଡ଼ ବଡ଼ ଭାଷଣମାନ ଦେଉଛନ୍ତି, ତୁମେ ପଢ଼ୁଛ, ବାହାବାହା ଦେଉଛ, ବାଃ ବାଃ କେଡ଼େ ବଡ଼ ପଣ୍ଡିତରେ ! ଆଟମ୍ ମାଡରୁ ଆରମ୍ଭ କରି ଲୁହା ଢାଳେଇଯାଏ ସବୁ କଥା ସ୍ୱାଙ୍କୁ ଜଣା । ତୁମେ କିନ୍ତୁ ଜାଣନି, ଏ ନେତାମାନଙ୍କ ପଛରେ ଗୋଟାଏ ଦଳ ପେଷାକଲାକାର ଥାଆନ୍ତି । ଏଇମାନେ ସେ ଭାଷଣ ଲେଖନ୍ତି, ନେତା ତାଙ୍କୁ ଗାଇଯାଆନ୍ତି । ନାଁ ହେଲା ଏଇ ମୋଟା ମୋଟି ଧଳାକାର ନେତାମାନଙ୍କର, ସେ ଯୋଡ଼ା କଳାକାରଙ୍କ ନାଁ କେହି ଆଣିଲେନି । ଯାହା ସେ ଦେଶରେ ହେଉଛି, ଏ ଦେଶରେ ମଧ୍ୟ ହେଉଛି । ତଫାତ୍ ଏତିକି, ସେ ଦେଶର ଲୋକଙ୍କୁ ଆବୁରୁଯାବୁରୁ ଯାହା ଗୁଡ଼ାଏ କହି ଭଣ୍ଡାଇ ହେବନି, କାରଣ ସେମାନେ ପାଠୁଆ ଗୁଆଁର । ଏ ଦେଶରେ ସରଗକୁ ନିଶୁଣୀ ନାହିଁ କି ବଡ଼ଲୋକଙ୍କୁ ଉତ୍ତର ମଧ୍ୟ ନାହିଁ । ବଡ଼ଲୋକ ଯାହା କହିଲେ, ଲୋକ ତାହା ଆଁ କରି ଶୁଣିଗଲେ, ତାଳିମାଇଲେ, ବାହାବ୍ବା କଲେ, ବୁଝିଲେନି କିଛି, କି ମନେ ବି ରଖିଲେନି କିଛି । ଲାଭ ଭିତରେ ଏତିକି ଯେ, ସେ ଦେଶରେ କଳାକାରଙ୍କ ଅଣ୍ଟାକୁ ଯାହା ଦି' ପଇସା ଧଳା ଧଳା ମାଲ୍ ଆସୁଥିଲା, ଏ ଦେଶରେ ତା' ମଧ୍ୟ ହୁଏନି, କିନ୍ତୁ କିଆଁ, ସ୍ୱାର କି କିଛି ଉପାୟ ନାହିଁ ? କଳାକାର କି ଧଳାକାର ବନିପାରେନି ? ସେ ଦେଶରେ ତ ପାରିଚନ୍ତି, ଏ ଦେଶରେ ହବନି କିଆଁ ? ହଉନି କିଆଁ ? ଯେତେଦିନଯାଏ କଳାକାର ଧଳାକାରଙ୍କ ପଛରେ ଗୋଡ଼ାଇବେ, ସେତେଦିନଯାଏ ତାଙ୍କର ସେଇ କଥାଟି କହିବ । କଳାହାଣ୍ଡି ଧଳା ହବନି । ଭିକ ମାଗି ପର ଅନୁସରଣିଆ ହେଇ କେହି କେବେ ବଡ଼ଲୋକ ହେଇନି । ବଡ଼ଲୋକମାନେ ପ୍ରକୃତ ବଡ଼ଲୋକ, ହଜାରିକିଆ ବା ଦଶହଜାରିକିଆ ବଡ଼ଲୋକଙ୍କ କଥା କହୁନି । ସେ ତ ହାଡ଼ପାଣି କରିବା ବି ହଉଚନ୍ତି, ନିରକ୍ଷର, ନିପାଠୁଆ ବି ଲକ୍ଷ ଲକ୍ଷ କମଉଚନ୍ତି । ଖାଲି ଧଳା କମେଇବାରେ ମଣିଷ ବଡ଼ ହୋଇପାରେନି । ତା ଜୀବନଟା ଲାଗି ତା'ର ଗାଁରେ ବା ସହରରେ ଚହଲେଇ ହୋଇ-ପାରେ, କିନ୍ତୁ ସବୁ କାଳକୁ ସବୁ ଯାଗାକୁ ଚହଲେଇ ହୋଇ ପାରିବନି । ଆଉ ଯେ ପ୍ରକୃତ କଳାକାର ସେ ଦୃଷ୍ଟି ଦିଏ ଅନନ୍ତ କାଳର ବିଶେଷ ବାଟକୁ । କାଳିଦାସ ଗରିବ ଥିଲେ । ଉଜ୍ଜୟିନୀ ମହାରାଜାଙ୍କ ତୁଳନାରେ ଅତି ଗରିବ, କାଶୀର ମହାରାଜାଙ୍କ ଗହଣରେ ଜଣେ ସଭାସଦ୍ ମାତ୍ର । କିନ୍ତୁ ସେ ପ୍ରକୃତ କଳାକାର ଥିଲେ ବୋଲି, ଅନନ୍ତକାଳର ଅଶେଷ ପଥରେ ତାଙ୍କର ଦୃଷ୍ଟି ବାନ୍ଧି ହୋଇ ରହିଥିଲା ବୋଲି ସେ ଆଜିକି ଅମର ରହିଚନ୍ତି । ତାଙ୍କର ଅମରତ୍ୱର ସାକ୍ଷୀ ବିକ୍ରମାଦିତ୍ୟଙ୍କୁ କରିପାରିଚନ୍ତି । ଏ ଦେଶରେ କେତେ ବିରଲା କେତେ ଝୁନ୍‌ଝୁନ୍‌ୱାଲା, କେତେ ଗୋଏଙ୍କା ଅଛନ୍ତି, ତାଙ୍କ ସାଙ୍ଗରେ ଥିଲେ ଜଣେ କଳାକାର ରବୀନ୍ଦ୍ରନାଥ । ବିରଲା ଗୋଏଙ୍କା ବିଶ୍ୱସମୁଦ୍ରର ତିମି ତିମିଙ୍ଗିଳଙ୍କ ପେଟତଳେ

ବା ପାଣି ଭିତରେ ଲୁଚଯାଉଚନ୍ତି । ରବୀନ୍ଦ୍ର ଅନନ୍ତକାଳର ଅଶେଷ ପଥରେ ଦୃଷ୍ଟି ନିବଦ୍ଧ କରିପାରୁଥିଲେ ବୋଲି ସେ ବିଶ୍ୱକବି, ବିଶ୍ୱବରେଣ୍ୟ । ରବୀନ୍ଦ୍ର ଇଚ୍ଛା କରିଥିଲେ ଡର୍ଟିଙ୍ଗ୍ଟନ୍ଙ୍କର ଧଳାମୁଣ୍ଡା ଭିତରେ ପଶି ବିହରିପାରିଥା'ନ୍ତେ । କିନ୍ତୁ ସେ ଇଚ୍ଛାକଲେ ଲଙ୍ଗଳା ଫକୀର ଗାନ୍ଧୀର କଳାମୁଣ୍ଡାଟିକୁ ନେଇ ହେଉପି କରିବାକୁ । କାରଣ ସେ ଗାନ୍ଧୀଙ୍କର ସତ୍ୟ, ଅହିଂସା ନୀତିରେ ତାଙ୍କର ଅଶେଷ ପଥର ଅନନ୍ତକାଳର ସନ୍ଧାନ ପାଇଥିଲେ ।

ସେଇ ଅନନ୍ତକାଳର ଅଶେଷ ପଥର କଥା ଯୋଉଁ କରୁଚ ଏତେଟା କ'ଣ ? ସେ କ'ଣ, କଳାକାର ଠିକ୍ ବୁଝିଚି । ବୁଝେଇବା କଷ୍ଟକର ତାକୁ, ଯେ ଅବୁଝା । ବିଶ୍ୱ ଅନନ୍ତ, କାଳ ଅସୀମ, ବିଶ୍ୱର ପ୍ରବାହ ଅଶେଷ । ସୃଷ୍ଟି ବହୁତ । କିନ୍ତୁ ପ୍ରତିସୃଷ୍ଟି ପୂର୍ବ ସୃଷ୍ଟିର ପୁଅ, ପରସୃଷ୍ଟିର ଜନକ । ଏକଥା ତୁମେ ବୁଝିବ କିମିତି ? ତୁମ ଆଖିରେ ତୁମର ଏଇ ଆଣବିକ ଯୁଗ ଗୋଟାଏ ନୂଆ, ବିଲ୍‌କୁଲ୍ ନୂଆ କଥା । ଯା'ର ପୂର୍ବାପର ସମ୍ବନ୍ଧ କିଛି ନାହିଁ । ତୁମର ସାଙ୍ଗରେ ଏ ଯୁଗଟା ଆକାଶରୁ ଖସିପଡ଼ିଚି ତଳକୁ, ତୁମରି ସାଙ୍ଗରେ ସେ ହଜିଯିବ କେଉଁ ଅନ୍ଧାରକୁ, ତୁମେ ତ ଏକଥା ଭାବୁଛ । ତୁମେ ତ ବୁଝୁନ ନିମିଜରେବଲସ୍ କନର୍ଡିସ୍ପୋଫୋର୍ ବାପ ଲାଗିଲଗା ସମ୍ବନ୍ଧ । ଏ ଦୁହିଁଙ୍କ ଭିତରେ ହାମ୍‌ଲେଟ୍ ଏବଂ ମ୍ୟାନ୍ ଆଣ୍ଡ୍ ସୁପରମ୍ୟାନ୍ । ମେଘଦୂତ ଓ ଗୀତାବଳୀ—ସେଇ ସମସ୍ତେ ଏକ ସୂତାରେ ଗୁନ୍ଥା । ଏ ଫୁଲଟି ପରେ ସେ ଫୁଲଟି ଯେପରି ଅବଶ୍ୟମ୍ଭାବୀ । ଏକଥା ତୁମେ ବୁଝିବନି କାହିଁକି ନା, ଏକଥା ଯେବେ ସତ ହୁଏ, ତା' ହେଲେ ତୁମର ବଡ଼େଇ ରହିଲା କୁଠେଇ ? ତୁମେ ଆତ୍ମମ୍ଭରି, ଆତ୍ମସର୍ବସ୍ୱ । ତୁମର କ୍ଷୁଦ୍ର ସ୍ୱାର୍ଥଛଡ଼ା, ତୁମରିଠାଉଁ, ତୁମରି ଅହଙ୍କାର ଛଡ଼ା ତୁମକୁ ଯେ ଆଉକିଛି ଦିଶେନି । ତୁମେ ପାଞ୍ଚ-ଜଣଙ୍କ ଭିତରେ ଜଣେ ହବାକୁ ଯିବ କିମିତି ? ତୁମେ ଗୋଟାଏ ଅସରନ୍ତି ରୁଦ୍ରାକ୍ଷ ମାଳାର ଗୋଟାଏ ମାତ୍ର ରୁଦ୍ରାକ୍ଷ, ସହ୍ୟ କରିବ କିପରି ? ତୁମେ ଅଲଗା, ଏକୁଟିଆ, ଏକୁଟିଆବାହାବା । ବୁଝିପାରୁନ, ଏକୁଟିଆ ହେଲେ ହଜିଯିବା ବଡ଼ ସହଜ । ହଜିଯିବ, ତୁମର କ୍ଷୁଦ୍ର ଜୀବନଟି ଭିତରେ ତୁମେ ହୁଏତ ବହୁତ ନାଚିଯିବ, କୁଦିଯିବ, ତା'ପରେ ତୁମର ସବୁ ଶେଷ । ରୁଦ୍ରାକ୍ଷର ମାଳରେ ମଧ୍ୟ ତୁମର ସ୍ଥାନ ନାହିଁ ।

କଳାକାର ଏଇ ଅସରନ୍ତି ରୁଦ୍ରାକ୍ଷମାଳାଟି ଧରି ଅନନ୍ତର ଅଶେଷ ଜପ କରିଯାଏ । ସେଇ ହେତୁରୁ ସେ ବଞ୍ଚିରହେ ଅନନ୍ତ କାଳ ଲାଗି । ତଥାପି ବୁଝିଲନି କିଛି ? ଖାଲି ଅନନ୍ତ, ଅଶେଷ, ଅସରନ୍ତି ତ କହିଯାଇଚ, କିନ୍ତୁ ସେ କ'ଣ ? ତଥାପି ବୁଝାଇବା ଦରକାର ପଡ଼ିବ ?

ଏ ବିଶ୍ୱରେ ଗୋଟିଏ ମାତ୍ର କଥା ହଉଚି ଅନନ୍ତ । ସେ ହେଉଚି ସୃଷ୍ଟି, ଜୀବନ । ସୃଷ୍ଟି ବନ୍ଦ ହୋଇପାରେନି । ଅତି କ୍ଷୀଣ ଜୀବାଣୁଠାରୁ ଆରମ୍ଭ କରି ଆଇନ୍‌ଷ୍ଟେନ୍‌ଙ୍କ ପର୍ଯ୍ୟନ୍ତ ଏ ଗୋଟାଏ କ୍ରମବିକାଶ, ଗୋଟିଏ ମାତ୍ର ଅଂଶ । ସୃଷ୍ଟି-

କ୍ରିୟାର କରଣୀ ସବୁ ମଧ୍ୟ ଅନନ୍ତ, ଅସୀମ ଓ ଅଶେଷ । ବଣ୍ଡାମିତ୍ର, ରୂଷ୍ୟଶୃଙ୍ଗ, ବଶିଷ୍ଠ ଯେଉଁ କରଣୀରେ ସୃଷ୍ଟି କ୍ରିୟାରେ ସାହାଯ୍ୟ କରିଥିଲେ, ଚର୍ଚ୍ଚିହିଲ୍, ଆଇଜେନ୍ ହୋୱାର, ମାକ୍‌ମିଲନ, କେନେଡି ଠିକ୍ ସେଇ ପ୍ରଥ କ୍ରିୟାର ସୃଷ୍ଟି କରଣରେ ସାହାଯ୍ୟ କରୁଚନ୍ତି । ସେ ଅନନ୍ତ । ସୃଷ୍ଟି ପରେ ଜୀବନ । ଜୀବାଣୁର ଜୀବନଠାରୁ କ୍ରୁଶ୍ଚେଭଙ୍କ ଜୀବନ କିଛି ଅଲଗା ନୁହେଁ । ଠିକ୍ ଏକ ମାତ୍ର ପ୍ରକ୍ରିୟା । ସେ ମଧ୍ୟ ଅନନ୍ତ । ତା'ପରେ ମୃତ୍ୟୁ, ତୁମେ ବୈଜ୍ଞାନିକପ୍ରକ୍ରିୟାରେ ବଢ଼ୁଚ ବଡ଼ ବଡ଼ କଥା କହୁଚ । ଏହି ଅନନ୍ତ ଧାରଗୁଡ଼ିକରେ କିଛି ମାତ୍ର ଆଞ୍ଚ୍ ଆଣିପାରିବ ? ପାରିବନି ମଧ୍ୟ ।

ଏହି ଅନନ୍ତ ଅସୀମ ଅଶେଷ ଅପରନ୍ତ କଥାହିଁ କଳାକାରର ଏକମାତ୍ର ଧ୍ୟେୟ; ପ୍ରେୟ ଓ କ୍ରିୟା । ଜଣେ ଇଂରେଜ କବି Landor କହିଥିଲେ "Nature I love and next to nature art", ମୁଁ ପ୍ରକୃତିକୁ ଭଲପାଏଁ, ତା'ପରେ କଳାକୁ । କାହିଁକି ପ୍ରକୃତି ହିଁ ଏହି ଅପରନ୍ତ ଜୀବନ ପ୍ରକ୍ରିୟାର ବିକାଶ ଆଉ କଳା ମଧ୍ୟ କଳ୍ପନାର ତୁଳନାରେ ଏହି ଜୀବନ ପ୍ରକ୍ରିୟାର ଅର୍ଥାତ୍ ପ୍ରକୃତିର ପ୍ରକାଶ । ଯୁ ମୁହୂର୍ତ୍ତରେ ତୁମେ ଏକଥା ଭୁଲିଯାଇ ବର୍ତ୍ତମାନ ସର୍ବସ୍ୱ ଓ ଆତ୍ମସର୍ବସ୍ୱ ହୋଇବସିବ, ସେଇଦିନ କଳାକାର ତୁମେ ଧଳାକାରର ଗୋଲାମ ହୋଇଯିବ । ଧଳାଗୋଲକର ଛାଇତଳେ ତୁମର ଅସ୍ତିତ୍ୱ ଲିଭିଯିବ । ସୁତରାଂ କଳାକାରଙ୍କୁ ମୁଁ କହେ—ତୁମେ ବାଛିନିଅ, ଅନନ୍ତ ଅସୀମ ଅଶେଷର ପୂଜା କରି ବର୍ତ୍ତମାନର କ୍ଷଣିକତ୍ୱକୁ ବଳିଦ ନା, ବର୍ତ୍ତମାନକୁ ପୂଜା କରି ଧଳାଗୋଲକର କ୍ଷଣିକ ଅପସରା ସଙ୍ଗୀତରେ ନିଜକୁ ଭୁଲିଇଦେବ ? ତା'ପରେ ତୁମେ କଳାକାର ବୋଲି ଗର୍ବ କରିପାର ।

[...]

କଳାକାର
୧୯୬୧, ଏପ୍ରିଲ-ଜୁଲାଇ
୧ମ ଅଙ୍କ-୨ୟ ଦୃଶ୍ୟ
ପୃଷ୍ଠା—୩

# "ଦାଢ଼ି"

କଥାଟା ଆରମ୍ଭ କରିବା ଆଗରୁ ମୁଁ ଗୋଟାଏ କୈଫିୟତ୍ ଦେବା ଏଠି ଠିକ୍ ବୋଲି ଭାବୁଛି । ନ ହେଲେ ଭବିଷ୍ୟତରେ ହୁଏତ ଭ୍ରମ ଜାତ ହୋଇବ, ଯେ ଏ କେବଳ ବାନ୍ଦରାମି ଅଥବା ହନୁକରଣ । ବହୁତ ଦିନ ତଳେ, ପ୍ରାୟ ତିରିଶ ବର୍ଷ ଆଗେ ପଣ୍ଡିତ ବର୍ତ୍ତମାନ ଉତ୍କଳର ପଦ୍ମଭୂଷଣ ଶ୍ରୀ ନୀଳକଣ୍ଠ ଦାସ । 'ମୋ ଦାଢ଼ି' ଅର୍ଥାତ୍ ତାଙ୍କ ଦାଢ଼ି ବିଷୟରେ ଗୋଟିଏ ପ୍ରବନ୍ଧ ଲେଖିଥିଲେ । ଉତ୍କଳର ସାହେବ ଥିଲେ, ବର୍ତ୍ତମାନ ମଧ୍ୟ ଅଛନ୍ତି, ଓଡ଼ିଶାର ବଡ଼ ପଣ୍ଡିତ । ମୁଁ କହିବି ଓଡ଼ିଶାର ଏକମାତ୍ର ପଣ୍ଡିତ ଓ ସମୁଦାୟ ଭାରତ ବର୍ଷର ମଧ୍ୟ ଜଣେ ଅଗ୍ରବର୍ତ୍ତୀ ପଣ୍ଡିତ । ତାଙ୍କର ଲେଖା ମଧ୍ୟ ହେଲା ସେହିପରି ଅତି ବଡ଼ ପଣ୍ଡିତିଆ । ତାଙ୍କର ଅନୁକରଣ ଏପରିକି ହନୁକରଣ କରିବା ମଧ୍ୟ ମୋ ପକ୍ଷରେ ଗୋଟାଏ ଦୁଃସାହସିକତା । ପଣ୍ଡିତାଇ ବିଷୟରେ ତାଙ୍କର ପାଲଟା ଲୁଗା ଧୋଇବାକୁ ମଧ୍ୟ ମୁଁ ଯୋଗ୍ୟ ହେବିନି । ସୁତରାଂ ମୋର ଏ ଦାଢ଼ି ସହିତ ତାଙ୍କ ଦାଢ଼ିର କୌଣସି ସମ୍ବନ୍ଧ ନାହିଁ, ନାହିଁ, ନାହିଁ ।

ହେଉ, ଏଥର ମୋ କଥା ମୁଁ କହେ । ସେ ଏଇ ଅତି ଅଳ୍ପ ଦିନର କଥା । ସେ ନଥିଲା କି ହେବ ବୋଲି ମଧ୍ୟ ମୁଁ ଦିନେହେଲେ ଧାରଣା କରି ନଥିଲି । ତା' ପ୍ରତି ହୁଏ ତ ମୋର ଭକ୍ତି ଥିଲା । କିନ୍ତୁ ତାକୁ ନେଇ ଘର କରିବି ବୋଲି କି ମୋ ଅଙ୍ଗରେ ଜଡ଼େଇ ଧରିବି ବୋଲି ମୁଁ ଦିନେ ହେଲେ କଳ୍ପନା କରିପାରି ନଥିଲି ।

କ'ଣ ହେଲା କି ? ଦିନେ ବସି ଏଣୁତେଣୁ ଗୁଡ଼ାଏ ଭାବୁ ଭାବୁ ମନରେ ହେଲା ମୁଁ କାହିଁକି ବଡ଼ ହୋଇପାରିବିନି ? କଳ୍ପନା କରି ବସିଲି ଆମ ଦେଶରେ ଯେତେ ବଡ଼ଲୋକ ଅଛନ୍ତି, ସମସ୍ତଙ୍କ ସହିତ ମୋର ତୁଳନା କଲି । ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ କୃପାସିନ୍ଧୁ ହୋତା, ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ—ଏମାନଙ୍କ କଥା ଆଗ ମୋର ମନେପଡ଼ିଲା, କାହିଁକିନା ମୁଁ ପଣ୍ଡିତରେ ବଡ଼ ହେବାକୁ ଆଶା ରଖିଥିଲି । ସେହି ହେତୁରୁ ପଣ୍ଡିତ ନୀଳକଣ୍ଠ ଦାସ, ମୁଁ ଲୋକ ସେବାରେ ବଡ଼ ହେବାକୁ ଆଶା ରଖିଥିଲି, ସେହି ହେତୁରୁ ଅନ୍ୟମାନେ ତାଙ୍କ ସାଙ୍ଗରୁ ମନେପଡ଼ିଗଲେ, ବିନୋବାଜୀ, ପୁରୁଷୋତ୍ତମ ଦାସ ଟଣ୍ଡନ ଇତ୍ୟାଦି । ଭାବିଲି ସ୍ୱା'ଙ୍କର ପାଠପଢ଼ାରୁ ମୋ ପାଠପଢ଼ା ତ କମ୍ ନୁହେଁ । ହିନ୍ଦୁ ସମାଜରେ ଏମାନଙ୍କ ସ୍ଥାନ ଅପେକ୍ଷା ମୋ ସ୍ଥାନ ମଧ୍ୟ କମ୍ ନୁହେଁ । ତା' ହେଲେ ସ୍ୱା'ଙ୍କର ଆଉ ଅଧିକା କ'ଣ ଅଛି ଯେ, ସେ ହେଲେ ବଡ଼ ମୁଁ ହେଲି ସାନ । ଆଗକାଳ ହୋଇଥିଲେ ଭାବିଥାନ୍ତି, ଏମାନେ ତନ୍ତ୍ର ବିଦ୍ୟାରେ ଦେବୀଙ୍କୁ ସାଧନା କରି ଓ ଅଧୀନ କରି ଏପରି ବଡ଼ ହୋଇଛନ୍ତି । ସଇତାନ୍

ଦସ୍ତାରୁ ଡାକ୍ତର ଫଷ୍ଟସ୍ ବଡ଼ ହୋଇପାରିଥିଲେ । କିନ୍ତୁ ମୁଁ ଜାଣେ ଏମାନେ କେହି ତାନ୍ତ୍ରିକ ତ ନୁହନ୍ତି । ଏପରିକି ଦେଖାଦେଖିରେ ବିଶ୍ୱାସ ମଧ୍ୟ କରନ୍ତିନି । ତା' ହେଲେ କ'ଣ ? ତାଙ୍କର ତ କିଛି ଗୋଟାଏ ସହାୟକ ନିଶ୍ଚୟ ଥିବ । ତା' ନ ହେଲେ ସେ ପୂଜା ପାଇବେ, ଆଉ ମୁଁ ଭୂଜା ଗଣ୍ଡେ ବି ପାଇବିନି କିଆଁ ? ବହୁତ ଭାବଚିନ୍ତା, ଆଶ୍ଳେଷଣ, ବିଶ୍ଳେଷଣ, ଧ୍ୟାନ, ଅନୁଧ୍ୟାନ ଇତ୍ୟାଦି କରି ମୁଁ ପାଇଲି ଗୋଟିଏ କଥା । ତାଙ୍କର ଗୋଟିଏ ଜିନିଷ ଅଛି, ଯାହା ମୋର ନାହିଁ । ତାଙ୍କ ପାଖରେ ଜଣେ ଲାଗି ବସିଛି । ଯେ କି ମୋର ନାହିଁ । ସୁତରାଂ ଠିକ୍ କଲି ସେଇୟା ହିଁ ତାଙ୍କ ଜୀବନର ବଡ଼ିମା ବା ବଡ଼ିମାର କାରଣ ।

ମୁଁ କ'ଣ ତାକୁ ମୋର ଦାସ କରି, ଅନୁଚର, ନା, ନା, ଅଗ୍ରଚର, କରି ରଖିପାରେନି । ନିଶ୍ଚୟ ପାରିବ । ତେବେ ସମସ୍ତ ସାଧନା ଓ ସାହସ ଗୃହ । ହୁଏତ ଘରଣୀ ମୁହଁମୋଡ଼ି ବସିବେ । ହୁଏତ ନାତିନାତୁଣୀଗୁଡ଼ାକ ହସିବେ, କହିବେ ବୁଢ଼ା ତଳରେ ଏ କି ପ୍ରୀତି । ଯାହାର ଗୋଟାଏ ଗୋଡ଼ ମଶାଣି ଭୂଇଁରେ ହେଲେ ଗୋଟାଏ ଗୋଡ଼ ଘରେ । ସେ ପୁଣି ଏପରି ମୋହରେ ପଡ଼ିପାରେ ? ସ୍ୱାଙ୍କୁ ଏ ମୋହନ ନାଟ ଲଗାଇଲି କିଏ ? କହିଲେ କହନ୍ତୁ, ମୁଁ କିନ୍ତୁ ନିଶ୍ଚୟ ସ୍ୱାର ଭାବରେ ମଜ୍ଜିବ, ସ୍ୱାର ପରିକ୍ରମା ପଛରେ ଲୁଚି ରହି ମୋର ଗୁମର ବଢ଼େଇବ । ଆରମ୍ଭ କରିଦେଲି ସ୍ୱା'ର ଆରାଧନା, ଆରୋପଣା ଓ ଅଶ୍ରାପନା ।

କିନ୍ତୁ ବଡ଼ ଭଲ ଲାଗୁ ନଥାଏ । ଜୀବନଟା ଯାକ ବଳ ବୟସତକ ଗୋଟାକ ପ୍ରେମରେ ଗୁଡ଼ ନମାରି ବୁଢ଼ା ବୟସରେ ନବବୟସୀର ପ୍ରେମରେ ପଡ଼ିବାର ପ୍ରୟାସ ନିଶ୍ଚୟ ସୁବିଧାଜନକ ନୁହେଁ । ଏ ତ ସ୍ୱତଃ ପ୍ରେମ ନୁହେଁ । ଏ ହେଲା ଚେଷ୍ଟା କରି ପ୍ରେମ । ତୁମ ସ୍ୱାର୍ଥସାଧନ ସକାଶେ ତୁମେ ଅନ୍ୟକୁ ପ୍ରେମ କରିବାକୁ ଚେଷ୍ଟା କରିବା ହୁଏ ତ ଶ୍ରେୟ ବୋଲି ଭାବିପାର । କିନ୍ତୁ ସେ ସହଜ ନୁହେଁ, ଶିକ୍ଷିତା, ସୁନ୍ଦରୀ, ସମ୍ଭ୍ରାନ୍ତା, ଷୋଡ଼ଷୋଡ଼ଶୀଙ୍କୁ ଦେଖି ଦେଲି । ତା'ର ଆଖିର ଝଲକ ମୋ ଆଗରେ ଚମକିଗଲା । ତା' ଅଙ୍ଗର ମହକ ମୋ ନାକ ଅଗରେ ମହକି ଗଲା । ମୋ ମନ, ମୁଣ୍ଡ, ହୃଦୟ, ପିଣ୍ଡ, ସବୁ ହେଇ ମୁହୂର୍ତ୍ତିରେ ତା'ର ଚମ୍ପାକଢ଼ୀ ପାଦଅଙ୍ଗୁଠି ତଳେ ଗଡ଼ିଗଲା । ସେ ପ୍ରେମ ଭାରି ସହଜ । ସେଥିରେ ମଜ୍ଜି ଯିବାକୁ, ସେଥିରେ ଆତ୍ମହରା ହବାକୁ କଷ୍ଟ ଲାଗେନି, ଅସୁବିଧା ଜଣାପଡ଼େନି । କିନ୍ତୁ ଏ ଯୁ ଚେଷ୍ଟାକୃତ ପ୍ରେମ, ଉଁହୁଁ, ଉହୁଁ ମୋଟେ ସୁବିଧା ଜନକ ନୁହେଁ । ମୁଁ ଅଢେଇନେଇଚ ପରି ! ଦିନ ପନ୍ଦରଟା ଏଥିରେ ପଡ଼ିଲି । ଦିନେ ବଡ଼ କଷ୍ଟ ଲାଗିଲା । ସେ ମଧ୍ୟ ଆସି ମୋ ଟାକୁଆ ଗାଲ ଦି'ଟାକୁ କାମୁଡ଼ି ପୋଡ଼େଇ ଦେଲା । ଭାବିଲି ଭଲରେ ଭଲ । ଭଲ ଲୋକଟା ଏ କି ଭେଳିକିରେ ଭରମି ଗଲା । ହବ କି ନ ହବ, ଏତିକି ବେଳୁ ଏତିକିଗୁଡ଼ାଏ କଷ୍ଟ ସହିବାକୁ ପଡ଼ିବ ।

ସିଠୁ ମନେପଡ଼ିଗଲା । ଆରେ, ଆରେ, ହେଇ ଦେଖନା, ରାମଚନ୍ଦ୍ର, ଶ୍ରୀକୃଷ୍ଣ, ବୁଦ୍ଧଦେବ, ଚୈତନ୍ୟ, ରାମାନୁଜ, ମହାତ୍ମା ଗାନ୍ଧୀ, ଜବାହରଲାଲ ନେହେରୁ— ଏମାନେ ତ ହେଲେ ପଣ୍ଡିତ । ନୀଳକଣ୍ଠ, ଆର୍ଯ୍ୟ ହରିହର ଇତ୍ୟାଦିଙ୍କଠାରୁ ବଡ଼ । ନିଶ୍ଚୟ ବଡ଼ । ସ୍ୱୟଂ ବିନୋବାଜୀ ତ ଏବେ ମଧ୍ୟ ମହାତ୍ମା ଗାନ୍ଧୀଙ୍କ ବିଦର୍ଗଧା ବିଧବା ଭଳି ତାଙ୍କୁ ଝୁରି ହେଉଛନ୍ତି । ଆଉ ଗୋପବନ୍ଧୁ, ହରିହର ଓ କୃପାସିନ୍ଧୁଙ୍କ କଥା କି'ଣ କହିବା ? ବାକି ପଣ୍ଡିତେ, ମୁଁ ଜାଣେନି, ପଣ୍ଡିତେ କ'ଣ ଭାବନ୍ତି, କିନ୍ତୁ ମୋର ମନେହୁଏ, ପଣ୍ଡିତେ ନିଶ୍ଚୟ କାଳିଦାସ, ଭବଭୂତି, ଭାରବି, ପଣ୍ଡିତ ମାଳବ୍ୟ, ସ୍ୱାମୀ ଦୟାନନ୍ଦ ଇତ୍ୟାଦିଙ୍କଠାରୁ ବଡ଼ ପଣ୍ଡିତ ନୁହନ୍ତି । ତା' ହେଲେ ଏମାନଙ୍କଠୁଁ ଯେଉଁମାନେ ବଡ଼, ଏମାନେ ଯାହାଙ୍କର ଚେଲା, ସେଲା ଓ ଠେଲା ସେମାନେ କ'ଣ ହାରି ପ୍ରେମରେ ପଡ଼ିଥିଲେ ? ପୁଣି ରଲିଲା ଆଶ୍ଲେଷଣ, ବିଶ୍ଲେଷଣ, ଅନୁଧ୍ୟାନ, କି ଅନୁଧାବନ । ଠିକ୍ ହେଲା; କାହିଁ ଶାସ୍ତ୍ର ପୁରାଣ ଇତିହାସ କୌଣସିଥିରୁ ତ ଜଣା ପଡ଼ୁନି ଯେ ଏମାନଙ୍କ ଭିତରୁ ଏପରି ଏକ ପ୍ରେମରେ କେହି କେବେହେଲେ ପଡ଼ିଥିଲେ । ତା' ହେଲେ ମୁଁ କ'ଣ କହିବି ? ସେ ଯୁ ପଣ୍ଡିତ ଇତ୍ୟାଦିଙ୍କ କଥା କହିଲି, ଏମାନେ ପ୍ରକୃତରେ ବଡ଼ ନୁହନ୍ତି । ବଡ଼ଙ୍କର ଚେଲା ମାତ୍ର । ତାଙ୍କର ଅନୁଗାମୀ ଅନ୍ତେବାସୀ ମାତ୍ର ।

ମୁଁ କ'ଣ ଏବେ ଏଇଆ ହେବି ବୋଲି, ଅନ୍ୟ କାହାରି ପଛରେ ଧାଇଁବି ବୋଲି, ଏତିକି ପରିଶ୍ରମ କରି ଏପରି ଗୋଟାଏ ଅଦିନିଆ ପ୍ରେମ କରି ବସିଛି ! ହାୟରେ, ଜାତି ଯିବ, ପେଟ ପୂରିବନି ସିନା । ଆରେ ବୋକା, ଆଗେ ପଣ୍ଡିତ ହ, ତା'ପରେ ସିନା କାଳିଦାସ ହେବୁ । ଆଗେ ଆର୍ଯ୍ୟ ହ, ତା'ପରେ ସିନା ବିନୋବା ଓ ସବୁପରେ ମହାତ୍ମା ହବୁ । କ'ଣ, ଏକାବେଳକେ ଏକାଡ଼ିଆଁକେ ସମୁଦ୍ରପାର ହୋଇଯିବୁ ? ଆଜ୍ଞା କଥାଟା ତ ସେଇଆ । ଏକାଡ଼ିଆଁକେ ଯେବେ ସମୁଦ୍ର ପାର ହୋଇ ନପାରେ, ତା' ହେଲେ ତ ମଝିଦରିଆରେ ବୁଡ଼ି ମରିବ । ଆଉ ପାରହେବ କୁଆଡ଼ୁ ? କାଳିଦାସ ମୂର୍ଖରୁ ପଣ୍ଡିତ ହୋଇଥିଲେ ଏକାଡ଼ିଆଁରେ । ଆଜ୍ଞା, ସେ ପାହେ ପାହେ ହେଇ ପଣ୍ଡିତ ହେଇନାହାନ୍ତି । କିନ୍ତୁ ବୋକାଟା, ଶାସ୍ତ୍ର ତ ପଢ଼ିଲୁନି, ପୁରାଣ ତ ପଢ଼ିଲୁନି । କରେ ବିନା ଗୁରୁରେ କ'ଣ ବିଦ୍ୟା ହୋଇପାରେ ? ଆଉ ଗୁରୁଙ୍କ ପାଖରେ ନିଜକୁ ନମ୍ର ନ କଲେ, ବିନୀତ ନହେଲେ, ଗୁରୁଙ୍କୁ ବଡ଼ ବୋଲି ନହି ନିଜକୁ ଶ୍ରେଷ୍ଠ ବୋଲି ନ ଭାବିଲେ କ'ଣ ବିଦ୍ୟା କେହି କେବେ ଲାଭ କଲଣି ? ଆଜ୍ଞା ମିଛ କହୁଚନ୍ତି, ଶ୍ରୀରାମଚନ୍ଦ୍ରଙ୍କ ଗୁରୁ ବଶିଷ୍ଠ । ସିଲଟି ଦିନରୁ କିନ୍ତୁ କିଏ ପୂଜା ପାଇ ଆସିଛନ୍ତି ? ରାମଚନ୍ଦ୍ର ନା ବଶିଷ୍ଠ । ଏ ତିନି ହଜାର କି ଚାରି ହଜାର ବର୍ଷ ବିତିଗଲେ ମଧ୍ୟ. ଲୋକେ କାହାକୁ ପୂଜା କରୁଚନ୍ତି । ରାମଚନ୍ଦ୍ରଙ୍କୁ ନା ବଶିଷ୍ଠଙ୍କୁ ? କୃଷ୍ଣଙ୍କ ଗୁରୁ କିଏ କହ ତ ? ଭାରି ପଇଁତରା ତ ମାରୁଛ, କହ, କିଏ କୃଷ୍ଣଙ୍କ ଗୁରୁ ? କହିପାରିବ । କିନ୍ତୁ ତୁମ ଗୁରୁ ହୁଏ ତ

କହିବେ, ତୁମେ ନୁହଁ, ମତେ ଗୁରୁ ବୋଲି ମାନ । ମୁଁ କହିବି, ଗର୍ଗ ଋଷି । କିଏ ଜାଣେ ତାଙ୍କ ନାଁ ? କେତେ ଜଣ କରନ୍ତି ତାଙ୍କର ପୂଜା ? ଅଥଚ ଶ୍ରୀକୃଷ୍ଣ ଏ ହଜାର ହଜାର ବର୍ଷ ହେଲା ଏକମେବାଦ୍ୱିତୀୟ ଦେବ ଭାବରେ ପୂଜାପାଇ ଆସୁଛନ୍ତି, ଅଥ ପିଲାଦିନେ ବୟୋଜ୍ୟେଷ୍ଠ ଥିବା ହେତୁ ରାମଚନ୍ଦ୍ର ଓ କୃଷ୍ଣ ବଶିଷ୍ଠ ଓ ଗର୍ଗଙ୍କୁ ନମସ୍କାର କରିଥିବେ । କିନ୍ତୁ ତାଙ୍କ ପାଖରେ ପୁରସ୍ତୂତ ତାଙ୍କ ଆସ୍ପର୍ଦ୍ଧାକୁ ଯେ ବଢ଼ାଇଦେଇଥିଲେ, କାହିଁ ସେ କଥା ତ ମୁଁ ଶୁଣିନି । କୌଣସି ପୁରାଣକାର ତ ତା'ର କୌଣସି ଉଦାହରଣ ଦେଇନାହାନ୍ତି । ତେବେ ଆପଣ ଏଗୁଡ଼ାକ କ'ଣ କରୁଚନ୍ତି, ଅଜ୍ଞା ? ଯେ ବଡ଼ ସେ ନିଶ୍ଚୟ ବଡ଼ ହେବ । ଗୁରୁଥାନ୍ତୁ ବା ନଥାନ୍ତୁ, ଯେ ଗୁରୁଙ୍କ ଅନୁଗ୍ରହରେ ବଡ଼ ହୁଅନ୍ତି, ସେ ବଡ଼ ସେତିକି ଦିନ ଗୁରୁଙ୍କ ଗୌରବ ଯେତେଦିନ ଅଛି । ତା'ପରେ ବନାଶ୍ରିତା ଲତା ଭଳି ଭଳି ନଥିବା କଖାରୁ ଗଛ ଭଳି ସେ ମଉଳିପଡ଼ିବେ, ଝଡ଼ିପଡ଼ିବେ । ତା' ହେଲେ ଏଇ ଯାହା ପ୍ରେମରେ ପଡ଼ିଛୁ, ପଡ଼ି ଏତିକି ହନ୍ତସନ୍ତ ହଉଚ, ସ୍ୱେ କ'ଣ ମତେ ଖାଲି ଏଇ କଖାରୁ ଗଛର ରଞ୍ଜା ଭଳି ନେଇ ଧରିବ । ସେ ଯେଉଁଦିନ ଯିବ, ମୁଁ ମଧ ସେଇଦିନ ଯିବି, ମୋ ବଡ଼ପଣିଆ ସେଇଦିନ ମରିଯିବ ? ଏଇଥିପାଇଁକି ଏତେ ଦଣ୍ଡ ? ଏଇତକ ଲାଗି ମୋର ଏତେଦିନର ପ୍ରଣୟିନୀଙ୍କ ମୁହଁ ବଙ୍କା କରାଇବି, ନାରୀ ନାରୁଣୀ ପରିହାସ ସହ୍ୟ କରିବି ? ବୁଢ଼ା ତ ହେଲିଣି ଆସି, ଏ ନୂଆ ପ୍ରେୟସୀ ଅଙ୍ଗଲକ୍ଷ୍ମୀ କେତେଦିନ ବା ଭୋଗକରିବି ?

ତଥାପି ପଣ୍ଡିତ ଇତ୍ୟାଦିଙ୍କ ଭଳି ତ ଜଣେ ହେଇଯାଇପାରେ ? ସେତିକି ତ ହେଇପାରିଲିନି । ସେ କ'ଣ କମ୍ କଥା ! ହୁଁ, ବଡ଼କଥାଟାଏ କ'ଣ ଯେ ! ମୁଁ ମରିବି, ଯିବି ମଶାଣିକି ? ମୋ ନାଁ ବୁଡ଼ିଯିବ ମାଝ କେଇଟା ଦିନରେ । ଏମାନେ ବି ମରିବେ, ଯିବେ ମଶାଣିକି । ଏମାନଙ୍କ ନାଁ ମଧ ବୁଡ଼ିଯିବ କେଇଟା ବର୍ଷରେ । ଅସରନ୍ତି କାଳର ଏଇ କେଇଟା ଦିନ ଓ କେଇଟା ବର୍ଷର ତଫାତ୍ ଲାଗି ଏତିକି କଷ୍ଟ ସହିବି । ଦରକାର କ'ଣ ଭାଇ ? ତା'ପରେ ତୁମେ ଭାବି ଦେଖ, ୬ ପଟେଲ, ଶ୍ରୀଯୁକ୍ତ ପନ୍ଥ, ଶ୍ରୀଯୁକ୍ତ ମହତାବ ଇତ୍ୟାଦି, ଏମାନେ ମଧ ତ ବିନୋବାଜୀଙ୍କ ଭଳି ଗାନ୍ଧିଜୀଙ୍କର ଚେଲାଥିଲେ । ତାଙ୍କର ତ ଏପରି କେହି ପ୍ରେୟସୀ ନଥିଲେ କି ନାହାନ୍ତି । ସେମାନେ କ'ଣ ଏମାନଙ୍କ ଭଳି ବଡ଼ ହେଇନାହାନ୍ତି ଆମେ ଦେଖିଲୁ, ଯେଉଁମାନେ ଅତିବଡ଼—ବିଷ୍ଣୁ, ଶିବ, ରାମ, କୃଷ୍ଣ, ବୁଦ୍ଧ, ଚୈତନ୍ୟ, ରାମାନୁଜ, ଶଙ୍କର, ମହାତ୍ମା ଗାନ୍ଧୀ, ଜବାହାରଲାଲ୍ ନେହେରୁ, ନେପୋଲିଅନ, ନେଲ୍‌ସନ୍, ହିଟ୍‌ଲର, ମୁସୋଲିନି, ଷ୍ଟାଲିନ୍, ଆଇଜେନ୍‌ହୋର, ଚର୍ଚ୍ଚିଲ ଇତ୍ୟାଦି, କାହାର ଏ ପ୍ରେୟସୀ ନଥିଲା । ତାଙ୍କ ତଳିଆ ବଡ଼ ବା ଅନ୍ୟ ବଡ଼ଲୋକଙ୍କ ଭିତରେ ମଧ ଅନେକଙ୍କର ତା ସହିତ ସମ୍ବନ୍ଧ ନଥିଲା । ତା'ହେଲେ ସ୍ୱେ ନାଗରୀର ଆଶ୍ରୟ ନେଇ କେତେଜଣ ମାଝ ଟିକିଏ ବଡ଼ ହୋଇ-ପାରିଚନ୍ତି । ମୁଁ ସ୍ୱେ କାହାକଥା କହୁଚି ମ ? କୁ ପ୍ରେୟସୀ, କୁ ପ୍ରଣୟିନୀର କଥା କହି

ଲାଗିଚ ମୁଁ ସେତେବେଳେଯାଏଁ ? ବୁଝିପାରିଲନି ? ଏଇ ଦାଢ଼ି, ମୋ ଦାଢ଼ି କଥା କହୁଚ । ମୋର ଦାଢ଼ି କେବେ ନଥିଲା । ମୁଁ ସବୁବେଳେ ଥିଲି ମାଖୁନାମୁହାଁ । ଏ ବୁଢ଼ାଦିନେ ମନେହେଇଗଲା—

ଠିକ୍ ଠିକ୍, କଥାଟା ଏତେବେଳକୁ ଧରିପଡ଼ିଲା । ଟୋକା ବେଳେ, ବୟସ ଥିଲାତକ କେହି ଦାଢ଼ି ରଖନ୍ତିନି । ଏପରିକି ବୟସବେଳେ ପଣ୍ଡିତ ନିଶ ରଖିଥିଲେ, ଦାଢ଼ି ନୁହେଁ । ତା'ହେଲେ କିଆଁ । ବୟସବେଳେ ଦାଢ଼ି ରଖିଲେ, ଖାଲି ତୁମର ଅସୁବିଧା ନୁହେଁ, ଆଉ ଜଣଙ୍କର ମଧ୍ୟ ବେଶୀ ଅସୁବିଧା । ତାଙ୍କୁ ଖୁସି ରଖିବାକୁ ହେବ । ସୁତରାଂ ଆମେ ଦେଖୁ ଟୋକାମାନେ ଉପରଓଳି ଷିଅର ହୁଅନ୍ତି । କେହି କେହି ଦ'ବେଳା ମଧ୍ୟ ଷିଅର ହୁଅନ୍ତି । ଗାଲରେ ଏତେ ଟିକିଏ ଥୁଣ୍ଟା ଲାଗିଲେ ଯେପରି ଶୂଳ ଭୁଷିଲା ଭଳି ଲାଗେ । କିନ୍ତୁ ବୟସ ଯେମିତି ଖସି ଆସେ, ଦାଢ଼ି ରଖିବାକୁ ମନ ବଳାଏ । ଅବଶ୍ୟ କେତେକ ଟୋକା ବି ଅଛନ୍ତି, ଯେଉଁମାନେ ଦାଢ଼ି ରଖିବାର ପ୍ରୟାସ କରନ୍ତି । କିନ୍ତୁ ସେ ବୋଧହୁଏ ଘରକୁ ଗୋଟିଏ ଘରଣୀ ଆସିବାଯାଏ । ଉଁ, ହୁଁ, ଆମ ଶିଖ୍ ଭାଇମାନେ, ଟୋକା, ବୁଢ଼ା ସମସ୍ତେ ଦାଢ଼ି ରଖନ୍ତି । ରଖିବାକୁ ବାଧ୍ୟ । ତାଙ୍କ ଧର୍ମର ଅବଶ୍ୟମାନ୍ୟ ହୁକୁମ୍ । କିଆଁ ? କଥା କ'ଣ କି ? ଦାଢ଼ି ରଖିଲେ ମୁହଁରେ ଗାମ୍ଭୀର୍ଯ୍ୟ ବଢ଼େ । ସେ ହେଲା ବୀର କେଶ । ଦାଢ଼ି, ନିଶ ନ ଥିଲେ ବୀର ବୋଲାଇବନି । କିନ୍ତୁ ଫେରେ କିଆଁ ? ମୁଁ ତ କହୁଛି ନେପୋଲିୟନଙ୍କର ଦାଢ଼ି ନ ଥିଲା, ନ ଥିଲା ମଧ୍ୟ ନେଲ୍‌ସନ୍‌ଙ୍କର, କି ଓ୍ୱେଲିଙ୍ଗ୍‌ଟନ୍‌ଙ୍କର । ଭୀମ, ଅର୍ଜୁନ, ଦୁର୍ଯ୍ୟୋଧନ, ଦୁଃଶାସନ, ଜେନେରାଲ କାରିଅପ୍ପ ବା ଜେନେରାଲ ଥିମାୟା, ଏମାନଙ୍କର ତ କାହାରି ଦାଢ଼ି ନ ଥିଲା, ବି ନାହିଁ । ପୃଥିବୀ ବିଜୟୀ ସିକନ୍ଦରଙ୍କର ବି ଦାଢ଼ି ନ ଥିଲା । ଏମାନେ କ'ଣ ବୀର ନୁହଁନ୍ତି ? ଏଙ୍କଠୁ କ'ଣ ଅଧିକା ବଡ଼ ବୀର ଆମ ଶିଖ୍ ଭାଇମାନଙ୍କ ମଧ୍ୟରେ ଅଛନ୍ତି ? ତେବେ କିଆଁ ? ତାଙ୍କ କଥା ଥିଲା ଅଲଗା, ମୁସଲମାନମାନଙ୍କ ଅତ୍ୟାଚାରରେ ଅତ୍ୟାଚାରିତ ହୋଇ ଗୁରୁ ନାନକ ଯେତେବେଳେ ଏ ଧର୍ମ ଆରମ୍ଭ କଲେ, ସେ ତାଙ୍କ ଶିଷ୍ୟଙ୍କୁ କହିଲେ, "ତୁମେ ବାଳ ରଖ । ତୁମର ବାଳ ଥିଲେ ତୁମେ ମନେକରୁଥିବ ତୁମେ ପରାଧୀନ, ତୁମେ ଅତ୍ୟାଚାରିତ । ତୁମେ ପଦ-ଦଳିତ । ଏ ବାଳ ରଖିବା ତାଙ୍କର ଥିଲା ଗୋଟାଏ ବ୍ରତ । ଏବେ ବି ଆମ ଦେଶରେ ଅଣଶିଖମାନଙ୍କ ମଧ୍ୟରେ ବ୍ରତ କରି, ମାନସିକ କରି ବାଳ ରଖନ୍ତି ଲୋକେ । ଏଇ ବାଳ ସେମାନଙ୍କୁ ଅନେକ ଦିନଧରି ରଖିବାକୁ ପଡ଼ିବାରୁ ସେ ତାଙ୍କ ଧର୍ମଗତ ହୋଇଗଲା । ଆଉଗୁଡ଼ିଏ ଲୋକ ଅଛନ୍ତି, ସେମାନେ ମଧ୍ୟ ଧର୍ମାଚାର ଭାବରେ ଦାଢ଼ି ରଖନ୍ତି । ସେମାନେ ହୋଇଛନ୍ତି ସନ୍ନ୍ୟାସୀ, ବାବାଜୀ । ତା'ର କାରଣ ଥିଲା, ଆମର ଆଗକାଳର ସନ୍ନ୍ୟାସୀମାନେ ବଣଜଙ୍ଗଲରେ ରହୁଥିଲେ; ଭଣ୍ଡାରୀ ପାଇବେ କୁଆଡ଼ୁ ? ସୁତରାଂ ଜଟା ଓ ନିଶ ରଖିବାକୁ ବାଧ୍ୟ ହେଉଥିଲେ । ଇଲେ ଏ ଯୁ ବାବାଜୀ ଦେଖୁଚ, ସେଇତକରେ ତାଙ୍କର ଅନୁକରଣ କରନ୍ତି । ସହରରେ

ରହନ୍ତି । ଗାଁ ଗଣ୍ଡାରେ ବୁଲନ୍ତି । ମଠ, କୋଠାଘର, ଗୃହଦ୍ୱାର, ଦାସୀ ଦାସ ବାଞ୍ଛା ଅନେକ ଥା'ନ୍ତି । ତଥାପି ଦାଢ଼ିଟା ଛାଡ଼ନ୍ତିନି । କାହିଁକି ନା, ତା'ହେଲେ କାଳେ ଲୋକ ତାଙ୍କୁ ସନ୍ନ୍ୟାସୀ ନ ମାନିବେ । ସନ୍ନ୍ୟାସୀ ତାଙ୍କର ଭେଷ । ଦାଢ଼ି ସେ ଭେଷର ନିଶାଣ ।

ତା ଯାହା ହେଲା, ତା'ହେଲେ ଆମର ଏ ପଣ୍ଡିତ, ଆଗ୍ରର୍ଯ୍ୟ, ହୋତା ଇତ୍ୟାଦିଙ୍କ କଥା କଣ ? ଏମାନେ ଶିଖ ନୁହଁନ୍ତି । ଏମାନେ ଅନ୍ତତଃ ଆଗ୍ରର୍ଯ୍ୟଙ୍କ ଛଡ଼ା କେହି ସନ୍ନ୍ୟାସୀ ବି ନୁହନ୍ତି । ଖାଲି ଏଇମାନେ ନୁହନ୍ତି; ସ୍ୱାଙ୍କ କଥା ଛାଡ଼, ଦେଶରେ ଅନେକ ଅନେକ ଲୋକ ଅଛନ୍ତି, ଯେଉଁମାନେ ଦାଢ଼ି ରଖନ୍ତି, ଅଥଚ ଶିଖ ନୁହନ୍ତି, କି ସନ୍ନ୍ୟାସୀ ନୁହଁନ୍ତି । ଯାର ନୁହନ୍ତି କି ଧୀର ବି ନୁହନ୍ତି । ମୋର ତ ମନେହୁଏ, ଏମାନଙ୍କର ଦାଢ଼ିରଖା କେବଳ ଲୋକଭୁଲାଣିଆ । ବୁଢ଼ା ହୋଇ ଆସିଲେ, ମୁହଁଟାମାନ ଶୁଖି ବାନ୍ଦର ଭଳି ହୋଇଗଲା । ତାକୁ ଘୋଡ଼େଇବା ପାଇଁ, ସେ ଯେ ସୁନ୍ଦର ଓ ସୁପୁରୁଷ ଏସ୍ୱା ଦେଖେଇ ହେବା ଲାଗି ତାଙ୍କର ଦାଢ଼ି ଧାରଣ । ଟାକୁଆ ଗାଲଟା ତ ଲୁଚିଯିବ । ହନୁହାଡ଼ ତ ଘୋଡ଼େଇ ହୋଇ ପଡ଼ିବ । ତା ଅର୍ଥ ଦେହଟାର ଅନ୍ୟାନ୍ୟ ସମସ୍ତ ଅଞ୍ଚଳ ଘୋଡ଼ାଇବା ଲାଗି ଲୁଗାପଟାର ଯେପରି ପ୍ରୟୋଜନ, ସ୍ତ୍ରୀମାନଙ୍କର ମୁହଁ ଘୋଡ଼େଇବା ଲାଗି ଓଢ଼ଣୀର ଯେପରି ଦରକାର, ସେହିପରି ପୁରୁଷମାନଙ୍କର ମୁହଁ ଘୋଡ଼େଇବା ଲାଗି ବା ମୁହଁର ଲଜ୍ୟା ଅବୃତ୍ତ କରିବା ପାଇଁ ଦାଢ଼ିର ଗୋଟାଏ ବଡ଼ ଜରୁରୀ ରହିଛି । କିନ୍ତୁ ସ୍ତ୍ରୀମାନେ ତ ଆଜିକାଲି ଆଉ ଓଢ଼ଣା ଦଉନାହାନ୍ତି । ମୁହଁର ଓଢ଼ଣା କଥାଁ, ଛାତିର ଘୋଡ଼ଣା ପର୍ଯ୍ୟନ୍ତ ଉଠିଗଲାଣି । ଆସ୍ତେ ଆସ୍ତେ ସ୍ତ୍ରୀମାନଙ୍କର ପୋଷାକର ଫେସନ ବଦଳି ବଦଳି ଯାଉଚି । ଛାତି ଉପର ଆବୁ ଦୁଇଟାକୁ ଖାଲି ଘୋଡ଼େଇବା ପାଇଁ ଖଣ୍ଡେ ନାଇଲନ୍ କନା, ଅଣ୍ଟା ତଳକୁ ଜଙ୍ଘ ଉପରକୁ ଆଉ ଖଣ୍ଡେ କନା, ବେଶ୍ ଏତିକି ହୋଇଗଲେ ସ୍ତ୍ରୀମାନଙ୍କ ପୋଷାକ ସରିଯାଉଛି । ଏ ସ୍ରୋତ ପୁଣି ଆରମ୍ଭ ହୋଇଚି, ଶୀତ ପ୍ରଧାନ ଦେଶମାନଙ୍କରୁ ।

ଏଇଟା ହବା ଦରକାର, କାହିଁକି ନା, ଲୁଚେଇବା ପାଇଁ ଆମର ଯେତେ କମ୍ ଜିନିଷ ରହିବ, କଲଗୋଳ ତକସ୍ରର ମଧ୍ୟ ସେତିକି କମ୍ ହୋଇଯିବ । ଏଇ ଲୁଚ୍ଇବାଟା, ଦେହର ଓ ମନର କଥାକୁ ଲୁଚ୍ଇ, ତାକୁ ଅନ୍ୟ ରୂପରେ ଦେଖାଇବାକୁ ଚେଷ୍ଟା କରିବାଟାକୁ ତ କହନ୍ତି ଭଣ୍ଡାମୀ । ଆଉ ଏ ଭଣ୍ଡାମୀରୁ ତ ଭେଡ଼ାମ । ଆଉ ଏ ଭେଡ଼ାଗୁଡ଼ାକ ଦେହରେ ଲୁମ ବେଶୀ । ଏମାନେ ନିଜକୁ ବେଶୀ ଘୋଡ଼େଇ ରଖନ୍ତି, ସେହି ହେତୁରୁ ସ୍ୱାଙ୍କ ଭିତରେ ବାଡ଼ାବାଡ଼ି ବେଶୀ । କଥାକଥାରେ ଏ ମୁହଁ ବଙ୍କେଇ ଶିଙ୍ଗ ଉଠେଇ ଠିଆ ହୋଇଗଲା । ସେ ମଧ୍ୟ ସେମିତି ବାହାଶପଡ଼ିଲା । ତାପରେ ଲାଗିଗଲା ଠକ୍ ଠାକ୍—ଯାହାର ଗୋଟାଏ ମୁଣ୍ଡ ଫାଟିବା ଯାଏ ବା କଣ୍ଟିଆଲି ଅସି ସ୍ୱାପିଠି ଓ ଗଣ୍ଠି ଗିଠିରେ ଖାଉମଚ ଠେଙ୍ଗୁଣୀ ନଚେଇବା ଯାଏ, ସେତିକି ହୋଇଗଲେ, ବୁଲ୍ଲଲୋ ।

ସମସ୍ତେ ଏକାଠି ପେଲାପେଲି ହୋଇ ଦନ୍ତକୁ ଦନ୍ତ ଘସାଘସି ହୋଇ, ଯେପରି ସମୁଦ୍ର ଡେଇଁ । ଆଗବାଲା ଯୁଆଡ଼େ ଚାଲିଲା, ଆଉ ସମସ୍ତେ ସେଆଡ଼େ । ଖାଲ, ଖମା, ଉଚ୍ଚ, ଢିପ ନଈନାଳ କିଛି ବିଚାର ନାହିଁ । ଆଗୁଆ ଯୁ ରାସ୍ତା ଧରି ଚାଲିଲା, ଆଉ ସମସ୍ତେ ସେ ରାସ୍ତାଧରି ଚାଲିଲେ । ଜଗୁଆଳ ଓ ତା କୁକୁର ନ ଥିଲେ ସେ ଦଳକୁ ଦଳ ହଜାରକେ ହଜାର ସମୁଦ୍ରରେ ବୁଡ଼ି ବା ପାହାଡ଼ ଉପରୁ ଗଡ଼ିମରୁଥାନ୍ତେ ।

ସେହି ଆଗୁଆ ଅନୁସରଣ ସହିତ ସେହି ମେଣ୍ଢା ଲଢ଼େଇର ଗୋଟାଏ ଅବିଚ୍ଛିନ୍ନ ସମ୍ପର୍କ ରହିଛି । ଆଉ ମେଣ୍ଢା ଲଢ଼େଇ ସହିତ ତୁମର ମଧ୍ୟ ଅବଶ୍ୟ ସମ୍ପର୍କ ରହିଚି । ସୁତରାଂ ଏଇ ତୁମନୀତି ବା ଘୋଡ଼େଇ ହବା ରୀତି ବା ଦାଢ଼ିପ୍ରୀତିହିଁ ସଂସାରର ସବୁ ଅଶାନ୍ତିର କାରଣ ।

ସଂସାରରେ ଅଶାନ୍ତି ହେଉଛି କାହିଁକି ? ତୁମେ ଭାବି ଦେଖ । ତା'ର ଦୁଇଟା କାରଣ—

୧—କେତେଗୁଡ଼ାଏ ଲୋକଙ୍କୁ ଗୋଟାଏ ଦଳରେ ବାନ୍ଧି ରଖିବ ।

୨—ସମସ୍ତଙ୍କୁ ଏକା ଛାଞ୍ଚରେ ଢାଳି ତିଆରି କରିବାକୁ ଚେଷ୍ଟା କରିବା ।

ତୁମେ ଗୋଟାଏ ଦଳ, ଗୋଟାଏ ସମାଜ ବା ଗୋଟାଏ ଦେଶ ଗଢ଼ିଲ । ପଞ୍ଚାଟେ ଏକାଠି ହୋଇ ମାଡ଼ି ଚାଲିଲ । ରଜା ବା ନେତା ତୁମକୁ ଯୁଆଡ଼େ ଚଳେଇଲା, ତୁମେ ତେଣିକି ଗଲ । ନେତା ବା ରଜା, ଗୋଟାଏ କଥାରେ ରାଜନେତା କହିଲା, ଆରେ ତୁମେ ସମସ୍ତେ ଏକ, ତୁମର ସ୍ଥାନ ଏକ, ତୁମେ ଏକାଭଳି ନ ଚଳିଲେ ସେ ଗୋଷ୍ଠୀ ଆସି ତୁମ ଚରଭୂଇଁ ଦଖଲ କରିନେବ । ତୁମେ ଖାଇବାକୁ ପାଇବ ନାହିଁ, ମରିଯିବ । ଅତଏବ ସମସ୍ତେ ଏକ ହୁଅ । ତା'ପରେ ଗୋଠର ପ୍ରତ୍ୟେକେ ବୁଝିଲେ । ଆର ଗୋଠର ଯେତେଲୋକ ସମସ୍ତେ ତା'ର ଶତ୍ରୁ । ଏଇ ଯେ ଗୋଠ ପ୍ରେମ ବା ଗୋଠ ସଂସ୍କୃତି, ସେ ଗୋଠର ପ୍ରତ୍ୟେକ ମନରେ ଭ୍ୟାଇଲା ହିଂସା ଓ ଦ୍ୱେଷ । ରାଜନେତା କିନ୍ତୁ ତା ଖଣ୍ଡା ଉଣ୍ଡି ଚାଲୁଛି । କେତେବେଳକୁ ଗୋଠପାଳିଆ ସଙ୍ଗରେ ହାତ ମିଳାଉଛି ଓ ଆଉ କାହାଠାରୁ ଦୂରକୁ ଘୁଞ୍ଚିଯାଉଚି । ଗୋଠ ଲୋକେ ବୁଝିପାରୁନାହାନ୍ତି, ଆରେ, ସେହି ଆର ଗୋଠଗୁଡ଼ାକ ଯେବେ ଆମ ଶତ୍ରୁ, ଆମର ରାଜନେତା ତା ସଙ୍ଗରେ ହାତ ମିଳାଇ କୋଳାକୋଳି କରି କୁଣ୍ଢିଆ କୁଣ୍ଢେଇ ହୋଇ ଚାଲୁଛି କିପରି ? ଆଉ ସ୍ୱା ସାଙ୍ଗରେ ଯେବେ କଲ, ତା ସାଙ୍ଗରେ ନ କଲ କିଆଁ ? ଆଉ ଏ ଗୋଠନୀତିର ଗୋଟାଏ ବଡ଼ କଥା ହେଉଚି ଯେ, ପାଖ ଗୋଠ ହେବ ଶତ୍ରୁ, ଦୂର ଗୋଠ ହେବ ମିତ୍ର । ପାକିସ୍ଥାନ ଆମର ଶତ୍ରୁ, କିନ୍ତୁ ପୂର୍ବରେ ବ୍ରହ୍ମଦେଶ ଓ ପଶ୍ଚିମରେ ଆଫଗାନିସ୍ଥାନ ଆମର ମିତ୍ର । ସେ ଏକଥାର ମର୍ମ ବୁଝିପାରେନି, ତା'ର ହିଂସା ଓ ଦ୍ୱେଷ ସହିତ ମିଶିଯାଏ ଗୋଟାଏ ଅସନ୍ତୋଷ ।

ଅସନ୍ତୋଷ ସାଙ୍ଗକୁ ମିଶିଯାଏ ରାଜନେତାଙ୍କ ଦୁର୍ଭିସନ୍ଧି ଚେଷ୍ଟା । ଗୋଠର ସମସ୍ତଙ୍କୁ ମାରଧର ଚପିଚାପି ଗୋଟାଏ ଗ୍ରୁପରେ ପକାଇବା ଲାଗି ସମସ୍ତଙ୍କର ଇଚ୍ଛା । କାରଣ, ତାଙ୍କ ମନ ଲାଏକେ, ଗୋଟାଏ ଗ୍ରୁପରେ ରହିଲା ନହେଲେ, ଏମାନେ ତାଙ୍କ ସ୍ୱାର୍ଥାନୁକୂଳ ଗୋଟାଏ ଭାବରେ ଉଦ୍‌ବୁଦ୍ଧ ନ ହେଲେ ଗୋଠଯାକ ସ୍ୱାଙ୍କ ଉପରେ ନିଜର ହାକିମ ଓ ହୁକୁମ ଜାହିର୍ କରିବା ଓ ବଜାୟ ରଖିବା ଅର୍ଦ୍ଧୌ ପୃଥିବୀର ହବନ୍ତ, ସମ୍ଭବ ବି ନ ହୋଇପାରେ । ଏ କଥା କରିଥିଲେ ରାମଚନ୍ଦ୍ର, କରିଥିଲେ ବୁଦ୍ଧଦେବ, କହିଥିଲେ ଯୀଶୁଖ୍ରୀଷ୍ଟ, କହିଛନ୍ତି ହଜରତ୍ ମହମ୍ମଦ । ବର୍ତ୍ତମାନ ଏଇଆହିଁ କହୁଚନ୍ତି ଓ କରୁଚନ୍ତି ସମସ୍ତେ । ଷ୍ଟାଲିନ୍, କ୍ରୁଶ୍ଚେଭ୍, ହିଟ୍‌ଲର୍, ମୁସୋଲିନୀ, ଚର୍ଚ୍ଚିହଲ, ଆଇଜେନ୍‌ହୋର୍, ଡିଗଲ୍, ଜବାହାରଲାଲ ନେହେରୁ, ଚାଓ-ଏନ୍-ଲାଇ, ସେନାପତି ଅୟୁବ୍—ସମସ୍ତେ ଏକ ହୋଇଯାଅ । ଏଇ ଗୋଟାଏ ଦୁଆ ଦେଶ ଦେଶରେ ବରାବର ଶୁଣାଯାଉଚି । ପ୍ରତିଦିନ ହୁଏତ ପ୍ରତିଦିନର ପ୍ରତିଘଣ୍ଟାରେ ରାଜନେତାଙ୍କ ଡରରେ ହଉ ବା ତାଙ୍କ କଥାରେ ସାମୟିକ ଉଦ୍‌ବୁଦ୍ଧ ହୋଇ ହଉ, ଗୋଠବାଲାମାନେ ତା କରୁଚନ୍ତି ସତ, କିନ୍ତୁ ଯେତେବେଳେ ସେ ନିଶାଟିକ ଯାଉଚି, ସେତେବେଳେ ପ୍ରତ୍ୟେକେ ଭାବୁଚନ୍ତି, ଆରେ ସେ କ'ଣ ମ ? ସେଇଟା କିମିତି ମୋ ସହିତ ସମାନ ହେବ ? ତା ହୋଇପାରେନି ।

ସେ ସେଦିନ ମୋ ମୁହଁରୁ ଘାସପୁଳାକ ଛଡ଼ାଇ ନେଇ ନ ଥିଲା ? ତା ଭେଣ୍ଡି ମୋ ଛୁଆକୁ ମାରି ଗଡ଼େଇ ଦେଇ ନ ଥିଲା ? ଏମିତି କେତେ କଥା ଆସି ପଶିଯାଏ ତା ମନରେ ।

ଆଗରୁ ଦ୍ୱେଷ, ହିଂସା ଓ ଅସନ୍ତୋଷ ତ ଥିଲା, ତା ସାଙ୍ଗକୁ ମିଶିଗଲା ଏ ବ୍ୟକ୍ତିଗତ ଈର୍ଷା । ଆଉ ତାକୁ ବଢ଼େଇଲା ରାଜନେତା ନିଜେ । କାହା ଦେହର ଲୁମ ଟିକିଏ ବଡ଼ ହୋଇଚି ତ, ସେ ତାକୁ ବେଶୀ ପ୍ରଶଂସା କଲା । କାହାର କମ୍ ହୋଇଚି, ସେ ପାଇଲା ନିନ୍ଦା । କିଏ ଟିକିଏ ବେଶୀ ଘାସ ଖାଇଗଲେ, ତା ଉପରେ ହେଲା ମାଡ଼ । ରାଜନେତା କାହାକୁ କାଖେଇଲା, କାହାକୁ ବାଡ଼େଇଲା, କାହାକୁ ଆଉଁସିଲା, କାହାକୁ ଗୋଇଠା ମାଇଲା । ଈର୍ଷା, ବ୍ୟକ୍ତିଗତ ଈର୍ଷା ବଢ଼ି ଚାଲିଲା । ତା'ର ପରିଣତି ହେଲା ଏଇ ଆପଣା ଆପଣା ଭିତରେ କଥାକଥାକେ ଲଢ଼ାଇ । ଆଉ ଏଇ ଆପଣା ଆପଣା ଭିତରେ ଲଢ଼େଇର ପରିଣତି ହେଲା, ଗୋଠ ଗୋଠ ଭିତରେ ଅଶାନ୍ତି ଓ ଲଢ଼େଇ ।

ଏ ଗୋଟାଏ ମାନସିକ ବିକାର । ଯେ ପର୍ଯ୍ୟନ୍ତ ଏ ବିକାର ବ୍ୟକ୍ତିଗତ ଭାବରେ ସମାଜରୁ ଯାଇନି, ସେ ପର୍ଯ୍ୟନ୍ତ ଜଗତରେ ଶାନ୍ତି-ପ୍ରତିଷ୍ଠାର ଉଦ୍ୟମ ବୃଥା । ପାଞ୍ଚ ବର୍ଷ ଦଶବର୍ଷ ହୁଏତ ଗଡ଼େଇନେବ । କିନ୍ତୁ ଆସିବଇ ଆସିବ, ମାରଣ, ଉର୍ଚ୍ଚିନ କରାଳ କାଳୀ । କାରଣ, ସେ ତୁମର ହୃଦୟ, ମନ, ସବୁ ଅଧିକାର କରି ବସିଚି । ତୁମେ କହିବ ଏ ସବୁ ଯୁକ୍ତିତର୍କ, ଏ ଫ୍ଯୁଟାଣିକ ଯୁଗରେ ଲାଗୁ ହୋଇପାରିବନି । କାରଣ, ଏ ଫୁଟାଣି ଯୁଗରେ ଏତେ ବେଶୀ ମାରାତ୍ମକ ଅସ୍ତ୍ରଶସ୍ତ୍ର ବାହାରିଲାଣି ଯେ, କୌଣସି ଦଳ ବା ଗୋଷ୍ଠୀ

ବା ଜାତି ବା ଦେଶ ଲଢ଼େଇକୁ ବାହାରିବା ଲାଗି ଭରସି ପାରିବେ ନାହିଁ । କାରଣ, ବାହାରିଲେଇ ହିଁ ମରିବେ । ତୁମର ଏ ଯୁକ୍ତି ନିତ୍ୟାନ୍ତ ଫୁଟାଣି । 'ପ୍ରଥମ କଥା ଯେ ସାପ ଗାତରେ ହାତ ପୂରାଏ, ସେ ନିଶ୍ଚୟ ସାପମନ୍ତ୍ର ଜାଣେ । 'ଝଲକାର ନୋହି ମଝି' କଲା ନାଗକୁ ଖୁଞ୍ଚିବା' ଲୋକ ମଧ୍ୟ ଅଛନ୍ତି ଏ ଜଗତରେ । କାରଣ, ଖଲକାରର ତୁମର ଦାଣ୍ଡରେ ପଡ଼ି ହାଟରେ ଗଡ଼ଗଡ଼େଇଲଣି, ସେ ଉଦ୍‌ଯାନ ବୋମା ତିଆରି କରୁଚନ୍ତି, ସେ ସେଥିରୁ ରକ୍ଷାପାଇବାର ଉପାୟ ମଧ୍ୟ ତିଆରି କରିବାରେ ଲାଗିଛନ୍ତି । ହେବନି, ତେବେ ନିଶ୍ଚୟ ହେବ । ଯୁ ଜାତି ପ୍ରଥମେ ସ୍ୱାକୁ ଆବିଷ୍କାର କରିପାରିବ, ସେ ତୁମର ଏ ଫୁଟାଣି ଯୁଗରେ ଗୌରବ ଶୃଙ୍ଗରେ ବସିପାରିବ । ଲଢ଼େଇ ଲଗାଇବାବେଳେ ତା'ର କିଛି ମାତ୍ର ଡର ରହିବନି । ଦ୍ୱିତୀୟରେ ଏ ପର୍ଯ୍ୟନ୍ତ ବି ଲଢ଼ୁଆଙ୍କ ଭିତରୁ କାହାରି ଦମ୍ଭ ହେଇପାରୁନି ଯେ, ସେ ସବୁଠାରୁ ବେଶୀ ବଳୁଆ । ଯୁ ଦିନ ତାଙ୍କ ଭିତରୁ କାହାର ବିଶ୍ୱାସ ହେଇଯିବ ଯେ, ତା ହାତରେ ଯାହା ଅସ୍ତ୍ରଶସ୍ତ୍ର ଅଛି, ସେ ସବୁ ଆଉକର ସାଜ-ସଜ୍ଜାଠାରୁ ବେଶୀ ଓ ପ୍ରବଳତର । ସେଦିନ ସେ ଯୁଦ୍ଧ ଆରମ୍ଭ କରିଦବ ନିଶ୍ଚୟ । ଡରରେ ଯେ ନିଷ୍କ୍ରିୟତା ଆସେ, ସେ ଚିରନ୍ତନ ହୋଇପାରେନି । ଡରର କାରଣ ଅପସରି ଗଲା ମାତ୍ରକେ ସେ ନିଷ୍କ୍ରିୟତା ଆପେ ଆପେ ସାଙ୍ଗେ ସାଙ୍ଗେ ଭାଙ୍ଗିଯିବ ।

ତା'ପରେ ସମସ୍ତଙ୍କୁ ଭାଙ୍ଗିରୁଜି ଗୋଟାଏ ଛାଞ୍ଚରେ ଢାଳିବାର ତୁମର ଏଇ ଯେ ପ୍ରୟାସ—ସେ ମଧ୍ୟ ଅଶାନ୍ତିର ଓ ଯୁଦ୍ଧ ଆଶଙ୍କାର ଆଉ ଗୋଟାଏ କାରଣ । ମହିଷାସୁରର ଆଉ ଗୋଟାଏ ଅମୋଘ ଅସ୍ତ୍ର । ତୁମେ ଭାବୁଚ, ତୁମେ ସମସ୍ତଙ୍କୁ ସମାନ କରି ପକେଇବ, ଡେଙ୍ଗା ନଡ଼ିଆ ଗଛକୁ ତୁମେ ଡେଙ୍ଗ କରିନ । ସେ ତା' ମନକୁ ତ ପ୍ରକୃତିର ବଳରେ ଡେଙ୍ଗ ହେଉଚି । ତୁମେ ତାକୁ ପେଣ୍ଡୁା ଗଛ ସାଙ୍ଗରେ ସମାନ କରିବାକୁ ଚେଷ୍ଟାକଲେ ଡେଙ୍ଗକୁ କାଟି ପେଣ୍ଡୁା ସହିତ ସମାନ କରିବାକୁ ପଡ଼ିବ । କାଟିଲେ ହିଁ ଡେଙ୍ଗକୁ କାଟିବ, କାଟିଲେ ହିଁ ତା ମନରେ ହେବ ରାଗ, ଅଭିମାନ ଓ କଷ୍ଟ । ଏଇ ରାଗ, ଅଭିମାନ ଓ କଷ୍ଟରୁ ତା ମନରେ ଆସିବ ତୁମ ପ୍ରତି ଓ ପେଣ୍ଡୁା ପ୍ରତି ବୈରଭାବ । ମୁଁ ଗୋଟାଏ ଶ୍ରେଷ୍ଠ ଉଦାହରଣ ଦଉଚି, ମଣିଷର ପେଟ ତୁମେ ତିଆରି କରିନ । ଜଣେ ହୁଏତ ଅଧସେରେ ଖାଇ ହଜମ କଲାବେଳକୁ ଆଉ ଜଣେ ହୁଏତ ପାଏ ବି ଖାଇଲେ ଘରଦ୍ୱାର ମାରି କରିବ । ତୁମେ ତ କଲ ସମସ୍ତଙ୍କୁ ସମାନ । ସମସ୍ତଙ୍କୁ ସମାନ ଖାଇବାକୁ ଦେଲ । ଜଣ ପିଚ୍ଛା ସେ ୦।୬ ଅଣା । ଏଥିରେ ପାଆକିଆର ପେଟ ହୁଏତ ସନ୍ତୁଷ୍ଟ ହେଇଯିବ, କିନ୍ତୁ ଅଧ-ସେରିକିଆର ପେଟ ଦିଅ ଟୋପାଏ ପଡ଼ିଲେ ନିଆଁ ହୁରୁ ହୁରୁ ହୋଇ ଉଠିଲା ଭଳି ମାତି ଉଠିବ । ତାକୁ ସନ୍ତୁଷ୍ଟ କରିବା ଲାଗି ସେ ହୁଏତ ସେ ୦।ଅଣାଙ୍କ ଠାରୁ କିଛି ମାରିନେବ । ନହେଲେ ଭୋକଦାଉରେ ଜଳିଉଠିବ । ସେ ଯେବେ ସେ ୦।ଅଣାବାଲାଠାରୁ କିଛି ନିଏ, ତାଙ୍କୁ ନିଶ୍ଚୟ କିଛି ଦବ । ଯାହା ଦବ ସେଥିରେ ସେ ୦।ଅଣା ବାଲା ହେବ ପୁଞ୍ଜିପତି, ସେ ହବ ସର୍ବହରା, ଏ କଥାକି ହବ ବୋଲି ଆମର ସାମ୍ୟବାଦୀ ଭାଇମାନେ ଲୁହାର

ପରଦା ଭିତରେ ତାଙ୍କ ଦେଶଟାକୁ ଘୋଡ଼େଇ ରଖିଚନ୍ତି । ସେମାନଙ୍କର ଆଶା ମାତ୍ର ଗୋଟାଏ କଥାରେ । ସାଧାରଣତଃ ଲୋକେ ପା'କଥା । ତା ଉପରକୁ ବା ତଳକୁ ଯେ ଲୋକେ, ସେମାନେ ସଂଖ୍ୟାରେ କମ୍ । ସୁତରାଂ ସେମାନଙ୍କର ରାଗ ବା କ୍ରୋଧ ବିଶେଷ କିଛି କରିପାରିବନି, ଯେବେ ସେମାନେ ବାହାରୁ କୌଣସି ସାହାଯ୍ୟ ଓ ଉତ୍ସାହ ନପା'ନ୍ତି, ତା'ପରେ ଗୋଟାଏ, ଦି'ଟା ଯୁଗରେ ସମସ୍ତେ ଗ୍ରୁପରେ ପଡ଼ିଯିବେ । ଏ ଆଶା ଦୁରାଶା । ୧୯୨୦ ରୁ ୧୯୬୦ ଭିତରେ ତ ତିନିଟା ଯୁଗ ବିତିଯାଇଛି । ତଥାପି ସେମାନଙ୍କର ଆଶା ପୂର୍ଣ୍ଣ ହୋଇନି । ଲୁହା ପରଦାର ମୋଟାଇ ବଢ଼ି ଚାଲିଚି ବିନା ଛୋଟେଇ ହେଇପାରୁନି ।

ତୁମେ ଯେତେଦିନଯାଏ ତୁମର ଗୁମର ଲୁହା ପରଦା ପଛରେ ଘୋଡ଼େଇ ରଖିବାକୁ ଚେଷ୍ଟା କରିବ, ସେତେଦିନଯାଏ ତୁମର ଗୁମର ଖୋଲି ପଦାରେ ପକାଇବା ଲାଗି ଅନ୍ୟମାନଙ୍କର କୁତୂହଳ ବଢ଼ିବ ହିଁ ବଢ଼ିବ । ନାରୀମାନଙ୍କୁ ଓଢ଼ଣୀ ଭିତରେ ଲୁଚେଇରଖିବାର ମୂଳରେ ହିଁ ନାରୀଧର୍ଷଣ, ନାରୀ ଅପହରଣ ଇତ୍ୟାଦି ବରାବର ରହିଆସିଚି । ଯେଦିନ ପୁରୁଷମାନେ ଦେଖିପାରିବେ ଯେ, ଏ ସ୍ତ୍ରୀଟି ସେଇ କଳା ବା ଧଳା ଚମଡ଼ାର, ସ୍ତ୍ରୀ ନାକରୁ ସେମିତି ସିଂଘାଣି ବୁହେ, ସ୍ତ୍ରୀ ପାଟିରୁ ସେମିତି ଛେପ ବାହାରେ, ସେଇଦିନ ଅନ୍ତ ନାରୀଙ୍କ ଉପରେ ଆଉ ଅତ୍ୟାଚାର ହବନି । ତୁମେ କହିବ, ଆଜିକାଲି ଯୁଗରେ ତ ଅଧିକାଂଶ ଦେଶରୁ ପରଦା ଉଠିଗଲାଣି, କାହିଁ ନାରୀଧର୍ଷଣ ତ କମିନାହିଁ ? ତା'ର କାରଣ ତୁମେ ଗୋଟାଏ ପରଦା ଉଠେଇଦେଇ ଆଉ ଗୋଟାଏ ପରଦାରେ ତା' ମୁହଁଟିକି ଘୋଡ଼େଇଦେଇଚ ଯେ ? ତୁମର କ୍ରିମ୍, ପାଉଡର, ଲିପ୍‌ଷ୍ଟିକ୍ ଓ ରୁଜର ସାହାଯ୍ୟରେ ତୁମେ ତାଙ୍କ ମୁହଁଟି ଲୁଚେଇରଖିଚ । ସେମିତି ତୁମର ମୁହଁକୁ ତୁମର ଦାଢ଼ି ଢଳେ । ସେଇଥିରୁ ନାରୀଧର୍ଷଣ କମିନି । କମିବନି ମଧ୍ୟ । ଏ ମୁହଁ-ଲୁଗା, ଓଢ଼ଣୀମୁହାଁ ଲୁଗାଠାରୁ ବେଶୀ ବିପଜ୍ଜନକ ? କାହିଁକି ନା; ଓଢ଼ଣୀ କାଢ଼ିଦେଲେ ସବୁକଥା ଜଣାପଡ଼ିଯିବ, କିନ୍ତୁ ତୁମର ଏ ରାସାୟନିକ ଓଢ଼ଣୀ କାଢ଼ିବ କିଏ, କିମିତି ? ତୁମର ଏ ଦାଢ଼ି କାଟିବ କିଏ କିମିତି ?

ଯେତେଦିନଯାଏ ତୁମେ ସମସ୍ତଙ୍କୁ ଗୋଟାଏ ଗ୍ରୁପରେ ପକାଇ ମୋଡ଼ାମୋଡ଼ି, ପିଟିପାଟି ଏକ କରିବାକୁ ଯିବ, ସେତେଦିନଯାଏ ତୁମର ଏ ଶାନ୍ତି ପ୍ରଚେଷ୍ଟା ଅକାମିକା ରହିବ ହିଁ ରହିବ । ସମସ୍ତଙ୍କୁ ଏକା ଗ୍ରୁପରେ ପକାଇବା ଅର୍ଥ, ସମସ୍ତଙ୍କର ସ୍ୱଭାବଗତ ପ୍ରବୃତ୍ତି ଓ ପ୍ରକୃତିକୁ ଚପିଚାପି ତୁମର ମନଲାଏକ ଗୋଟାଏ ଧାରାରେ ପକାଇବାର ଚେଷ୍ଟା । ଏଇ ପ୍ରକୃତିପେଷଣ ଯେ କେତେ ଦାଉଦାଉ ସେ କଥା କ'ଣ ତୁମେ ଜାଣନି । ତୁମେ କଥାରେ କଥାରେ ମନସ୍ତତ୍ତ୍ୱର ଓ ମନ ବିଶ୍ଳେଷଣର ଦୁହାଇ ଦିଅ । ତୁମର ଏଇ ମନସ୍ତତ୍ତ୍ୱ ଶାସ୍ତ୍ର, ଏହି ପ୍ରକୃତିପେଷଣର ବା Inhabitionର କୁଫଳରେ କ'ଣ ନ କହିଚି ? ଏ ତ ତୁମର ବୈଜ୍ଞାନିକ ଯୁଗର ବେଦ ! ଯା' କଥା ମାନୁନ କାହିଁକି ? ଶୁଣୁନ କାହିଁକି ? ବୁଝୁନ କାହିଁକି ?

ଶେଷରେ କୋଟି କୋଟି ଜନଶକ୍ତି ଓ ଗୋଟାଏ ଦେଶର ଅଗାଧ ଅର୍ଥଶକ୍ତିକୁ ଜଣେ ବା ଶହେ ଜଣଙ୍କର ଆୟତ୍ତରେ ଗୁଞ୍ଜିଦେବାର ପ୍ରଚଣ୍ଡ ପ୍ରତାପ କ'ଣ ତୁମେ ବୁଝିପାରୁନ ? ସବୁ ଯୁଗରେ ଏ ପ୍ରବଳ ଶକ୍ତିର ଅଧିନାୟକ ଯେ ତୁମରି ଭଳି ଶାନ୍ତିକାମୀ ଓ ଶୁଭକାମୀ ହେବେ, ସେ କଥାର ଦାୟିତ୍ୱ ତୁମେ ନେଇପାରିବ ? ତୁମ ପରେ କ'ଣ ହେବ, ତାକୁ ତୁମେ କଳନା ଓ କଳ୍ପନା କରିପାରିବାର ଶକ୍ତି ତୁମକୁ କିଏ ଦେଲା ? କାଲି କ'ଣ ହେବ ସେ କଥା ତୁମେ ଜାଣନା, ଚାରିମାସ ପରେ କି ପ୍ରାକୃତିକ ବିପ୍ଳବ ଏ ଦେଶକୁ ଛାରଖାର କରିଦେଇପାରେ, ତୁମର ଏ ୬୦ ମହଲା, ୭୦ ମହଲା ରାଜନଅର ଯେ ଗୋଟିଏ ମୁହୂର୍ତ୍ତିରେ ଧୂଳିରେ ମିଶିଯାଇପାରେ ସେ କଥା ତୁମେ ଜାଣନା । ଅଥଚ ତୁମେ ସାହସ କରୁଚ ଯେ, ତୁମର ଏ ଅସଂଖ୍ୟ ଏକ ଗୁଚ୍ଛ ମେଣ୍ଢାପଲକୁ ଯେ ଚରେଇବେ, ତୁମର ଏ କୁବେର ସମ୍ପତ୍ତି ଯାହାଙ୍କ ଅକ୍ତିଆରରେ ପଡ଼ିବ, ସେମାନେ ସବୁଦିନେ, ସବୁଯୁଗରେ ତୁମରି ଭଳି ନିଷ୍କର୍ମା ଦେବତା ହୋଇ ଜନ୍ମିବେ ଓ ରହିବେ ? କେଉଁ ବୈଜ୍ଞାନିକ ଫର୍ମୁଲାଣିକ ଦ୍ୱାରା ତୁମ କବରଖାନାରୁ ବା ମଶାଣିଭୂଇଁରୁ ତୁମେ ଏସବୁ ଆୟତ୍ତ କରିବ ବୋଲି ଦମ୍ଭ ବାନ୍ଧିଚ ?

କଥା ଶୁଣ, ଏ ଢାଡ଼ି ଫାଡ଼ି ଛାଡ଼ । ତୁମର ପ୍ରକୃତ ମୁହଁ ଲୋକେ ଦେଖନ୍ତୁ । ତୁମର ପ୍ରକୃତ ଭେକ ଏ ଲୋକେ ଚିହ୍ନନ୍ତୁ । ତୁମ ପେଟ ଭିତରେ ଯଦି କିଛି ମାଲ୍ ମସଲା ଥାଏ, ତା'ହେଲେ ତୁମ ମାଖନା ମୁହଁଦେଖି ଲୋକେ ତାହା ବିଶ୍ୱାସ କରିବେ ବେଶୀ । ସୁତରାଂ ଯାଅ ଗୋ ଅଳ୍ପବୟସୀ ପ୍ରେୟସୀ ମୋର, ଲୋଡ଼ା ନାହିଁ ତୁମ ସାଥୀ, ହେବ ନାହିଁ ତୁମ ବର । ରହ ରହ, ଏଇଠି ମୋର ବନ୍ଧୁ କହିଲେ—ହେଲାନି ଭାଇ ହେଲାନି, ଖାଲି ଗୁଡ଼ାଏ ଦୋଷ ତ ଦେଖେଇଚାଲ, କାହିଁକି ବିଶ୍ୱଶାନ୍ତି ହେବନି, ସେ କଥା ତ ମାଡ଼ ଦେଇ ବୁଝେଇଦେଲ, କିନ୍ତୁ କ'ଣ କଲେ ହେବ, ସେ କଥା ତ କହିଲନି । ଖାଲି ସମାଲୋଚନାରେ କିଛି ହୁଏନି । ଅସଲ କଥା ଗଠନମୂଳକ ପ୍ରସ୍ତାବ ।

ଏ କଥାଟା ତୁମ ଗୁରୁ ମହାଗୁରୁମାନେ କହୁଚନ୍ତି ବରାବର । ଏତେବେଳେ ସମାଲୋଚନାର ସୁଅ ଅସହ୍ୟଣିକ ହେଇଯାଉଚ, ଗଠନମୂଳକ ପ୍ରସ୍ତାବ ତାକୁ କ'ଣ ବୁଆଯାଇନି ? ତୁମର ଏ ଗଠନମୂଳକ ପ୍ରସ୍ତାବ ମୋ'ଠାରୁ ମାଗିବା ଏକ ଭଣ୍ଡାମି । ତୁମେ ଦଳେ ଦଳେ ବସିଚ, ଭାବୁଚ, ଭାରତବର୍ଷ କାହିଁକି, ସାରା ପୃଥିବୀରେ ଯେତେ ବୁଦ୍ଧି, ସବୁ ତୁମ ମୁଣ୍ଡରେ ହିଁ ହେଇଚ ଠୁଳ । ଯାହା ତୁମର ଏ ବୁଦ୍ଧିବ୍ୟାଙ୍କରୁ ନ ବାହାରୁଚି ତାହା କେବେହେଲେ ସଚ୍ଚୋଟ ମାଲ୍ ହୋଇ ନ ପାରେ । ଆଉ ସବୁ ଖାଲି ଜାଲ୍, ଖାଲି ଅଚଳ । ଏ କଥା ଶହ ଶହ ଘଟଣାରେ ପ୍ରମାଣିତ ହେଇଛି । ସୁତରାଂ ଫେରେ ତୁମ ପାଖରେ ଏ ପ୍ରସ୍ତାବମୂଳା ଥୋଇବନି ଆଜ । ତଥାପି ବନ୍ଧୁଙ୍କର ଆଦେଶ, ମୁଁ ଯାହା କହିଗଲି ଓ ପରେ ଯାଉଚି, ସେଥିରୁ ଗଠନମୂଳା ନିହିତ ବାହାରିବ । କିନ୍ତୁ ତାକୁ ଧୋଇଧାଇ ହଜମ କରିବାର ଶକ୍ତି ଓ ଧୈର୍ଯ୍ୟ ତୁମର ନାହିଁ ।

ତୁମେ ସ୍ୱହସ୍ତରେ ଏ ମୂଳାକୁ ଖଣ୍ଡ ଖଣ୍ଡ କରି କାଟି, ବିଲାତିବାଇଗଣ ସାଙ୍ଗରେ ମିଶାଇ, ଲୁଣ ଲଙ୍କା ଦେଇ, ଆମ୍ବର ତେଲ ଦେଇ, ବିଲାତି ସାଲଡ୍ ବନାଇବ । ତେବେ ଯାଇ କେଜାଣି ଅବା ତୁମକୁ ରୁଚିବ ।

ହଉ, ତାହାହିଁ ହଉ, ମୁଁ କହୁଥିଲି, ଏ ଦାଢ଼ିରେ କାମ ହେବନି, ମୁଁ ସ୍ୱାମୀ ଗୃହେନ୍ଦ୍ର, ବଣ ଜଙ୍ଗଲ ଭିତରୁ ବାଘ ସିଂହର ଜଳ ଜଳ ଆଖି ଦିଇଟା ଦେଖି କଏ ଭଲା ଶାନ୍ତ ରହିପାରିବ, ଦମ୍ଭ ଧରିପାରିବ ? ତାକୁ ଦେଖିଲେ ଡରୁଆ ପଳାଇବ, ଲଢୁଆ ଠେଙ୍ଗାବାଡ଼ି, ବନ୍ଧୁକ, ଫାଶ୍ଶା ଖୋଜିବ । ନା, ନା ଭାଇ, ତୁମେ ଯେବେ ଶାନ୍ତି ଚାହଁ, ତୁମେ ଯେବେ ପ୍ରକୃତ ସ୍ୱରାଜ୍ୟ, ବ୍ୟକ୍ତିଗତ ସ୍ୱାଧୀନତା ଉପରେ ପ୍ରତିଷ୍ଠିତ ସ୍ୱରାଜ୍ୟ ଉପରେ ଆଗ୍ରହ ରଖିଥାଅ, ତା' ହେଲେ ତୁମର ମାଖୁନା ମୁହଁରେ ସ୍ନେହୋଦ୍ଦୀପକ ଆଶ୍ୱାସ ଦେଖାଅ । ଲୋକେ ଦେଖନ୍ତୁ—ତୁମେ ବାଘ ନୁହଁ, ଭାଲୁ ନୁହଁ, ସିଂହ ନୁହଁ । ତୁମ ଆଖିରୁ ପ୍ରେମର ମନ୍ଦାକିନୀ ଧାରା ଗଡ଼ୁ ଯେ ଅଶାନ୍ତି, ଅଭାବ ଓ ଅତୃପ୍ତିର ନିଆଁ ହୁତୁହୁତୁ ଜଳୁଚି, ତାକୁ ଶାନ୍ତ କରୁ, ନିର୍ବାପିତ କରୁ, ସେ ହୃଦ କୁଣ୍ଡରେ ଶାନ୍ତ୍ୟୁଦକ ଦେଉ । ଏ ସ୍ନେହ ଓ ପ୍ରେମ ପ୍ରକୃତ ପ୍ରେମ, ହୃଦୟରୁ, ଅନ୍ତରରୁ ଟପୁଡ଼ାହେବା ପ୍ରେମ ହେଉ । ଗ୍ଲିସେରିନ୍ ଲଗା, ପିଆଜରସ ଲଗା ଆଖିର ଲୋକଦେଖାଣିଆ ଲୁହ ନ ହେଉ । ଏ କାନ୍ଦିବାର ଲୁହ ନ ହଉ । ଏ ହେଉ ଆନନ୍ଦାଶ୍ରୁ । ତୁମେ ହସି ହସି କାନ୍ଦ । ଲୋକଙ୍କୁ ହସାଇ ହସାଇ କନ୍ଦାଅ । ଦେଖିବ ସେଇ ଲୁହର ମନ୍ଦାକିନୀ ଧାରାରେ ସବୁ ପାପ ତାପ, ଅଭାବ, ଅତୃପ୍ତି, ଅଶାନ୍ତି ସାତ ସମୁଦ୍ରକୁ ଧୋଇ ହୋଇଯିବ । ଲୋକଙ୍କୁ ଲୋକ ବୋଲି ଭାବ, ତାଙ୍କୁ ଗୋଟାଏ ଯନ୍ତ୍ରପାତି ବା କୁକୁର ମେଣ୍ଢା ବୋଲି ଭାବନି ।

ଇଟାଲିର ଚୋର୍ଦ୍ଦିଆ ସାମ୍ରାଜ୍ୟର ପ୍ରଧାନ ରାଜନୀତଜ୍ଞ ମାକିଆଭେଲି ପରା କହୁଥିଲେ, ମଣିଷଗୁଡ଼ାକ ମାଙ୍କଡ଼ ! ନେପୋଲିୟନ କହୁଥିଲେ, ମଣିଷଗୁଡ଼ାକ ଖଣ୍ଡେ ପିଲା, ବିନା ବେତ ମାଡ଼ରେ ସିଧା ହେବେନି । ଚୋର୍ଦ୍ଦିଆ ସାମ୍ରାଜ୍ୟ ମାତ୍ର ବର୍ଷେ ଦୁଇଶହ ରହିପାରି ନ ଥିଲା । ନେପୋଲିୟନଙ୍କ ସାମ୍ରାଜ୍ୟ ମାତ୍ର ବର୍ଷେ ଶହେଟା ଟେକିପାରି ନ ଥିଲା । ଜର୍ମାନର ବିସ୍‌ମାର୍କ ଏପରି ସ୍ପଷ୍ଟ ଭାବରେ କହି ନ ଥିଲେ ହେଁ, ସେଇ ନୀତିରେ ଯେ ତାଙ୍କର ରାଜନୀତି ନିର୍ଦ୍ଧାରଣ କରିଥିଲେ । କେତେ ବର୍ଷ ରହିଲା ତାଙ୍କର ଗଢ଼ା ସେ ଜର୍ମାନୀ ସାମ୍ରାଜ୍ୟ ? ବେଳ ଅଛି, କଥା ମାନ, ମଣିଷକୁ କୁକୁର ମାଙ୍କଡ଼ପରି ଭାବନି, ତା'ର ବ୍ୟକ୍ତିତ୍ୱ ପ୍ରତି ସମ୍ମାନ ଦିଅ । ସମସ୍ତଙ୍କୁ ବାଡ଼େଇପିଟି ତୁମ ଛାଞ୍ଚରେ ପକାଇବାର ଚେଷ୍ଟା କରନି । ପ୍ରତ୍ୟେକ ମନୁଷ୍ୟ ସଦ୍‌ଜ୍ଞାନୀ, ସେ ଭଲ ମନ୍ଦ ବୁଝିପାରେ । ତୁମେ ଭଲ କଲେ, ସେ ତୁମକୁ ନିଶ୍ଚୟ ଟେକିବ । ତୁମ କଥା ମାନି ଚାଲିବ । ତୁମେ ତୁମ ହୃଦୟ ଉପରେ ସ୍ୱରାଜ୍ୟ ଜାହିର୍ କର । ଦେଶରେ ସ୍ୱରାଜ୍ୟ ହୋଇଯିବ । ଆଉ ସେ ସ୍ୱରାଜ୍ୟ କେବଳ ସ୍ନେହ ଓ ପ୍ରେମରେ ହିଁ ହୋଇପାରିବ । ଯୁବ ଦିନ ବୈଦିକ ଋଷି ସହିତ ଏକମତ

ହୋଇ ହୃଦୟର ସହିତ ତୁମେ ଗାଇପାରିବ, 'ସ୍ୱକର୍ମଃ', ସୁଦନ ଶ୍ରୀକୃଷ୍ଣଙ୍କ ସହିତ, ଏକମତ ହୋଇ ହୃଦୟର ସହିତ କହିପାରିବ 'ଶୁନିଚୈବ ଶ୍ୱପାକେଚ ପଣ୍ଡିତା, ସମ-ଦର୍ଶିନଃ', ତୁମେ ଯେଉଁଦିନ ନିଜକେତାଙ୍କ ପରି ଅନ୍ୟର ସ୍ୱାର୍ଥରକ୍ଷା କରିବାଲାଗି, ନ୍ୟାୟର ପ୍ରସ୍ଥର ଲାଗି ଯମକୁ ମଧ୍ୟ ଶାସ୍ତ୍ରେଇ ପାରିବାର ସାହସ ରଖିବ, ସେଇଦିନ ତୁମେ ସ୍ୱରାଜ୍ୟ ଆଣିପାରିବ, ବିଶ୍ୱଶାନ୍ତି ଆଣିପାରିବ ।

କହିବ ଏ କେବଳ ଦିବାନିଦ୍ରାର ସ୍ୱପ୍ନ । ଏ ନୂଆକଥା ନୁହେଁ । ଏ କଥା ବହୁତ ବଡ଼ ବଡ଼ ମହାତ୍ମା କହିଯାଇଛନ୍ତି, ଯାହାଙ୍କର ଶ୍ରାଦ୍ଧ ଓ ଜୟନ୍ତୀରେ ଫୁଲମାଳ ପିନ୍ଧି ତୁମେ ତାଙ୍କ ପ୍ରତି ଅଜସ୍ର ପ୍ରଶଂସା ଢାଳି ଦେଉଥାଅ । ଚୈତନ୍ୟ, ରାମକୃଷ୍ଣ, ବିବେକାନନ୍ଦ ଏମାନେ ସେମାନଙ୍କ ମଧ୍ୟରୁ ଅତି ଆଧୁନିକ । ତୁମେ କହିବ ତାଙ୍କ ପ୍ରଚାରରେ ତ କିଛି ହୋଇନି । ଚୈତନ୍ୟଙ୍କ ପ୍ରେମମନ୍ତ୍ର ସତ୍ତ୍ୱେ ଓ ତାଙ୍କର ଚେଲାମାନେ ତାଙ୍କରି ଜୀବଦ୍ଦଶାରେ ଓଡ଼ିଆ ଜଗନ୍ନାଥ ଦାସଙ୍କ ପ୍ରତି ଯେ ବ୍ୟବହାର କରିଥିଲେ, ତା' ଆମେ ଦେଖିଛୁ ଆଖି ଆଗରେ । ସତ, ଏ ଯେଉଁ ମହାସାଧନ, ତା'ଲାଗି ବହୁବର୍ଷର ପରିଚର୍ଯ୍ୟାର ଓ ଅନ୍ୟାନ୍ୟ ସୁଖ ସ୍ୱାଧୀନ ବୃଦ୍ଧି, ତା ହୋଇନି । ତା ହୋଇନି ବୋଲି ଶାନ୍ତି ଆସିନି ।

ତୁମେ ଯେବେ ପ୍ରକୃତରେ ଶାନ୍ତି, ସ୍ୱରାଜ୍ୟ ଚାହଁ, ତା'ହେଲେ ଏଇଥିରେ ଅଣ୍ଟା-ଭିଡ଼ି ବାହାରିପଡ଼ । ତା'ଯେବେ ତୁମେ ନ ଚାହଁ, ତା'ହେଲେ ଏ ଭଣ୍ଡାମି ଛାଡ଼ିଦିଅ । ଏ ଭଣ୍ଡାମିଟା ଛାଡ଼ିଦେଲେ ମଧ୍ୟ ଅନେକ କଥା ହେବ । ସ୍ନେହ ଓ ପ୍ରେମର ଉଦ୍ରେକ ହେବ, ହୃଦୟର କୋଣ କୋଣରେ । ସୁତରାଂ ମୋର ପୂର୍ବ ବିଚାର କାଏମ, ଦାଢ଼ି ବିସର୍ଜନୀୟ ।

ନବଜୀବନ
୧୯୬୦—ଫେବୃଆରୀ, ମାର୍ଚ୍ଚ
୪ର୍ଥ ବର୍ଷ—୧୧ଶ ସଂଖ୍ୟା
ପୃଷ୍ଠା—୪୪୬ ରୁ ୪୫୫ ।



# ମଣିଷ ଦେବତା

ଦାଶ ଆପଣଙ୍କର କୁଇଗାଡ଼ଟା ବର୍ଷରେ ଥରେ ସିନ୍ଧମଚ ଖୋଲାଯାଉଛୁ । ତାଙ୍କର ପୋରହିଁ ହାଡ଼ଗୁଡ଼ିକ ସେଇଦିନ ଏକାଠି କରି, ତା ଉପରେ କିଛି ତାଚିଲ ପାଣି ଅଜାଡ଼ି, ତା ଦ୍ୱାରରେ ଜୀବନଦାନ କରିବାର ପ୍ରୟାସ କରାଯାଉଚି; କିନ୍ତୁ ହୁଏ ନାହିଁ । ସେ ପୋଡହିଁ ହାଡ଼ ଯୋଡ଼ି ହୁଏନାହିଁ; ସେ ହାଡ଼କୁଡ଼ରେ ଜୀବନ ଲାଗୁନାହିଁ । ସେଇଦିନକ ଗଲାମାତକେ ପୁଣି ସେ ହାଡ଼କୁଡ଼କୁ ପୋତି ଦିଆଯାଉଛି ଆଉର ବର୍ଷକ ଯାକେ । ସେ ସବୁ କିଆଁ ? ଅବଶ୍ୟ ମୁଁ ଜାଣେ, ସବୁ ବଡ଼ଲୋକଙ୍କର ଏହିପରି ଗୋଟାଏ ଶ୍ରାଦ୍ଧ ଦିବସ ହୁଏ; ବଞ୍ଚିଥିବାଯାକେ ଜୟନ୍ତୀ, ମରିଗଲା ପରେ ଶ୍ରାଦ୍ଧଦିବସ । କିନ୍ତୁ ସ୍ୱା ମଧ୍ୟ ମୁଁ ଲକ୍ଷ୍ୟ କରିଚି ଯେ, ଜୟନ୍ତୀ ଯେତିକି ହୁଉଚି, ମହାପୁରୁଷମାନଙ୍କର ପରିଜୟନ୍ତୀ ସେତିକି ଘନଉଚି । ଶ୍ରାଦ୍ଧ ଯେତିକି ହୁଉଚି, ମହାପୁରୁଷଙ୍କ ଆଦର୍ଶ ସେତିକି ଜନ୍ଦାବାଦରେ ହରିଲୁଟରେ ଲଭିଯାଉଚି । ଆମେ କୌଣସି ଜୀବିତ ମହାପୁରୁଷଙ୍କର ଜୟନ୍ତୀ ମନେଇଲୁଁ ବର୍ଷେ ଖୁବ୍ ଘଟାଟୋପରେ, ଜାକଜମକରେ । ତାପରେ ଭାବିଲୁ ଆମେ ସ୍ୱାଙ୍କର ଜୟନ୍ତୀ କରିଚୁଁ; ସ୍ୱାଙ୍କ ପ୍ରତି ଆମର କର୍ତ୍ତବ୍ୟ ଶେଷ । ପୁଣି ଆସନ୍ତା ଜୟନ୍ତୀ ପର୍ଯ୍ୟନ୍ତ ଦଶବର୍ଷ ସ୍ୱେ ଆମପ୍ରତି ତାଙ୍କର କର୍ତ୍ତବ୍ୟ କରନ୍ତୁ—ଅର୍ଥାତ୍ ତାଙ୍କର ନ୍ୟାସ୍ୟ-ଅନୁଗ୍ରହ ବା ଅନ୍ୟାସ୍ୟ-ଅନୁଗ୍ରହର ପସରା ଆମଲାଗି ମେଲେଇଦିଅନ୍ତୁ । ଯଦି ନ ଦେଲେ ତାହେଲେ ଜୟନ୍ତୀ ନା ଫୟନ୍ତୀ, ତେଣିକି ଦେଖି ସେ କାମ । ମୃତ ମହାପୁରୁଷଙ୍କର ବାର୍ଷିକ ଶ୍ରାଦ୍ଧଟିଏ କରିଦେଇ ଆମେ ଭାବୁଚୁଁ, ଆମେ ଲୋକଙ୍କ ଆଗରେ ସ୍ପଷ୍ଟ ପ୍ରମାଣିତ କରିଦେଲୁ ଯେ, ଆମେ ସ୍ୱାଙ୍କର ମହାନ୍ ଆଦର୍ଶରେ ଅନୁପ୍ରାଣିତ ତ ଖାଲି ନୋହୁଁ, ଏକାବେଳକେ ଓତପ୍ରୋତ ।

ଦାଶ ଆପଣଙ୍କର ଏ ଶ୍ରାଦ୍ଧଦିବସରେ ପ୍ରତିବର୍ଷ କେତେ ବଡ଼ ବଡ଼ ଲେଖକ ଓ ବଡ଼ ବଡ଼ ନେତା କେତେପ୍ରକାରର ପୂଜାଡାଲା ବାଢ଼ିଚନ୍ତି, ମୁଁ ସବୁ ପଢ଼େଁ । ପଢ଼ି ଦୁଃଖ ହୁଏ, ଏସବୁ କଣ ହେଉଚି ? ଏମାନେ କଣ ଦାଶ ଆପଣଙ୍କର ଏତେ ନିକଟରେ ଥାଇ ଓ ତାଙ୍କ ସାହିତ୍ୟ ଓ ଭାଷଣ ଇତ୍ୟାଦିର ଏତେ ଅନୁସନ୍ଧାନ ଓ ଗବେଷଣା କରି ମଧ୍ୟ ଦାଶ ଆପଣଙ୍କୁ ଚିହ୍ନି ପାରିଲେ ନାହିଁ ? ଦାଶ ଆପଣେ ନାହାନ୍ତି । ସେ ଆଉ ନେତା ନୁହନ୍ତି । ସେ ବର୍ତ୍ତମାନ ଜଣେ ମୃତ ନାଗରିକ । ତାଙ୍କ ଜୀବନର କେଉଁ ବିଶିଷ୍ଟ ଗୁଣ ହେତୁ ସେ ଏତେଦିନ ହେଲା ମରିଯାଇଥିଲେ ମଧ୍ୟ ତାଙ୍କ ପୂଜାର ଗୋଟାଏ ବାର୍ଷିକ ତାମସା କରାଯାଉଚି ?

ତୁମେ କହିବ, ସେ ଥିଲେ ସତ୍ୟବାଦୀ ବିଦ୍ୟାଳୟର ପ୍ରତିଷ୍ଠାତା; ସେ ଥିଲେ ଚକ୍ରଧରପୁର, ବାହାଡ଼ାଗୋଡ଼ା ଇତ୍ୟାଦି ସିଂହଭୂମିସ୍ଥ ଗ୍ରାମମାନଙ୍କରେ ଦେଶମିଶ୍ରଣ ଆନ୍ଦୋଳନ-ସହାୟକ-ଅନୁଷ୍ଠାନର ନିୟାମକ । କିନ୍ତୁ ସେ ଶେଷରେ ସତ୍ୟବାଦୀ

ବିଦ୍ୟାଳୟକୁ ଗଢ଼ିଥିଲେ; ସେଇ ତାଙ୍କର ଜୀବନରେ ସିଂହଭୂମିର ଦେଶମିଶ୍ରଣ ସହାୟକ ଅନୁଷ୍ଠାନମାନଙ୍କର ସୂଚକ । ତାଙ୍କ କାମରୁ ଆଉ ରହିଚି କଣଟାଏ ? ଜୀବନରେ ଯାହା କରିଥିଲେ, ତାଙ୍କର ଜୀବନରେ ତାକୁ ସେ ଶେଷ କରିଯାଇଛନ୍ତି । ସେ ଅବଶ୍ୟ ଧୋଇଆ, ମରୁଡ଼ିଆ ଓଡ଼ିଆମାନଙ୍କର ଦୁର୍ଭିକ୍ଷ ଲାଗି ଲଢ଼ିଥିଲେ । କିନ୍ତୁ ଧୋଇ ମରୁଡ଼ି ଓ ଦୁର୍ଭିକ୍ଷ ଯିମିତି ଥିଲା, ସିମିତି ଅଛି । ଧୋଇଆଙ୍କ ପ୍ରତି ଶାସକବର୍ଗର ଯେ ନାଲିଫିତାର ଉଦାସୀନତାକୁ ସେ ନାତ ମାରିଥିଲେ, ସେ ସେଇମିତି ବର୍ତ୍ତମାନ ବି ରହିଛି । ତାହେଲେ ସେ କଣ ଆମ ପାଇଁ ରଖିଯାଇଛନ୍ତି, କଣ ଏ ଦେଶପାଇଁ କରିଯାଇଛନ୍ତି ଯେ, ଆମେ ତାଙ୍କର ଶ୍ରାଦ୍ଧ ବାଢ଼ି ବସିବୁଁ ? ତାଙ୍କ ଜୀବନରେ ଏପରି କଣ ଥିଲା, ଯାହା ଲାଗି ତାଙ୍କୁ ରାଜନୀତି ନିର୍ବିଶେଷରେ ଏତେ ଲୋକ ତିରିଶି ବର୍ଷ ପରେ ମଧ୍ୟ ଖାଲି ଶ୍ରାଦ୍ଧଦିନଟି ପାଇଁ ନୁହେ ବର୍ଷର ଅନେକ ସମୟରେ ମନେପକାଉଛନ୍ତି ?

ଦୀନ ଆପଣେ ଥିଲେ ସାଧାରଣ ମନୁଷ୍ୟ ଜଣେ । ଖୁବ୍ ମୋଧାବୀ ଛାତ୍ର ନ ଥିଲେ, ଓକିଲଭାବରେ ଖୁବ୍ ବିଚକ୍ଷଣ ମଧ୍ୟ ନ ଥିଲେ, ଧନୀ ନ ଥିଲେ, କୁଳୀନ ନ ଥିଲେ । ରାଜନୀତି କ୍ଷେତ୍ରରେ ବା ସାହିତ୍ୟ କ୍ଷେତ୍ରରେ ପ୍ରଥମ ଶ୍ରେଣୀରେ ସ୍ଥାନ ପାଇବାର ଯୋଗ୍ୟତା ତାଙ୍କର ନ ଥିଲା । ଆଉ ତେବେ ଥିଲା କଣ ? ଗୋଟାଏ ତ କିଛି ନିଶ୍ଚୟ ଥିଲା । ଆଉ ସେଇ ଯାହା ଥିଲା, ତାହା ହିଁ ଥିଲା ପ୍ରକୃତ ଗୋପବନ୍ଧୁ । ସେଥିରେ ଗୋଟାଏ ମହାନ୍ ଚିରନ୍ତନ ସତ୍ୟ ଆଉ ସେଇ ସତ୍ୟ ଆଦର୍ଶକୁ ଅନୁସରଣ କରିବାର ଦୃଢ଼ତା ଥିଲା ଗୋପବନ୍ଧୁ ଜୀବନୀ । ପ୍ରତ୍ୟେକ ମହାପୁରୁଷଙ୍କର ଏହିପରି ଗୋଟାଏ ଆଦର୍ଶ ଥାଏ । ତାରି ଲାଗି ସେମାନେ ହୋଇଥାନ୍ତି ଚିରସ୍ମରଣୀୟ, ତାଙ୍କର କୃତିତ୍ୱ ଲାଗି ନୁହେ । ସତ୍ୟାଗ୍ରହ ବା ଅସହଯୋଗ ମହାତ୍ମା ଗାନ୍ଧିଙ୍କର ଜୀବନୀ ନୁହେ, ମାଧ୍ୟାକର୍ଷଣ ଶକ୍ତିର ଆବିଷ୍କାର ଯେପରି ନିଉଟନ୍‌ଙ୍କର ଜୀବନୀ ହୋଇ ନ ପାରେ, ଥିଓରି ଅଫ୍ ରିଲେଟିଭିଟିର ଆବିଷ୍କାର ସେହିପରି ଆଇନ୍‌ଷ୍ଟାଇନ୍‌ଙ୍କର ଜୀବନୀ ହୋଇପାରେନାହିଁ । ଏସବୁ ମହାସତ୍ୟକୁ ଦେଖିବା ଲାଗି ସେମାନଙ୍କର ଯେ ଅନ୍ତର୍ଦୃଷ୍ଟି ଓ ସ୍ପଷ୍ଟଦର୍ଶନ ଥିଲା, ତାହାହିଁ ସେମାନଙ୍କ ଜୀବନର ପ୍ରଧାନ ଉପାଦାନ । ଆମେ କିନ୍ତୁ ସେକଥା ବୁଝୁନାହୁଁ । ଆମେ କୃତିତ୍ୱର ଉପାସକ । ସେ କୃତିତ୍ୱ ପୁଣି ଆମ ଆତ୍ମସନ୍ତୋଷର ସହାୟକ ହୋଇଥିଲେ । ମାର୍କିନ ଜାତି କୃତିତ୍ୱର ଉପାସକ ମଧ୍ୟ; କିନ୍ତୁ ନିଚ୍ଛକ କୃତିତ୍ୱର । ଆମେ ତା ନୋହୁଁ । ଆମର ସେଇ ଦୃଷ୍ଟିରୁ ଦେଖିଲେ ଗୋପବନ୍ଧୁ କୃତୀ ନ ଥିଲେ । କାରଣ ସେ ଉପଭୋଗ୍ୟ କିଛି କିଛି ରଖିଯାଇନାହାନ୍ତି । ତଥାପି ସେ ଚିରସ୍ମରଣୀୟ, କେଉଁ ଅନ୍ତର୍ଦୃଷ୍ଟି ବା ସ୍ପଷ୍ଟଦର୍ଶନ ଲାଗି ?

ଦୀନ ଆପଣେଙ୍କ ଜୀବନୀ ବିଷୟରେ ଯେଉଁମାନେ ଲମ୍ବା ଲମ୍ବା ପ୍ରବନ୍ଧ ଲେଖୁଛନ୍ତି, ସେମାନେ ତାଙ୍କର କୃତିତ୍ୱକୁ ବିକୃତ କରି ଲେଖୁଛନ୍ତି ସତ, ମାତ୍ର ତାଙ୍କ ଜୀବନର ପ୍ରଥମ ଓ ପ୍ରଧାନ ଏଇ ଅନ୍ତର୍ଦୃଷ୍ଟି ଓ ସ୍ପଷ୍ଟଦର୍ଶନ ପ୍ରତି କେହେ ଧ୍ୟାନ ଦେଇନାହାନ୍ତି । ଦୀନ

ଆପଣଙ୍କର ଗୋଟିଏ ନୀତି ଥିଲା—ଆତ୍ମନିର୍ଭରଶୀଳତା । ସେ ନିଜ ହୃଦୟ ଭିତରେ ଦେଖିପାରୁଥିଲେ, ବଡ଼ ହେବାକୁ ଗଲେ, ନିଜ ଗୋଡ଼ରେ ନିଜକୁ ଠିଆହେବାକୁ ପଡ଼ିବ । ସେ ବ୍ୟକ୍ତି ହେଉ ବା ଜାତି ହେଉ । ପର କାନ୍ଧରେ ଚଢ଼ି ବା ପରର ଗୋଡ଼ ଖୁଣ୍ଟି ବା ଅନ୍ୟର ଅଙ୍ଗରେ ତେଲ ବୋଳି ଯେ ବଡ଼ ହୁଅନ୍ତି ବା ବଡ଼ ବୋଲାନ୍ତି, ସେ ନିଶ୍ଚୟ ଦିନେ ମାଡ଼ିବେ ଏମିତି କାଦୁଅରେ ଯେ, ସେଥିରୁ ଆଉ ଅଣ୍ଟା ସଳଖି ଉଠିପାରିବେ ନାହିଁ । ଏଇ ନୀତି ତାଙ୍କ ଜୀବନର ମହାନ୍ ଆଦର୍ଶ ଥିଲା । ଏଇ ନୀତି ହେତୁରୁ ସେ ସେତେବେଳର ବିଦେଶୀ ସରକାରଠାରୁ କୌଣସି ସାହାଯ୍ୟନେବାକୁ ରାଜି ହୋଇ ନ ଥିଲେ ତାଙ୍କ ସତ୍ୟବାଦୀ ବିଦ୍ୟାଳୟ ଲାଗି ! ସେ ବୁଝିଥିଲେ, ସେ ସତ୍ୟବାଦୀ ବିଦ୍ୟାଳୟ ଯାହା କରୁଛନ୍ତି ଜାତିର ଗଠନ ଲାଗି । ଆତ୍ମସମ୍ମାନ ନ ଆସିଲେ ଜାତି ବା ବ୍ୟକ୍ତି ଗଢ଼ିଉଠିପାରେନାହିଁ । ପର ଉପରେ ନିର୍ଭର କରି ଯେ ଚଳେ ତାର ଆତ୍ମସମ୍ମାନ ଆସିପାରେନାହିଁ । ସେ ପରପାଖରେ ସବୁବେଳେ ଶ୍ରେଷ୍ଠ ବୋଲି ମନେକରିବ—ମନେ ଯେତେ ବାଲୁଭିରୁଡ଼ି ମାରୁ ପଛକେ । ସତ୍ୟବାଦୀ ବିଦ୍ୟାଳୟ ଜାତିର; ଜାତିର ଯେତିକି ସମ୍ବଳ ସେତିକ ସେ ଜାତି ପାଖରୁ ନେଇ ତାକୁ ଗଢ଼ିଥିଲେ । ସେଇ ହେତୁରୁ ସେତେବେଳେ ଦେଶର କୋଡ଼ିଏ ପଚିଶିଟା ଉଚ୍ଚ ବିଦ୍ୟାଳୟ ମଧ୍ୟରୁ ମାତ୍ର ଗୋଟିଏ ହୋଇ ମଧ୍ୟ ତାର ଏତେ ପ୍ରତିପତ୍ତି ଓ ପ୍ରସାର ହୋଇପାରିଥିଲା ।

ଏଇ ନୀତିକି ଆମେ ଆଜିକାଲି ବିଲକୁଲ ଭୁଲିଯାଇଛୁଁ । ଆମେ ଭୁଲିଯାଉଛୁଁ, ମାଗିଆଣିଲା ଧନରେ ଯୋଉଁକାଏ । ସେଥିରେ ପେଟ ପୂରିନପାରେ । ଆମେ ସ୍ୱାଧୀନ ହେଇଛୁଁ, ସ୍ୱାଧୀନ ହେଇ ଏ ଜାତି ଗଢ଼ିବାକୁ ଯାଉଛୁଁ । ଏ ଜାତିକୁ ସ୍ୱାଧୀନ କରି ସ୍ଥିର ଆସନରେ ପ୍ରତିଷ୍ଠା କରିବାକୁ ହେଲେ, ଅର୍ଥନୈତିକ ସ୍ୱାଧୀନତା ଅବଶ୍ୟ ଦରକାର ଏ ବିଷୟରେ ଦ୍ୱିମତ ହେବାର ଆଉ କିଛି ନାହିଁ ।

କିନ୍ତୁ ଭୁଲ ହୋଇଯାଉଛି କିପରି ଏ ଅର୍ଥନୈତିକ ସ୍ୱାଧୀନତା ଆସିବ ତାରି ବିଷୟରେ । ଆମେ ଭାବୁଛୁଁ ଓ କରୁଛୁଁ ଯେ, ବିଦେଶୀଙ୍କଠାରୁ ଟଙ୍କା ଆଣି ଯାହା ସେମାନେ ଶହେ ବର୍ଷ ଭିତରେ ଅଶ୍ରାନ୍ତ ତ୍ୟାଗ ପରେ କରିପାରିଛନ୍ତି, ତାକୁ ଆମେ ମାତ୍ର ବର୍ଷ ୨୦।୨୫ ରେ ବିନା ତ୍ୟାଗରେ କରିନବୁଁ । ସେ ହେଇପାରେ । କିନ୍ତୁ ତାହେଲେ ଆମକୁ ଆତ୍ମସମ୍ମାନ ଓ ଆତ୍ମବିଶ୍ୱାସ ହରାଇ ସେମାନଙ୍କ ପାଖରେ ଶ୍ରେଷ୍ଠ ହେବାକୁ ପଡ଼ିବ, ପଡ଼ୁଛି ମଧ୍ୟ । ସାମାନ୍ୟ ପାହାଡ଼ମୂଷା ଫିଜୋ ଆମକୁ ଦାନ୍ତ ଦେଖେଇପାରେ । ପାକିସ୍ଥାନ ଥରକୁଥର ଆମର ସୀମା ଡେଇଁ ଆମ ଲୋକଙ୍କୁ ମାରିପାରେ, ତାଙ୍କର ସମ୍ପତ୍ତି ଲୁଟି ନେଇପାରେ । ଚୀନ ଆମର ବିସ୍ତୃତ ଅଞ୍ଚଳ ଦଖଲ କରିନେଇପାରେ । ଆମେ ଯାହା କହୁନା କାହିଁକି—ଏ ସବୁ ସହୁଛୁଁ । ସ୍ୱାର କୌଣସି ପ୍ରତିକାର କରିବାର ବଳ ଓ ସାହସ ଆମର ନାହିଁ । ଆମେ ଆତ୍ମବିଶ୍ୱାସ ଓ ଆତ୍ମପ୍ରତ୍ୟୟ ହରାଇବସିଛୁଁ । କେଉଁ ଜିନିଷ, କେଉଁ ଦେଶରୁ ଆମେ କିଣିବୁଁ, ସେ ଅଧିକାର ମଧ୍ୟ ଆମର ନାହିଁ । 'ମିଗ୍'

ଉଡ଼ାଜାହାଜ ଶସ୍ତାରେ ରୁଷିଆରୁ କିଣିବା ଲାଗି ଆମେ ଇଚ୍ଛାକଲେ ମାର୍କିନରାଜ୍ୟ ଓ ବ୍ରିଟିଶରାଜ୍ୟ ଆମକୁ ଧମକ ଦେଉଛନ୍ତି । ତାଙ୍କର ପୁଞ୍ଜିରେ ଆମେ ଆମର ଏ ଅର୍ଥନୈତିକ ସ୍ବଚ୍ଛନ୍ଦତା ଆଣିବାଲାଗି ଇଚ୍ଛା କରୁଥାଉଁ । ସେ ପୁଞ୍ଜି ବନ୍ଦ କରିଦେଲେ ଆମର ସେ ପାଞ୍ଚବର୍ଷିଆ ଯୋଜନାସବୁ ବନ୍ଦ ହୋଇଯିବ । ଦୁଇ ଦୁଇଟା ପାଞ୍ଚବର୍ଷିଆ ଯୋଜନାରେ ଯେ ଶହଶହ କୋଟି ପର ଟଙ୍କା ଖର୍ଚ୍ଚ ହୋଇଚି, ତା ଭିତରୁ ଅଧିକାଂଶ ବ୍ୟର୍ଥ ହବ । ସେଥିରୁ ଲାଭହୋଇ ଏମାନଙ୍କ ପୁଞ୍ଜିର ସୁଧ ସୁଝିବାକୁ ଯେ ଭରସା କରିଥିଲୁଁ, ତାହା ପଣ୍ଡ ହୋଇଯିବ । ଏଣେ ଆମର ବୈଦେଶିକ ମୁଦ୍ରାପାଣ୍ଠି ଅତି ସାମାନ୍ୟ—୧୦୦ କୋଟିକୁ ଆସିଗଲଣି । ଏଥିରେ ଏ ଯୋଜନାର ଗୋଟାଏ ବର୍ଷ ମଧ୍ୟ ଚଳିବ ନାହିଁ ।

ସେସବୁ ତ ଅଙ୍ଗେ ଲାଭେଇବା କଥା । ହୁଏତ ବର୍ତ୍ତମାନର ଏ ଆପଦରୁ ଆମେ ଟାଣିଟୁଣି ମୁକୁଳିଯିବୁ । କିନ୍ତୁ ଭବିଷ୍ୟତରେ ସେ ଆହୁରି ପ୍ରବଳ ଆକାରରେ ଆସିବ । ଆମେ ପରଧନ ଯେତିକି ଆଣି ଅପବ୍ୟୟ କରିଥିବୁଁ, ସେତେବେଳେ ଆମର ଅବସ୍ଥା ସେତିକି ବେଶୀ ସାଙ୍ଘାତିକ ହୋଇଉଠିବ । ଆନ୍ତର୍ଜାତିକ ଅର୍ଥକ୍ଷେତ୍ରରେ ବଦାନ୍ୟତା ବୋଲି ଯେ ଜିନିଷ ନାହିଁ—ଏଇଟା ଆମର ଉପଲବ୍ଧି କରିବା ଉଚିତ । ମାର୍କିନ ଯେବେ ଆମକୁ ଟଙ୍କାଟିଏ ଦେଉଥାଏ, ତାହେଲେ ତା ବଦଳି ସେ ଅନ୍ତତଃ ପାଞ୍ଚପ୍ରକାର ପ୍ରତ୍ୟୁପକାର ଆମଠାରୁ ଆଶାକରିବ ନିଶ୍ଚୟ । ସେ ସାଧାରଣ କଥା । ସ୍ବା ଲାଗି ବିଶେଷଜ୍ଞ ଦରକାର ହେବେନାହିଁ । ଆମେ ଯେବେ ଭାବୁଥାଉଁ ଯେ, ରୁଷିଆଭୂତ ଦେଖେଇ ମାର୍କିନକୁ ଜବତ କରିବା ଓ ମାର୍କିନଭୂତ ଦେଖେଇ ରୁଷିଆକୁ କାବୁ କରିବା, ତାହେଲେ ଆମେ କୁହୁଡ଼ି ପଦ୍ମିଂନୁଁ ମାତ୍ର । ସେମାନେ ବୋକା ନୁହନ୍ତି । ରାଜନୀତିରେ ଆମେ ପିଲା; କିନ୍ତୁ ସେମାନେ ଧୁରନ୍ଧର । ଆଜକାଲିକାର ଅର୍ଥନୀତିରେ ଆମେ ଷଣ୍ଢ ହେଲେ, ସେମାନେ ପୁରୁଖାଲୋକ । ଆମର ସେ ଖେଳ ଯଦି ଏ ପର୍ଯ୍ୟନ୍ତ ସେମାନେ ସହି ଆସିଥାନ୍ତି, ତାହେଲେ ସେ ଆମ ଖେଳର ବାହାଦୁରିରୁ ନୁହେଁ, ଆନ୍ତର୍ଜାତିକ ରାଜନୈତିକ ପରିସ୍ଥିତି ଦୃଷ୍ଟିରୁ । ଯେଉଁ ମୁହୂର୍ତ୍ତରେ ରୁଷିଆ ବା ମାର୍କିନ ବୁଝିପାରିବେ ଯେ, ଭାରତ ମାର୍କିନପକ୍ଷ ବା ରୁଷର ପକ୍ଷ ହେଲେ ବିଶେଷ କିଛି କ୍ଷତି ହବନାହିଁ ତାଙ୍କର, ସେତେବେଳେ ସେମାନେ ଆମ ଉପରେ ତାଙ୍କ ପାଉଣା ଲାଗି ଚାପିବସିବେ । ଆମେ ସୁଝିପାରିବୁ ନାହିଁ—ଏହା ନିଶ୍ଚୟ । କାରଣ ଆମର ଯୋଜନାକାମ ବ୍ୟବସାୟୀ ଦୃଷ୍ଟିରୁ ହେଉନାହିଁ । ଟଙ୍କାଟିଏ ଖର୍ଚ୍ଚକରି ସେଥିରୁ ଅଣାଟିଏ ଲାଭ ପାଇବାର ପ୍ରବୃତ୍ତି ଆମର ଏ ଯୋଜନାର କାର୍ଯ୍ୟକାରିତାରେ ନାହିଁ । ଯୋଜନା ଲାଗି ଲକ୍ଷେ ଟଙ୍କା ଖର୍ଚ୍ଚ ହେଲେ ପ୍ରକୃତରେ ସେଥିରୁ ୩୦।୪୦ ହଜାରର କାମ ଆସୁଚି । ୩୦।୪୦ ହଜାରର ପ୍ରୟୋଗରୁ ଲକ୍ଷକର ଲାଭ କେହି କେବେ ଆଶା କରିପାରେନା ।

ଏ ଜାତିର ଦୁର୍ଗତିର ନିରାପତ୍ତା ଭିତ୍ତିରେ ହବ କେବଳ ଦାଣ ଆପଣେଙ୍କ ନୀତିରେ । ଆମ ଜାତିର ଯେତିକି ସମ୍ବଳ, ତାରି ଉପରେ ନିର୍ଭର କରି ତାର ପଇସା

ପଇସା ହିସାବରେ ଖର୍ଚ୍ଚ କରି ଯୋଜନା କରିବାର ଦୃଢ଼ଭିତ୍ତିରେ ହିଁ ଏ ଜାତିର ଗଠନ ହୋଇପାରେ । ଜାତିର ନିଜ ଧନ, ଜାତିର ତ୍ୟାଗ—ଏହାହିଁ ଗଠନର ମୂଳାଶ୍ରୟ ହେବା ଉଚିତ; ପରଧନ କଦାପି ନୁହେଁ । କୌଣସି ଜାତି କେବେହେଲେ ପରଧନ ଉପରେ ନିଜକୁ ଗଢ଼ିନାହିଁ । ତୁମେ ଇତିହାସକୁ ହସି ଉଡ଼ାଇ ଦେଇପାର, ଅତୀତକୁ ବାଜେ ଜିନିଷ ବୋଲି ଫୋପାଡ଼ି ଦେଇପାର; କିନ୍ତୁ ଇତିହାସର ଉପଦେଶହିଁ ସତ୍ୟ । ଆମେରିକା ଗୋଟିଏ ବଡ଼ ଜାତି ହୋଇଛି, ସେ ନିଜର ସମ୍ବଳ ଓ ତ୍ୟାଗ ବଳରେ । ମାର୍କିନ ଜାତିର ଅର୍ଥନୈତିକ ବିକାଶର ଇତିହାସରେ ପରଠାରୁ ଧନ ନେଇ ଜାତି ଗଢ଼ିବାର କୌଣସି ଉଦାହରଣ ମିଳିବ ନାହିଁ । ଫରାସୀବିଦ୍ରୋହ ପରେ ଫରାସୀଜାତି ଯେତେବେଳେ ନିଜକୁ ପୁଣି ନୂଆକରି ଗଢ଼ିବାକୁ ଗଲା, ସେତେବେଳେ ସମସ୍ତଙ୍କ ହାତ ତା ବିରୋଧରେ । ତା'ର ପଡ଼ିଶା ଇଂଲଣ୍ଡ, ଜର୍ମାନୀ, ଇଟାଲୀ—ସମସ୍ତେ ତା'ର ତୋଟିଚିପି ମାରିଦେବା ଲାଗି ସବୁବେଳେ ଉଆସ ରହିଥିଲେ । ସେ ଉଠିଲା କେବଳ ନିଜର ସମ୍ବଳ ଓ ତ୍ୟାଗ ଉପରେ ନିର୍ଭର କରି । ଦୀର୍ଘଦିନ ଧରି ଫରାସୀ ଜାତିକୁ ବହୁ କଷ୍ଟ ଭୋଗିବାକୁ ପଡ଼ିଛି ତା' ଲାଗି ।

ତୁମେ କହିବ, ଆମେ ମଧ୍ୟ ତ୍ୟାଗ କରୁଛୁଁ; ଆମେ ଅଧିକରୁ ଅଧିକ ଖଜଣା ଦେଇ ଚାଲିଛୁଁ; ସେ କ'ଣ ଆମର ତ୍ୟାଗ ନୁହେଁ ? ସତ କରି କହୁଛ ଏକଥା ? ଗୋଟିଏ କୃତ୍ରିମ ମୁଦ୍ରାସ୍ଫୀତି ତୁମେ ତିଆରି କରିଛ । ତାରି ଫଳରେ ଲୋକଙ୍କ ହାତରେ ବେଶୀ ଟଙ୍କାପଇସା ରହୁଛି । ସେଇ ବେଶୀ ଟଙ୍କାପଇସାରୁ ତୁମେ ବେଶୀ ଖଜଣା ଟିକସ ନଉଛ । ସବୁ ବର୍ନ୍ନାବଟି—ଅସଲ ତ୍ୟାଗ କିଛି ନାହିଁ । ବେଶୀ ପାଉଛ, ବେଶୀ ଦଉଛ । ତୁମର ଏ ବେଶୀ ପାଇବାଟା କିନ୍ତୁ ଗୋଟାଏ ବ୍ୟାମୋହ । ଧାନ ମହଣ ୨ ଟଙ୍କା ଜାଗାରେ ତୁମେ ଭଲେ ବିକୁଛ ୮ ଟଙ୍କା ବା ୧୦ ଟଙ୍କାରେ । ଭାବୁଛ ବେଶୀ ପାଇଲି । କିନ୍ତୁ ଦେଲାବେଳକୁ ସୋରିଷ ତେଲ ସେର ୬ ଅଣା ଜାଗାରେ ଦଉଛ ୩ଟଙ୍କା ବାରଅଣାର ଧୋତି ଖଣ୍ଡିଏ । ୧୨ଅଣା ଜାଗାରେ ଦଉଛ ୬ ଟଙ୍କା; ଗୁଆ ସେର ୮ଅଣା ଜାଗାରେ ଦଉଛ ଟ୧୦ଙ୍କା । ଏଇପରି ଭାବରେ ସବୁ ଜିନିଷରେ ତୁମେ ଦେଇ ଚାଲିଛ । ୪ ଗୁଣ ଅଧିକା ପାଇଲେ ଦଉଛ ୫ ଗୁଣ ବା ୬ ଗୁଣ । ସବୁ ଗୋଟାଏ କୁହୁକ, ଗୋଟାଏ ଭେଲେକି । ତୁମର ପରିସଂଖ୍ୟାନ ଯାହା କହୁନା କାହିଁକି, ଏଇଆ ହିଁ ସତ୍ୟ । ତୁମେ ଏ ପରିସଂଖ୍ୟାନ କୁଆଡ଼ୁ ଯୋଗାଡ଼ କରୁଛ କେଜାଣି ! ଇଂରେଜ ରାଜତ୍ୱରେ ସେମାନେ ଗୋଟାଏ ପରିସଂଖ୍ୟାନ କରୁଥିଲେ । ଏ ପରିସଂଖ୍ୟାନର ପ୍ରଥମ ଓ ଶେଷ ଅଧିକାରୀ ଥିଲେ ଗାଁ ଚୌକିଦାର—ତା'ର ସଂକଳନକାରକ ଥିଲେ ଥାନା କର୍ମଚାରୀ । ଇଂରେଜ ସରକାର ଦେଖାଉଥିଲେ ତାଙ୍କ ପରିସଂଖ୍ୟାନରୁ ଯେ ଭାରତ ଅତି ନିକୃଷ୍ଟ ଦେଶ ସବୁ ବିଷୟରେ । ତା' ନହେଲେ ଆମ ଉପରେ ତାଙ୍କର ବଡ଼ପଣିଆ ସେ ଜାହିର କରିପାରନ୍ତେ ନାହିଁ । ତୁମେ ଗୋଟାଏ ପରିସଂଖ୍ୟାନ କରୁଛ । ତା'ର

ଉଦ୍ଦେଶ୍ୟ ହେଲା, ତୁମ ଶାସନରେ ଏ ଦେଶ ସର୍ବାଧିକ ଅଗ୍ରଗତି କରିପାରିଛି । ତୁମେ ଅଙ୍କ କଷାକଷି କରି ଦେଖାଉଛ, ଏ ଦେଶ ଲୋକଙ୍କର ଆୟୁଷ ବଢ଼ିଯାଇଛି କିନ୍ତୁ ପ୍ରକୃତ ପକ୍ଷରେ ମୁଁ ଯାହା ଦେଖୁଛି, ତାହା ବିପରୀତ । ମୋ ପିଲାଦିନେ ଆମ ଗାଁରେ ଅନ୍ତତଃ ପାଞ୍ଚଜଣ ଅଶୀବର୍ଷର ବୁଢ଼ା ଥିଲେ; ଏମାନେ ସେ ବୟସରେ ମଧ୍ୟ ନେପାଳ ପ୍ରଭୃତି ଦୂରଦେଶକୁ ଯାଇ ଯାତ୍ରୀପଣ ଆଣୁଥିଲେ । ଏବେ ଆମ ଗାଁରେ ୭୦ ବର୍ଷର ୪।୫ ଜଣ ଅଛନ୍ତି କି ନାହିଁ; ଆଉ ଯେ ଅଛନ୍ତି, ସେ ଅଥର୍ବ । ଯେତେବେଳେ ମୁଁ ଅର୍ଥନୀତି ବହିରୁ ପଢ଼ୁଥିଲି, ଏ ଦେଶର ହାରାହାରି କୃଷି ଉତ୍ପାଦନ ଏକର ପିଛା ୧୪ ମହଣ । ତୁମେ ତୁମର ପରିସଂଖ୍ୟାନରୁ ଦେଖାଉଛ, ପାଞ୍ଚବର୍ଷ ଭିତରେ ତୁମର ପଞ୍ଚବାର୍ଷିକ ଯୋଜନା ଫଳରେ ଉତ୍ପାଦନ ଏକର ପିଛା ୧୦ ମହଣରୁ ୧୧ ମହଣକୁ ବଢ଼ିଯାଇଛି । କି ଅଗ୍ରଗତି ଏ ନୁହେ ! ହୁଏତ ତୁମେ ଭୁଲ କରୁଛ, ନହେଲେ ଇଂରେଜୀ ସରକାର ଭୁଲ କରୁଥିଲେ । ଏଇ ଭୁଲର କୁହୁକରେ ତୁମେ ଏ ଦେଶର ଲୋକଗୁଡ଼ାଙ୍କୁ ଭୁଲେଇ ରଖିବାକୁ ଚାହୁଁଛ ।

ଦାସ ଆପଣେ ତାଙ୍କ ଜୀବନରେ ତାଙ୍କ ଲେଖାଲେଖିର ମାଧ୍ୟମରେ ସରକାରୀ ପରିସଂଖ୍ୟାନର ଏଇ ଅଫିମୀ ଭେଲକି ବିରୋଧରେ କେତେଥର ଚିତ୍କାର କରିଯାଇଚନ୍ତି । ସେ ସେ ଭେଲକି ଚାହୁଁ ନ ଥିଲେ । ଚାହୁଁଥିଲେ ନିରାଟ ଖାଣ୍ଟି ସତ୍ୟ, ଅନ୍ତର୍ଦୃଷ୍ଟି ଓ ସ୍ପଷ୍ଟଦର୍ଶନର ସତ୍ୟ ଉପରେ ପ୍ରତିଷ୍ଠିତ ଆତ୍ମନିର୍ଭରଶୀଳତା । ଓଡ଼ିଶାରେ ବୋଧହୁଏ ପ୍ରଥମ ହୋଇ ସେ ଦେଖିପାରିଥିଲେ ସମବାୟ ଉଦ୍ୟମରେ ଏ ଜାତିର ମୁକ୍ତି ଓ ଗତି । ତାଙ୍କ 'ସତ୍ୟବାଦୀ' କାଗଜରେ ଧାରାବାହିକ ଭାବରେ ସମବାୟ ଆନ୍ଦୋଳନ ସପକ୍ଷରେ ସେ ଅନେକଥର ଲେଖିଥିଲେ । ଏ ଲେଖକ ମଧ୍ୟ ୧୯୩୯-୪୦ରେ ତତ୍କାଳୀନ କଂଗ୍ରେସାଧ୍ୟକ୍ଷ ରାଜେନ୍ଦ୍ରପ୍ରସାଦ ଓ ଓଡ଼ିଶା ସରକାରଙ୍କୁ ଜଣେଇଦବାର ସାହସ କରିଥିଲା ଯେ, ସମବାୟ କୃଷି ଓ ସମବାୟ କ୍ରୟବିକ୍ରୟ ଛଡ଼ା ଏ ଦେଶର ଅର୍ଥନୀତିରେ 'ନାନ୍ୟ ପନ୍ଥା ବିଦ୍ୟତେଽୟନାୟ' । ହସରେ ଉଡ଼େଇଦେଲେ ସେ କଥା, ସେତେବେଳେ । ଏବେ ପାଟିକଲେ କିଏ ଶୁଣୁଚି ? ଲୋକଙ୍କୁ ବ୍ୟଷ୍ଟିଗତ କଳାବଜାରର ପ୍ରଚୁର ଲାଭ ଚଖେଇଦେଲା ପରେ ସମଷ୍ଟିଗତ ସ୍ୱଳ୍ପଲାଭ ଉଦ୍ୟମକୁ ସେ ଆଉ ଚାହିଁବେ କାହିଁକି ? ଦାସ ଆପଣେ ସେତେବେଳେ ମଧ୍ୟ କହୁଥିଲେ, ଗ୍ରାମସଂଗଠନରେ ହିଁ ଦେଶର ସୁଷ୍ଠୁ ସଂଗଠନ ହୋଇପାରିବ । ସେଇ ଦୃଷ୍ଟିରୁ ଗାଁର ଲୁପ୍ତପ୍ରାୟ ଚାଟଶାଳୀ ଓ ଭାଗବତ ଟୁଙ୍ଗୀମାନଙ୍କର ପୁନରୁଦ୍ଧାର କରିବାକୁ ସେ ଚାହୁଁଥିଲେ । ଏ ଲେଖକ ମଧ୍ୟ ପୂର୍ବବର୍ତ୍ତୀ ସମୟରେ ଗ୍ରାମପଞ୍ଚାୟତ ପ୍ରତିଷ୍ଠା ଓ ସମବାୟ ଭିତ୍ତିରେ ଗ୍ରାମ୍ୟ ଅର୍ଥନୀତିର ସଂଗଳନା ଏବଂ ଗ୍ରାମପଞ୍ଚାୟତ ମାଧ୍ୟମରେ ହେବାର ଗୋଟିଏ ଯୋଜନା ତତ୍କାଳୀନ ଓଡ଼ିଶା ସରକାରଙ୍କୁ ଦେଇଥିଲା । ସେ ଯୋଜନା ଏପର୍ଯ୍ୟନ୍ତ ପୂରାପୂରି କାର୍ଯ୍ୟକାରୀ ହୋଇନାହିଁ । ତା' ଛଡ଼ା ଯେ ଏ ଦେଶର ଅନ୍ୟ ଗତି ନାହିଁ ତାହା ଏପର୍ଯ୍ୟନ୍ତ ତୁମର ଧାରଣା

ହୋଇପାରିଲା ନାହିଁ । ହଉଛି, ଆସ୍ତେ ଆସ୍ତେ ଠିକ ଶିଖୁଛି; କିନ୍ତୁ ସେ ଶିଖିବା ମଧ୍ୟରେ ବି ତୁମର ବିଜାତୀୟ ସଂସ୍କୃତି ଗଡ଼ବଡ଼ କରିଦଉଛି । ଏବେ କୁଆଡ଼େ ପଣ୍ଡିତ ନେହେରୁ କହୁଛନ୍ତି ଯେ, ଗ୍ରାମପଞ୍ଚାୟତ ଦଳଭିତ୍ତିରେ ହବ ନାହିଁ, ଏଇକଥା ମୁଁ ୨୦ ବର୍ଷ ତଳେ କହୁଥିଲି । କିନ୍ତୁ ତୁମର ଏଇ ଉପସଂହାର ଭିତରେ ସେଇ ଚିରାଚରିତ ଦୋମୁଣ୍ଡିଆ ସାପ ବର୍ତ୍ତମାନ । ଶାସନଦଳୀୟ ଭିତ୍ତିରେ ହବ; କିନ୍ତୁ ଗ୍ରାମପଞ୍ଚାୟତ ଦଳୀୟ ଭିତ୍ତିରେ ହବନାହିଁ; କି କୁହୁକରେ ବାବା ! ତୁମେ ବୁଝୁଛ, ଗାଁ ଗାଁ କରି ପଞ୍ଚାୟତ ଭୋଟ ନେଲେ ଦଳ ଭାବରେ ଅନେକ ସ୍ଥାନରେ ତୁମେ ହାରିଯିବ । ସୁତରାଂ ନିର୍ଦ୍ଦଳୀୟ ପଞ୍ଚାୟତ ନିର୍ବାଚନ । ଏଣେ ତୁମେ ରହିବ ଶାସନରେ, ପଞ୍ଚାୟତର ଜୀବନନାଡ଼ିକା ଟଙ୍କା ମଞ୍ଜୁରିର ଅଧିକାର ରହିବ ତୁମ ହାତରେ; ସୁତରାଂ ପଞ୍ଚାଏତ ହୁଏତ ତୁମ ମର୍ଜିର ତାଳରେ ନାଚିବ, ନହେଲେ ପଇସା ଅଭାବରେ ଫସର ଫାଟିଯିବ । ଚମତ୍କାର ମେଜିକ ! ! କିନ୍ତୁ ଯା ମୂଳରେ ରହିଛି ତୁମର ନିଜ ପ୍ରତି ଅବିଶ୍ୱାସ । ତୁମ ଦଳ ଫାଟୁଛି । ଗ୍ରେଟ ଫାଟଟିଏ ତୁମ ଦଳରେ ଏ ଲେଖକ ଦେଖିପାରିଥିଲା ୧୯୪୩ରୁ । ସେ 'ନବଭାରତ'ରେ ତା'ର 'ବୋମା' ପ୍ରବନ୍ଧରେ ତୁମକୁ ଚେତାଇ ଦେଇଥିଲା—ସାବଧାନ ! ସେ ଫାଟ ତୁମକୁ ହିଁ ଗିଳିବ । ଶୁଣିଲ ନାହିଁ । ଏବେ ଗ୍ରେଟ ଫାଟଟି ଆଁ କରି ମେଲେଇ ହୋଇଗଲାଣି ।

ଭୁଲକରିଛି, କ୍ଷମା ମାଗୁଛି । ମୁଁ ନେତା ନୁହେଁ, ଦାର୍ଶନିକ ନୁହେଁ, ଅର୍ଥନୀତିଜ୍ଞ ନୁହେଁ; ହବାର ମଧ୍ୟ ଇଚ୍ଛା ରଖିନାହିଁ । କହୁ କହୁ ମୋକଥା ଆନୁଷଙ୍ଗିକ ଭାବରେ ବାହାରିପଡ଼ିଲା ତୁଣ୍ଡରୁ । ଆଉ ବାହାରିବ ନାହିଁ । କହୁଥିଲି ଦାଶ ଆପଣଙ୍କ କଥା । ଦାଶ ଆପଣେ ପ୍ରତ୍ୟେକ ଜିନିଷର ଭିତରକୁ ଭେଦକରି ତା'ର ଅସଲ ବୀଜ ଦେଖିପାରୁଥିଲେ । ଏଇ ଥିଲା ତାଙ୍କର ବିଶେଷତ୍ୱ । ଏଇ ହେତୁରୁ ମରି ମଧ୍ୟ ସେ ଆଜି ଦୀର୍ଘଜୀବୀ । ସେ ବୁଝିଥିଲେ, ଜାତି ଗଢ଼ି ହେବ ନିଜର ନୈତିକ ଓ ଅର୍ଥନୈତିକ ସଙ୍ଗତି ଉପରେ । ସେ ବୁଝୁଥିଲେ, ସମଷ୍ଟି ବ୍ୟଷ୍ଟିଠାରୁ ବଡ଼ ନୁହେଁ, ହୋଇ ନ ପାରେ । ଫୋର୍ଡଙ୍କ ତିଆରି ମଟରଗାଡ଼ି ଫୋର୍ଡଙ୍କଠାରୁ ବଡ଼ ହୋଇପାରେନାହିଁ । ବ୍ୟଷ୍ଟି ସମଷ୍ଟିକୁ ତିଆରି କରେ । ସୁତରାଂ ସୃଷ୍ଟପଦାର୍ଥ ସ୍ରଷ୍ଟାଠାରୁ ବଡ଼ ହୋଇପାରିବ ନାହିଁ । ସେ ଗୋଟାଏ ଅନୁଷ୍ଠାନ ଗଢ଼ିଥିଲେ । କିନ୍ତୁ ଅନୁଷ୍ଠାନର ପ୍ରତ୍ୟେକ ଅଙ୍ଗ ସ୍ୱାଧୀନ ଥିଲା । ତାଙ୍କ ଗଢ଼ା ସମଷ୍ଟିରେ ପ୍ରତ୍ୟେକ ବ୍ୟକ୍ତି ସମଷ୍ଟି ଅପେକ୍ଷା ଥିଲେ ବଡ଼ । ସତ୍ୟବାଦୀ ବିଦ୍ୟାଳୟରେ ତିନିଜଣ ନାମଜାଦା ଏମ.ଏ. ଥିଲେ । ପ୍ରତ୍ୟେକଙ୍କର ମହତ୍ତ୍ୱ ଓ ବ୍ୟକ୍ତିତ୍ୱ ପ୍ରତି ସମ୍ମାନ ଦବାଲାଗି ଦାଶ ଆପଣେ ନିୟମ ବାନ୍ଧିଥିଲେ—ପ୍ରତ୍ୟେକେ ତିନି ବର୍ଷ ଲାଗି ପ୍ରଧାନ ଶିକ୍ଷକରୂପେ ପାଳିକରି କାର୍ଯ୍ୟ କରିବେ । ଗ୍ରେଟ କଥାଟିଏ; କିନ୍ତୁ ତା'ର ମୂଳରେ ଥିଲା ଦାଶ ଆପଣଙ୍କ ଜୀବନର ବିଶ୍ୱାସ, ଧର୍ମ । ସମଷ୍ଟିର ନିୟମ ଥିଲା, ଶିକ୍ଷକ ଛାତ୍ରମାନଙ୍କ ସହିତ ଦୁର୍ବ୍ୟବହାର କରିପାରିବେ ନାହିଁ । କେତେକ ଶିକ୍ଷକ

କରିଥିଲେ, ଧରିପକଡ଼ିଥିଲେ । କିନ୍ତୁ ଦାଶ ଆପଣେ ସମଷ୍ଟିର ଏହି ନିୟମଭଙ୍ଗ କରିବା ହେତୁ ସମଷ୍ଟିକୁ ବ୍ୟକ୍ତିତ୍ୱର ଦଳନ କରିବା ଲାଗି ସୁବିଧା ଦେଇ ନ ଥିଲେ । ସଂଶୋଧନ କରିଥିଲେ, କିନ୍ତୁ ଦୋଷୀର ବ୍ୟକ୍ତିତ୍ୱ ବଜାଏ ରଖି ।

ସମଷ୍ଟିର ନାମରେ ବ୍ୟକ୍ତିର ମର୍ଯ୍ୟାଦାକୁ ଅବମାନିତ କରିବା ବା ଅସ୍ୱୀକାର କରିବା ନଗ୍ନ ଏକଚ୍ଛତ୍ରବାଦ ଛଡ଼ା ଆଉ କିଛି ନୁହେଁ । କୌଣସି ଜାତି ବ୍ୟକ୍ତିର ମହତ୍ତ୍ୱକୁ ଦଳି ଉଠିପାରିନାହିଁ, ପାରିବ ନାହିଁ; ତୁମେ ପାରିନାହଁ; ପାରିବ ନାହିଁ; ଏକଥା ଦାଶ ଆପଣେଙ୍କଭଳି ସ୍ୱଷ୍ଟଦର୍ଶୀ ମାତ୍ର ଦେଖିପାରିବେ । ଅନ୍ତର୍ଦୃଷ୍ଟି ଏକମାତ୍ର ଜିନିଷ—ଯାହା କି ଆମ ମୁଣ୍ଡକୁ ଆକାଶର କୁହୁଡ଼ିରୁ ବାସ୍ତବ ପୃଥିବୀକୁ ଆଣିପାରିବ । ତୁମେ ତୁଚ୍ଛ, ତୁମେ କେତେ କଡ଼ାରେ କଡ଼ାଏ । ତୁମେ ତୁଚ୍ଛ, ତୁମ ଭିତରେ କେତେ ମଳଧୂଳି, ଗନ୍ଧିଆ ପଚରା ଜିନିଷ ଅଛି । ସେସବୁ ଭିତରେ ଝଲକୁଚି ତୁମର ଯେଉଁ ସ୍ୱାର୍ଥିକିକ, ସେ କେତେ ଶ୍ରେଷ୍ଠ । ତା' ଯେବେ କରିପାରିବ, ତୁମ ନିଜ ଭିତରକୁ ଯେବେ ପରିଷ୍କାର ଭାବରେ ଯାଞ୍ଚକରି ପାରିବାର ଶକ୍ତି ରଖିବ, ତା' ହେଲେ ତୁମେ ପରର ଦୋଷକୁ ବଡ଼କରି ନିଜକୁ ଯିଶୁଙ୍କ ସ୍ୱର୍ଗରେ ଝୁଲେଇବ ନାହିଁ ।

ଏକଥା ଦାଶ ଆପଣେଙ୍କ ଜୀବନରେ କଥାକଥାକେ ପ୍ରତିଫଳିତ । କିନ୍ତୁ ତା' ତୁମେ ବୁଝିବ ନାହିଁ; କାରଣ ବୁଝିବାଟା ଯେ ତୁମ ଆତ୍ମବଡ଼ିମା ପ୍ରତି ଗୋଟାଏ ପ୍ରଚଣ୍ଡ ମୁଗୁରମାଡ଼ । ଆଶ୍ଚର୍ଯ୍ୟ ତୁମର ଏ ସୃଷ୍ଟି ! ତୁମ ହାତ ଯାହା ଉପରେ ଲାଗୁଚି, ସେ ସୁନା ଥିଲେ ମଧ୍ୟ ଗୋବର ପାଲଟିଯାଉଚି । ତୁମର ଶନିଦୃଷ୍ଟି ଯାହା ଉପରେ ପଡ଼ୁଚି, ସେ ଦେବତା ହେଲେ ମଧ୍ୟ ନରକର ଦୂତ ବନିଯାଉଚି । ଏଇ ଦେଖନା, ଗୋପବନ୍ଧୁଙ୍କ ସାହିତ୍ୟର ବିଷୟରେ । ତୁମେ ଗୋଟାଏ ସତ୍ୟବାଦୀ ସାହିତ୍ୟିକ ଦଳ ତିଆରି କରିଚ, ଆଉ ଦାଶ ଆପଣେଙ୍କୁ ସେଇ ଦଳର ନେତା ବନେଇଚ । ଅଥଚ ପୃଥିବୀର ଯେ କୌଣସି ବିଶିଷ୍ଟ ସାହିତ୍ୟ ସମାଲୋଚକଙ୍କ ଆଗରେ ସତ୍ୟବାଦୀ ବିଦ୍ୟାଳୟର ଲେଖକମାନଙ୍କ ଲେଖା ଯେବେ ରଖାଯାଏ, ସେ ତା' ଭିତରେ କୌଣସି ସାହିତ୍ୟିକ ଦଳର ସନ୍ଧାନ ପାଇବେ ନାହିଁ । ନୀଳକଣ୍ଠଙ୍କର ଭାଷା, ଭାବ ଓ ଶୈଳୀ ଗୋଦାବରୀଶଙ୍କ ଭାବ, ଭାଷା ଓ ଶୈଳୀଠାରୁ ଯେପରି ପୃଥକ୍; ଲିଙ୍ଗରାଜଙ୍କ ଭାବ, ଭାଷା ଓ ଶୈଳୀ ବା ଦାଶ ଆପଣେଙ୍କର ସେସବୁ ମଧ୍ୟ ସେହିପରି ଅଲଗା । ଏମାନଙ୍କ ମଧ୍ୟରେ ସାମଞ୍ଜସ୍ୟ ବା ଏକତ୍ୱ କିଛି ମାତ୍ର ନ ଥିଲା । ତଥାପି ତୁମେ ଗୋଟାଏ ସତ୍ୟବାଦୀ ସାହିତ୍ୟିକ ଦଳ ତିଆରି କରିବ । ନ କଲେ ଯେ ଏମାନେ ଏକା ଏକା ତୁମଠାରୁ ବଡ଼ ହୋଇଯିବେ; ଗୋଟାଏ ଗୋଷ୍ଠୀର କାତୁଆ ପୋଖରୀରେ ନ ରହି ସାର୍ବଜନୀନ ଓ ଚିରନ୍ତନ ବନିଯିବେ । ଏ କଥାଟା ତୁମ ଦେହ ସହିବ କିମିତି ?

ତା'ପରେ ସାହିତ୍ୟିକ ଭାବରେ ଏମାନଙ୍କର ଗୋଟାଏ ବଡ଼ ଦୋଷ ଯେ ଏମାନେ ସାହିତ୍ୟକୁ ଯୌନଭାବ ଉପରେ ପ୍ରତିଷ୍ଠା କରି ନ ଥିଲେ । ପୃଥିବୀର ସମସ୍ତ

ଉଚ୍ଚକୋଟୀର ସାହିତ୍ୟିକମାନଙ୍କ ସହିତ ଏମାନେ ବୁଝିଥିଲେ ଯେ, ଯୌନଭାବ ମନୁଷ୍ୟ ଜୀବନର ଗୋଟାଏ ଅବାନ୍ତର ନିକୃଷ୍ଟ ଭାବ । ସ୍ତ୍ରୀ' ଉପରେ କୌଣସି ସାହିତ୍ୟ ପ୍ରତିଷ୍ଠିତ ହୋଇ ନ ପାରେ । କିନ୍ତୁ ତୁମ ମତରେ ଏଇଟାହିଁ ବଡ଼ । 'କୋଟି ନାଗଣୀଙ୍କ ଚରୁକ ଧରି ଥେଇ ଥେଇ ହୋଇ ନାଚିବାଟା ହିଁ ସାହିତ୍ୟିକ ଜୀବନର ଚରିତାର୍ଥତା !' ଅଥବା ଗୁଡ଼ାଏ ଉଦ୍‌ଭଟ ଭାବନାର ପ୍ରଖ୍ୟାପନାହିଁ ସାହିତ୍ୟର ଉତ୍କର୍ଷ । ସତ୍ୟବାଦୀରୁ ଯେଉଁସବୁ ଲେଖା ବାହାରିଥିଲା, ସେ ଏ ଶ୍ରେଣୀର ନୁହେଁ, ଦାଶ ଆପଣେ ଜୀବନର ଅତଳ ସମୁଦ୍ର ମନ୍ଥନ କରି ପାଇଥିଲେ ବିଷ ଓ ଅମୃତ । ସେଇ ବିଷ ଓ ଅମୃତ ଜଗତବାସୀଙ୍କୁ ଖୁଆଇବା ଲାଗି ସେ ମୋହିନୀ ରୂପ ସାଜିବାର ଚେଷ୍ଟା କରିଥିଲେ । କେତେ ଦୂର ସଫଳ ହୋଇଛନ୍ତି ସେଥିରେ, ସେକଥା ସମାଲୋଚକ ବିଚାର କରିବ । ହୁଏତ ପାରିନାହାନ୍ତି । ଭାବର ଆବେଗରେ ହୁଏ ତ ତାଙ୍କର ସାହିତ୍ୟିକ ଉନ୍ମାଦନା କ୍ଷୁଣ୍ଣ ହୋଇଯାଇଚି । ତଥାପି ତାଙ୍କର ଚେଷ୍ଟାହିଁ ଥିଲା ପ୍ରକୃତ ସାହିତ୍ୟସାଧନା । ତୁମେ ଏକଥା ମାନିବ ନାହିଁ । ତୁମ ଆତ୍ମତୃପ୍ତି ଲାଗି ଏକଥା ମାନିବାକୁ ତୁମେ ପ୍ରସ୍ତୁତ ନୁହଁ । ସେଥିପାଇଁ ହେତୁରୁ ତାଙ୍କୁ ଗୋଟାଏ ଦଳର ମୁଖ୍ୟ କରିଦେଉଛ । ଗୋଟାଏ ଦଳର ସୀମାବଦ୍ଧ ଗଣ୍ଡି ମଧ୍ୟରେ ତାଙ୍କର ସାହିତ୍ୟିକତା ନ୍ୟୂନ ଓ କ୍ଷୁଣ୍ଣ କରିଦେବାର ଅପପ୍ରଚେଷ୍ଟା କରି ଆସିଚ । କିନ୍ତୁ କର, ଭଲ ଭଲ ହିଁ ରହିବ । ତୁମ ହାତ ଓ ଦୃଷ୍ଟି ସଙ୍ଗେ ସେ ଭେଳ ହୋଇ ନ ପାରେ ।



# ଖଣ୍ଡିଏ ପତ୍ର

ପ୍ରିୟ ସମ୍ପାଦକ ମହାଶୟ,

ଶ୍ରୀ ହଜୁରଙ୍କର କଡ଼ା ହୁକୁମ ଶୁଣି ଗିରିବର ମୁଣ୍ଡ ଏକାବେଳକେ ଚକଡା଼ ପରି ବୁଲିଗଲା । କଥାରେ କହନ୍ତି, 'ଅଳସୁଆର ମୁଣ୍ଡ ସଇତାନର ଦୋକାନ' । ଆପଣଙ୍କର ଏବଂ ସର୍ବଶରେ ଆପଣଙ୍କ ଅଭ୍ୟାଗମାନଙ୍କର ତ କୌଣସି କାମ ନାହିଁ ବା ବନ୍ଧ ନାହିଁ, ବୁଦ୍ଧିର କଥା ତ ଛାଡ଼ । କିନ୍ତୁ ଆପଣମାନଙ୍କର ଗୋଟିଏ କଥା ମୁଁ ଦେଖିଛୁ—ସ୍ୱାଳକର ଆଧିକ୍ୟ । ବିଂଶ ଶତାବ୍ଦୀରେ ଏଇ ସଭ୍ୟମାନଙ୍କ ଜାଣିଛା ପର ଗଳାରେ ଛୁରି ଦେବାକୁ, ପର ମୁଣ୍ଡରେ ଟକ ଟକ ଫୁଟୁଥିବା ତେଲ ଘଲମଟି ଢାଳିଦେବାକୁ ଯେ ଗୋଟିଏ ବଡ଼ ଉପାଦେୟ ସୁଖଦ ସାମଗ୍ରୀ ବୋଲି ବହୁତ ଯୁକ୍ତିତର୍କ ଓ ଆବିଷ୍କାର ଗବେଷଣାଦ ପରେ ଠିକ୍ କରି ନେଇଛ । ସେଇଟା ଶ୍ରୀଗୁରୁମାନଙ୍କୁ ବେଶ୍ ମାଲୁମ । ସୁତରାଂ ନାରଦଙ୍କ କଳି-ମୂଣି ଖଣ୍ଡିକ ହାତରେ ଧରି ଥରେ ଥରେ ଯାହା ଉପରେ ଅନୁଗ୍ରହ କରି ଝାଡ଼ିଦିଅନ୍ତି । କେବଳ ଯେ ତାହାର ସର୍ବନାଶ ହୁଏ, ତା' ନୁହେଁ ତାର ପାଖପଡ଼ଶା ଛପନ ପୁରୁଷ ପର୍ଯ୍ୟନ୍ତ ମଧ୍ୟ ନିଜ ନିଜର ଚୁଟିଖଣ୍ଡିମାନ ପରସ୍ପର ହାତରେ ଦେଇ ଯେ ପୈଶାଚିକ ନୃତ୍ୟ ଲଗାନ୍ତି, ବେଳେବେଳେ ସେଥିରେ ମା ବସୁନ୍ଧରା ଟଳମଳ, ଚନ୍ଦ୍ରସୂର୍ଯ୍ୟ ଛଳଛଳ, ଆଉ ନାରଦ ଦେଖଣାହାରି ବିଚରା—ସେ ତ ଆନନ୍ଦରେ ଏକାବେଳକେ କଲବଲ । ଇନ୍ଦ୍ରଧନୁ ଏବଂ ବିଜୁଳିର ସମ୍ପାଦକଦ୍ୱୟ ସେ ମହତ୍ ଆସୁରର ବୀଜଟି ଏପରି ଭାବରେ ଏ ଦେଶ ମାଟିରେ ରୋପିଦେଇ ଯାଇଛନ୍ତି ଯେ, ଅପାଣ୍ଡବା ଦେଶ ପରି ଏ ଦେଶଟାରେ ଗୋଡ଼ି ମାଟିଗୁଡ଼ାକ ମଧ୍ୟ ପାଠକଙ୍କୁ ଅନୁରୂପ କରେ ।

ରାଧାନାଥଙ୍କର 'ସାହସ' କାମର ଅନୁଚର ହେଲାପରି, ଆପଣମାନଙ୍କ ପାଖୁଆ ଲେଖକଙ୍କର ମଧ୍ୟ ଗୋଟିଏ ବଡ଼ ମନମୋହନିଆ 'ନା' ରହିଛି—ସମାଲୋଚକ । ପାଶ୍ଚାତ୍ୟ ଦେଶରେ ଏରୋପ୍ଲେନ ବା ପ୍ଲିନ୍ ପ୍ରଭୃତି ପରି ଏମାନେ ଏ ଦେଶରେ ବିଂଶ ଶତାବ୍ଦୀର ପ୍ରଥମ ଓ ସର୍ବଶ୍ରେଷ୍ଠ କାରିଗରି । ଏମାନଙ୍କର କେତେଗୁଡ଼ିଏ ଗୁଣ ଅଛନ୍ତି । ଯଥା—

୧—ନେଲ୍‌ସନ ସାହେବ ଠିକ୍ କଣାଆଖିଟି ପାଖରେ ଟେଲିସ୍କୋପ୍ ଧରି ଏମାନେ କବିର ହୃଦୟ ସଙ୍କେତଟା ଏପରି ଖିନ୍ ଖିନ୍ କରି ଦେଖନ୍ତି ଯେ ସେ ବିଚରା 'ତାହି ତାହି' ରଡ଼ି ଛାଡ଼ି ପଳାଏ ।

୨ । ଚୂଡ଼ାନ୍ତ—ଏମାନଙ୍କର ଅନୁଗ୍ରହଟା ଯାହା ଉପରେ ଥରେ ହୋଇଯାଏ, ତା' ଜୀବନରେ ଗୋଟିଏ ମହତ୍ତ୍ୱ ଫୁଟିଉଠେ । ପୁଣି ଏମାନଙ୍କୁ ମାଇଲେ ହାତ ଗନ୍ଧାଏ ।

୩ । ସେକ୍‌ସପିୟରଙ୍କ ଇଆଗୋ—ବ୍ୟାଖ୍ୟା ନିଷ୍ପ୍ରୟୋଜନ । ଆଜି ଗୁରୁ ନିଦର୍ଶନଟା ଏହି ପର୍ଯ୍ୟନ୍ତ । ସମୟ ହେଲେ ଆଉଥରେ ଏହାର ବିଶଦ ବ୍ୟାଖ୍ୟା କରିବାର ବାସନା ରହିଲା କିନ୍ତୁ ଗରିବ ବିଚରା ଶ୍ରୀଗୁରୁଙ୍କ ଚରଣପ୍ରାନ୍ତରେ କି ଅପରାଧରେ ଅପରାଧୀ ଯେ, ଏତେ ବଡ଼ କାମରେ ଅଧମକୁ ନିଯୁକ୍ତ କଲେ ! ଅଇଣ୍ଠା ଘୋଟେଇବା କାମ ଛଡ଼ା ତ ଗରିବ ଆଉ କିଛି ଜାଣେନାହିଁ । ସେଥିରେ ପୁଣି ଏତେ ଧୁରନ୍ଧର ଯେ, ଦି ଚାରିଥର ବୁଢ଼ି ମାଉସୀଙ୍କର ( ଈଶ୍ୱର ତାଙ୍କ ଆତ୍ମାର ସଦ୍‌ଗତି ବିଧାନ କରନ୍ତୁ ) ସମ୍ମାର୍ଜନୀ ପ୍ରହାର ଖାଇବାକୁ ବି ଛାଡ଼ିନାହିଁ । ଏପରି ଗୁଣଧର ବ୍ୟକ୍ତିଙ୍କ ଉପରେ ସମାଲୋଚନାର ଭଣ୍ଡାରଘରଟା ଛାଡ଼ିଦେଲେ କି ସାହସରେ, ସେଇଟା ସବୁ ଆଶ୍ଚର୍ଯ୍ୟ ହେଉଛି । ଗରିବ ଘରକରଟା ଭଗ୍ନାଶିଆ, ତା' ଉପରେ ନହେଲେ ଯାହା ତାହା ହୁକୁମ ହୋଇଗଲା କିନ୍ତୁ ଅଶ୍ୱିନୀବାବୁ ନିତାନ୍ତ ଭଦ୍ରଲୋକ, ବିସ୍ତୃତ କାହାରି ଅନିଷ୍ଟରେ ନ ଥାନ୍ତି, ସହଜ ସରଳ ଭାବରେ ନିଜର ଜଟିଳ ଦୁର୍ବିସହ ଜୀବନଭାର ଏ କୁଟୀଳ ପଙ୍କିଳ ଜଗତରେ ବହନ କରୁଅଛନ୍ତି । ଏ ସଂସାରରେ ତାଙ୍କର ଶତ୍ରୁ କିଏ ? ଯେ ତାଙ୍କ ସହିତ ପଦେଅଧେ କଥାବାର୍ତ୍ତା କରିଚି, ସେ ତାଙ୍କର ବିନମ୍ର ସୌହାର୍ଦ୍ଦ୍ୟ ଏବଂ ସରଳତାରେ ମୁଗ୍‌ଧ ନ ହୋଇ ରହିପାରିନାହିଁ । ସଉତୁଣୀ ମା'ର ସଉତୁଣୀତ୍ୱ ଭୁଲି ତା' ପ୍ରତି ଉପକାର କରିବା କେତେଜଣ ପାରନ୍ତି ? ନିରାଶ୍ରୟ ନିରାହାର ଭାବରେ ଗୋଟିଏ ଦେଶକୁ ଆସି ତା'ର ଅନ୍ନଜଳରେ ଶରୀରରେ ଓଲିଆ ପରି ଗୋଟିଏ ଗୋଟିଏ ପେଟ ବାହାରକରିବା ଭଳି ବଳ ଲାଭ କରିସାରିଲା ପରେ ହଠାତ୍‌ ତାରି ଉରୁ ଦେଶକୁ ଦଂଶନ କରି ରକ୍ତପାନ କରିବା, ଯେତେବେଳେ ସଭ୍ୟ ଓ ଶିକ୍ଷିତ ବ୍ୟକ୍ତିମାନଙ୍କର ଯୁଗଧର୍ମ, ସେତେବେଳେ ଶ୍ରୀ ଅଶ୍ୱିନୀକୁମାର ଘୋଷ ଓଡ଼ିଶାରେ ଓଡ଼ିଆ ସାହିତ୍ୟ ପ୍ରତି ଆଦରର ବହୁତ ଅଭାବ ଥିବା ଜାଣି ମଧ୍ୟ ଅଜସ୍ର ଅର୍ଥ ଓ ସମୟ ବ୍ୟୟ କରି ଯେ ନାଟକଗୁଡ଼ିକ ଲେଖିଗଲେ ତା'ର ସମାଲୋଚନା କି ଅକୃତଜ୍ଞତା ଚିହ୍ନ ନୁହେଁ ? ବିପକ୍ଷ ସମାଲୋଚନାର ଫଳରେ ଲେଖକର ଆଗ୍ରହରେ ଶୀତଳତା ଆସିଗଲେ ଅବଶେଷରେ କ୍ଷତିଗ୍ରସ୍ତ ହେବ କିଏ ? ସାହିତ୍ୟର ଏ ଦୁରବସ୍ଥାରେ ସମାଲୋଚନାର ପ୍ରୟୋଜନ କ'ଣ ?

କେହି କେହି କହନ୍ତି, ସମାଲୋଚନାର ଅର୍ଥ କେବଳ ଅଜସ୍ର ଦୋଷ ପ୍ରଦର୍ଶନ ବା ଅଜସ୍ର ଗୁଣଗାନ ନୁହେଁ, ସମାଲୋଚକ ସାହିତ୍ୟ ଅଦାଲତର ବିଚାରକର୍ତ୍ତା । ନ୍ୟାୟର ପରିମାଣ ଦଣ୍ଡଧରି ଅତି ସୁଦକ୍ଷ ଓ ସୁବିଚାରିତ ଭାବରେ ଲିଖିତ ଓ ଲେଖକର ସ୍ଥାନ ନିରୂପଣ କରିବା ହିଁ ତାହାର କାର୍ଯ୍ୟ । ଏହି ସ୍ଥାନ ନିରୂପଣ ସାହିତ୍ୟ ଜଗତରେ ବଡ଼ ଉପଯୋଗୀ ଏବଂ ଉନ୍ନତିର ଏକମାତ୍ର ଉପାୟ । ଲିଖିତ ବସ୍ତୁର ପ୍ରାଚୁର୍ଯ୍ୟରେ ସାହିତ୍ୟର କ୍ଷେତ୍ର ବୃଦ୍ଧି କରିବାରେ ଦେଶର ବା ଜାତିର କୌଣସି ବିଶେଷ ଉପକାର ସାଧିତ ହୁଏ ନାହିଁ । ଯେପରି ବହୁଳ ଓ ବହୁମୁଖୀ ଭାବରାଶିର ଏକତ୍ରୀକରଣ ମାନସିକ ଉନ୍ନତି ନୁହେଁ, ସେହି ଭାବରାଶିର ସମ୍ୟକ୍ ଉଦ୍‌ବୋଧନା, ସମ୍ମାର୍ଜନା, ବିଶ୍ଳେଷଣା ସମୀକରଣ ଓ ଆତ୍ମା

ସହଜ ସ୍ୱୀକରଣ ହିଁ ମାନସିକ ଉନ୍ନତିର ପନ୍ଥା, ସେହିପରି ସାହିତ୍ୟ ଜଗତରେ ଲିଖିତ ବସ୍ତୁ ମଧ୍ୟରେ ପରସ୍ପର ସହିତ ଆଦର୍ଶର ସହଯୋଗ ଓ ସମ୍ପୂର୍ଣ୍ଣତାର ଏକମୁଖିତ୍ୱ ହିଁ ସାହିତ୍ୟର ପୁଷ୍ଟି ସାଧନ କରେ । ସମାଲୋଚନା ଏହି ଚରମ ଫଳ ଲଭର ଉପାୟ । ସୁତରାଂ ପ୍ରକୃତ ସାହିତ୍ୟିକ ଓ ଲେଖକର ସମାଲୋଚନାର ତୀବ୍ର ପ୍ରହାର ଭୟରେ ପଶ୍ଚାଦ୍‌ପଦ ନ ହୋଇ, ପ୍ରକୃତ ସାଧକ ପରି ସେଥିରେ ନିଜର ଦୋଷ ଓ ଅସମ୍ପୂର୍ଣ୍ଣତା ଉପଲବ୍‌ଧି କରିବା ଉଚିତ ଏବଂ ସେହି ସେହି ଦୋଷମାନଙ୍କର ବର୍ଜନ ନିମନ୍ତେ ସନ୍ନଶୀଳ ହେବା ପ୍ରୟୋଜନ ।

ଆପଣମାନଙ୍କର ଏହିପରି ଯୁକ୍ତିତର୍କ ଅନେକ ଶୁଣିଛୁ । ସେଗୁଡ଼ିକର ଚର୍ବିତ ଚର୍ବଣ କରିବାର ଇଚ୍ଛା ମୋର ନାହିଁ । ତେବେ ଏତିକ ମନେରଖିଥିବେ, ଏଇ ସମାଲୋଚକମାନଙ୍କର ତୀବ୍ର ଦଂଶନରେ କବି କେହି ପ୍ରାଣ ହରେଇଥିଲେ । ଆଉ ଆମ ଓଡ଼ିଶାର ଜଣେ ଖ୍ୟାତନାମା ନାଟକ ଲେଖକ ମଧ୍ୟ ଏହି ସମାଲୋଚକମାନଙ୍କ ଅନୁଗ୍ରହରୁ ପାଗଳ ହୋଇଯାଇଥିବାର କମ୍ବଦନ୍ତୀ ଅଛି । ଆପଣମାନେ ବା ଆପଣମାନଙ୍କ ଗୋଷ୍ଠୀ ଭିତରୁ କେହି ଏସବୁ ଦୁର୍ଘଟଣାର ମୁଣ୍ଡରେ ଫୁଲଚନ୍ଦନ ନେଇଥିଲେ କି ? ଦେଇପାରିବେ କି ? କିଟ୍‌ସ ବଞ୍ଚିଥିଲେ ଦ୍ୱିତୀୟ ମିଲ୍‌ଟନ୍ ହୋଇପାରିଥାନ୍ତେ ଏବଂ ଓଡ଼ିଶାର ନାଟକ ଲେଖକ ପାଗଳ ନ ହୋଇଥିଲେ ଓଡ଼ିଶାର ଦ୍ୱିଜେନ୍ଦ୍ର ଲାଲ୍ ହୋଇପାରିଥାନ୍ତେ । କିନ୍ତୁ ଯେ ସଂସାରରେ ପାପର, ବ୍ୟଭିଚାରର ସପକ୍ଷରେ ବଡ଼୍ ଡାଣ୍ଡରେ ବକ୍ତୃତା ଦେବାକୁ ଲୋକ ମିଳନ୍ତି, ସେ ଯେ ଆମ୍ଭମାନଙ୍କର ଏଇ ସାମାନ୍ୟ ଆପତ୍ତିର ଗୋଟେ ଖେକ୍‌ଠୋକ୍ ମୀମାଂସା ନ କରିବ, ତା'ର ଆଶା ଆମ୍ଭେମାନେ ରଖିନାହୁଁ । ଅତି ସହଜ ଉତ୍ତର ! ସାହିତ୍ୟ କ୍ଷେତ୍ରରେ ଲିଖିତ ବସ୍ତୁ ଯେ କେବଳ ସମାଜର ଆଗରେ ଆଦର୍ଶ ଉପସ୍ଥାପିତ କରେ, ତାହା ନୁହେଁ; ଲେଖକ ନିଜେ ଲୋକପ୍ରିୟ ହୋଇଥିଲେ ଗୋଟେ ବଡ଼ ରକମ ଶକ୍ତି ହୋଇଉଠେ । ଫରାସୀ ପତଙ୍ଗ ପରି ପ୍ରତିଭାର ଉଜ୍ଜ୍ୱଳ ଅନେକ ଅନୁସରଣ କରିବା ଯେପରି ତା'ର ପ୍ରକୃତି । ସେକ୍‌ସପିୟରଙ୍କ ପୋଷାକର ଅନୁକରଣ ବର୍ତ୍ତମାନ ମଧ୍ୟ କରାଯାଏ । ଭଲ୍‌ଟେୟାର ଜୀବିତ ଥିବା ସମୟରେ ଫରାସୀ ଜଗତରେ ଏକମାତ୍ର ଅନୁକରଣୀୟ ଆଦର୍ଶସ୍ୱରୂପ କାର୍ଯ୍ୟ କରୁଥିଲେ । ସାଧାରଣ ମନୁଷ୍ୟ, ଲିଖିତ ବସ୍ତୁର ଆଦର କରୁ କରୁ ଲେଖକର ଖାମଖିଆଲି ଓ ବାହ୍ୟପ୍ରକୃତି ପ୍ରତି ଆସକ୍ତ ହୋଇ-ଉଠେ । ସୁତରାଂ ଲେଖକର ଜୀବନ ମଧ୍ୟ ଉଚ୍ଚଧରଣର ହେବା ପ୍ରୟୋଜନ । ଯଦି କୌଣସି ଲେଖକ ଏତେ ଦୁର୍ବଳ ହୃଦୟ, ଏତେ କୋମଳ ପ୍ରକୃତିର ହୁଅନ୍ତି ଯେ, ଜଣେ ଅନାମଧେୟ ସମାଲୋଚକର ଅଦୃଷ୍ଟ କଷାଘାତରେ ବିବ୍ରତ ହୋଇ ପ୍ରାଣ ବା ବୁଦ୍ଧି ବିସର୍ଜନ ଦିଅନ୍ତି । ତା'ହେଲେ ସେଥିରେ ଅନୁତାପ କରିବାରେ କିଛି ନାହିଁ । କାରଣ ତାଦୃଶ ବ୍ୟକ୍ତିର ଆଦର୍ଶ ସମାଜ ପକ୍ଷରେ ମଙ୍ଗଳଜନକ ହୋଇ ନ ପାରେ, ଏବଂ ତା'ର ତିରୋଭାବ ଏକ ପକ୍ଷରେ ସମାଜର ଅନିଷ୍ଟକର ହେଲେହେଁ, ଅନ୍ୟ ପକ୍ଷରେ ମଙ୍ଗଳ-

ଜନକ । ଆପଣମାନେ ଯାହା ଇଚ୍ଛା ତା' କହନ୍ତୁ ଅଶ୍ୱିନୀବାବୁଙ୍କୁ ତାଙ୍କର ବାଟରୁ ଟଳେଇଦେବା ଆପଣମାନଙ୍କର କାର୍ଯ୍ୟ ନୁହେଁ । ଅଶ୍ୱିନୀବାବୁ ଜରଜୁର୍ଣ, ସୁତରାଂ ଦୁର୍ବଳ ଶରୀର କିନ୍ତୁ ସେହି ପିଞ୍ଜରା ହାଡ଼ ଦୁଇଖଣ୍ଡ ଭିତରେ କୋଟି ସିଂହର ପରାକ୍ରମ ବିଦ୍ୟମାନ । ସତ୍ ସାହସ, ସାଧୁ ଉଦ୍ୟମ ଏବଂ ନିଷ୍ଫଳଙ୍କ ଇଚ୍ଛାର ବର୍ମ, କବଚ ଓ ଶିରସ୍ତାଣ ଯେ ପରିଧାନ କରିଥାଏ, ତା' ପ୍ରତି ସମାଲୋଚକର ଆପାତ ବିଷଦଗ୍ଧ ଶର-ନିପାତ କୌଣସି ଅନିଷ୍ଟ କରିପାରେନାହିଁ । ସୁତରାଂ ଅଶ୍ୱିନୀବାବୁଙ୍କୁ ଗୁଡ଼େ ବଢ଼ାକଢ଼ା କରି ତାଙ୍କର ଆଖିରେ ଲୁହ ଦେଖି ଆପଣମାନେ ଯେ ସୁଖଟା ପାଇବେ ବୋଲି କଳ୍ପନା କରି ବସିଅଛନ୍ତି, ସେ ତ ନିଷ୍ଫଳ ହବ, ତା'ପରେ ଗ୍ରାଧାନାଥଙ୍କର ଈର୍ଷା ପରି ନିଜେ ନିଜେ ଅସହ୍ୟ ଲେଖାଏ କାନ୍ଦି ଅଶ୍ରୁ ପ୍ରେମଟା ସାର୍ଥକ କରିନେବେ ।

ତେବେ ଅଶ୍ୱିନୀବାବୁଙ୍କର ଦୋଷଟା କ'ଣ ? କେଉଁ ଦୁର୍ବିଷହ ଦୁର୍ଗୁଣ ତାଙ୍କଠାରେ ଦେଖି ଆପଣମାନେ ତାଙ୍କ ଉପରେ ଏତେ ରୋଷ୍ସା ? ଗରିବ ବାପୁରା ତ ଆଉ କିଛି ଦେଖିପାରୁନାହିଁ, କେବଳ ଏତିକି ଯେ ସେ ଓଡ଼ିଆରେ ଛ ସାତଖଣ୍ଡ ନାଟକ ଲେଖିଅଛନ୍ତି । ଏ ନାଟକଗୁଡ଼ାକ କି ପଦାର୍ଥ ? ଆମ ଦେଶୀୟ ଆଲଙ୍କାରିକମାନେ କହନ୍ତି, ନାଟକ ଦୃଶ୍ୟକାବ୍ୟ । ଏହି ଦୃଷ୍ଟିରେ ଦେଖିଲେ ନାଟକ ଗୋଟିଏ କାବ୍ୟ ବା କବିତା, ଅର୍ଥାତ୍ ରସସମନ୍ୱିତ, କଳ୍ପନାପ୍ରସୂତ, ଭାବୋଚ୍ଛ୍ୱାସଜଡ଼ିତ, ନୈସର୍ଗିକ ବାକ୍ୟାବଳୀ । ଏହି ବାକ୍ୟାବଳୀର ଆଲୋଚିତ ବିଷୟ ମାନବ ଓ ପ୍ରକୃତି, ପ୍ରକୃତିର ଚିର ପରିବର୍ତ୍ତିତ ବିଭାବ ପ୍ରଭାବରେ ମାନବ ପ୍ରକୃତି ଓ ମନରେ ଆନୁଷଙ୍ଗିକ ପରିବର୍ତ୍ତନ, ପରିବର୍ଦ୍ଧନ ଓ ଆଲୋଡ଼ନ । କିନ୍ତୁ ମାନବ ଏବଂ ପ୍ରକୃତି ଏ ଦୁଇଟି ବସ୍ତୁ ଅସୀମ । ନାଟକ କି ତା' ହେଲେ ଏହି ଅସୀମ ଅନନ୍ତର ଆଲୋଚନା କରେ ? ତାହା କୁହାଯାଇପାରେ ନାହିଁ । ଏ ଦୁଇଟି ପ୍ରକୃତ କାବ୍ୟର କାର୍ଯ୍ୟ, କିନ୍ତୁ ନାଟକ ଦୃଶ୍ୟକାବ୍ୟ । ମାନବ ଏବଂ ପ୍ରକୃତିର ଯେ ବିଭାବଗୁଡ଼ିକ ପ୍ରଦର୍ଶିତ ହୋଇପାରିବ, ସେହି ସବୁହିଁ ନାଟକର ଆଲୋଚ୍ୟ ବିଷୟ । ଏହି 'ଦୃଶ୍ୟ' ଶବ୍ଦରୁ ଆମ୍ଭମାନଙ୍କୁ କେତେଗୁଡ଼ିଏ ବିଷୟ ଅନୁମାନ କରି ନେବାକୁ ହେବ । ପ୍ରଥମତଃ ଦ୍ରଷ୍ଟା ଏବଂ ଦ୍ରଷ୍ଟବ୍ୟ । କିଛି ଜିନିଷ ଦେଖାଇବାକୁ ଥିବ, ତାକୁ ଦେଖିବାପାଇଁ ପୁଣି କେତେକ ଦ୍ରଷ୍ଟା ଥିବେ । ମାନବ ଜୀବନ ଏବଂ ପ୍ରକୃତିରେ ପୁଣି ନିସର୍ଗର ଅନନ୍ତ ବିକାଶରେ ଏପରି କେତେଗୁଡ଼ିଏ ବିଷୟ ଅଛି, ଯାହା ଦେଖାଇବା ସହଜ ନୁହେଁ, ଯଥା : ରତି, ପ୍ରସବନ, ମୃତ୍ୟୁଯନ୍ତ୍ରଣା ଇତ୍ୟାଦି । ଯେ କାଳିଦାସ ଶିବ ପାର୍ବତୀଙ୍କର ରତି ବର୍ଣ୍ଣନାରେ କୁମାରସମ୍ଭବର ଏକ ପୂର୍ଣ୍ଣସର୍ଗ ନିୟୋଗ କରିଅଛନ୍ତି । ସେଇ କାଳିଦାସ ଶକୁନ୍ତଳାରେ ଦୁଷ୍ମନ୍ତ ଓ ଶକୁନ୍ତଳାଙ୍କୁ ନିଭୃତ ନିକୁଞ୍ଜର ମଧ୍ୟରେ ଏକାକୀ ରଖିଦେଇ ପଟ ପରିବର୍ତ୍ତନ କରି ଅଛନ୍ତି । ଜଗତର ଯାବତୀୟ ନାଟକରେ ଏ ଦୃଶ୍ୟଗୁଡ଼ିକର କୌଣସି ପ୍ରତିବିମ୍ବ ନାହିଁ, କାରଣ ସେ ସବୁ ଦ୍ରଷ୍ଟବ୍ୟ ନୁହେ । ଅନନୁଭୂତ ମୃତ୍ୟୁ ଯନ୍ତ୍ରଣା ମଧ୍ୟ ଗ୍ରୀକ୍, ଲାଟିନ୍, ଫ୍ରେଞ୍ଚ୍ ଓ ସଂସ୍କୃତ ନାଟକମାନଙ୍କର ମଧ୍ୟରେ ସ୍ଥାନ

ପାଇନାହିଁ, କାରଣ ମୃତ୍ୟୁ ଜୀବନରେ ଥରେ ଆସେ ଏବଂ ସେ ସମୟରେ ପ୍ରତ୍ୟେକ ଶିଗ୍ର ପ୍ରଶିଗ୍ରରେ ଶୀତଳତାର ଯେ ଢେଉ ଖେଳିଯାଏ, ତାହା ଅଭିନୟରେ ପ୍ରକାଶ କରିବା ଅସମ୍ଭବ । ଆଧୁନିକ ଯୁଗର ନାଟକ ଲେଖକ ଅନେକସ୍ଥଳରେ ରଙ୍ଗମଞ୍ଚରେ ମୃତ୍ୟୁର ବିଭୀଷିକା ସୃଷ୍ଟି କରିବାର ପ୍ରୟାସ କରିଅଛନ୍ତି, କିନ୍ତୁ ଆମ୍ଭେମାନେ ରଙ୍ଗମଞ୍ଚ ରସିକ-ମାନଙ୍କୁ ପଚ୍ଚରୁ—ଅଭିନୟ ସମୟରେ ଦେଶଦେମନାଙ୍କର ଜାନୁପାତ କରି ଜୀବନଭିକ୍ଷା ଓ ତା'ପରେ ଅଥେଲୋଙ୍କ କର୍ତ୍ତୃକ ତାଙ୍କର ଭୀଷଣ ହତ୍ୟା—ଏ ଦୁଇଟା ମଧ୍ୟରେ କେଉଁଟା ଦେଖିବାକୁ ବିଶେଷ ସ୍ପୃହଣୀୟ ? ଜନନୀର ପ୍ରଳାପ ଲୋକର ଚକ୍ଷୁରେ ଲୋତକ ଆଣେ ନା ବୀରପୁତ୍ରର ମୃତ୍ୟୁ ଲୋତକ ଆଣେ ? ସଂସାରର ସମସ୍ତ ଦୃଶ୍ୟ ମଧ୍ୟରେ ପ୍ରକୃତ ମୃତ୍ୟୁ ଯନ୍ତ୍ରଣା ହିଁ ବିଶେଷ ଆବେଗକାରିଣୀ କିନ୍ତୁ ତା'ର ଅଭିନୟ କଦାପି ସମାନ ପରିମାଣରେ ହୃଦୟସ୍ପର୍ଶୀ ହୁଏନାହିଁ । ସେହିପରି ଭାବରେ ପ୍ରକୃତିର ସେ ଭୟାବହ ଝଟିକା ଦୃଶ୍ୟ, ଭୂମିକମ୍ପର ସେ ଆତଙ୍କକାରୀ ପ୍ରକାଶ, ଦୃଶ୍ୟକାବ୍ୟରେ ସ୍ଥାନ ପାଇପାରେ ନାହିଁ । ସୁତରାଂ ନାଟକ କାବ୍ୟ ହେଲେହେଁ ଦୃଶ୍ୟଗୁଣ ହେତୁରୁ କବିତାର ଅନେକ ଅଂଶ ପ୍ରତ୍ୟାଖ୍ୟାନ କରିବାକୁ ବାଧ୍ୟ ହୁଏ । ତା'ପରେ ଦ୍ରଷ୍ଟାର ବିଷୟ—ପ୍ରାଚୀନ ଭାରତରେ ଅଭିନୟ ପ୍ରଦର୍ଶନର ସୁଗମ ସୁରକ୍ଷିତ ଏବଂ ସହଜସାଧ୍ୟ ପନ୍ଥା ନ ଥିଲା । କେବଳ କେତେକ ମାଙ୍ଗଳିକ ଅନୁଷ୍ଠାନମାନଙ୍କରେ ରାଜାଙ୍କର କୌଣସି କୌଣସି ଅନୁଗୃହୀତଙ୍କର ଓ ନିମନ୍ତ୍ରିତ ଅଭ୍ୟାଗତମାନଙ୍କର ପ୍ରମୋଦ ନିମନ୍ତେ ଅସ୍ଥାୟୀ ରଙ୍ଗମଞ୍ଚର ସୃଷ୍ଟିକରି ସ୍ୱରଚିତ ବା ସୁବିଖ୍ୟାତ ନାଟକମାନଙ୍କର ଅଭିନୟ କରୁଥିଲେ କିନ୍ତୁ ସ୍ୱୟଂ ରାଜା ଏବଂ ତାଙ୍କର ଅଭ୍ୟାଗତ ଶ୍ରେଣୀ ସମସ୍ତେ ପଣ୍ଡିତ, ଶାସ୍ତ୍ରବିଶାରଦ ଏବଂ କାବ୍ୟରସ ପରିପ୍ଳୁତ । ସେମାନଙ୍କ ସଭାକୁ ସାଧାରଣ ଅଶିକ୍ଷିତ ବା ଅର୍ଦ୍ଧଶିକ୍ଷିତ ବ୍ୟକ୍ତିର ପ୍ରବେଶ ଅଧିକାର ନ ଥିଲା । ସୁତରାଂ ଲେଖକ ତଥାକଥିତ ଦେବଭାଷା ସଂସ୍କୃତରେ ନିଜର ନାଟକ ଲେଖୁଥିଲେ ଏବଂ ତା' ମଧ୍ୟରେ ଅଶ୍ରାନ୍ତ କବିତାର ସୃଷ୍ଟିକରି କାବ୍ୟାମୋଦୀ ସୁଧୀ-ବର୍ଗଙ୍କୁ ଆପ୍ୟାୟିତ କରୁଥିଲେ ।

ସୁତରାଂ ପୁରୁଣା ନାଟକମାନଙ୍କରେ ଦୀର୍ଘ-ବକ୍ତୃତା, ଅଗ୍ନ୍ୟୁଦ୍‌ଗାରୀ ଚକ୍ରାର ପ୍ରବାହ ପ୍ରଭୃତିର ବଡ଼ ଅଭାବ । ଅନେକ ଗ୍ରୀକ୍ ଏବଂ ଲାଟିନ୍ ନାଟକମାନଙ୍କ ସମ୍ବନ୍ଧରେ ମଧ୍ୟ ସେହି ବିଷୟ ସମାନ ସତ୍ୟ । କିନ୍ତୁ ପରବର୍ତ୍ତୀ ପାଶ୍ଚାତ୍ୟ ସାହିତ୍ୟରେ ସମ୍ଭ୍ରାନ୍ତ ଶାସନର ଉଚ୍ଛେଦ ଏବଂ ସ୍ୱାଧୀନତାର ସାଧାରଣ ପ୍ରଚାର ହେତୁ ଏ କାବ୍ୟାମୋଦ ଉଠିଯାଇ ସାଧାରଣର ସହଜବୋଧ୍ୟ ପ୍ରବୃତ୍ତିନିଚୟର ଚିତ୍ରଣରେ ନାଟକର ବିଷୟ ବ୍ୟବସ୍ଥିତ ହେଲା । ସେକ୍‌ସପିଅରଙ୍କର ନାଟକରେ କାବ୍ୟରସ ସ୍ଥାନେ ସ୍ଥାନେ ବଡ଼ ଚମତ୍କାର ଭାବରେ ଦେଖାଯାଏ କିନ୍ତୁ ତାଙ୍କ ପରେ ଇଂରେଜୀ ସାହିତ୍ୟରେ ଭ୍ୱାଇଚର୍ଲି, ଶେରିଡାନ୍, ଡ୍ରାଇଡେନ, ଆଡିସନ୍ ପ୍ରଭୃତି ଫରାସୀ ସାହିତ୍ୟରେ ଭଲଟେୟାର, ଭିକ୍ଟର ହୁଗୋ ଏବଂ ମୋଲିଏର ପ୍ରଭୃତି ଜର୍ମାନ ସାହିତ୍ୟରେ ଶିଲର ପ୍ରଭୃତି ନାଟକ ଲେଖକ-

ମାନଙ୍କର ପୁସ୍ତକମାନଙ୍କରେ ଯେପରି ବହୁଳତା ଦେଖାଯାଏନାହିଁ । ଗେଟେ ତାଙ୍କର ଫାଉଷ୍ଟରେ ଏହାର ପୁନରୁଦ୍‌ଭବ କରିବାର ପ୍ରୟାସ କରିଥିଲେ ଏବଂ ତାଙ୍କର ଦେଖାଦେଖି ଇଂଲଣ୍ଡରେ ବାଇରନ୍, ଶେଲି, କିଟ୍‌ସ୍ ମଧ୍ୟ ମାତିଯାଇଥିଲେ କିନ୍ତୁ ତାହା ବେଶୀକାଳ ସ୍ଥାୟୀ ହୋଇପାରିନାହିଁ । ବର୍ତ୍ତମାନ ଯୁଗରେ ପାଶ୍ଚାତ୍ୟ ଦେଶର ବିଖ୍ୟାତ ନାଟକ ଲେଖକ ଇବ୍‌ସେନ, ମାଟେଲରଲିଙ୍କ, ବର୍ଣ୍ଣାଡ଼ଶ ଏବଂ ଷ୍ଟ୍ରିଣ୍ଡବର୍ଗ ପ୍ରଭୃତିଙ୍କର ଲେଖାରେ ଏ କବିତାର ଉଚ୍ଛ୍ୱାସ ଅତି କମ୍ । ମାତ୍ର ମାନବବୃତ୍ତିର ଆଲୋଚନା ଏବଂ ପ୍ରତ୍ୟାଲୋଚନା ଅତି ବେଶୀ । କହିବା ବାହୁଲ୍ୟ, ଆଧୁନିକ ଭାରତୀୟ ନାଟକ ପାଶ୍ଚାତ୍ୟର ପଦାଙ୍କ ଅନୁସରଣରେ କଳ୍ପିତ ।

ତୃତୀୟରେ, ଦର୍ଶସ୍ପୃହା । ପ୍ରାଚୀନ କାଳରେ ଦର୍ଶସ୍ପୃହାମାନେ ନିଜେ ଶିକ୍ଷିତ, ସୁତରାଂ ନାଟକର ଭାଷା ଓ ଭାବ ଶିକ୍ଷିତର ଉପଯୋଗୀ ହୋଇଥିଲା । କାରଣ ଅଭିନେତା ଅଭିନୀତ ବସ୍ତୁର ଭାବ ଓ ଶକ୍ତି ନିଜେ ହୃଦୟଙ୍ଗମ ନ କରିପାରିଲେ, ତାହାର ସମ୍ୟକ୍ ଜୀବନ୍ତ ପ୍ରତିବିମ୍ବ ଦର୍ଶକମାନଙ୍କ ସମକ୍ଷରେ ଦେଇପାରିବ ନାହିଁ କିନ୍ତୁ କାଳକ୍ରମେ ଅଭିନୟ ବିଦ୍ୟା ପ୍ରତି ଲୋକମାନଙ୍କର ଅଶ୍ରଦ୍ଧା ଏବଂ ଘୃଣା ଆସିଗଲା । ଶିକ୍ଷିତ ବ୍ୟକ୍ତିମାନେ ଅଭିନେତାର ସଜ୍ଜାରେ ଭୂଷିତ ହୋଇ ବିଦ୍ୱନ୍ମଣ୍ଡଳୀ ନିକଟରେ ଉପସ୍ଥିତ ହେବାକୁ ମର୍ଯ୍ୟାଦାହାନି ବୋଲି ଭାବିଲେ । ଫଳରେ ଅଭିନୟ ବ୍ୟବସାୟ ଅଶିକ୍ଷିତ ଏବଂ ଅର୍ଦ୍ଧ-ଶିକ୍ଷିତମାନଙ୍କର କାର୍ଯ୍ୟ ହୋଇଉଠିଲା । ତା' ସଙ୍ଗେ ସଙ୍ଗେ ଅଭିନୀତ ବସ୍ତୁର ଭାବ ଓ ଭାଷାରେ ବହୁତ ପରିବର୍ତ୍ତନ ହେଲା । ଭାଷା ସରଳ ଏବଂ ଭାବ ସରଳ ମାନବ ପ୍ରବୃତ୍ତି-ନିଚୟ ସମର୍ଥିତ କିନ୍ତୁ ଆଧୁନିକ ଯୁଗରେ ପୁଣି ପୂର୍ବାବସ୍ଥାର ଉଦୟ ହେଲେହେଁ ଭାଷାର କୌଣସି ବିଶେଷ ପରିବର୍ତ୍ତନ ହୋଇନାହିଁ । ମାତ୍ର ଭାବ ଅପେକ୍ଷାକୃତ ଜନ-ପ୍ରବୃତ୍ତିବର୍ଜିତ ।

ନମସ୍କାର ସମ୍ପାଦକ ମହାଶୟ ! ଏଥର ବଡ଼ ଠକିଗଲେ । ଆଶା କରିଥିଲେ ବୋଲମଟେ କିଛି ଭକ୍ତି ଓଲିକ ଏସିଡ୍ ପଣି ଅଶ୍ୱିନୀବାବୁଙ୍କ ଉପରେ ଅଜାଡ଼ିଦେବ ଆଉ ଆପଣ ସେ ମଧୁର ଦୃଶ୍ୟଟି ଦେଖି ନୟନ ସାର୍ଥକ କରିବେ । କିନ୍ତୁ ହେଲା ନାହିଁ, ଗୁରୁଙ୍କ ଉପରେ ନିର୍ଭର କଲେ ଯେ ଦଶା ହୁଏ । ତେବେ ଶ୍ରୀଗୁରୁଙ୍କୁ ଆଶ୍ୱାସ ଦେଇପାରେ ଯେ, ଛୁରିଟାକୁ ଯେତେ ବେଶୀ ପଜେଇ ନେବାକୁ ହୁଏ, ତାହାର କାମଟା ସେତେ ଚଟାପଟ ହୋଇଉଠେ । ଏଇ ଆଶାର ହାଓଆରେ ପେଟ ପୁରେଇ କିଛିଦିନ ବସିଯାଆନ୍ତୁ । ତା'ପରେ ଫେରେ ଯେତେବେଳେ ଗୋଲମ ଚରଣ ଦର୍ଶନ କରିବ ଆଉ ନୂଆ କିଛି ଉପଭୋଗ କରିବାକୁ ପାଇବେ । ଆଉ ଅଶ୍ୱିନୀବାବାବୁଙ୍କ ସମ୍ବନ୍ଧରେ, ସେ ଆମ୍ଭମାନଙ୍କୁ ବେଶ୍ ଜାଣନ୍ତି । ସେ ଆପଣଙ୍କ ପରି ଦୁଷ୍ଟିଲ୍ଲାର ଦାଉରେ ଗୋଟିଏ ମାତ୍ର ମାତ୍ର ରାତି କାଟିଦେ ନାହିଁ, ଏ ଧ୍ରୁବ କଥା ବିଶ୍ୱାସ କରନ୍ତୁ । □

ମାସିକ ପତ୍ରିକା ସହକାର, April/May—1925, ବୈଶାଖ—୧୩୩୨ ପୃ : ୩—୮ ।

# ବିଦ୍ୟାପତି

ବିଦ୍ୟାପତି ବଙ୍ଗୀୟ ଆଦିମ କବି ଏବଂ ତାଙ୍କର ଜୀବିତ ସମୟ ପଞ୍ଚଦଶ ଖ୍ରୀଷ୍ଟାବ୍ଦ ବୋଲି ନିର୍ଣ୍ଣୟ କରାଯାଇଅଛି । ଏ ସମ୍ବନ୍ଧରେ ଅବଶ୍ୟ ବଙ୍ଗୀୟ ସାହିତ୍ୟରେ ବହୁତ ଆଲୋଚନା, ଆଲୋଡ଼ନ ଚାଲିଆସୁଅଛି ଏବଂ ସମୟ ଓ ସ୍ଥାନ ନିର୍ଣ୍ଣୟରେ ଐକ୍ୟମତ ଆସିପାରିନାହିଁ । ସେସବୁ ସମାଲୋଚକ-ସୁଲଭ 'ଖୋଳ ପରବତ ମାର ମୂଷା' ନୀତି ପ୍ରତି ମୋହର ବିଶେଷ ସହାନୁଭୂତି ନଥାଏ ଏବଂ ତାହାର ଅବତାରଣା ମୋର ଉଦ୍ଦେଶ୍ୟସିଦ୍ଧି ବିଷୟରେ ଅପ୍ରାସଙ୍ଗିକ ବୋଲି ମନେକରେ । ମୁଁ ବିଦ୍ୟାପତିଙ୍କର ଯଥାସମ୍ଭବ ଅନୁବାଦକ ମାତ୍ର ଏବଂ ଏ ଅନୁବାଦରେ ହସ୍ତକ୍ଷେପ କରିବାରେ ମୋର ଦୁଇଟି ପ୍ରଧାନ ଉଦ୍ଦେଶ୍ୟ ରହିଛି ।

୧ମ—ବିଦ୍ୟାପତି ବୈଷ୍ଣବ ଏବଂ ତାଙ୍କ ଲେଖାର ଅଧିକାଂଶ ସ୍ଥାନରେ ରାଧାକୃଷ୍ଣ ପ୍ରେମଲୀଳା ସମ୍ପର୍କୀୟ । ମୁଁ ଆମ୍ଭମାନଙ୍କର ଦୀନକୃଷ୍ଣ, ଅଭିମନ୍ୟୁ, ପିଣ୍ଡିକ ଶ୍ରୀଚନ୍ଦନ ପ୍ରଭୃତି ଅପରୂପ ବୈଷ୍ଣବ କବିମାନଙ୍କର ଅମିୟ କବିତା ନିର୍ଝର ଅତୃପ୍ତ ପ୍ରାଣରେ ବହୁବାର ପାନ କରି; ମୋର କେତେକ ବନ୍ଧୁମାନଙ୍କର ପରାମର୍ଶରେ ବଙ୍ଗଳାର ପ୍ରସିଦ୍ଧ ବୈଷ୍ଣବ କବି ବିଦ୍ୟାପତି ଏବଂ ଚଣ୍ଡୀଦାସଙ୍କର କବିତାଗୁଡ଼ିକ ପଢ଼ିବାକୁ ଉତ୍ସାହିତ ହୋଇ କେତେକ ଦିନ ତଳେ ପ୍ରଥମତଃ ବିଦ୍ୟାପତିଙ୍କ ଆରାଧନା କରିବାରେ ଉଦ୍ୟତ ହୋଇଥିଲି । ପ୍ରଥମ କେତୋଟି ଛନ୍ଦ ପଢ଼ି ମୁଁ ବାସ୍ତବିକ ସେଥିରେ ଯଥେଷ୍ଟ ପ୍ରୀତି ଲାଭ କଲି । ବିଦ୍ୟାପତି ତାଙ୍କର ବର୍ଣ୍ଣନା ଓ ଭାବ ସମୂହର ଯୋଜନା ବାସ୍ତବିକ ଓଡ଼ିଆ । ତାଙ୍କର ପ୍ରତ୍ୟେକ ଛନ୍ଦ କୌଣସି ନା କୌଣସି ଓଡ଼ିଆ କବିଙ୍କର ସୂଚନା କରାଇଦିଏ । ସ୍ଥାନେ ସ୍ଥାନେ ଭଞ୍ଜ ପ୍ରଭୃତିଙ୍କର ଛାୟା ପୂର୍ଣ୍ଣମାତ୍ରାରେ ପଡ଼ିଛି । ମୁଁ କେବଳ ଗୋଟିଏ ପଦ ନେଇ ତାହାର ଟିକିଏ ସୂଚନା କରିଦେଉଛି । ବିଦ୍ୟାପତି କୃଷ୍ଣଙ୍କର ପୂର୍ବରାଗ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି—

"ଯଦ୍ୟପି ପ୍ରୟାଗେ ଯାଗ ଶତ ଜାଗଇ
ସୋ ପାଏ ସେ ବହୁଭାଗୀ ।"

ଅର୍ଥାତ୍, ଯେ ପ୍ରୟାଗ ତୀର୍ଥରେ ଶତଯଜ୍ଞ କରିଥିବ, ସେହି ବହୁ ଭାଗ୍ୟବାନ ବ୍ୟକ୍ତି ରାଧାଙ୍କୁ ପାଇପାରିବ । ଭକ୍ତକବି ତାଙ୍କ ପ୍ରେମସୁଧାନିଧିରେ ଲେଖିଛନ୍ତି ଯେ—

ରସିକ ବିଷ୍ଣୁର କରେ ଦୀପଦାନ କାର୍ତ୍ତିକରେ
ପ୍ରୟାଗେ ସ୍ନାନ ମକରେ ଯେହୁ ନକରେ ଇତ୍ୟାଦି ।

ମୁଁ ଏହି ଉଦାହରଣଟି ଦେଲି, କାରଣ ଭଞ୍ଜଙ୍କର ଏ ଗ୍ରନ୍ଥଟି ବହୁତ ଶ୍ରୁତ ଓ ବହୁ ଆଦୃତ ।

ଅବଶ୍ୟ ମୁଁ ଏହା କହିଲାବେଳେ ଭାବେନାହିଁ ଯେ, ଭଞ୍ଜେ ବିଦ୍ୟାପତିଙ୍କଠାରୁ ଏ ବିଷୟ ଗ୍ରହଣ କରିଛନ୍ତି ବା ଉତ୍କଳୀୟ ବୈଷ୍ଣବ କବିମାନଙ୍କର ଅମୀୟ ନିର୍ଝରର ଜନ୍ମସ୍ଥାନ ଗୌଡ଼ୀୟ କବି ବିଦ୍ୟାପତିଙ୍କର କବିତାମାରକତ-ଶୈଳ । ବିଦ୍ୟାପତି ଉତ୍କଳୀୟ କବିମାନଙ୍କର ଭାବାନୁପ୍ରାଣିତ ହେବାର କଳ୍ପନା କରିବା ମଧ୍ୟ ସମାନ ଧୃଷ୍ଟତା । ଭାରତର ତତ୍କାଳୀକ ଅବସ୍ଥା ଦୃଷ୍ଟିରେ ଏବଂ ବିଦ୍ୟାପତି ସୁଦୂର ମିଥିଳାର ଓ ଦାସେ ବା ସାମନ୍ତସିଂହାର ଉତ୍କଳର ଦକ୍ଷିଣାଂଶ ବାସିନ୍ଦା ବୋଲି ଜଣାଥିବା ସ୍ଥଳେ, ଏପରି ଆଦାନପ୍ରଦାନ ସମ୍ଭବପର ନୁହେଁ । ଯଦି ଦୈବବଶରୁ ସେପରି କିଛି ଘଟିଥାଏ ବା ଘଟିଥିବାର ଅନୁମାନ କରାଯାଏ, ତା'ହେଲେ ସେ ନିଗୂଢ଼ ବିଷୟରେ ଉଦ୍‌ଘାଟନ ଭାର ଭବିଷ୍ୟତ ସମାଲୋଚକମାନଙ୍କ ସ୍କନ୍ଧରେ ନ୍ୟସ୍ତକରିବା ମୋ ପକ୍ଷରେ ସୁବିଧାଜନକ ।

ବିଭିନ୍ନ ଦେଶୀୟ କବିମାନଙ୍କର ଭାବନାସ୍ରୋତର ଏକଦେଶୀୟତାର ଅନ୍ୱେଷଣ ଜାତୀୟସାହିତ୍ୟର ସମୃଦ୍ଧି ଓ ସମ୍ୟକ୍‌ବୋଧରେ ସହାୟତା କରେ । ଭିନ୍ନ ସାହିତ୍ୟର ଅନୁବାଦ କେବଳ ନୂତନ ଶିକ୍ଷା ଉଦ୍ଦେଶ୍ୟରେ କରାଯାଏନାହିଁ, ପୁରାତନତ୍ୱ ଓ ନିଜତ୍ୱର ଭାବଗ୍ରହଣ ଓ ବିବୋଧନ ପକ୍ଷରେ ମଧ୍ୟ ଏହାର ପ୍ରୟୋଜନୀୟତା ନିତାନ୍ତ ଅଳ୍ପ ନୁହେ । ଘରର ରତ୍ନ ଯେତେ ଉଜ୍ଜ୍ୱଳ ହେଲେ ମଧ୍ୟ ବାହାର ରତ୍ନ ସହିତ ତୁଳନା ନ ହେଲେ, ପ୍ରକୃତ ମୂଲ୍ୟ ନିର୍ଦ୍ଧାରଣ କରାଯାଇପାରେ ନାହିଁ । ପୁଣି ଦୀର୍ଘ ସହବାସ ପରେ କୌଣସି ବିଷୟବିଶେଷର ଅଶ୍ରାନ୍ତ ଆଲୋଡ଼ନରେ ତାହାର ମୂଲ୍ୟ ଓ ଗରିମା ଆପାତତଃ କମି-ଯାଇଥାଏ । ବିପରୀତ ପକ୍ଷରେ ମଧ୍ୟ ଜାତିଗତ ଦୋଷ ଭିନ୍ନ ଆଦର୍ଶର ସମ୍ମୁଖୀନ ଓ ସମବିବେଚ୍ୟ ନହେଲେ ତିରୋହିତ ହୁଏନାହିଁ । ମନୁଷ୍ୟ ଜୀବନରେ ପ୍ରବାସ ଯେପରି ଉପକାରୀ, ଜାତୀୟ ସାହିତ୍ୟ ସମ୍ବନ୍ଧରେ ମଧ୍ୟ ପରଦେଶୀ ସାହିତ୍ୟର ଆଲୋଚନା ସମାନ ଉପଯୋଗୀ । ଆତ୍ମତୃପ୍ତ ଜୀବନ ସୁଖମୟ ହୋଇପାରେ, ନିର୍ଦ୍ୱନ୍ଦ୍ୱ ନିଶ୍ଚଳ ହୋଇପାରେ କିନ୍ତୁ ଗତିଶୀଳ ନୁହେ । ତାହା ଆବଦ୍ଧ ଜଳାଶୟ ତୁଲ୍ୟ, ଇତର ସ୍ୱାସ୍ଥ୍ୟର ଉଚ୍ଛେଦକାରୀ । ଜାତୀୟ ଆଦର୍ଶକୁ ସୁନ୍ଦର, ସଂସ୍କୃତ ଏବଂ ପୂର୍ଣ୍ଣତାଭିମୁଖୀ କରିବାକୁ ହେଲେ, ଭିନ୍ନ ଆଦର୍ଶ ସହିତ ତାହାର ପରିମାଣ ତୁଳନା ଓ ମିଶ୍ରଣ ନିତାନ୍ତ ପ୍ରୟୋଜନ ।

ଏହି ଭାବରେ ପ୍ରାୟ ପ୍ରତ୍ୟେକ ଉନ୍ନତ ସାହିତ୍ୟ ନିଜର ଅଙ୍ଗକୁ ବୈଦେଶିକ ବସନଭୂଷଣରେ ଅଳଂକୃତ କରିଥାଏ । ଇତିହାସ ପାଠକ ମାତ୍ରକେ ଅବଗତ ଥିବେ, ଇଂରେଜୀ ସାହିତ୍ୟର ପ୍ରଥମ ବିକାଶ ବୈଦେଶିକ ଗ୍ରୀକ୍ ଓ ଲାଟିନ୍ ଗ୍ରନ୍ଥମାନଙ୍କର ଉଜ୍ଜ୍ୱଳ ଆଲୋକରୁ; କିନ୍ତୁ ସେହି ବୈଦେଶିକ ଗ୍ରନ୍ଥମାନଙ୍କର ଅନୁବାଦ ହେଲା, ପ୍ରଥମ ବିକାଶର ବହୁତ ପରେ, ଡ୍ରାଇଡେନ୍, ପୋପ୍ ପ୍ରଭୃତି କବିମାନଙ୍କର ଉନ୍ନତି ସମୟରେ ।

ଆମ୍ଭମାନଙ୍କର ପ୍ରତିବେଶୀ ବଙ୍ଗୀୟ ସାହିତ୍ୟର ଅଙ୍ଗ ବୈଦେଶିକ ଗ୍ରନ୍ଥମାନଙ୍କର ଅନୁବାଦ ଦ୍ୱାରା ପରିପୁଷ୍ଟ । କବିମାନଙ୍କର କଥା ଛାଡ଼ିଦେଲେ, 'କାକା ଟମେର କୁଟୀର' ପର୍ଯ୍ୟନ୍ତ ମଧ୍ୟ ବାଦ୍ ଯାଇନାହିଁ । ଦୁଃଖର କଥା, ଉତ୍କଳ ସାହିତ୍ୟରେ ଏହି ଅନୁବାଦର ବଡ଼ ଅଭାବ । ସମୟରେ ଅସମୟରେ ଓଡ଼ିଶାର ଦାରିଦ୍ର୍ୟ ସମସ୍ତ ଜାତୀୟ ଅନୁଷ୍ଠାନର ପତନର କାରଣ ବୋଲି ଦେଶ ନାୟକମାନେ ଗାଇ ଚାଲନ୍ତି । କିନ୍ତୁ ସାହିତ୍ୟର ଅବନତି ନିମନ୍ତେ ଦାରିଦ୍ର୍ୟ ବେଶୀ ପରିମାଣରେ ଦାୟୀ ହୋଇ ନ ପାରେ । ଆଗ୍ରହ ଥିଲେ ଏବଂ ଆଦର୍ଶର ସ୍ଥିରତା ଥିଲେ, ସାଧାରଣ ଲୋକ ସମସ୍ତ ଦାରିଦ୍ର୍ୟ ସତ୍ତ୍ୱେ ସାହିତ୍ୟ ପଢ଼ିବାକୁ କଦାପି ପରାଙ୍ମୁଖ ହୁଅନ୍ତା ନାହିଁ । ଭଞ୍ଜୀୟ ସାହିତ୍ୟ ଓ ରାଧାନାଥୀୟ ସାହିତ୍ୟର ଲୋକପ୍ରିୟତା ତୁଳନା କଲେ ଏହା ବେଶ୍ ଉପଲବ୍ଧ ହୁଏ । ଆମର ସାହିତ୍ୟରଥୀମାନେ ପ୍ରାଚୀନ ଜାତୀୟଆଦର୍ଶକୁ ପରିସ୍ଫୁଟ କରିବାକୁ ଚେଷ୍ଟା କରନାହାନ୍ତି, ମାତ୍ର ତାକୁ ବହିଷ୍କାର କରି ତା'ର ସ୍ଥାନରେ ଏକ ଅଭିନବ ପ୍ରଥା ସୃଷ୍ଟି କରିବାକୁ ପ୍ରୟାସ ପାଇଅଛନ୍ତି । ସାହିତ୍ୟ କ୍ଷେତ୍ରରେ ଯଥେଚ୍ଛାଚାର ବଡ଼ କ୍ଷତିକାରକ । ଆମ୍ଭେମାନେ ବର୍ତ୍ତମାନ ସେହି କ୍ଷତି ଭୋଗୁଅଛୁଁ ।

ସାହିତ୍ୟର ଏ ଦଶା ହେଲେ, ସମାଲୋଚନାର ଦଶା ମଧ୍ୟ ଅତ୍ୟନ୍ତ ଶୋଚନୀୟ । ନିରପେକ୍ଷ ସମାଲୋଚନା ଓଡ଼ିଆ ସାହିତ୍ୟରେ ନାହିଁ ବୋଲି କହିଲେ ଚଳେ । ଜନଗତ ଈର୍ଷ୍ୟା, ଆକ୍ରୋଶ, ସମାଲୋଚକଙ୍କର ସଙ୍କୀର୍ଣ୍ଣ ମତର ବୃଥା ଆସ୍ଫାଳନ ହିଁ ବର୍ତ୍ତମାନ ସମାଲୋଚନା ନାମରେ ଅଖ୍ୟାତ । ତାହାର ଉଦାର ଦୃଷ୍ଟିରେ, ନିରପେକ୍ଷ ଭାବରେ, କବିର ସମସ୍ତ ସୁବିଧା ଅସୁବିଧାକୁ ଲକ୍ଷ୍ୟ କରି ସାର୍ବଜନୀନ ସମାଲୋଚନା କରିବା ଓଡ଼ିଶାରେ ଗୋଟିଏ ନୂତନ କଥା । ଏହି ସମସ୍ତ କାରଣରୁ ଓଡ଼ିଶାରେ କୌଣସି ଶ୍ରେଣୀର ସାହିତ୍ୟ ପୂର୍ଣ୍ଣମାତ୍ରାରେ ଅଥବା ସନ୍ତୋଷଜନକ ରୂପେ ଗୃହୀତ ହୋଇନାହିଁ । ସେହି ହେତୁରୁ ବର୍ତ୍ତମାନ ଭଞ୍ଜୀୟ ସାହିତ୍ୟ ଓ ରାଧାନାଥୀୟ ସାହିତ୍ୟର ପକ୍ଷପାତୀଙ୍କ ମଧ୍ୟରେ ଘୋର ବିବାଦ । ଇନ୍ଦ୍ରଧନୁ ଏବଂ ବିଜୁଳିର ଆନ୍ଦୋଳନ ଠାରୁ ଆରମ୍ଭ କରି ବିଜୟଚନ୍ଦ୍ର ମଜୁମଦାରଙ୍କର ଭଞ୍ଜ ବହିଷ୍କାରଣର ଆଦେଶ ପର୍ଯ୍ୟନ୍ତ ଏକ ସୂତ୍ରରେ ଗ୍ରଥିତ, ଗୋଟିଏ ମାତ୍ର ଜାତୀୟ ଆଦର୍ଶ ଅଭାବର ବିଷମୟ ଫଳ । ଏହି ଉଦ୍ଦେଶ୍ୟରେ ମୁଁ ବର୍ତ୍ତମାନ ବିଦ୍ୟାପତିଙ୍କର ଅନୁବାଦ ଆରମ୍ଭ କଲି, ଭଗବାନ୍ ସହାୟ ହେଲେ ତୁଳସୀ ଦାସ, ଚଣ୍ଡୀ ଦାସ ପ୍ରଭୃତି ଭିନ୍ନ ପ୍ରାଦେଶିକ ପ୍ରାଚୀନ କବିମାନଙ୍କର ଅନୁବାଦ କରିବାର ଇଚ୍ଛା ମଧ୍ୟ ରଖିଛି ।

ଏ ସମ୍ବନ୍ଧରେ ଗୋଟିଏ ବଡ଼ ପ୍ରଶ୍ନ ହୋଇପାରେ, ଚଣ୍ଡୀଦାସ ଓ ବିଦ୍ୟାପତି ବଙ୍ଗୀୟ କବି ଥିବା ସ୍ଥଳେ ଏବଂ ଓଡ଼ିଶାର ଶିକ୍ଷିତ ମାତ୍ରକେ ବଙ୍ଗଳା ଭାଷା ଓ ସାହିତ୍ୟର ଯଥା କଥଞ୍ଚିତ ଅଭିଜ୍ଞ ଥିବା ସ୍ଥଳେ, ସେମାନଙ୍କ ଅନୁବାଦ କରିବା ସମୟର ବୃଥା ବିକ୍ଷେପ ମାତ୍ର । ଏ ଅପବାଦ ବିରୋଧରେ ମୋର ଦୁଇଟି କଥା କହିବାର ଅଛି । ପ୍ରଥମତଃ,

ବଙ୍ଗୀୟ କବି ହେଲେ ମଧ୍ୟ, ପ୍ରାଚୀନ ଗୌଡ଼ୀୟ ଭାଷାରେ ତାଙ୍କର କାବ୍ୟାବଳୀ ଲେଖିଅଛନ୍ତି । ପ୍ରାଚୀନ ଓ ଆଧୁନିକ ବଙ୍ଗୀୟ ଭାଷା ମଧ୍ୟରେ ଚସର ଓ କିଙ୍ଗଜେମ୍ସଙ୍କ ଇଂରାଜୀ ଭାଷା ଓ ଟେନିସନ୍ ଏବଂ ହାର୍ଡ଼ିଙ୍କର ଇଂରାଜୀ ଭାଷା ମଧ୍ୟରେ ଯେ ପ୍ରଭେଦ, ସେହି ପ୍ରଭେଦ । ବର୍ତ୍ତମାନ ପ୍ରାଚୀନ ଓ ଆଧୁନିକ ଓଡ଼ିଆ ଭାଷା ମଧ୍ୟରେ ବିଶେଷ ପ୍ରଭେଦ ପରିଲକ୍ଷିତ ହୁଏନାହିଁ । ସେଥିପାଇଁ ଉତ୍କଳୀୟମାନଙ୍କୁ ଏ ବିଷୟ କିଛିଏ ଆଶ୍ଚର୍ଯ୍ୟ ଲାଗିପାରେ । କିନ୍ତୁ ପ୍ରକୃତରେ ରବୀନ୍ଦ୍ରନାଥ ଠାକୁର ଓ ଦ୍ୱିଜେନ୍ଦ୍ର ଲାଲ ରାୟଙ୍କର ବଙ୍ଗଳା ଭାଷା ପଢ଼ି ବିଦ୍ୟାପତି ଓ ଚଣ୍ଡୀ ଦାସଙ୍କର ବଙ୍ଗଳା ପଢ଼ି ବୁଝିବା ଯଥେଷ୍ଟ କଷ୍ଟକର । ସେଥିପାଇଁ ସେମାନଙ୍କର ଅନୁବାଦ ପ୍ରୟୋଜନ । ଦ୍ୱିତୀୟରେ—ସାହିତ୍ୟ କେତେଜଣ ଶିକ୍ଷିତଙ୍କର ନୁହେ । ସାହିତ୍ୟ ସମୁଦାୟ ଜାତିର ସମ୍ପତ୍ତି, ଶିକ୍ଷିତ ଅଶିକ୍ଷିତ ସମସ୍ତଙ୍କର ଆମୋଦ ଏବଂ ବିନୋଦନ ନିମନ୍ତେ ସାହିତ୍ୟର ସୃଷ୍ଟି । ସୁତରାଂ କେତେଜଣ ଶିକ୍ଷିତ ବ୍ୟକ୍ତି ବଙ୍ଗଳା ପଢ଼ି ବୁଝିପାରିଲେ ଯଥେଷ୍ଟ ହେବ ନାହିଁ । ସାଧାରଣ ଅଶିକ୍ଷିତ ଏବଂ ପୁରାଣବିଦ୍ୟା-ଶିକ୍ଷିତଙ୍କ ସମ୍ମୁଖରେ ବୈଦେଶିକ ସାହିତ୍ୟର ଭଲ ମନ୍ଦ ଉପସ୍ଥାପିତ କରି ତୁଳନାର ଭାବ ସୃଷ୍ଟି କରିବା ସାହିତ୍ୟ ନିମନ୍ତେ ଓ ସାହିତ୍ୟିକମାନଙ୍କ ନିମନ୍ତେ ମଧ୍ୟ ପରମ ଉପକାରୀ ।

ଏ ଅନୁବାଦରେ ହସ୍ତକ୍ଷେପ କରିବାରେ ମୋର ଂଯ୍ୟ ଉଦ୍ଦେଶ୍ୟ ଭଞ୍ଜୀୟ ତଥା ପୁରାତନ କବିମାନଙ୍କର ଅଶ୍ଳୀଳତା ପ୍ରଯୁକ୍ତ ଅପାଠ୍ୟ ଦୋଷ ସମ୍ଭାବନାର ନିର୍ମୂଳ ଅପସାରଣ । ପ୍ରାଚୀନ କବିମାନେ ଯେ ବାସ୍ତବିକ ଅଶ୍ଳୀଳତା ଦୁଷ୍ଟ ନୁହନ୍ତି, ତା କହିବା ମୋର ଉଦ୍ଦେଶ୍ୟ ନୁହେ । ତେବେ ସେମାନେ ଯେ ଆଦ୍ୟ ପ୍ରାନ୍ତ ସେହିପରି ଅପାଠ୍ୟ, ତା' ମଧ୍ୟ ମୁଁ ବିଶ୍ୱାସ କରେନାହିଁ । ଭଞ୍ଜେ ବୈଦେହୀଶ ବିଳାସରେ ସନ୍ଧ୍ୟା ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି—

"ବାରୁଣୀ କୁଣ୍ଡେ ବୁଡ଼ାଇ ଇନକୁ ।
ବିନାଶିବା ଇଚ୍ଛି ଯେହ୍ନେ ଦିନକୁ ॥
ବାଳ ଧରି ତାର ନେଇ ଆକର୍ଷି ।
ବାୟୁସବୟ ଯିବା ତଥା ବର୍ଷି
ବୋବି ଦେଲା ପକ୍ଷୀନାଦ ଛଳର
ବଦନେ ଲାଳ ପଡ଼ିଲା ଦଗର ॥"

ଏ ଉପମା ସେଲି ଓ ସେକ୍ସପିୟରଙ୍କର ଉପଯୁକ୍ତ ଏବଂ ଏହିପରି ସମାନ ଭାବଯୁକ୍ତ ପଦାବଳୀ ଯେ ଆମ୍ଭେମାନେ ଇଂରାଜୀ ସାହିତ୍ୟରେ ଅନେକ ସ୍ଥାନରେ ଦେଖିଛୁଁ ତାହାର ପ୍ରମାଣ ବିଷୟାନ୍ତରରେ ଦେବୁଁ । ଅନ୍ୟସ୍ଥାନରେ ମଧ୍ୟ ଭଞ୍ଜେ ତାଡ଼କାର ଆକ୍ରମଣକୁ ଲକ୍ଷ୍ୟ କରି ଲେଖିଛନ୍ତି—

"ବରଷମି ଆସରି ମନନ୍ତୁଁ ବେଗେ ।
ବଡ଼ ମେଘଖଣ୍ଡ କି ବାୟୁ ବେଗେ ।"

କାଳିଦାସ ମଧ୍ୟ ତାଙ୍କ ରଘୁବଂଶରେ ଠିକ୍ ଏହିପରି କଳ୍ପନା କରି ଲେଖିଛନ୍ତି—
'କାଳିକେବ ନବଡ଼ା ବଳାକିନୀ ।'

ପୁରୁଣା ଉତ୍କଳ ସାହିତ୍ୟର ଯେଉଁ ଆବର୍ଜନା ସହିତ ଯେ ଏହିପରି ଅତ୍ୟୁଜ୍ଜ୍ୱଳ ରତ୍ନ ଲୁକ୍କାୟିତ ରହିଛି ତାହା ଆମ୍ଭମାନଙ୍କ ଚକ୍ଷୁକୁ ଆସେନାହିଁ, କାରଣ ବୈଦେଶିକ ସାହିତ୍ୟ ସହିତ ସମ୍ବନ୍ଧ ନ ଥିବାରୁ, ସେସବୁର ମହତ୍ତ୍ୱ ଓ ସୌନ୍ଦର୍ଯ୍ୟ ଆମ୍ଭମାନଙ୍କର ଜ୍ଞାନାତୀତ ହୋଇ ରହିଅଛି । ତା'ପରେ ଅଶ୍ଳୀଳତାର ଚିହ୍ନ ଓ ଶିଷ୍ଟତାର ସୀମା ନିର୍ଦ୍ଧାରଣରେ ମଧ୍ୟ ଆମ୍ଭମାନଙ୍କର ମତଭେଦ ରହିଛି । ଘରେ ବସି ଆଖି ବୁଜି ନୈତିକତାର ଶିକ୍ଷା ଦେବା ଏକ କଥା, ପୁଣି ବିଦେଶରେ ବୁଲି ଆଖି ମେଲାଇ ସଂସାରର ଉପଯୋଗୀ ଶିକ୍ଷା ଦେବା ଅନ୍ୟପ୍ରକାର । ଆଜି ଆମ୍ଭମାନଙ୍କର ଆତ୍ମତୃପ୍ତ ଦୃଷ୍ଟିରେ ଯାହା ଅଶ୍ଳୀଳ ବୋଲି ପ୍ରତୀୟମାନ ହୁଏ, କାଲି ବୈଦେଶିକ ସାହିତ୍ୟରଥୀମାନଙ୍କର ଲେଖାରେ ସେହି ସେହି ବିଷୟ ଦେଖିଲେ, ତା'ର ପ୍ରତି ଆଦର ହେବ । ଭଞ୍ଜ ସାହିତ୍ୟର ଅଶ୍ଳୀଳତାକୁ ବାଦ୍ ଦେଇ ତାଙ୍କର ସୁଖପାଠ୍ୟ ଏବଂ ଉଚ୍ଚଧରଣର ଲେଖାଗୁଡ଼ିକୁ ଏକତ୍ର କରିବାର ପ୍ରତ୍ୟେକ ଚେଷ୍ଟାର ପୂର୍ବରୁ ଏହି ବୈଦେଶିକ ସାହିତ୍ୟମାନଙ୍କର ଅନୁଧାବନ ଏକାନ୍ତ ପ୍ରୟୋଜନୀୟ । ଯାହା ସର୍ବବାଦୀସମ୍ମତ ଏବଂ ସର୍ବସ୍ଥାନ ଆଦୃତ, ତାହା ନୈତିକତାର କଠୋର ପରୀକ୍ଷାରେ ଅଶ୍ଳୀଳ ହେଲେ ମଧ୍ୟ, ପ୍ରକୃତ ସାହିତ୍ୟ ଏବଂ ସେହି ହେତୁରୁ ପରମ ଉପଯୋଗୀ ପାଠ୍ୟ ।

ଶେଷରେ ଗୋଟିଏ କଥା । ମୋର ଏହି ଚେଷ୍ଟାରେ ମୁଁ ଆକ୍ଷରିକ ଅନୁବାଦରେ ଅଭିଳାଷୀ ହୋଇନାହିଁ । ଓଡ଼ିଶାରେ କେତେକ ବୈଦେଶିକ ସାହିତ୍ୟର ଅନୁବାଦ ହୋଇଯାଇଛି । କିନ୍ତୁ ଏକାବେଳକେ ମୂଳ ପ୍ରତି ପୂର୍ଣ୍ଣ ବିଶ୍ୱାସ ଏବଂ ଆସ୍ଥା ରଖି ଆକ୍ଷରିକ ଅନୁବାଦ କରାଯାଇଥିବାରୁ ତାହାର ସମ୍ୟକ୍ ଆଦର ଓ ବୋଧନ ହୋଇପାରିନାହିଁ । ଅନୁବାଦରେ ମୂଳ କବିଙ୍କର ଭାବ ଠିକ୍ ରଖି, ତାଙ୍କର ସ୍ୱର ଓ ତାଳ ପରିମାପରେ ସ୍ୱଜାତି-ଭାଷାର ସମ୍ୟକ୍ ପ୍ରୟୋଗ ଅନୁବାଦକୁ ମୂଳଗ୍ରନ୍ଥର ସୌନ୍ଦର୍ଯ୍ୟ ଦେଇଥାଏ । ମୁଁ

ଏ ସ୍ଥାନରେ ଯଥାସମ୍ଭବ ଏହି ଆଦର୍ଶର ଅନୁସରଣ କରିଛି । ଶେଷରେ ମୁଁ ଏହି ଅନୁବାଦ ନିମନ୍ତେ ସ୍ୱର୍ଗୀୟ କାଳୀପ୍ରସନ୍ନ କାବ୍ୟ ବିଶାରଦଙ୍କର ସଂଗୃହୀତ ଗ୍ରନ୍ଥ ଓ ଟୀକାର ଯଥେଷ୍ଟ ବ୍ୟବହାର କରିଛି ।

## ବିଦ୍ୟାପତି

### ଶ୍ରୀ କୃଷ୍ଣଙ୍କର ପୂର୍ବରାଗ

( ୧ )

ମନେ ଦେଖି ଗଜଗାମିନୀ କାମିନୀ
ଫେରି ହସିଗଲା ଗୃହ,
ଇନ୍ଦ୍ରଜାଲିକ ସେ କୁସୁମଶାୟକ
କୁହୁକିନୀ ବରନାରୀ ।

ଯୋଡ଼ି ଭୁଜଯୁଗ ମୋଡ଼ି ଆବରିଲା
ମୁଖ, ଚକ୍ଷୁଁ ମନୋହର,
ଘୂଞ୍ଚିଲା କି କାମ ଚମ୍ପକ ଦାମରେ
ଶାରଦୀୟ ଶଶଧର ।

ଅଂବରେ ଅଞ୍ଚଳେ ଉରସ ଚଞ୍ଚଳେ
ଶୋଭେ ଅର୍ଦ୍ଧ ପୟୋଧର,
ପବନତାଡ଼ିତ ଶାରଦ ଘନ କି
ବ୍ୟକତ କଲା ମନ୍ଦର ।

ଲୁଟିବ ବିରହ ସୀମା ଶୀତଳିବ
ପ୍ରାଣ ପୁନଃ ଦରଶନେ,
ସର୍ବାଙ୍ଗ ଦହଇ ହୃଦେ ବହ୍ନି ଯଥା
ପଡ ଯାବକ ସ୍ମରଣେ ।

ଭଣେ ବିଦ୍ୟାପତି ଶୁଣ ଗୋ ଯୁବତି
ହୁଏ ନାହିଁ ଚିତ୍ତ ସ୍ଥିର,
ସେ ରମଣୀମଣି ସର୍ବଗୁଣ ଖଣି
ହୋଇବ କି ସତେ ମୋର ।

( ୨ )

ଆଜ ଦେଖିଲିରେ ଅପରୂପ ଗ୍ରମାବର
କନକଲତା ଅଂଶ୍ରୟେ ଉର୍ଦ୍ଧିଛୁ କି,
ନିଷ୍କଳଙ୍କ ନିଶାକର ( ପଦ )

ନୟନ ନଳିନୀ ଅଞ୍ଜନେ ରଞ୍ଜିତ
ଭ୍ରବ ତରଙ୍ଗ ବିଳାସେ,
ଚକିତ ଚକୋର ଯୁଗ ବନ୍ଧା ଜିବା
କେବଳ କଜ୍ଜ୍ୱଳ ପାଶେ ।୧।

ଶିଖର ଗୁରୁ ପୟୋଧର ସ୍ପୃଷ୍ଟ
ଗ୍ରୀବା ଗଜ-ମୋତି ହାର,
କମ୍ବୁ ଭଣ୍ଡ କାମ ହେମ ଶମ୍ଭୁ ପରି
(ଯେତେ) ଢାଳେ ସୁରଧୁନୀ ଧାର ।୨।

ପ୍ରୟାଗ କୂଳେ ଯେ ଯାଗଶତ ରଚେ
ସେ ଲଭଇ ବହୁଭାଗୀ,
ବିଦ୍ୟାପତି କହେ ଗୋକୁଳ ନାୟକ
ଗୋପୀଜନ ଅନୁରାଗୀ ।୩।

□

ସତ୍ୟବାଦୀ
୩ୟ ଖଣ୍ଡ, ୯ମ ସଂଖ୍ୟା
ପୌଷ—୧୩୩୧
ପୃଷ୍ଠା—୨୮୭

ସତ୍ୟବାଦୀ
୩ୟ ଖଣ୍ଡ, ୧୦ମ ସଂଖ୍ୟା
ମାଘ—୧୩୩୧
ପୃଷ୍ଠା—୨୯୦ ରୁ ୨୯୩

# ଓଡ଼ିଆ ଲିପି ସଂସ୍କାର

ଏବେ କେତେଦିନ ହେଲା ସମ୍ବାଦପତ୍ରରେ ଓଡ଼ିଆ ଅକ୍ଷରର ସଂସ୍କାର ଲାଗି ଖୁବ୍ କଥାବାର୍ତ୍ତା ଚାଲିଛି । ମୋର ମନେଅଛି, ଆଗେ ଉତ୍କଳ ସାହିତ୍ୟରେ ଏହିପରି କେତେ ବାଦାନୁବାଦ ଚାଲିଥିଲା । 'ପଣ୍ଡିତ ନୀଳକଣ୍ଠ' ଇତ୍ୟାଦି ତାଙ୍କ ସତ୍ୟବାଦୀରେ ଏହିପରି କେତେକ ଲିପି-ସଂସ୍କାର କରିବାକୁ ପ୍ରସ୍ତାବ ମଧ୍ୟ କରିଥିଲେ, ଆଉ ସେଥିଲାଗି ଖୁବ୍ ଗାଳିଗୁଲଜ ବି ଶୁଣିଥିଲେ ସେତେବେଳେ । ଏସବୁ କଥା ମନେପଡ଼ିଗଲା । ସେତେ-ବେଳେ ମଧ୍ୟ ମୁଁ ଭାବିଥିଲି ସତରେ ଓଡ଼ିଆ ଅକ୍ଷରଗୁଡ଼ିକୁ ଯଦି ଆଉରି ସହଜ ଓ ସରଳ କରାଯାଏ, ତା' ହେଲେ ପାଠପଢ଼ାଳି ପିଲାମାନଙ୍କର ବେଶ୍ ସୁବିଧା ହେବ । ପିଲା ଥିଲି ସେତେବେଳେ, ମନର କଥାଟା ମନରେ ହିଁ ରହିଥିଲା । ଏବେ ପୁଣି ବୁଢ଼ା ଦିନକୁ ସେହି କଥା ଶୁଣୁଛି । ଶୁଣି ଭାବୁଛି କଥାଟା ବୋଧହୁଏ କଷ୍ଟସ୍ପ ସତ । ନହେଲେ ଯୁଗ ଯୁଗ ଧରି ଏହିଟା ମୁଣ୍ଡ ଟେକି ଜିଉଁଛି କାହିଁକି ? ତେବେ ଏ କୋଡ଼ିଏ ତିରିଶି ବର୍ଷ ଭିତରେ ମୁଁ ଅନେକ ଆଗେଇଛି କି ନା ! ସେତେବେଳେ ଥିଲି ପାଠପଢ଼ାଳୀ ପିଲା । କେବଳ ମୋ ପଢ଼ାର ସୁବିଧାଟା ହିଁ ମତେ ଦିଶୁଥିଲା । ଏବେ ଆଉ ଅନେକ କଥା ଦିଶୁଛି । ସେଥିଭିତରୁ ମୋର ସେଇ ଅଗକାର କଥାଟା—ଓଡ଼ିଆ ଭାଷାଟା ଯେବେ ଓଡ଼ିଆ ଭାଷାରେ ଓ ଓଡ଼ିଆ ଉଚ୍ଚାରଣ ଅନୁସାରେ ଲେଖାଯାଆନ୍ତା, ତା'ହେଲେ ଅନେକ ଯୁକ୍ତାକ୍ଷରର ବ୍ୟବହାର ଓଡ଼ିଆରେ ଦରକାର ପଡ଼ନ୍ତାନି । ଆମ୍ଭେମାନେ ଯାହା ଲେଖୁଛୁ, ଆଜିକାଲି ସେ ଖାଲି ଅନୁସ୍ୱାର ବିସର୍ଗ ବିବର୍ଜିତ ସଂସ୍କୃତ ଭାଷା । ସେହିହେତୁରୁ ଯୁକ୍ତାକ୍ଷରଗୁଡ଼ିକ ଏତେ ବେଶୀ ଦରକାର ହୋଇପଡ଼ିଛି ଆମର । ନ ହେଲେ ସାଧାରଣ କଥାରେ ଯେଉଁଠି ଯୁକ୍ତ ଅକ୍ଷର ଦରକାର, ସେ ସବୁ ଖାଲି ଂ (ଅନୁସ୍ୱାର) ଯୋଗରେ ହୋଇପାରନ୍ତା । ଆଉ କେତେକ ମଧ୍ୟ ଉଚ୍ଚାରଣ ଅନୁସାରେ ଲେଖିଲେ ଦରକାର ପଡ଼ନ୍ତା ନାହିଁ । ଯେମିତି ବର୍ଷାକୁ ବରଷା, ତୃଷାକୁ ବଅଷା ଇତ୍ୟାଦି ।

ଏସବୁ କଲା ପରେ ମଧ୍ୟ ମୁଁ ଜାଣେ ଯେ, କେତେଟା ଯୁକ୍ତାକ୍ଷର ରହିଯିବ ଭାଷାରେ । ଦ୍ୱିତୀୟ କଥା ଯେ, ଏପରି କରିବା ଦ୍ୱାରା ଅକ୍ଷର ସଂଖ୍ୟା କମିଯିବନି । ଆଗ ଆଗ ଲେଖାମାନଙ୍କରେ ଅକ୍ଷର ସଂଖ୍ୟା କମାଇବାକୁ ଯେଉଁ ଯେଉଁ ପ୍ରସ୍ତାବମାନ ଆସିଛି, ସେ ସବୁକୁ ବିଚାର କରିବାର କଥା ଓ ସେଥିଲାଗି ପ୍ରସ୍ତାବମାନଙ୍କୁ ଦେଶ ପକ୍ଷରୁ ଧନ୍ୟବାଦ ଦେବା ଉଚିତ ।

ମୁଁ ସେମାନଙ୍କ ପ୍ରସ୍ତାବର ବିଚାରକୁ ଏହିପରି ଭାବରେ ସମର୍ଥନ କରିବା ଆଗରୁ ମୋର ପଦେଅଧେ କହିବାକୁ ଅଛି । ଓଡ଼ିଆ ଲିପି ସଂସ୍କୃତ ଲିପିର ବିକୃତ ମାତ୍ର ।

ମାଗଧୀ, ଗୌଡ଼ୀୟ ଇତ୍ୟାଦି ଲିପିମାନଙ୍କ ପରି ଓଡ଼ିଆ ଲିପି ମଧ୍ୟ ସଂସ୍କୃତ ଅକ୍ଷରମାନଙ୍କ ଅନୁକରଣରେ ହୋଇଛି । ଅତଏବ ଓଡ଼ିଆ ଅକ୍ଷରର ସଂସ୍କାର କରିବାକୁ ଯିବା ଅର୍ଥ, ହିନ୍ଦୀ ଓ ବଙ୍ଗଳା ଅକ୍ଷରର ମଧ୍ୟ ସଂସ୍କାର କରିବାର କଥା । ଭାରତବର୍ଷରେ ଯେତେ-ଗୁଡ଼ିଏ ଲିପି ପ୍ରଣାଳୀ ପ୍ରଚଳିତ ଅଛି ବର୍ତ୍ତମାନ ଯୁଗରେ ସେଗୁଡ଼ିକୁ ମୁଖ୍ୟତଃ ଦେବନାଗରୀ ଦ୍ରାବିଡ଼ି ଓ ଉର୍ଦ୍ଦୁ ଏହି ତିନି ଭାଗରେ ବିଭକ୍ତ କରାଯାଇପାରେ । ଇଉରୋପ ଓ ଆମେରିକାରେ ରୋମାନ୍ ଅକ୍ଷର ପ୍ରଣାଳୀ ଓ ଚୀନାରେ କନଫୁସିଆନ ଅକ୍ଷର ପ୍ରଣାଳୀର ପ୍ରଚଳନ ଦେଖାଯାଏ । ଏ ସମସ୍ତ ପ୍ରଣାଳୀମାନଂକରେ କନଫୁସିଆନ ପ୍ରଣାଳୀର ଲେଖା ସବୁଠାରୁ ବେଶୀ କଠିନ । ଅକ୍ଷର ସଂଖ୍ୟା ବହୁତ । ଯେତେ ଶବ୍ଦ, ସେତେ ଅକ୍ଷର । ଏ ପ୍ରଣାଳୀର ବିଚାରଲିପି ସଂସ୍କୃତ ବିଚାରର ବାହାରେ । ଇଂରାଜୀରେ ଭାଷା ଅକ୍ଷର ମାତ୍ର ୨୬ଟି । ଗ୍ରେଟ ବଡ଼ ଯୋଗ କଲେ ଅବଶ୍ୟ ବେଶୀ ହେବ । ମାତ୍ର ଗ୍ରେଟ ଅକ୍ଷରଗୁଡ଼ିକ ଅନେକସ୍ଥଳରେ ବଡ଼ ଅକ୍ଷରର ରୂପାନ୍ତର ମାତ୍ର । ତେବେ ସବୁ ମିଶାଇଲେ ୩୬ଟି ଅକ୍ଷର ସେଥିରେ । ଉର୍ଦ୍ଦୁରେ ମଧ୍ୟ ବର୍ଣ୍ଣବିଶେଷରେ ଅକ୍ଷର ସଂଖ୍ୟା ୨୬ । ମାତ୍ର ପ୍ରକୃତ ପକ୍ଷରେ ଦେଖିବାକୁ ଗଲେ ଅକ୍ଷର ସଂଖ୍ୟା ମାତ୍ର ୧୫ଟି । ଦ୍ରାବିଡ଼ୀୟ ଭାଷାରେ ଆମରି ଭଳି ଅ, ଆ, କ, ଖ ପ୍ରଭୃତି ବର୍ଣ୍ଣବହୁଳ ଲିପି ପ୍ରଣାଳୀ ଥିଲେ ମଧ୍ୟ ସାଂକେତିକ ମାତ୍ରା ଭଳି ପ୍ରାୟ ୩୦ଟି । ବର୍ତ୍ତମାନ ବିଚାର କରିବାର କଥା, ଯୁ ଶବ୍ଦ ପ୍ରକାଶ ଲାଗି ଆମକୁ ପ୍ରାୟ ୬୦ଟି ପୃଥକ ଅକ୍ଷର ପ୍ରୟୋଗ କରିବା ଦରକାର ପଡ଼ୁଛି, ସେଠି ଏ ଭାଷା ସବୁ ଏତେ କମ ଅକ୍ଷରରେ ଶବ୍ଦ ପ୍ରକାଶ କରୁଛନ୍ତି କିପରି ? ଏମାନଙ୍କର ଶବ୍ଦବିନ୍ୟାସ ପ୍ରଣାଳୀକୁ ବିଚାର କରିବାକୁ ଗଲେ ଏଇ କେତୋଟି ସିଦ୍ଧାନ୍ତରେ ପହଞ୍ଚିବାକୁ ପଡ଼େ ।

୧ । ଇଂରାଜୀ ଭାଷାରେ ଖ, ଘ, ଛ ପ୍ରଭୃତି କର୍କଶ ଉଚ୍ଚାରଣ ଶବ୍ଦଗୁଡ଼ିକର ଭିନ୍ନ ଅକ୍ଷର ନାହିଁ । ଦୁଇ କୋମଳ ଉଚ୍ଚାରଣ ଶବ୍ଦର ସଂଯୋଗରେ ସେ ଭାଷାରେ ସେସବୁ କର୍କଶ ଶବ୍ଦ ପ୍ରଯୁକ୍ତ ହୁଏ । ଯେପରି K H=ଖ, G H=ଘ, ଇତ୍ୟାଦି ।

୨ । ଆମର ଯୁକ୍ତାକ୍ଷରଗୁଡ଼ିକର ରୂପ ପୃଥକ୍ । କିନ୍ତୁ ସେଥିରେ ଯୁକ୍ତ ଶବ୍ଦ ଦ୍ୟୋତକ ପୃଥକ୍ ଅକ୍ଷର ନାହିଁ । ଆଗପରି କେତେକ ଅକ୍ଷରର ସଂଯୋଗରେ ଯୁକ୍ତ ଶବ୍ଦର ଲିପିବଦ୍ଧ କରାଯାଏ । ଯେପରି ସ୍କ=Scha, ସ୍ମ=Sma ଇତ୍ୟାଦି ।

୩ । ଉର୍ଦ୍ଦୁ ଓ ଦ୍ରାବିଡ଼ୀୟ ଭାଷାରେ କେତୋଟି ମୂଳଅକ୍ଷର ସହିତ କେବଳ ନୁକ୍ତା ବା ବିନ୍ଦୁ ଓ ସଙ୍କେତ ଯୋଗରେ ଅନ୍ୟାନ୍ୟ ଶବ୍ଦବାଚକ ଶବ୍ଦ ତିଆରି କରାଯାଏ । ଯେପରି ଉର୍ଦ୍ଦୁରେ ب, پ, ت, ث [ବେ, ପେ, ତେ, ସେ] ଇତ୍ୟାଦି ଶବ୍ଦ । ଏଠାରେ ମୂଳ ଅକ୍ଷର ٮ କୁ ଚାରୋଟି ବିଭିନ୍ନ ଶବ୍ଦର ଅକ୍ଷର କେବଳ ବିନ୍ଦୁର ପ୍ରୟୋଗ ସାହାଯ୍ୟରେ କରାଯାଇଛି ।

ଏହି ସବୁ କାରଣରୁ ଏସବୁ ଭାଷାର ଲିପି ଏପରି ସଂକ୍ଷିପ୍ତ ଓ ସହଜ । ଦେବନାଗରୀ ଲିପି ପ୍ରଣାଳୀକୁ ସଂକ୍ଷିପ୍ତ ଓ ସହଜ କରିବାକୁ ଗଲେ ଏହିପରି କୌଣସି ଏକ ପ୍ରଣାଳୀ ଉପରେ ନିର୍ଭର କରି ବିଚାର କରିବା ଉଚିତ । ଏ ପ୍ରଥମ କଥା ।

ଦ୍ୱିତୀୟ କଥା ହେଉଛି, କଥିତ ଭାଷା ଓ ଲିଖିତ ଭାଷା ଭିତରେ ସାମଞ୍ଜସ୍ୟ ସ୍ଥାପନ । କହିବା ଭାଷାରେ ଦୀର୍ଘ ଓ ହ୍ରସ୍ୱ ସ୍ୱରର ଯେପରି କୌଣସି ବିଭେଦ ରହେନି, ସେହିପରି ବର୍ଗ 'ବ' ଓ ଅନ୍ତଃସ୍ଥ 'ବ' ଓ ତିନି 'ଶ' ର ମଧ୍ୟ ବିଭେଦ ରହେନି । ଏପରି ସ୍ଥଳେ ଲିଖିତ ଭାଷାରେ ସେସବୁ ରଖିବାର କିଛି ଦରକାର ଅଛି କି ? ଇଂରାଜୀ ଭାଷାରେ ମଧ୍ୟ କେତେକ ଲିଖିତ ଶବ୍ଦର ବର୍ଣ୍ଣମାଳା କଥିତ ଶବ୍ଦର ଉଚ୍ଚାରଣ ସହିତ ମେଳ ଖାଏନି । ସେହି ହେତୁରୁ ସେ ଭାଷାର ସଂସ୍କାର ଲାଗି ଲିଖିତ ଭାଷାର ବର୍ଣ୍ଣ ବାହୁଲ୍ୟକୁ ଉଠାଇଦେବାର ଚେଷ୍ଟା କରାଯାଉଛି । ଯେପରି Psychology, Debt, Floor ଇତ୍ୟାଦି । ସଂସ୍କାରକମାନେ କହନ୍ତି, ପ୍ରଥମ ଦୁଇ ଶବ୍ଦର ନୀରବ ଅକ୍ଷର P ଓ B ଏବଂ ତୃତୀୟ ଅକ୍ଷରରର ଦୁଇ 'O' ର କିଛି ଦରକାର ନାହିଁ । ଅତଏବ, ଏଗୁଡ଼ିକ ଉଠାଇଦେବା ଦରକାର । ସେହି ଅନୁସାରେ ଆମେରିକାର କେତେକ ଲେଖକ ଓ ପ୍ରକାଶକ ଏସବୁ ଉଠାଇଦବାର ଚେଷ୍ଟା କଲେ ମଧ୍ୟ, ଇଂରାଜୀ ଭାଷାର ଜନ୍ମସ୍ଥାନ ଇଂଲଣ୍ଡ, ଏହା ଗ୍ରହଣ କରିପାରିନି ଓ ଏପରି ସଂସ୍କୃତ ଭାଷା ପଣ୍ଡିତମାନଙ୍କ ଭିତରେ ଲୋକପ୍ରିୟ ହୋଇପାରୁନି । ତାର କାରଣ କଥିତ ଭାଷା ଯାହା ହେଉନା କାହିଁକି, ଲିଖିତ ଭାଷା ସାହିତ୍ୟର ବିଶିଷ୍ଟ ଅଙ୍ଗ । ଭାଷାର ବିବୃଦ୍ଧି ଲାଗି ଶବ୍ଦମାନଙ୍କର ମୂଳଧାତୁଗତ ଉତ୍ପତ୍ତି ଜାଣିବା ଅତ୍ୟନ୍ତ ପ୍ରୟୋଜନ । କାରଣ ସେ ଜଣାନଥିଲେ ଆବଶ୍ୟକ ଅନୁସାରେ ନୂଆ ନୂଆ ଶବ୍ଦର ତିଆରି ସମ୍ଭବ ହବନି । ମୂଳ ଧାତୁଗତ ଉତ୍ପତ୍ତିର ଚିହ୍ନକୁ ବଜାଏ ରଖିବାକୁ ଗଲେ ସେମାନଙ୍କର ବର୍ତ୍ତମାନ ରୂପ ବଜାଏ ରଖିବା ଉଚିତ ।

ଆମ ଭାଷାରେ ମଧ୍ୟ ସେହିପରି । ହ୍ରସ୍ୱ ଦୀର୍ଘସ୍ୱର କଥିତ ଭାଷାରେ ପ୍ରଯୁକ୍ତ ନ ହେଲେ ମଧ୍ୟ ଓ କଥିତ ଭାଷାରେ ତିନି 'ଶ' କାରର କୌଣସି ବ୍ୟବହାର ନଥିଲେ ମଧ୍ୟ ଅଧୀତ ଭାଷାରେ ସେସବୁ ଦେଖାଇବାକୁ ହେବ । ଧରନ୍ତୁ ଦୁଇଟି ଶବ୍ଦ ଶୁଚି ଓ ସୂଚୀ । ଏ ଦୁଇ ଶବ୍ଦର କଥିତ ଭାଷାରେ ଉଚ୍ଚାରଣଗତ ପ୍ରଭେଦ କିଛି ନାହିଁ । ମାତ୍ର ଦୁଇଟି ଅର୍ଥର ଶବ୍ଦ ଓ ଉତ୍ପତ୍ତି ବରାବର ଭିନ୍ନ । ଲିଖିତ ଭାଷାରେ ଏସବୁ ବିଭେଦ ଦର୍ଶାଇବାକୁ ହବ । ମାତ୍ର ତା ଲାଗି ତିନୋଟି ଅକ୍ଷର ରଖିବାର କିଛିମାତ୍ର ପ୍ରୟୋଜନ ନାହିଁ । କେବଳ ଗୋଟିଏ ଅକ୍ଷର 'ସ' ରଖି ତା ଉପରେ '।' '।।' ବା ତଳେ ◦, ◦◦ ଏହିପରି କିଛି ସଙ୍କେତ ଦେଇ ଅଧୀତ ଭାଷାରେ ସେହି 'ସ' ର ବିଶେଷ ସୂଚନା କରିଦେଲେ ହେବ । ହ୍ରସ୍ୱ ଓ ଦୀର୍ଘର ଭେଦ ମଧ୍ୟ ସେହିପରି କରାଯାଇ ପାରେ ।

ଆମର ଲିପିମାଳାରେ ମୂଳ ଅକ୍ଷର ସ୍ୱର ଓ ବ୍ୟଞ୍ଜନ ମିଶି ୪୯ । ଏଥି ମଧ୍ୟରୁ ସ୍ୱରବର୍ଣ୍ଣ ୧୬ଟି । ଏହି ସ୍ୱରବର୍ଣ୍ଣଙ୍କ ମଧ୍ୟରୁ ଋ ୠ ଌ ଦୀର୍ଘ ୡ ଏ ଲିପିଗୁଡ଼ିକର ବିଶେଷ

ପ୍ରୟୋଗ ନାହିଁ । ସେହିପରି ମଧ୍ୟ 'ଃ' ପ୍ରୟୋଗ ଓଡ଼ିଆ ଭାଷାରେ ନାହିଁ । ଏହି ପାଞ୍ଚୋଟି ଅକ୍ଷରକୁ ବାଦ ଦିଆଯାଇପାରେ । ଅବଶ୍ୟ ଋ କୁ ବାଦ ଦେବାରେ ଟିକିଏ କଷ୍ଟ ଅଛି । କାରଣ ଧରନ୍ତୁ, ଋଷି ଓ ରିଷି । ଦୁଇଟି ଭିନ୍ନ ଶବ୍ଦ ଭିନ୍ନ ଅର୍ଥବୋଧକ । ମୁଁ ମନେକରେ, ରୁ ଉପରେ ବା ତଳେ ଗୋଟିଏ ବିନ୍ଦୁ ଦେଇ ଋ ଶବ୍ଦର କାର୍ଯ୍ୟ କରାଯାଇପାରେ । ଏ ପାଞ୍ଚୋଟି ଅକ୍ଷର ଗଲେ ବାକି ୧୧ଟି ସ୍ୱରବର୍ଣ୍ଣ ରହିଲା । ସେଥିରୁ ଅ, ଇ, ଉ, ଏ, ଓ ଏଇ ପାଞ୍ଚୋଟି ମୂଳ । ଆ କେବଳ "।" ଏଇ ପୂର୍ଣ୍ଣଚ୍ଛେଦର ସଂଯୋଗରେ ଓ, ଇ, ଉ, ଐ, ଓ, ଔ ଅନ୍ୟ ଚାରୋଟି ଅକ୍ଷର ଦେହରେ ଚିହ୍ନ ବା ଅନ୍ୟ ସେହିପରି ସଙ୍କେତ ସାହାଯ୍ୟରେ ପ୍ରକାଶ କରାଯାଇପାରେ । ଯେପରି ଈ=ଇଁ, ଊ=ଉଁ ଇତ୍ୟାଦି । ତାହେଲେ ମୋଟ ସ୍ୱରବର୍ଣ୍ଣ ହେବ ୫, ଅନୁସ୍ୱାର ଓ ବିନ୍ଦୁ ବା ଅନ୍ୟ ସାଙ୍କେତିକ ଗୋଟାଏ, ଏପରି ସର୍ବମୋଟ ୭ ।

ବ୍ୟଞ୍ଜନବର୍ଣ୍ଣ ୩୩ଟି ମଧ୍ୟରୁ ଙ, ଞ ଓ ଅନ୍ତସ୍ଥ 'ବ', ଏ ତିନୋଟି ଅକ୍ଷରକୁ ସାଦାସିଧା କାଟି ଦିଆଯାଇପାରେ । ବାକି ଯେ ୩୦ଟି ଅକ୍ଷର ରହିଲା, ସେଥିମଧ୍ୟରୁ ୧୧ଟି କୋମଳ ଉଚ୍ଚାରଣ ଶବ୍ଦ, ଯଥା—ଖ, ଘ, ଛ, ଝ ଇତ୍ୟାଦି । ଏମାନଙ୍କୁ ଇଂରାଜୀ ମତରେ କ+ହ=ଖ, ଗ+ହ=ଘ ଏହିପରି ଭାବରେ ବ୍ୟବହାର କଲେ, ତାଙ୍କର ସଂଯୁକ୍ତ କୋମଳ ଅକ୍ଷର ସହିତ 'ହ' ଚିହ୍ନ ହେଲେ ସେଗୁଡ଼ିକ ଯଥାଯଥ ନିର୍ଦ୍ଦିଷ୍ଟ ହୋଇଯିବେ । ଯେପରି ଖ=କ୍ହ, ଘ=ଗ୍ହ, ଛ=ଚ୍ହ ଇତ୍ୟାଦି । ଏପରି କଲେ ୧୧ ଅକ୍ଷର ବାଦଦେବାକୁ ଆମେ ମାତ୍ର '୍' ଚିହ୍ନଟିର ନୂଆ ପ୍ରୟୋଗ କରୁଥାଉଁ । ତାହେଲେ ସମୁଦାୟ ବ୍ୟଞ୍ଜନବର୍ଣ୍ଣ ହେଲା ୧୯ । ସ୍ୱରବର୍ଣ୍ଣ ହେଲା ୭=ଏପରି ୨୬ଟି ଅକ୍ଷର ମାତ୍ର । ୟ ସହିତ 'ଯ' ଯୋଗକଲେ ୨୭ଟି ମାତ୍ର ହେବ ।

ଏ ପରେ ଯୁକ୍ତାକ୍ଷର । ଆମର ଯୁକ୍ତାକ୍ଷରଗୁଡ଼ିକ ରୋମୀୟ ପ୍ରଣାଳୀରେ ପ୍ରକାଶ କଲେ କୌଣସି ବାଧା ହବନି ବୋଲି ମୋର ମତ । ଯେପରି—

ବଲ୍‌କଲ=ବଲ୍‌କ, ସ୍କୁଲ=ସ୍‌କୁଲ, ସ୍ଥଳ=ସ୍‌ଥଳ, ବିଦ୍ୟା=ବିଦ୍‌ୟା, ଶବ୍ଦ=ଶବ୍‌ଦ ଇତ୍ୟାଦି ।

ବାକି ସଂଖ୍ୟାମାନଙ୍କ କଥା । ସବୁ ଭାଷାରେ ସଂଖ୍ୟାମାନ ଭିନ୍ନ ରହିଛି । ଆମର ଭିନ୍ନ ହେଲେ କିଛି କ୍ଷତି ନାହିଁ ।

କେବଳ ଅଣା ଇତ୍ୟାଦି ସୂଚକ ଅକ୍ଷରଗୁଡ଼ିକ ବାଦ୍‌ଦେଲେ କିଛି କ୍ଷତି ନାହିଁ । ଆମେ ସାଧାରଣତଃ ଟ୫/- ୫ ଲେଖୁଁ । ତାକୁ ଟ ୫-୫-୫ କରି ଲେଖିଲେ କ'ଣ କ୍ଷତି ହବ ? ଅନ୍ୟାନ୍ୟ ଭାଷାମାନଙ୍କରେ ଏହିପରି ତ ଲେଖାଯାଉଛି । 'ଟ' ଚିହ୍ନ ବା 'ସେ' ଚିହ୍ନ ରହିଲେଇ ବାକି ସବୁ ଜଣାପଡ଼ିବ, ଅଣାର ସାଂକେତିକ ନ ରହିଲେ ବି ।



ସହକାର—୧୭ ରୁ ୧୮, ୨୭ଶ ଭାଗ—୧ମ ସଂଖ୍ୟା ଅଗଷ୍ଟ

# ସାହିତ୍ୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ

ଆଜକାଲି ଓଡ଼ିଆ ସାହିତ୍ୟ ଯେ ନୂଆଙ୍ଗ ସାଜୁଛି, ତାହା କେତେକ ସମାଲୋଚକଙ୍କ ଆଖିକି ବଡ଼ ଭଲ ମନେଉଛି, କେତେକଙ୍କର ଆଖିକି ବିକୃତ ଓ ଅସୁନ୍ଦର ଜଣାପଡ଼ୁଛି । କୌଣସି ସମାଲୋଚକ ଦଳର ଭୁଲ ବୋଲି ମୁଁ କହୁନାହିଁ, କାରଣ ଯେଉଁମାନେ ବର୍ତ୍ତମାନ ସାହିତ୍ୟକୁ ପସନ୍ଦ କରୁଛନ୍ତି, ସେମାନେ ଆଧୁନିକ ଯୁଗ ସଭ୍ୟତାର ଚକ୍ଷୁବନ୍ଧନ ମନ୍ତ୍ରରେ ବଶୀଭୂତ ହୋଇଛନ୍ତି । ତା' ନ ହେଉଥିଲେ ମୁଁ ସେମାନଙ୍କୁ କାଠ ପଥର-ଠାରୁ ମଧ୍ୟ ହୀନ ବୋଲି କହନ୍ତି । ପାଶ୍ଚାତ୍ୟ ସାହିତ୍ୟର ସାର ସାହିତ୍ୟ ପଢ଼ି ଏବଂ ତାହାର ଭାବ କୁହେଳିରେ ପହଁରି ସେମାନେ ଯଦି ଡାଫୋଡିଲ୍ ଭଳି ଆମ ଦେଶର କଅଁଳିଆ ମୂଳ ବଣମଲ୍ଲିକୁ ଭଲପାଆନ୍ତି, ତାହେଲେ ସେମାନେ ହେଲେ ହେବେ ଶୁଷ୍କପ୍ରାଣ ନୀରବ ଜୀବନ ତପସ୍ୱୀ--ନହେଲେ ବିଷୁବରେଖାର ଆତପକ୍ଳିଷ୍ଟ ଝାଙ୍ଗର ମରୁଭୂମି । ଯେଉଁମାନେ ଏହାକୁ ନିନ୍ଦା କରୁଛନ୍ତି, ସେମାନେ ଯେ ପ୍ରକୃତ ଜାତୀୟତା ଏବଂ ପ୍ରକୃତ ଜାତିଗତ ବିଶିଷ୍ଟ ଭାବାନୁପ୍ରାଣତା ଦ୍ୱାରା ଅନୁପ୍ରାଣିତ, ସେଥିରେ ମଧ୍ୟ କୌଣସି ସନ୍ଦେହ ନାହିଁ । ପ୍ରାଚ୍ୟ ଓ ପ୍ରତୀଚ୍ୟଭାବର ସମିଶ୍ରଣ ଦେଶ ଓ ଜାତିର ଉନ୍ନତି ପଥରେ ଅବଶ୍ୟ ପ୍ରୟୋଜନୀୟ । ଇଂରେଜୀ କବି କିପଲିଂ ଥରେ କହିଥିଲେ, ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିରଦିନ ପ୍ରାଚ୍ୟ ଓ ପ୍ରାଶ୍ଚାତ୍ୟ ହୋଇ ରହିବ, ଏ ଦୁହିଁଙ୍କର ମିଳନ ଅସମ୍ଭବ । ଆମ୍ଭମାନଙ୍କ ଦେଶର ଅନେକ ବିଶିଷ୍ଟ ନେତା ଓ ଭାବୁକ ମଧ୍ୟ ଏହି କଥା ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରକାଶ କରି ଆସୁଛନ୍ତି ।

ପ୍ରକୃତରେ ଆମ୍ଭେମାନେ କାଳକ୍ରମେ ଯେ ସାହେବ ପାଲଟିଯିବୁଁ, ଏକଥା ସମ୍ଭବ ନୁହେଁ । ପୃଥିବୀର ଇତିହାସ ପର୍ଯ୍ୟାଲୋଚନା କଲେ ଆମ୍ଭେମାନେ ଦେଖିବୁଁ ଯେ ନିତାନ୍ତ ଅସଭ୍ୟ, ଅପରିପକ୍ୱ ଜାତି ଛଡ଼ା ଅନ୍ୟ କୌଣସି ଜାତି ଦ୍ୱିତୀୟ ବିଜେତୃ ଜାତିର ସମ୍ପର୍କରେ ଆସି ନିଜର ଜାତିତ୍ୱ ହରାଇନାହିଁ । ୟୁରୋପର ଟିଉଟୋନିକ୍ ଓ ଗଲ୍ସ, କେଲ୍‌ଟିକ୍ ଓ ଟିଉଟୋନିକ, ସ୍ଲାଭ ଟିଉଟୋନିକ ଓ ଗଲ୍ସ୍ ଏମାନଙ୍କ ମଧ୍ୟରେ ପରସ୍ପର ସଂଘର୍ଷ ଓ ସଂସ୍ପର୍ଶ ବହୁ ଶତାବ୍ଦୀ ଧରି ବହୁ ପରିମାଣରେ ହୋଇଯାଇଥିଲେ ମଧ୍ୟ ସେମାନେ ନିଜର ଜାତିତ୍ୱ ଏପର୍ଯ୍ୟନ୍ତ ବଜାୟ ରଖିପାରିଛନ୍ତି । ଭାରତବର୍ଷର ଗ୍ରୀବା ଉପରେ ତୁର୍କି, ଆଫଗାନ, ପର୍ଶିୟାନ, ମୋଗଲ, ଡଚ, ପର୍ତ୍ତୁଗୀଜ, ଫ୍ରେଞ୍ଚ, ଇଂରେଜ, କେତେ ଜାତି କେତେ ଶତ ବର୍ଷ ଧରି କେତେ ପ୍ରକାର ଯୁଆଳି ଲଗାଇ ଦେଇଯାଇ-ଅଛନ୍ତି, ତଥାପି ଏ ଭାରତବର୍ଷ, ଭାରତ ବର୍ଷ ହିଁ ରହିଛି ।

ଆମର ଏହି କ୍ଷୁଦ୍ର ବୁଦ୍ର, ସୁନ୍ଦର ଓଡ଼ିଶା ଶଚୀଦେବୀଙ୍କ ପରି କେତେ ଇନ୍ଦ୍ରଙ୍କର ସେବା ଯେ ନକରିଚି, ମଗଧରାଜ ଅଶୋକଙ୍କଠାରୁ ଆରମ୍ଭ କରି ଦକ୍ଷିଣରୁ ପୁଲେସି ବଂଶ, ଉତ୍ତରରୁ ବଙ୍ଗଳା ନବାବ ସୁଲେମାନମାନଙ୍କର ଉତ୍ତରାଧିକାରୀମାନେ, ଉତ୍ତର ପଶ୍ଚିମରୁ

ପ୍ରବଳ ପରାକ୍ରାନ୍ତ ମୋଗଲ ସମ୍ରାଟ ଏବଂ ପରିଶେଷରେ ପଶ୍ଚିମରୁ ଶିବାଜୀଙ୍କର ଅଯୋଗ୍ୟ ଦାୟାଦ ମରହଟ୍ଟା ରାଜା । ସମସ୍ତେ ନିଜ ନିଜର ଜାତୀୟତା ଓ ଧର୍ମ, ତା'ଉପରେ ଲୁଚି ଦେଇ ଯିବାପାଇଁ ଯଥେଷ୍ଟ ଚେଷ୍ଟାର ତ୍ରୁଟି କରିନାହାନ୍ତି । ତଥାପି ଏ ଓଡ଼ିଆ ଜାତି ଜଗନ୍ନାଥଦେବଙ୍କ ଚଣ୍ଡାଳତ୍ୱର ଆଜି ପର୍ଯ୍ୟନ୍ତ ଗର୍ବ ଓ ଆନନ୍ଦ ଅନୁଭବ କରି ଆସୁଛନ୍ତି । ସବୁ ଚକ୍କାର, ଝଙ୍କାର, ନାକଟେକା ମୁହଁଛୁଅଁଡ଼ା ପରେ ମଧ୍ୟ ଓଡ଼ିଆ ଜାତି ତାର ପଖାଳ ମୂଠିକ, ତାର ବୈଦେଶିକ ବିଳାସ ଓ ବିଦଗ୍ଧ ଚନ୍ଦ୍ରାମଣି ଖଣ୍ଡିମାନ ଛାଡ଼ିପାରିନାହାନ୍ତି । ଅତଏବ, ଯେଉଁ ଲେଖକମାନେ ସେଲି, କିଟସ୍, ବାଇରନ୍ ବା ରବୀନ୍ଦ୍ରନାଥଙ୍କ ଲେଖାରେ ଭାବାନୁପ୍ରାଣିତ, ସେମାନଙ୍କ ଲେଖାରେ ଓଡ଼ିଶା ଦେଶକୁ ଭସାଇଦେବାପାଇଁ ଅସ୍ୱାଭାବିକ ସ୍ୱପ୍ନ ଦେଖୁଛନ୍ତି, ସେମାନଙ୍କ କପାଳ ନିଶ୍ଚୟ ଫାଟିଛି । କାରଣ ସେମାନେ ନିରାଶ ହେବେ । ଯେଉଁମାନେ ଜାତୀୟ ପ୍ରବୃତ୍ତିର ଅନୁଧାବନ କରି ଲୋକାଙ୍କ ଦାଉ, ହାଉରେ ବିବ୍ରତ ହୋଇପଡ଼ୁଛନ୍ତି, ସେମାନଙ୍କ ପାଇଁ ମଧ୍ୟ ମୁଁ ବଡ଼ ଦୁଃଖିତ । କାରଣ ସେମାନେ ଚକ୍ଷୁ ବୁଜୁଛନ୍ତି । ମୋର ଦୃଢ଼ ବିଶ୍ୱାସ, ଗଛପଞ୍ଝପରି ଆମ୍ଭେମାନେ ଜାତୀୟତା ପୋଷାକ-ଭାବ ଅମ୍ଳାନ ପାଶ୍ଚାତ୍ୟ ସାହିତ୍ୟରୁ ଗ୍ରହଣକରି, ତାହାର ଜାତୀୟତା ପୋଷକଭାବ ଯବକ୍ଷାରଯାନଗୁଡ଼ିକ ପ୍ରତ୍ୟାହାର କରିବୁଁ । ସେତିକ ମୋର ଜଣେ ବିଶିଷ୍ଟ ସାହିତ୍ୟିକ ବନ୍ଧୁ, ସେ ଜଣେ ଅଗ୍ରଗାମୀ ସାହିତ୍ୟିକ, କହୁଥିଲେ ସେ ରକମ ଲେଖା ଇଂରେଜ ଜାତିର ବିଶିଷ୍ଟ ଅବଗୁଣନର ଫଳ । ମୁଁ ସେ ବିଷୟରେ ତାଙ୍କ ସହିତ ଏକମତ ହୋଇ-ପାରି ନ ଥିଲି । ଏହି ଗୋଟିଏ ଉଦାହରଣରୁ ଦେଖାପଡ଼ିବ ଯେ, ଆମ୍ଭମାନଙ୍କର ବୁଢ଼ା, ଅଗଚଲା ଲେଖକମାନେ ମଧ୍ୟ ପାଶ୍ଚାତ୍ୟ ସାହିତ୍ୟର ଅନୁକରଣରେ ଆମ୍ଭମାନଙ୍କର ଜାତୀୟତା ପରିସର ଅନୁଭବ କରିପାରିଲେଣି । ଏହା ହେଉଛି ସାହିତ୍ୟ ଅନୁଶୀଳନରେ ପ୍ରଧାନ କଥା । ନୂତନ ଭାବରେ ପ୍ରେରଣା ନିମନ୍ତେ ପ୍ରତ୍ୟେକ ସାହିତ୍ୟ ଅନ୍ୟାନ୍ୟ ପାରିପାର୍ଶ୍ୱିକ ସାହିତ୍ୟକୁ ଅପେକ୍ଷା କରିବାକୁ ବାଧ୍ୟ । ସେହିହେତୁରୁ ସଂସ୍କୃତରେ ଅଛି— 'ବିନାଶ୍ରୟେ ନ ବର୍ତ୍ତନ୍ତେ କବିତା, ବନିତା, ଲତା ।' ଏ ସ୍ଥାନରେ ଆଶ୍ରୟ ସାଧାରଣ ଯେପରି ଅର୍ଥ କରନ୍ତି ଧନ ଆଶ୍ରୟ ନୁହେଁ, ଭାବର ଆଶ୍ରୟ । ନୂଆ ନୂଆ ଉପାଦେୟ ଭାବ ନିମନ୍ତେ ଆମ୍ଭମାନଙ୍କ ପାଶ୍ଚାତ୍ୟ ଓ ପାରିପାର୍ଶ୍ୱିକ ସାହିତ୍ୟ ଆଶ୍ରୟ ନେବାକୁ ପଡ଼ିବ କିନ୍ତୁ ସେମାନଙ୍କ ମଧ୍ୟରୁ ଆମ୍ଭମାନଙ୍କର ଜାତୀୟତା ଉପଯୋଗୀ କିପରି ଓ କେଉଁ କେଉଁ ଭାବ ଆହରଣ କରିବା ଦରକାର, ତାହାର ବିବେଚନା ନିମନ୍ତେ ପ୍ରାଚ୍ୟ ଓ ପ୍ରତୀଚ୍ୟ ସାହିତ୍ୟର ରୂପ, ପ୍ରକୃତି ଏବଂ ବିଭାଗ ଆଲୋଚନା କରିବା ଉଚିତ । ଏହି ପ୍ରବନ୍ଧର ଏହାହିଁ ଉଦ୍ଦେଶ୍ୟ ।

ସାହିତ୍ୟ ଜାତୀୟଭାବର ବିକାଶ ମାତ୍ର । ଦେଶରେ ଯେ ଭାବ ଓ ଅନୁଭୂତିର ସ୍ରୋତ ଖେଳିଯାଏ, ସେହି ସ୍ରୋତ ଭାବୁକର ହୃଦୟ ଦର୍ପଣରେ ପ୍ରତିଫଳିତ ହୋଇ ତାହାର ଲେଖାରେ ଅଙ୍କିତ ହୁଏ । ଆହୁରି ମଧ୍ୟ ଦେଶର ଅଭାବ ଓ ଅସୁବିଧା ଦେଶପ୍ରାଣ ଭାବୁକର

ମନରେ ଯେ ସ୍ୱର ସୃଷ୍ଟି କରେ, ତାହା ସାହିତ୍ୟ ଆକାରରେ ଦେଶବାସୀଙ୍କ ସମ୍ମୁଖରେ ଉପସ୍ଥାପିତ ହୁଏ । ତୃତୀୟରେ ଦେଶର ବିଶିଷ୍ଟ ପ୍ରାକୃତିକ ଆବରଣ ଏବଂ ଲେଖକର ଅବଗୁଣ୍ଠନ ତା'ର ସାହିତ୍ୟ ଚଳାସକୁ ଅନେକ ପରିମାଣରେ ପ୍ରଭାବିତ କରିଥାଏ । ଏ ତିନୋଟି ସ୍ତରର ଉଦାହରଣ ଏ ସ୍ଥଳରେ ବିଶେଷ ଭାବରେ ଦେବା ନିଷ୍ପ୍ରୟୋଜନ । ପ୍ରଥମର ଉଦାହରଣସ୍ୱରୂପ, ସୁଇଫ୍ଟଙ୍କର 'ଗଲିଭର୍ ଟ୍ରାଭଲ୍ସ' । ଦ୍ୱିତୀୟ ସ୍ତରର ଉଦାହରଣ ଡିକେନ୍ସନ୍ଙ୍କ 'ପିକ୍ୱିକ' ପେପରସ୍‌ରେ ଅଥବା ଟେନିସନଙ୍କର ପ୍ରିନ୍ସେସ୍‌ରେ ଏବଂ ତୃତୀୟ ସ୍ତରର ଉଦାହରଣ ଓ୍ୱାର୍ଡ଼ସ୍‌ୱର୍ଥଙ୍କ 'ଲୁସି' ଗୀତଗୁଡ଼ିକରେ, ଏହା ବାଦ ଇଂରାଜୀ ସାହିତ୍ୟର ପ୍ରତ୍ୟେକ ଲେଖାରେ ଏହି ତିନୋଟି ସ୍ତରର ଛାୟା ଲେଶ ଅଧିକେ ଅବଶ୍ୟ ମିଳିବ । ଏହିପରି ତିନୋଟି ଭାବର ଛାୟା ଆମ୍ଭମାନଙ୍କର ସାହିତ୍ୟରେ ମଧ୍ୟ ମିଳିବ । କିନ୍ତୁ ଆମ ଦେଶର ଏହି ତିନୋଟି ଭାବ ପାଶ୍ଚାତ୍ୟ ଦେଶର ତିନୋଟି ଭାବଠାରୁ ଭିନ୍ନ । ଅତଏବ, ଉଭୟତଃ ଏହି ତିନୋଟି ସ୍ତରର ରୂପ ଓ ପ୍ରକାର ଆଲୋଚନା କରିବା ଏ ପ୍ରବନ୍ଧ ଦୃଷ୍ଟିରେ ଅବଶ୍ୟ କରଣୀୟ ।

ସଭ୍ୟତା, ଅତଏବ, ସାହିତ୍ୟ ଆରମ୍ଭଠାରୁ ପାଶ୍ଚାତ୍ୟ ଦେଶରେ ଗୋଟିଏ ଭାବର ଲୀଳାମାନ ଆମ୍ଭେମାନେ ବରାବର ଦେଖିବାକୁ ପାଉ । ସେ ହେଉଛି, ରାଜଶକ୍ତି ବିରୋଧରେ ପ୍ରଜାଶକ୍ତିର ଅବିଚ୍ଛେଦ ଆନ୍ଦୋଳନ । ଇଂରେଜୀ ଇତିହାସରେ ପ୍ରକୃତ ସଭ୍ୟତାର ବୀଜ ଉଇଲିୟମ୍ ପ୍ରଥମଙ୍କ ବିଜିତ ରାଜସ୍ୱଠାରୁ । ସେହି ସମୟଠାରୁ ଜନଙ୍କ ରାଜତ୍ୱ ପର୍ଯ୍ୟନ୍ତ । ସାମନ୍ତ ରାଜନୀତି ଚଳିଆସୁଥିଲେ ମଧ୍ୟ ଜନ୍‌ଙ୍କ ସମୟରେ ପ୍ରଜାଶକ୍ତି ପୁଷ୍ଟ ସାମନ୍ତ ମଣ୍ଡଳୀର, ଦାବି ଦରଖାସ୍ତ ଗୋଟିଏ ନୂଆ ଅବସ୍ଥାର ସୃଷ୍ଟି କଲା । ତା'ପରେ ପ୍ରଥମ ଓ ଦ୍ୱିତୀୟ ଏଡ୍‌ୱର୍ଡଙ୍କ ରାଜତ୍ୱର ଘଟଣାବଳୀ ଚାର୍ଲସ୍ ଦ୍ୱିତୀୟଙ୍କ ସମୟରେ ପ୍ରଜାବର୍ଗ କ୍ରମୱେଲ୍‌ଙ୍କ ନେତୃତ୍ୱରେ ରାଜଶକ୍ତି ବିରୋଧରେ ଦଣ୍ଡାୟମାନ ହେବା, ହୁଇଗ୍ ଓ ଟୋରି ଦଳର ଆବିର୍ଭାବ, ଗ୍ଲାଡଷ୍ଟୋନ୍ ଓ ପିଟ୍‌ଙ୍କ ସମୟରେ ପ୍ରାଚୀନ ନୀତିର ବିଶେଷ ସଂସ୍କାର ଏବଂ ଆଧୁନିକ ଯୁଗରେ ଶ୍ରମିକ ଦଳର ପ୍ରଭାବ, ଏହିପରି ଶତଶତ ଶ୍ରେଷ୍ଠ ବଡ଼ ଆନ୍ଦୋଳନମାନଙ୍କ ମଧ୍ୟରେ ଲୋକମାନଙ୍କର ରାଜନୀତି ଓ ସମାଜନୀତିରେ ଜ୍ଞାନ ଉଦ୍‌ବୋଧନର ବଢ଼ିଯାଇଛି । ସେହିପରି ଫରାସୀ ଇତିହାସରେ ନାନାପ୍ରକାର ରାଜନୈତିକ ନୀତି ଓ ଅନୀତି ପରେ ଫରାସୀ ବିଦ୍ରୋହର ନରକ ଅନ୍ଧକାର । ତା'ପରେ ବୋନାପାର୍ଟଙ୍କ ନେତୃତ୍ୱରେ ଫରାସୀ ଜାତିର ଗୌରବ । ଶେଷରେ ନେପୋଲିଅନଙ୍କର ପତନ । ବୁର୍ବିନ୍ ବଂଶର ପୁନରୁତ୍‌ଥାନ ଦ୍ୱିତୀୟ ବିପ୍ଳବ, ନେପୋଲିୟନ ବଂଶର ପୁନରଭ୍ୟୁଦୟ ଏବଂ ଶେଷରେ ସାଧାରଣତନ୍ତ୍ର ଶାସନ ପ୍ରଣାଳୀ ପ୍ରତିଷ୍ଠା । ପାଶ୍ଚାତ୍ୟ ଜଗତର ଏହି ସମସ୍ତ ଉତ୍‌ଥାନପତନ ମୂଳରେ ଅର୍ଥନୈତିକ ସମସ୍ୟା ହିଁ ପ୍ରଧାନ ।



( ଅସମ୍ପୂର୍ଣ୍ଣ )

# ଜବାବ

ଓଡ଼ିଶାରେ ଯେ ଏ ହିନ୍ଦିଭାଷାର ପ୍ରଚାର ଚାଲିଛି, ଏଥିଲାଗି ମୁଁ କ'ଣ କରିବି— ଏଇ କଥାଟି ମତେ ସଂପାଦକ ପଚାରିଚନ୍ତି । ମୁଁ କିଆଁ କ'ଣ କରିବି ? ମୋର କି ବାପ ଶ୍ରାଦ୍ଧ କି ପୁଅ ବିଭା ବନ୍ଦ ହୋଇଯାଉଚି ଯେ ମୋର ଏତେ ମୁଣ୍ଡ ବଥେଇବି ସ୍ୱାଲାଗି । ଏ ଓଡ଼ିଆ ଭାଷାଟା ଆଜିକି ପ୍ରାୟ ହଜାରେ ବର୍ଷ ହେବ ଅଛି । ଇମିତି କେତେ ପରଗଣ୍ଡ-ପ୍ରିୟ ଆମ ମୁଣ୍ଡ ବାଡ଼େଇ ଯାଇଛନ୍ତି—ସେଥିରେ ତାଙ୍କ କପାଳ ଫାଟିଛି ସିନା; ଓଡ଼ିଆର କ'ଣ ହୋଇଯାଇଛି ? ଓଡ଼ିଆ ଭାଷାର ଜନ୍ମସ୍ଥାନ ମଫସଲ ଗାଁ; ସେ ସେଇ ପଖାଳଖିଆ ଭିତରେ ଶାଗ ପେଜ ଖାଇ ବଢ଼ିଛି, ମହାଦେବଙ୍କ ବୃଷଭ ଭଳି । ସେଇଠାରେ ତା'ର ଆଶ୍ରମ । ସହରର ଏ ଠେକୁଆ ବା ଶୁଆ ଭାଷା ତା'ର କ'ଣ କରିବ ?

ଆଉ, କ'ଣ କରିବା ଦରକାର ବା କ'ଣ ? ଏ ଶ୍ରେଷ୍ଠ ଦେଶର ଶ୍ରେଷ୍ଠ ଭାଷା । ଏହାର ସମାଧି ହେବା ଉଚିତ । ତା ଜାଗାରେ ବଡ଼ ଦେଶ ବଙ୍ଗଳା ବା ହିନ୍ଦୁସ୍ଥାନର ଭାଷା ଆସିବା ଉଚିତ । ଦେଖନ୍ତୁ, ଏ ଜଗତଟାରେ କ'ଣ ହଉଚି ? ସୁଇଡେନ, ନରଓ୍ୱେ, ହଲାଣ୍ଡ, ବେଲଜିଅମ୍, ସୁଇଜରଲାଣ୍ଡ, ଯେକୋସ୍ଲୋଭାକିଆ, ପୋଲାଣ୍ଡ ଇତ୍ୟାଦି ସଭ୍ୟପୃଥିବୀର କେତେ ଶ୍ରେଷ୍ଠଦେଶ ଓ ଶ୍ରେଷ୍ଠଭାଷା—ସମସ୍ତେ କିମିତି ନିଜ ନିଜର ଭାଷାକୁ ଛାଡ଼ି ବଳ ବଳାତର, ଫ୍ରାନ୍ସର କି ରୁଷିଆର ଭାଷାରେ କଥାବାର୍ତ୍ତା ହଉଚନ୍ତି, ଲେଖାଲେଖି କରୁଛନ୍ତି । ତୁମେ କହିବ, କାହିଁ ଇମିତି କଥା ତ ଆମେ କେବେ ଶୁଣିନାହୁଁ; ସ୍ୱିଡିସ୍ ଲେଖକ ତା ଭାଷାରେ ଲେଖେ, ବେଲଜିଆନ୍ ଲେଖକ, ତା ଭାଷାରେ ଲେଖେ । ତୁମେ ଗଧ, ତୁମେ ବୋକା, ତୁମେ ଅନୁଦାର, ତୁମେ ମୋଟେ ଆଜିକାଲିକାର ପ୍ରଗତି (ପରଗତି) ସାହିତ୍ୟ ପଢ଼ିନାହିଁ । ତୁମେ ଅବଶ୍ୟ ସ୍ୱୀକାର କରିବଯେ ଆମେ ଜଣେ ବଡ଼ଧରଣର ସାହିତ୍ୟିକ, ଆମେ ଲେଖକ, ଆମେ ଯେବେ ଏତେ କଥା—ତା'ହେଲେ ଆମେ କ'ଣ ମିଛ କହିପାରୁଁ ? ଆଉ ତୁମେ କ'ଣ ? ହେଲେ ଗୋଟାଏ ଖଣ୍ଡିଆ କାଗଜର ସଂପାଦକ, ପାଁଚ ହଜାରକର ଚାକର; ତୁମେ କ'ଣ ମିଛ କହିନାହିଁ ? ତୁମ ହୃଦୟ, ତୁମର ଶିକ୍ଷା, ତୁମର ଆଦର୍ଶ କ'ଣ ଉଦାର ଓ ମହତ୍ ହୋଇପାରେ ? ଅତଏବ ତୁମର ଭୁଲ, ଆମର କଥାଟି ଠିକ୍ ।

ତାପରେ ଯେ ଦେଶଗୁଡ଼ାକରେ ଯେବେ ବା ଭୁଲରେ ନିଜ ଭାଷାରେ କଥା-କୁହା ଓ ଲେଖାଲେଖି ହେଉଥାଏ, ତାହେଲେ ସେ ତାଙ୍କର ଅସଭ୍ୟତାର ଫଳ । ସେମାନେ ତ ଆମ ଭଳି ବଙ୍ଗଳା, ହିନ୍ଦି ଓ ଇଂରାଜୀ ପଢ଼ି ବଡ଼ଲୋକ ହୋଇପାରି ନାହାନ୍ତି, ସେମାନଙ୍କ ମୁଣ୍ଡରେ ଏପରି ଉଚ୍ଚଦରର ଭାବ ସବୁ ପଶିବ କିମିତି ? ଆଉ

ଇଂରେଜୀ ଭାଷାର ଯେବେ ସେ ଦେଶରେ ପ୍ରଚାର ହୋଇପାରୁନାହିଁ, ତାହେଲେ ସେ ଇଂରେଜୀ ଲେଖକମାନଙ୍କର ଅଧମତା । ଦେଖନା, ଆମେ ଏଣିକି ଇଂରେଜୀ ବଙ୍ଗଳାରେ ଲେଖି କପରି ସେ ଭାଷାଗୁଡ଼ାକୁ ଏକାବେଳକେ ଅଧଃସ୍ୱର୍ଗକୁ ଉଠେଇ-ଦବୁଁ । ସେଦିନ ବିଲାତର ପ୍ରଧାନମନ୍ତ୍ରୀ ବଲ୍‌ଡ୍‌ୱିଇନ୍ ସାହେବ କହୁଥିଲେ ଯେ ଇଂରେଜୀ କବିତା ଇଂରେଜୀ ଲୋକ ପଢ଼ନ୍ତି ନାହିଁ—ସେହି ହେତୁରୁ ଇଂରେଜୀର କବି ଓ ଲେଖକମାନେ ନିତାନ୍ତ ଗରିବ । ବାଲଡ୍‌ୱିଇନ ସାହେବଟା 'ଆସ୍ତ' ଗଧ । ସେ 'ସେକେଲେ' । ତାଙ୍କ କଥା ଗୋଟାଏ କଥାରେ ଲେଖା ନା ? ଇଂରେଜୀର କବି ଓ ସାହିତ୍ୟିକମାନେ ଲକ୍ଷ ଲକ୍ଷ କୋଟି କୋଟି ଟଙ୍କା ରୋଜଗାର କରୁଚନ୍ତି । ବିଲାତର ଅତି ଲୋକପ୍ରିୟ ଗଳ୍ପ ସାହିତ୍ୟିକ ଏଡ୍‌ଗାର ଓ୍ୟାଲେସ୍ ମଲାବେଳକୁ ତାଙ୍କର କେତେ ହଜାର ଟଙ୍କା କରଜ ଥିଲା । ଓ୍ୟାଲେସ୍, ଓଃ ! ସେ ତ କେବକାଳର ଲୋକ, ମଲେଣି ଆସି ୧୯୩୫ ସାଲରୁ । ତା କଥାଟା ଗୋଟାଏ କଥା ନା ? ଏଇ ତ ହେଉଚ, ତୁମର ବୋକାମିର ପରିଚୟ । ତୁମେ ନିତାନ୍ତ ଅନୁଦାର ନ ହୋଇଥିଲେ ଏ କଥାଗୁଡ଼ାକ ଜାଣିପାରନ୍ତ ! ସେମାନଙ୍କ କଥା ଛାଡ଼ିଦିଅନା । ଏଇ ଆମେ, ଆମେ କେଡ଼େ ବଡ଼-ଲୋକ, ଆମେ ଯେବେ ଇଂରେଜୀରେ ଲେଖୁଁ, ତାହେଲେ ଦେଖିବ ଆମେ ହଜାର ହଜାର ଲକ୍ଷ ଲକ୍ଷ କୋଟି କୋଟି ଟଙ୍କା ରୋଜଗାର କରି ପକାଇବୁଁ । ଆଉ ତୁମେ-ସବୁ ଯେଉଁମାନେ ଓଡ଼ିଆ ସାହିତ୍ୟ, ଓଡ଼ିଆ ଭାଷାକୁ କାମୁଡ଼ି ପଡ଼ିଚ—ତୁମେ ଗୋବର-ଖାତରେ ଲଙ୍ଗୁଡ଼ାପୋକ ହୋଇ ପଡ଼ିଥିବ । ନାହିଁ ଯଦି କହ ଯେ ଆମେ ଦୟାକରି ଓଡ଼ିଆରେ ପଦେଅଧେ କେତେବେଳେ ଲେଖିବୁଁ, ତାହେଲେ ଆମ ମନକୁ ଯିମିତି ଆସିବ, ସିମିତି ହବ । ଆମେ ବଙ୍ଗଳା, ହିନ୍ଦୁସ୍ଥାନୀ, ଇଂରେଜୀ, ତେଲଗୁ, ତାମିଲ ଏସବୁର ଗୋଟାଏ ଖେଚଡ଼ି ତିଆରିକରି ସେଥିରେ ଓଡ଼ିଆ ଭାଷାର ଟିକିଏ ଫୋଡ଼ଣ ଦେଇ ତୁମ ଆଗରେ ରଖିଦେଲେ ତୁମେ ତାକୁ ଜଗନ୍ନାଥଙ୍କ ମହାପ୍ରସାଦ ପରି ମୁଣ୍ଡରେ ଲଗେଇ କୃତକୃତ୍ୟ ହୋଇଯିବ ।

ଦେଶର ରମା, ଧିମା, ଶ୍ୟାମାଙ୍କ ସାଙ୍ଗରେ ଆମର କ'ଣ ଅଛି ? ଆମେ ସାହିତ୍ୟ ଲେଖିବୁଁ, ଆମ ଅଣ୍ଟା ଟାଣ କରିବାକୁ, ଆମ ପକେଟ ଭର୍ତ୍ତି କରିବାକୁ, ନ ହେଲେ ଆମ ନା' ଡବ ଡବ ବଜେଇବାକୁ । ରମା ଶ୍ୟାମା ଧିମା ବୁଝିବା ସାଙ୍ଗରେ ଆମର କ'ଣ ଅଛି ? ସେମାନଙ୍କର ଦରକାର ହୁଏତ ବୁଝିବା ପାଇଁ—ସେମାନେ ବୈଷ୍ଣବ ପାଣି ନଇଲେ ଗୋବିନ୍ଦ ରଥଙ୍କ ଲେଖା ପଢ଼ନ୍ତୁ । ତାଙ୍କର ହାଡ଼ଭଙ୍ଗା ପଇସା ଦେଇ ଆମ ବହି କିଣନ୍ତୁ । ନବୁଝି ପାରିଲେ ବୋଲି ଯେବେ ନ କିଣିଲେ ତାହେଲେ ଆମ୍ଭେ ନ ଲେଖିବୁଁ ଏବେ । ଆଉ ତୁମେଗୁଡ଼ାକ ଯେବେ କହିବ ଯେ ନିଛୁଟା ଓଡ଼ିଆ ଭାଷାରେ ଯଥାସମ୍ଭବ ଓଡ଼ିଆ ଭାଷା ଲେଖା ହେବ ବୋଲି ତା' ହେଲେ ଦେଖି ତ ଦେଖି, ତୁମେ ଭଲ ଲେଖ ତ ଏପରି ସାହିତ୍ୟ, ଯେଉଁଥିରେ କି ଗୋଟିଏ ବୋଲି ଯଷ୍ଟ୍ ତ

ଶବ୍ଦ ନଥିବ । ତୁମେ କହୁଥାଅ ଯେ, "ଆମେ ଯଥାସମ୍ଭବ ଓଡ଼ିଆ ଭାଷାରେ ଲେଖିବା, କିନ୍ତୁ ଦରକାର ପଡ଼ିଲେ ସଂସ୍କୃତ, ବଙ୍ଗଳା, ହିନ୍ଦି ଏପରିକି ଇଂରେଜୀରୁ ଶବ୍ଦ ବ୍ୟବହାର କରିବା; କିନ୍ତୁ ସେ ଶବ୍ଦକୁ ବାକ୍ୟ ଭିତରେ ଏପରି ଭାବରେ ରଖିବାକୁ ହବ, ଯେପରି ସାଧାରଣ ଲୋକଙ୍କର ବାକ୍ୟଟାର ଅର୍ଥ ବୁଝିବାକୁ କଷ୍ଟ ହବନାହିଁ"—ତା' ହେଲେ ସେଗୁଡ଼ାକ ଅବାନ୍ତର ଆମେ ଏତେ କଥା ବୁଝିବାକୁ ଆମର ସମୟ ନାହିଁ, ଅତଏବ ତୁମ କଥାର ପନ୍ଦରପଣ ବାଦ୍‌ଦେଇ ପଣକ ଉପରେ ଆମେ ଟିକ୍‌କା, ଟୀପ୍‌ପଣି, ଦାସ୍ତିକା ମାଡ଼ କରି ବସିବୁଁ । ଏ ବଡ଼ ସାହିତ୍ୟିକମାନଙ୍କ କାମ । ବଡ଼-ଲୋକ ହେଲେ ଇମିତି କରନ୍ତି । ଯେଉଁମାନେ ଶ୍ରେଷ୍ଠଲୋକ, ସେଇମାନେ କେବଳ କଥାଟା ବୁଝି ଧୈର୍ଯ୍ୟ ଧରି ଲେଖାଲେଖି କରିପାରନ୍ତେ ତୁମେ ଯଦି ଏତିକି ଜାଣି ନଥାଅ ଯେ ପଣ୍ଡିତଙ୍କ ପୁଅ ମାଙ୍କଡ଼ ମାଇଲେ ଦୋଷ ନାହିଁ—ତା'ହେଲେ ତୁମଠାରୁ ବଳି ଅଧମ ଏ ଜଗତରେ କେହି ନଥିବେ ।

ଓଡ଼ିଶାରେ ଯେତେବେଳେ ଏପରି ସାରବାନ, ନ୍ୟାୟବାନ, ଯୁକ୍ତିଯୁକ୍ତ ଲେଖା ବାହାରୁଚି, ସେତେବେଳେ ସଂପାଦକଙ୍କର ବା ଗୋବିନ୍ଦ ଭାଇଙ୍କର ଭୟକରିବାର କ'ଣ ଅଛି ? ଏ ସାହିତ୍ୟର ପରିଂଗତି ପାଇଁ କାହାରି କିଛି କରିବା ଲୋଡ଼ାନାହିଁ । ହୋସେନ୍ ହେନାର ଗନ୍ଧ ବାସନା ନାକରୁ ଗୁଲିଗଲା ପରେ ମଧ୍ୟ ମନରେ ଲଗିରହେ, କିନ୍ତୁ ଦୁଦୁରା ଫୁଲର ଗନ୍ଧ ନାକରୁ ଗୁଲିଯିବା ସାଙ୍ଗେ ସାଙ୍ଗେ ଲୋକ ଦୁଃସ୍ୱପ୍ନ ପରି ଏକାବେଳେକେ ପାଶୋରିପକାଏ ।

ତା ଉତ୍ତାରୁ, ସବୁ ଯୁଗର ସବୁ ସାହିତ୍ୟରେ ଇମିତି ଗୋଟାଏ ପରିବର୍ତ୍ତନ ହାପୁରା ବେଳ ଆସିଥାଏ । ବେକନଙ୍କର ଅଧା ଫାରସି, ଅଧା ଲଟିନ ଇଂରେଜୀ ଭାଷା ଆଜି ନାହିଁ—ଇଂରେଜ ଭାଷାଭାଷୀଙ୍କ ଭିତରୁ ପନ୍ଦରପଣ ଉଣିସିଗଣ୍ଡା ଛଅନକଡ଼ା ଲୋକ ବୋଧହୁଏ ବେକନ୍‌ଙ୍କ ନା ଜାଣିନାହାନ୍ତି । ଯେତେବେଳେ ପାଖପଡ଼ିଶାଙ୍କ ଘର ସରଗରମ ହେଇଯିବ, ସେତେବେଳେ ତାଙ୍କ ଘରର ତାତିଲା ପବନ ଆମ ଘରକୁ ଅଲପେ ବହୁତେ ବୋହିଆସିବ । ଆମ ଘରର ପଖାଳ ଥଣ୍ଡା ବାଜି ସେ ଗରମ ପବନ ମଧ୍ୟ ଥଣ୍ଡା ହୋଇଯିବ ଭନେ । ବଙ୍ଗଳା ସାହିତ୍ୟର ଗରମଭାବ ଗଲାଣି; ଭଲେ ଜଣାଯାଏ ଯେପରି ସେଥିରେ ଭୁଡ଼ୁଡ଼ି ମାଡ଼ିଗଲାଚି । ହିନ୍ଦି ସାହିତ୍ୟ ଆମରି ପରି ପରିଗତି ପରିଚେଷ୍ଟାରେ ଅଛି । ତେବେ ଭୟ କାହିଁକି ସଂପାଦକ ଭାଇ ? ମା ଭୈଃ ।

ତୁମେ ଭାଇ, ମୋତେ ବଳିବ ବୋଧହୁଏ । କହିବ କ'ଣ ମ, ମୁଁ ସିନା ସ୍ୱାକ୍ଷି କହିଥିଲି ଗୋଟେ ରସରସିଆ କଥା କିଛି ଲେଖିବେ ବୋଲି, ଇମିତିଗୁଡ଼େ ବାଜେକଥା ଲେଖି ମତେ ଭଣ୍ଡେଇଦବାକୁ ଚେଷ୍ଟା କରୁଛନ୍ତି ଯେ ମୁଁ କ'ଣ ପିଲା ହେଇଚି ? କ'ଣ କରିବ ଭାଇ; ବାଜେକଥା ଲେଖିବା ମୋର ଅଭ୍ୟାସ ପଡ଼ିଗଲାଣି । ତେବେ ତୁମ ମନ ଘିନି ତ ଚଲିବାକୁ ହେବ । ସେଥିପାଇଁ ଲେଖୁଚି ।

ଏ ପରଗଡ଼, ପରଚେଷ୍ଟାର ପ୍ରେମସ୍ରୋତରେ ପଥରବନ୍ଧ ପକାଇବାର ଗୋଟିଏ ମାତ୍ର ଉପାୟ ମନେପଡ଼ୁଛି । ଆମ ସ୍ୱରାଜ୍ୟ ସରକାର ଯେବେ ବଙ୍ଗଳାପ୍ରେମୀଙ୍କୁ, ବଙ୍ଗଳାକୁ ଓ ହିନ୍ଦିପ୍ରେମୀଙ୍କୁ ବିହାରକୁ ପେଣ୍ଠିଦିଅନ୍ତେ, କହନ୍ତେ ବାବୁହେ, ତୁମ ପ୍ରେମିକଙ୍କ ପାଖକୁ ଯାଅ, ସେଇଠି ଚଳିବ, ରହିବ, ଖାଇବ ଆନନ୍ଦ କରିବ; ଯେତେବେଳଯାଏ ଓଡ଼ିଶାର ରମା ଧାମା ଶ୍ୟାମାଙ୍କ ଆଡ଼କୁ ତୁମର ମନ କଡ଼କଚ— ସେତେଦିନଯାଏ 'ପଥ ପଶୁର ପିତା ଘର ଯିବ, ଆଉ ଓଡ଼ିଶା ମନେ ନ କରିବ,' ତା'ହେଲେ ମୋର ମନେହୁଏ, ଏ ମୋହ ଭାଙ୍ଗିପାରିବ । ନିଜ ଘରେ ବସି ପଡ଼ିଶାଘର ପ୍ରତି ପ୍ରେମ କରିବା ଏକ କଥା; ଆଉ ପଡ଼ିଶାଘର ପ୍ରଣୟିନୀଙ୍କୁ ଘେନି ପ୍ରତିଦିନ ଚଳିବା ଆଉ ଏକକଥା ।

ହଁ, ଆଉ ଗୋଟିଏ କଥା । କଥା ଲମ୍ବେଇଲେ ଅନେକ ବାଟ ଯିବ । ଆଉ ବାଟ ଯେତିକ ଯିବ, ବଡ଼ିଶପଲିଆ ସେତିକ ଖଣ୍ଡା ହେବ । ଗୁଣ୍ଡଟାକୁ ଏ ବୁଢ଼ା ହାଡ଼ରେ ବଢ଼ିଶିପଲିଆ ମୂଲେଇବ କିଆ ? ଗୋଟିଏ କଥା । ଓଡ଼ିଶାରେ ବିଦେଶୀ ସାହିତ୍ୟ, ବିଦେଶୀ ସଙ୍ଗୀତ, ବିଦେଶୀ ସଭ୍ୟତା, ବିଦେଶୀ ମମତାର ସୁଅଟାତ ଖୁବ୍ ଟାଣରେ ଗୁଲିଚ । କିନ୍ତୁ ମୋର ଯେମିତି ମନେହୁଏ—ଏ ଖାଲି ଭଡ଼ଙ୍ଗ । ଭଡ଼ଙ୍ଗିଆମାନେ ଯିମିତି କରନ୍ତି ନାହିଁ—ନିଜ ବଡ଼ଲୋକ ଦେଖାଇବା ପାଇଁ, ମୁଁ ଇମିତି ଅମୁକ ସାହେବଙ୍କ ସାଙ୍ଗରେ ଖାନାଖାଇଲି, ଅମୁକ ରଜା ମତେ ଇମିତି ଖାତିର କଲେ, ଅମୁକ କୋଟିପତି ମତେ ଇଅତିକା ପୂଜା କଲେ, ଇତ୍ୟାଦି; ଏଇଟା ଠିକ୍ ସେଇପରି । ବିଦେଶୀ ଭାଷା, ସାହିତ୍ୟ, ସଙ୍ଗୀତ ବିଷୟରେ ଯେବେ ଆମର କାରସାଦି ଏତେ, ତା'ହେଲେ ସେଇଟା ବିଦେଶରେ ନ ଫୁଟି ନିଜ ଦେଶରେ ଗନ୍ଧଉଚ କିଆଁ ? ବଙ୍ଗଳାର କୃଷ୍ଣଚନ୍ଦ୍ର ପ୍ରଭୃତି ଗାୟକମାନେ ହିନ୍ଦି ସଙ୍ଗୀତ ରାଜ୍ୟରେ ଖୁବ୍ ତ ନାଁ କଲେଣି ।

ପ୍ରମଥେଶ, ଯମୁନା ପ୍ରଭୃତି ବଙ୍ଗଳାର ଅଭିନେତା ଓ ଅଭିନେତ୍ରୀମାନେ ହିନ୍ଦି ନାଟ୍ୟ ଜଗତରେ ଖୁବ୍ ଉଚ୍ଚଆସନ ଦଖଲ କରି ବସିଚନ୍ତି । ସେହିପରି ସାଇଗଲ ପ୍ରଭୃତି ହିନ୍ଦି ଅଭିନେତାମାନେ ବଙ୍ଗଳା ନାଟ୍ୟଜଗତରେ ନାମ ଅର୍ଜିଚନ୍ତି । ଏମାନେ ନିଜଦେଶ ଓ ନିଜଦେଶର ଭାଷାକୁ ଭୁଲିନାହାନ୍ତି । ନିଜର ଗୋତ୍ର ଠିକ୍ ରଖି ସେମାନେ ପରଗୋତ୍ରରେ ପଶି ନାଁ ଓ ପଇସା ରୋଜଗାର କରୁଚନ୍ତି । କିନ୍ତୁ କେତେଜଣ ପର-ପ୍ରେମୀ ଓଡ଼ିଆ ପରଦେଶରେ ନାଁ ଅର୍ଜିଚନ୍ତି ? ପରଦେଶର କେତେ ପଇସା ପରପ୍ରେମୀ ଓଡ଼ିଆ ନିଜ ଦେଶକୁ ନେଇପାରୁଚନ୍ତି ?

ଓଡ଼ିଶା ଶ୍ରେଷ୍ଠ ଦେଶ । ଓଡ଼ିଆ ଶ୍ରେଷ୍ଠଭାଷା । ଏଥିରେ ପାଲି ପକେଇ ବଡ଼ ହବା ଯେତେ ସହଜ, ପରଦେଶରେ ଗୁଣୀ ହବା ତା'ଠାରୁ ଢେର କଷ୍ଟକର । ପରଦେଶୀ ସାହିତ୍ୟ ପଢ଼ିବା ଦରକାର, ପରଦେଶୀ ସଭ୍ୟତା ବୁଝିବା ଦରକାର,

ମହତ୍ତ୍ୱ ପରଦେଶୀ ହେଲେ ମଧ୍ୟ ମାନିବା ଦରକାର, ପରର ଉନ୍ନତି ଦେଖି ନିଜକୁ ଉନ୍ନତ କରିବାର ଚେଷ୍ଟା କରିବା ମଧ୍ୟ ଦରକାର । କିନ୍ତୁ କିପ୍‌ଲିଙ୍ଗଙ୍କ 'ବାନ୍ଦରଲୋକ' ପରି ଲକ୍ଷ୍ମୀକାନ୍ତବାବୁଙ୍କ 'ହନୁକରଣ' କରି ନିଜଭାଷା ଓ ସାହିତ୍ୟଟାକୁ ବୁଡ଼େଇ ମାରିବା ବଡ଼ ଲୋକଙ୍କ ଆଖିରେ ବଡ଼କଥା ହୋଇପାରେ, ମାତ୍ର ଆମ ଛୋଟଲୋକଙ୍କ ଆଖିରେ ନିତାନ୍ତ ଛୋଟକଥା ।

ଶେଷରେ କେତେକ କହନ୍ତି ଯେ ଭାଷାଟାକୁ ନୂଆ ନୂଆ ଭାବପ୍ରକାଶ କରିବାର ଉପଯୋଗୀ କରିବାକୁ ଇଚ୍ଛାକଲେ, ପରଦେଶୀ ଭାଷାରୁ ନୂଆ ନୂଆ ଗଳ୍ପ, ଶବ୍ଦମାଳା ଓ ବାକ୍ୟ ପ୍ରୟୋଗ କରିବା ଦରକାର । କାହିଁ ? ବଙ୍ଗଳା ଓ ହିନ୍ଦି ଯେ ମୂଳ ମାଗଧିରୁ ତିଆରି ଓଡ଼ିଆ ମଧ୍ୟ ସେହିଥିରୁ । ସେମାନେ ଯେବେ ନୂଆ ଭାବ-ପ୍ରକାଶ କରିବାକୁ ନୂଆ ଶବ୍ଦ ପ୍ରଭୃତି ତିଆରି କରିପାରିଲେ, ତୁମେ କାହିଁକି ଓଡ଼ିଆରେ ସେହିପରି ଶବ୍ଦ ତିଆରି ନ କରିବ ? ଇଂରେଜି ଭାଷା ତୁଳନାରେ ଓଡ଼ିଆର ଅବସ୍ଥା ଯାହା, ବଙ୍ଗଳାର ଅବସ୍ଥା ମଧ୍ୟ ସେଇଆ । ବଙ୍ଗଳାରେ ବିଜ୍ଞାନର ବୈଷୟିକ ଇଂରେଜି ଶବ୍ଦର ବଙ୍ଗଳା ତିଆରି କରିବାର ଉଦ୍ୟମ ହେଉଛି । ଓଡ଼ିଆରେ କିଏ କରୁଛି ? ଆମେ ଖାଲି ଗୃହିଁ ବସିଚୁଁ, ବଙ୍ଗାଳି ତିଆରି କଲେ ଆମେ ତାକୁ କୁଣ୍ଢେଇବୁଁ । ଥାଉ ଭାଇ, ଆଉ କହିବି ନାହିଁ । କହିଲେ, ଏ ଦେଶରେ କେତେବେଳେ ରହିବାର ଇଚ୍ଛା ଥିଲେ ବି ରହିବ ନାହିଁ ।



୧ମ ବର୍ଷ—୬ଷ୍ଠ ସଂଖ୍ୟା, ଶ୍ରାବଣ ଦ୍ୱିତୀୟାର୍ଦ୍ଧ

# ଅଧିଆ-ପକାଃ

## ୧—ଏ କଥା କାହିଁକି ?

କଥା କଣ କି, ଆଜିକାଲି ଗୋଟାଏ ଧୂଆ ଉଠିଛି, ଖାଲି ଭଙ୍ଗାରୁଜା ସମାଲୋଚନାରେ କୌଣସି ଲାଭ ନାହିଁ । ଗଠନମୂଳକ ସମାଲୋଚନା ହିଁ ଦେଶ ଓ ଜାତି ପକ୍ଷରେ ଉନ୍ନତିକର । ମାନେ ଆମେ ଯାହା କହୁଛୁଁ, ତାକୁ ସମାଲୋଚନା କରନା । ଆମ କଥା ଉପରେ ତୁମର ଯେବେ ଆଉ କିଛି କହିବାର ଥାଏ କହ, ମୁଁ ଯେବେ ତୁମର ଏ ଆହ୍ୱାନ ଅନୁସାରେ କିଛି କହିଲି, କିଛି ପାଲଟା ପ୍ରସ୍ତାବ ଦେଲି, ତାହେଲେ ସାଙ୍ଗେ ସାଙ୍ଗେ ଜବାବ୍ ଆସିଲା, ଏଗୁଡ଼ାକ କେବଳ ଜହ୍ନମାମୁଁଙ୍କ ଠେକୁଆ, ଏହାର କୌଣସି ଭିତ୍ତି ନାହିଁ, ଏହା ଅସବାଦିତ । ଅର୍ଥାତ୍‌ ତୁମେ ଯାହା କିଛି କହିବ ସେ ସତ, ମୁଁ ଯାହା କହିବ ସେ ଅସତ୍ୟ । ଯେବେ ଅସତ୍ୟ ହେଲା, ତାହେଲେ ନିଶ୍ଚୟ ତାର ଉଦ୍ଦେଶ୍ୟ, ଈର୍ଷ୍ୟା, ଦ୍ୱେଷ ଓ ଅହଂକାର । ତୁମେ ଯାହା ସତ୍ୟ କହୁଚ ସେ ଦେଶର ଓ ଜାତିର ମଙ୍ଗଳ ପାଇଁ, ମୁଁ ଯାହା ଅସତ୍ୟ କହୁଲି, ସେ ∴ ଦେଶ ଦ୍ରୋହିତା, ଜାତି ଶତ୍ରୁତା । ଉପସଂହାର—ମୁଁ ତୁମ କଥାର ଆଲୋଚନା ମାତ୍ର କରିପାରେ, ମାନେ, ଏ ଖୁବ୍ ଭଲ କଥା, ଏ କଥା ଯେ କହୁଛନ୍ତି, ସେ ଖୁବ ମହତ୍ ଲୋକ । ତାଙ୍କ କଥା ସମସ୍ତଙ୍କର ଶିରୋଧାର୍ଯ୍ୟ ହବା ଉଚିତ । ସମାଲୋଚନା କରନା, କଲେ ତୁମେ ହବ ଦେଶଦ୍ରୋହୀ, ଅଜ୍ଞ, ମୂର୍ଖ, ଅବାନ୍ତରବାଦୀ । ରାଜନୈତିକମାନଙ୍କ ପକ୍ଷରେ ଏହା ଭଲ କି ମନ୍ଦ, ସେ କଥା ମୁଁ ଜାଣେନା । କିନ୍ତୁ ଏକଥା ଯେତେବେଳେ ଆତ୍ମଶ୍ଲାଘ୍ୟ ସାହିତ୍ୟିକମାନେ କହନ୍ତି, ସେତେବେଳେ ସହି ହୁଏନା, ବାସ୍ତବ ଦୃଷ୍ଟାନ୍ତସ୍ୱରୂପ ଆମ ଏ ଦେଶର ଜଣେ ଗଣ୍ୟମାନ୍ୟ ଅଧ୍ୟାପକ-ମନ୍ୟ ମାସିକ ପତ୍ରିକା ସମ୍ପାଦକ ମହୋଦୟ ତାଙ୍କର ମହାର୍ଘ ସମ୍ପାଦକୀୟ ଟିପ୍‌ପଣୀରେ ଲେଖିଲେ ଯେ ସେ ଏଣିକି ବାଛି ବାଛି ଯାହା ଗଠନପ୍ରାଣ ପ୍ରବନ୍ଧ ତାକୁ ହିଁ ଛାପିବେ, ଅନ୍ୟାନ୍ୟ ନିନ୍ଦୁକ ସମାଲୋଚନାପ୍ରାଣ ପ୍ରବନ୍ଧ ଛାପିବେନା । ତାଙ୍କ ପତ୍ରିକାର ଶେଷ ସଂଖ୍ୟାଟି ମୁଁ ଏବେ ପଢ଼ିଲି । ଦେଖିଲି ସେଥିରେ ଗଠନପ୍ରାଣ ପ୍ରବନ୍ଧ ବୋଲି ସେ ଯାହା ବାଛିଛନ୍ତି, ତା ଭିତରେ ଗୋଟିଏ ମାତ୍ର ଗଠନର ନାମ ହିଁ ଧରିନ । କେବଳ ଆଲୋଚନା, ସମାଲୋଚନା ଓ ଆକ୍ଷେପୋକ୍ତି । ହେଲେ ମୁଁ କଣ, କାହିଁକି, ଯା ଭିତରେ କିଛି ଗୂଢ଼ ମତଲବ୍ ରହିଛି, ନା, କେବଳ ବୁଦ୍ଧିରବିଭ୍ରାଟର ଫଳ ଏ ସବୁ ? ସେହି ହେତୁରୁ ଏତକ ଲେଖିବାକୁ ଇଚ୍ଛା ହେଲା ।

## ୨—ଅଧିଆ-ପକାଃ ମାନେ କଣ ?

ଅଧି + ଆପକ = ଅଧ୍ୟାପକ । ପଣ୍ଡିତସମାଜରେ ହେଲା । ଯାର ମୂଳ ଅର୍ଥ ହେଲା ଯେ ପଢ଼ାଏ, ଶିକ୍ଷାଦିଏ । ଏଇ ମୂଳାର୍ଥରେ ଯେ ଲୋକଶିକ୍ଷା ଦବାକୁ ବାହାରେ, ସେ

ଅଧ୍ୟାପକ । ପ୍ରତ୍ୟକ୍ଷ ଅଧ୍ୟାପନା ଅର୍ଥାତ୍ ଗୁଡ଼ାଏ ମାଙ୍କଡ଼ ଟୋକାଙ୍କୁ ଆଗରେ ବସାଇ ତାଙ୍କୁ ପଢ଼ାନ୍ତୁ ବା ପରୋକ୍ଷ ଅଧ୍ୟାପନା ବହିପତ୍ର, ପ୍ରବନ୍ଧ ନିବନ୍ଧ ଲେଖି ଲୋକଶିକ୍ଷାର ଉଦ୍ୟମ କରନ୍ତୁ । ଏଇ ମୂଳାର୍ଥର ରାମ ଅବଧାନଙ୍କଠାରୁ ଆରମ୍ଭ କରି ଡାକ୍ତର ସାର ରାଧାକୃଷ୍ଣନ୍‌ଙ୍କ ପର୍ଯ୍ୟନ୍ତ ସମସ୍ତେ ପ୍ରତ୍ୟକ୍ଷ ଅଧ୍ୟାପକ, ପ୍ରତ୍ୟେକ ରାଜନୈତିକ ବକ୍ତାଙ୍କଠାରୁ ଆରମ୍ଭ କରି ଘରର ଘରଣୀଙ୍କ ପର୍ଯ୍ୟନ୍ତ ସମସ୍ତେ ପରୋକ୍ଷ ଅଧ୍ୟାପକ । ଅବଶ୍ୟ ଏ ଶବ୍ଦର ଗୋଟାଏ ଯୋଗାରୂଢ଼ ଅର୍ଥ ଅଛି—ସେ ହେଉଛି କଲେଜ ଶିକ୍ଷକମାନେ । ଏମାନଙ୍କ ପ୍ରତି ଏହା ବେଶୀ ଲାଗେ । କାରଣ ଏମାନଙ୍କର ପ୍ରଧାନ କର୍ତ୍ତବ୍ୟ କୁଆଡ଼େ ଛାତ୍ରମାନଙ୍କୁ ପାଠ ପଢ଼େଇବା ଅପେକ୍ଷା, ସେମାନଙ୍କର ବିଚାର ଓ ବଛୁବଛୁ ବୁଦ୍ଧିକୁ ଚେତେଇବା, ଭଲରୁ ଭେଲକୁ ଅଲଗା କରି ଶିଖାଇବା । ଯା ଲାଗି ସେମାନଙ୍କର ବିଚାରବୁଦ୍ଧି ଅତି ପ୍ରଖର ଓ ଅଭ୍ରାନ୍ତ ହେବା ଉଚିତ୍, କାରଣ ତାଙ୍କର ବିଚାରବୁଦ୍ଧି ଯେବେ ଭ୍ରାନ୍ତ ହୁଏ, ତାହେଲେ ସେମାନେ ଛାତ୍ରମାନଙ୍କୁ ଅଭ୍ରାନ୍ତ ବିଚାର କଥା କହିବେ କିପରି ? ଏହି ଅଭ୍ରାନ୍ତ ବିଚାର ଲାଗି ଦୁଇଟି କଥା ଦରକାର । ସେ ହେଉଛି ବିଶ୍ଳେଷଣାତ୍ମକ ଓ ଆଶ୍ଳେଷଣାତ୍ମକ ବୁଦ୍ଧି । ଅର୍ଥାତ୍ ଯେ ଅଧ୍ୟାପକ ସେ ୫୦ଟା ଜିନିଷକୁ ନିରେଖି, ପରୀକ୍ଷା କରି ପ୍ରତ୍ୟେକର ମୌଳିକ ଗୁଣକୁ ବିଚାର କରିବେ । ଯେଉଁମାନଙ୍କର ମୌଳିକ ଗୁଣ ଏକ, ସେମାନଙ୍କୁ ଏକ ଶ୍ରେଣୀରେ ରଖିବେ । ସେଥିରୁ ଗୋଟିଏ ସାଧାରଣ ନୀତି ସେ ସେତେବେଳେ ପ୍ରତିପାଦିତ କରିପାରିବେ, ଯେପରି ମୁଁ ଦେଖିଲି ରାମ ମରିଛି, କୃଷ୍ଣ ମରିଛି, ଯୁଧିଷ୍ଠିର ମରିଛି, ହେନେରି ମରିଛି, ଲିଙ୍କନ୍ ମରିଛି ଇତ୍ୟାଦି । ଏଥିରୁ ମୁଁ ଗୋଟାଏ ନୀତି ବାହାର କଲି, ମଣିଷ ମରଣଶୀଳ । ତାପରେ ଏଇ ନୀତିକୁ ମୁଁ ଆଶ୍ଳେଷଣ ପ୍ରକ୍ରିୟା ଦ୍ୱାରା ପୁଣି ପରୀକ୍ଷା କଲି, ମଣିଷ ମରଣଶୀଳ । କେନେଡ଼ି ମଣିଷ ∴ କେନେଡ଼ି ମରଣଶୀଳ । କେନେଡ଼ି ମଲେ । ମୋ ନୀତି ଠିକ୍ ହେଲା । ଯା ଲାଗି ଅସୀମ ଧୈର୍ଯ୍ୟ ଓ ଅସୀମ ସାହସ ଦରକାର । ଗୋଟାଏ ଦି'ଟା କଥାରୁ ଗୋଟାଏ ଉପସଂହାର କରିବସିବା ଯେପରି ଭୁଲ୍, ଗୋଟାଏ ଅସିଦ୍ଧ ନୀତିରୁ ଗୋଟାଏ ଉଦାହରଣ ଉପରେ କୌଣସି ସିଦ୍ଧାନ୍ତ କରିବସିବା ମଧ୍ୟ ସେହିପରି ଭୁଲ । ତାର ନମୁନା ମୁଁ ଗୋଟିଏ ଦେଉଛି । ଧରିନିଅନ୍ତୁ କୌଣସି ପ୍ରସଙ୍ଗ ମୂଳରେ ମୁଁ ଫ୍ରଏଡଙ୍କର ନିନ୍ଦା କରିଛି । ମନେରଖିବେ, କୌଣସି ପ୍ରସଙ୍ଗ ବିଶେଷ ସ୍ଥଳରେ ମାତ୍ର । ସୁତରାଂ ସେ ସ୍ଥାନରେ ମୋର ଫ୍ରଏଡ଼ଙ୍କ ସମାଲୋଚନା ସୀମାବଦ୍ଧ । ମୁଁ ତାଙ୍କର ସମୁଦାୟ ଗ୍ରନ୍ଥ, ସମୁଦାୟ ଜୀବନର ସମାଲୋଚନା କରିନି । କେବଳ ସେଇ ପ୍ରସଙ୍ଗର ଗଣ୍ଡି ଭିତରେ ଯେତିକି କରିବାର କଥା ସେତିକି ମାତ୍ର । ଏହି ପୂର୍ବାପର ସମ୍ବନ୍ଧକୁ ଭୁଲିଯାଇ ଯେବେ କୌଣସି ଅଧ୍ୟାପକ ମତେ ଗାଳିଗୁଲଜ୍ ଦେଇ କହନ୍ତି ଯେ ମୁଁ ଫ୍ରଏଡ଼ଙ୍କ ଆତ୍ମ-ବିଶ୍ଳେଷଣ ବିଷୟରେ କେତେଟା ଶବ୍ଦ ମୁଖସ୍ଥ କରି ତାଙ୍କ ଉପରେ ଏପରି ଭ୍ରାନ୍ତ ଓ ଅବିଚାର ଆକ୍ଷେପ କରିଛି, ତାହେଲେ ସେ ଭୁଲକଲେ କି ଠିକ୍ କଲେ, ତାହା ପ୍ରତ୍ୟେକ ବିଚାରବନ୍ତ ଲୋକ ବୁଝିପାରିବେ । ପ୍ରଥମ କଥା ହେଉଛି—ମୋର

ସମାଲୋଚନା ମାତ୍ର ସୀମାବଦ୍ଧ ବିଷୟରେ । ଦ୍ୱିତୀୟରେ ମୋର ସମାଲୋଚକ ମୋ ସହିତ ପ୍ରତ୍ୟକ୍ଷ ସମ୍ପର୍କରେ ଆସିନାହାନ୍ତି । ମୁଁ ଫ୍ରଏଡ଼ଙ୍କ ବିଷୟରେ କଣ ଜାଣେ ନ ଜାଣେ ସେ କଥା ସେ ବୁଝିନାହାନ୍ତି । ମୁଁ ଫ୍ରଏଡ଼ଙ୍କର କେତେ ବହି ପଢ଼ିଚି ନ ପଢ଼ିଚି ତା ମଧ୍ୟ ତାଙ୍କର ଧାରଣା ନାହିଁ । ସୁତରାଂ ମୋ ବିଷୟରେ ତାଙ୍କର ଏପରି ଆକ୍ଷେପ କରିବା ବିଚାରବୁଦ୍ଧିର ପଙ୍ଗୁତ୍ୱ ମାତ୍ର ପ୍ରତିପାଦନ କରିଏ । ଧରନ୍ତୁ, ରାମ ଚୋର, ଚୋରି କରି ଦଣ୍ଡ ପାଇଛି । ସେଇ ଜିନିଷକୁ ନେଇ ମୁଁ ଯେବେ କହେଁ, ରାମ ଖରାପ ମଣିଷ । ସେଥିରୁ ଯେ ବୁଝିବା ଠିକ୍ ହେବନି, ଯେ ମୁଁ କହୁଚି, ମଣିଷ ଭାବରେ ରାମ ଖରାପ । ରାମ ଚୋର ସତ, କାରଣ ସେ ଥରେ ଚୋରି କରିଚି । କିନ୍ତୁ ସେ ଆଦର୍ଶ ସ୍ୱାମୀ, ବତ୍ସଳ ପିତା, ବାଧ୍ୟ ନାଗରିକ ଓ ନିପୁଣକର୍ମୀ ହୋଇପାରିଥାଏ । ସେ ଦିଗରୁ ମଣିଷ ଭାବରେ ସେ ଅତି ଉଚଧରଣର । ମାତ୍ର ଗୋଟିଏ ଖରାପ କାମ କରିଚି । ସେଇ ଖରାପ କାମଟାହିଁ ମୁଁ ବିଚାର କରିଥିଲି ।

ଅନ୍ୟଠାରୁ ଦୟା, ଦାକ୍ଷିଣ୍ୟ ବା ଉଦାରତା କେହି ଦାବି କରି ନପାରେ; ଅନ୍ୟ ମଧ୍ୟ ସବୁ ଦେବାକୁ ବାଧ୍ୟ ନୁହେଁ, ମାତ୍ର ଅନ୍ୟଠାରୁ ସୁବିଚାର ଦାବି କରିବାର ଅଧିକାର ପ୍ରତ୍ୟେକ ଲୋକର ଅଛି । ସୁବିଚାର ଦେବା ଅନ୍ୟର ଅବଶ୍ୟ କର୍ତ୍ତବ୍ୟ । ସେ ଶକ୍ତି ଯେବେ ତା'ର ନଥାଏ, ତା'ହେଲେ—ତା'ର ବିଚାର କାମ ସ୍ଥାନରେ ନିଜକୁ ନେଇ ବସିବା ଗୋଟାଏ ମସ୍ତବଡ଼ ଅଧର୍ମ, ମସ୍ତବଡ଼ ଅନ୍ୟାୟ । ସୁବିଚାରର ପ୍ରଥମ ଓ ପ୍ରଧାନ ପଦକ୍ଷେପ ତର୍କଶାସ୍ତ୍ର ଓ ନ୍ୟାୟଶାସ୍ତ୍ର । ତା'ପରେ ବିଶ୍ଳେଷଣ ଓ ଆଶ୍ଳେଷଣ କରିବାର ଶକ୍ତି ତା'ପରେ, ଧର, ମୁଁ କହିଲି, କାଳିଦାସ ସ୍ତ୍ରୈଣ ଓ ମଦ୍ୟପ ଥିଲେ । ସୁତରାଂ ସେ ଜଣେ ଖରାପ କବି । ଏପରି ବିଚାରର ଯୁକ୍ତି ହେଲା, ଯେ ସ୍ତ୍ରୈଣ ଓ ମଦ୍ୟପ ସେ ଖରାପ, କାଳିଦାସ ସ୍ତ୍ରୈଣ ଓ ମଦ୍ୟପ ଥିଲେ, କାଳିଦାସ ଜଣେ କବି, ସୁତରାଂ କାଳିଦାସ ଖରାପ କବି, ଏପରି ଯୁକ୍ତି ଠିକ୍ ହେବ ତ ? ହେବନି, କାରଣ ଗୁଣଟା ରହିଗଲା ଏଇଠି, କାଳିଦାସ ମନୁଷ୍ୟ, ମନୁଷ୍ୟ ଶ୍ରେଣୀରେ ଅନେକ ପ୍ରକାର ଗୁଣ ଅଛି, କବିତ୍ୱ ସେଥିମଧ୍ୟରୁ ଗୋଟିଏ ଗୁଣ । କାଳିଦାସ ସ୍ତ୍ରୈଣ ଓ ମଦ୍ୟପ ଭାବରେ ଖରାପ ମଣିଷ ହୋଇପାରନ୍ତି, ମାତ୍ରକ ଯେ ଖରାପ ମଣିଷ, ସେ ଖରାପ କବି ନୁହେଁ । ମଣିଷ ଗୋଟାଏ ଗୁଣର ଓ ଗୋଟାଏ ପ୍ରକୃତିର ନୁହେଁ । ତା'ର ଗୁଣ ବହୁମୁଖୀ, ତା'ର ପ୍ରକୃତି ବହୁଶାଖ । ସ୍ତ୍ରୈଣତ୍ୱ ଓ ମଦ୍ୟପତ୍ୱ ତା'ର ଗୁଣସମଷ୍ଟିରୁ ମାତ୍ର ଦୁଇଟି । ତା'ର ସମସ୍ତ ଗୁଣ ଖରାପ ହେଲେ ସେ ଖରାପ ହେବ ସିନା, ତା'ର ଗୋଟାଏ ଦି'ଟା ଗୁଣ ଖରାପ ହୋଇ ଅନ୍ୟ ସବୁ ଗୁଣ ଭଲ ଥିଲେ ସେ ଖରାପ ହୋଇପାରେନି । ତାକୁ ତା ଲାଗି ଖରାପ କହିବା ଅତର୍କିକ, ଅଯୌକ୍ତିକ ଓ ଅନ୍ୟାୟ ନିଶ୍ଚୟ ହେବନି ?

ଅବଶ୍ୟ ସାଧାରଣ ଲୋକପକ୍ଷରେ ତାର୍କିକ, ଯୌକ୍ତିକ ଓ ନ୍ୟାୟିକ ହେବା ସମ୍ଭବ ନୁହେଁ । ସତକଥା । କାରଣ ତା'ର ସେ ଶିକ୍ଷା ଦୀକ୍ଷା ନାହିଁ । ସେ ମଧ୍ୟ କାହାରିକୁ

ଶାନ୍ତି ଦଏନ । ତା'ର ମତ ତା'ର ନଜସ୍ୱ । ତା'ଦ୍ୱାରା ସତ୍ୟର କୌଣସି ହାନ ଲଭ ନାହିଁ । କନ୍ତୁ ଯେଉଁମାନେ ବଗ୍ରରକ, ଯେଉଁମାନେ ନଜକୁ ସୁବଗ୍ରରକ ବୋଲ ଦେଖାଇହୁଅନ୍ତ, ସୁବଗ୍ରର ଶିକ୍ଷା ଦେବାଲଗି ଯେଉଁମାନେ ସର୍ବସାଧାରଣର ଝାଳବୁହା ପଇସା ଖାଆନ୍ତ, ସେମାନଙ୍କ ପକ୍ଷରେ ତର୍କ, ଯୁକ୍ତ ଓ ନ୍ୟାୟର ଅତ ପ୍ରାରମ୍ଭ କଥାଗୁଡ଼ିକ ଭୁଲଯାଇ କୌଣସି ମତଦେବା ଯେ ଅକ୍ଷମଣୀୟ ଅପରାଧ, ଏକଥା ନତ୍ୟାନ୍ତ ବୋକା ଲୋକ ମଧ୍ୟ ବୁଝିପାରବ ଓ ସ୍ୱୀକାର କରବ ।

ଅବଶ୍ୟ ମୁଁ ଯେ ପ୍ରକାର ବଗ୍ରରପ୍ରଣାଳୀର କଥା କହୁଛୁ, ସେ ଆମର ଏ ସ୍ୱାଧୀନ ଭାରତରେ ମିଳବା ଅସମ୍ଭବ ହୋଇପଡ଼ୁଛୁ । ଆମେ ଗୁଣମୟ ମନୁଷ୍ୟର ବଗ୍ରର କରୁଁ । ତା'ର ଗୋଟାଏ ଦ'ଟା ଗୁଣ ବା ଦୁର୍ଗୁଣରୁ ଆମର ବଗ୍ରରପଦ୍ଧତ ଜଙ୍ଗଲ ଆଇନ ଉପରେ ପ୍ରତଷ୍ଠିତ । ନାକ ପାଇଁ ନାକ, କାନ ପାଇଁ କାନ, ମୁଣ୍ଡ ପାଇଁ ମୁଣ୍ଡ ଥିଲ ଜଙ୍ଗଲ ଆଇନ୍ । ତୁମେ ମୋର କାନ କାଟିଦେଲେ ମୁଁ ତୁମର କାନ କାଟିଦେବ, ତୁମେ ମୋର ନାକ କାଟିଦେଲେ ମୁଁ ତୁମର ନାକ କାଟିଦେବ, ତୁମେ ମୋର ମୁଣ୍ଡ କାଟି-ଦେଲେ ମୁଁ ପୁଣି ତୁମର ମୁଣ୍ଡ କାଟିଦେବ । ଏଇ ଜଙ୍ଗଲ ନୀତକୁ ଆହୁର ଟିକଏ ଅଗ୍ରଗାମୀ କରଚୁଁ ଆମେ । ତୁମେ ମୋର ନାକ କାଟିଦେଲେ, ବଗ୍ରରପତ ତୁମକୁ କଇଦଖାନାରେ ଦୁଇ ବର୍ଷ ପାଇଁ ପୁରାଇ ତୁମର ଜୀବନକୁ ନଷ୍ଟ କରଦବ । ଜଙ୍ଗଲୀ ଆଇନ୍ ଥିଲ ଗୋଟାଏ ନାକ ଲଗି ଗୋଟାଏ ନାକ । ଆମେ କନ୍ତୁ କଲୁଁ ଗୋଟାଏ ନାକ ଲଗି ଗୋଟାଏ ଜୀବନ । ଅଥଚ ଆମେ ଜଙ୍ଗଲୀ ଯୁଗଠାରୁ ବେଶୀ ସଭ୍ୟ, ବେଶୀ ମାତବ୍ବର ବୋଲି ବାହାକୁ ଟାଣି ମାରୁ କଥାକଥାକେ । ଅବଶ୍ୟ ଏ ଦୋଷ ଖାଲି ବଗ୍ରରପତଙ୍କର ନୁହେଁ, ଆମ ନେତା ଓ ନୀତକାରକମାନଙ୍କର । ସେମାନେ ଆଇନ୍ ତଆର କଲେ, ବଗ୍ରରପତ ତାକୁ କାର୍ଯ୍ୟରେ ପରଣତ କଲେ । ସେ କେବଳ ବଗ୍ରରକଲେ ନାକଟା କଟା ହୋଇଛୁ କ ନା । ଯେବେ ହେବାର ପ୍ରମାଣ ମିଳଲ, ତାହେଲେ ଆମ ନେତାମାନଙ୍କ ତଆର ଆଇନ୍‌ରେ ତାକୁ ଯେଉଁ ଦଣ୍ଡ ଦେବାକୁ ଅଛୁ, ତାହା ସେ ଦେବାକୁ ବାଧ୍ୟ ।

ଅବଶ୍ୟ ଦୋଷର ଗୁରୁତ୍ୱ ଓ ଲଘୁତ୍ୱ ନର୍ଦ୍ଧାରଣ କରବା ଲଗି ବଗ୍ରରପତଙ୍କୁ କେତେକ ସ୍ୱାଧୀନତା ଦଆଯାଇଛୁ । କନ୍ତୁ ସେ ସ୍ୱାଧୀନତା ଏତେପ୍ରକାର ବେଢ଼-କୋରଡ଼ା ଦେଇ ବନ୍ଧା ଯେ ତାର ସ୍ୱେଚ୍ଛାବହାର ଅସମ୍ଭବ । ଯେପର ଧରନଆଯାଉ ଗୋଟାଏ ଦୃଷ୍ଟାନ୍ତ । ଆଇନ୍ କହୁଲ—ଗୁରୁତର ଓ ଅଗ୍ରନକ ଉତ୍ତେଜନା ହେତୁ ଯେଉଁ ଅପରାଧ କରାଯାଏ, ତାହା ଲଘୁ ଅପରାଧ । ଏ ପ୍ରକାର ବ୍ୟତରେକ ନୟମ ଯେଉଁମାନେ ରଖିଛନ୍ତ, ସେମାନଙ୍କର ଫ୍ରଏଡ୍ ତତ୍ତ୍ୱଜ୍ଞାନ ନ ଥିଲ ବୋଲି ମୁଁ କହୁନ । କାରଣ କୌଣସି ଅନ୍ୟାୟର ପ୍ରତକାରର ବଳମ୍ବ ଦ୍ୱାରା ମନରେ ଯେ ପ୍ରକାର ବକ୍ଷୋଭ ଓ ଅଶାନ୍ତ ପଶି ବବେକର ମୂଳକୁ କୁଟୁରୁ କୁଟୁରୁ କର କାଟିପକାଏ, ସେ ଏପର ସାଂଘାତକ ଯେ

ଅଗ୍ନନକ ଉଷ୍ମାଣି ଅପେକ୍ଷା ତାହାର ବିଷ ଉତ୍କଟତର । ଧରିନିଅନ୍ତୁ, ରାମର ସ୍ତ୍ରୀ ସହିତ ହରିର ପାପ ପ୍ରଣୟ ଥିଲା । ରାମ ତାହା ଦେଖିପାରିଲା, ହରି ପଳେଇଲା । ସେଇ ଦେଖିବା ମୁହୂର୍ତ୍ତରେ ରାମ ସ୍ତମ୍ଭୀଭୂତ ହୋଇଯିବ, ନା, ରାଗି ନିଆଁବାଣ ହୋଇଯିବ ? ଫ୍ରଏଡ୍ କହିବେ, ସେ ମୁହୂର୍ତ୍ତରେ ସେ ସ୍ତମ୍ଭୀଭୂତ ହୋଇଯିବା ହିଁ ବେଶୀ ସମ୍ଭବ । ତା ପର ମୁହୂର୍ତ୍ତରେ ହୁଏତ ତା ମନରେ ନିଆଁ ଜଳି ଉଠିପାରେ । କିନ୍ତୁ ଆଇନ୍ ପରମୁହୂର୍ତ୍ତର ଏ ଜଳିଲା ନିଆଁକୁ ସ୍ୱୀକାର କରେନି । ସେଇ ପ୍ରଥମ ମୁହୂର୍ତ୍ତରେ ସେ ଯେବେ କିଛି ପ୍ରତିଶୋଧ ନ ନେଲା, ତାହେଲେ ଆଇନ୍ ମତରେ ମାଲି ମକଦ୍ଦମା କରିବା ଛଡ଼ା ତାର ଅନ୍ୟ କୌଣସି ପ୍ରତିକାର ଦୋଷମୁକ୍ତ ନୁହେଁ । ଅବଶ୍ୟ ଦେଖିଦେଲା ମାତ୍ରକେ ସେ ଯେବେ ଦପ୍ କରି ଜଳିଉଠେ ଓ ସେତେବେଳେ ଯେବେ ତା ହାତରେ କୌଣସି ଅସ୍ତ୍ର ଥାଏ, ଏବଂ ସେ ଯେବେ ହରିଠାରୁ ବେଶୀ ବଳୁଆ ଓ ତରକା ହୋଇଥାଏ, ତାହେଲେ ସେ ଯେବେ ସେଇ ଅସ୍ତ୍ରଦ୍ୱାରା ହରିକୁ ଘାଇଲ୍ କରେ, ତେବେ ଯାଇ ଏଇ ବ୍ୟତିରେକ ନିୟମ ଭିତରକୁ ସେ ଆସିପାରେ । ସେଥିରେ ପୁଣି କଥା ଉଠିବ, ସେ ଯେବେ ଆଗରୁ ଏ ସବୁ କଥା ଜାଣି ନ ଥିଲା, ତାହେଲେ ଅସ୍ତ୍ର ନେଇ ସେଠିକି ଯାଇଥିଲା କାହିଁକି ? ଯେବେ ଆଗରୁ ଜାଣିଥିଲା, ତାହେଲେ ତାର ଏପରି ଛୁରୀ ନେଇଯିବା ଅର୍ଥ ସେ ମାରିବା ପାଇଁ ତିଆରି ହୋଇଯାଇଥିଲା । ଅତଏବ ସେ ଦୋଷୀ । ସେ ଯେବେ ସେଇ ମୁହୂର୍ତ୍ତରେ କିଛି କରି ନ ପାରେ, ତାହେଲେ ଆଇନ୍ ଅନୁସାରେ ଆଇନ୍ ହିଁ ପ୍ରତିଶୋଧ ଲାଗି ତାର ଏକମାତ୍ର ଅସ୍ତ୍ର । କିନ୍ତୁ ଏ ଆଇନ୍ ପ୍ରମାଣ ଉପରେ ନିର୍ଭର କରେ । ହରି ନିଶ୍ଚୟ ସାକ୍ଷୀ ରଖି ରାମ ସ୍ତ୍ରୀ ସହିତ ପ୍ରେମ କରୁ ନ ଥିଲା । ରାମ ବି ଆଗରୁ ଜାଣି ନ ଥିଲା ଯେ ସାକ୍ଷୀ ନେଇ ଯାଇଥାନ୍ତା ସେଠିକି । ତାର ଏକମାତ୍ର ସାକ୍ଷୀ ସେ ନିଜେ । କଥାରେ କହନ୍ତି, ଆଇନ୍ ମଧ୍ୟ ପ୍ରକାରାନ୍ତରରେ କହେ, 'ଏକ ସାକ୍ଷୀ ସାକ୍ଷୀ ନୁହେଁ, ଏକ ଆଖି ଆଖି ନୁହେଁ' । ସେ କି ମକଦ୍ଦମା କରିବାକୁ ଯିବ ? ମକଦ୍ଦମା କରିବା ଲାଗି ପଇସା ବୁଦ୍ଧି, ମୂଠାଏ ଟଙ୍କା । ସେ ପୁଣି ରାମର ଥିବା ବୁଦ୍ଧି । ସାବାଳିକା ସ୍ତ୍ରୀ ସହିତ ପାପପ୍ରଣୟ କରିବା ପୁଲିସି ମକଦ୍ଦମା ନୁହେଁ । ସବୁ ତାକୁଇ କରିବାକୁ ପଡ଼ିବ । ସେ ଯେବେ ସେଥିକି ନ ପାରେ, ତାହେଲେ ତାର ପ୍ରତିଶୋଧ ନବାର ଉପାୟ ନାହିଁ । ଅଥଚ ଏପରି ଅପରାଧ, ଅପରାଧିତ ବ୍ୟକ୍ତି ମନରେ ଯେତେ କଷ୍ଟଯନ୍ତ୍ରଣା ଓ ବୁଦ୍ଧିବିଭ୍ରାଟ ଆଣେ, ଅନ୍ୟ କୌଣସି ଅପରାଧ ସେପରି କରିପାରେନି । ରାମ ଯେବେ ଏହି ଅପ୍ରତିଶୋଧିତ ଅପରାଧର ଅପମାନ, ଆତ୍ମଗ୍ଳାନି ଓ ଯନ୍ତ୍ରଣାରେ ଦିନ ଦିନ ଧରି ଘାରି ହୁଏ, ତାହେଲେ ତା ମନର ଅବସ୍ଥା କଣ ହେବ, ସେ କଥା ଫ୍ରଏଡ୍ କହିଯାଇଛନ୍ତି । ସେ ଅବସ୍ଥାରେ ସେ ଯେବେ ହରିକୁ ଆକ୍ରମଣ କରେ, ତାହେଲେ ତାର ଦୋଷକୁ ଲାଘବ କରିବା ଭଳି କିଛି ନାହିଁ— ଆମର ଏ ଆଇନ୍ ମତରେ । ତା ମାଇପକୁ ପର ନେଲା । ସେ ନିଜେ ଭୋଗିଲା ଜେଲଦଣ୍ଡ ବା ଫାଶି । ଆଇନ୍ ସନ୍ତପ୍ତକୁ ପ୍ରତିଶୋଧ ଦେଇପାରେନି । ସନ୍ତାପକକୁ ପ୍ରତିଶୋଧ ଦେଇପାରେ ।

ତୁମେ କହୁଚ, ତୁମର ଏ ବୈଜ୍ଞାନିକ ଯୁଗ । ତୁମେ କହୁଚ ତୁମର ଫ୍ରଏଡ୍ ଜଣେ ଅଭ୍ରାନ୍ତ, ନିଷ୍କଳଙ୍କ ବୈଜ୍ଞାନିକ । ଅଥଚ ତୁମର ଏ ଦୈନନ୍ଦିନ ବଗ୍ଗରରେ ତୁମେ ଯେବେ ଫ୍ରଏଡ୍‌ଙ୍କୁ ଗୋଇଠା ମାର, ତାହେଲେ ମୁଁ ତାଙ୍କୁ ଅସ୍ୱୀକାର କଲି ବୋଲି ମୋର ଦୋଷ କାହିଁକି ହେବ ? ଆମର ଏ ପ୍ରକାର ଭ୍ରାନ୍ତ ବିଗ୍ଗରଧାରା ଲାଗି ଦାୟୀ କିଏ ? ଏ ପ୍ରକାର ନ୍ୟାୟକର୍ତ୍ତା ଓ ନ୍ୟାୟଦାତାମାନଙ୍କ ଉପରେ ତୁମର ହାତୀ ଶିରେ ସୁନା କଳସରୁ ମହାନଦୀ ପାଣି ଢ଼ାଳିଲାବେଳେ, ମୋ ଉପରକୁ କାଦୁଅଫୋପଡ଼ା କାହିଁ ? ସେ ବଡ଼, ମୁଁ ସାନ ଏଇଆ ବୋଲି ? ତାଙ୍କର ଧନ ଅଛି, କ୍ଷମତା ଅଛି, ମୋର ସେ ସବୁ ନାହିଁ—ଏଇଆ ବୋଲି ? ଏ ସବୁତ ଅଧ୍ୟାପକମାନଙ୍କଠାରେ ହେବା ଉଚିତ ନୁହେଁ । ସେମାନେ ଅନାବିଳ ନ୍ୟାୟବିଗ୍ଗର ଓ ତାର୍କିକ ଯୁକ୍ତିର ଶିକ୍ଷାଦେବେ ଓ ଆଚରଣ କରିବେ । ଏହାହିଁ ଥିଲା ଆମ ପୁରୁଣାକାଳିଆ ଅଧ୍ୟାପକମାନଙ୍କର କର୍ତ୍ତବ୍ୟ ଓ ଧର୍ମ । ସେମାନେ ସେତେବେଳେ ଅଧ୍ୟାପକ ନ ଥିଲେ । ସେମାନଙ୍କୁ ଆଗ୍ଗର୍ଯ୍ୟ କୁହାଯାଉଥିଲା । ସେମାନେ ତେ। ମହଲା, ଛଅ ମହଲା କୋଠାରେ ବିଜୁଳିବତି ଓ ବିଜୁଳିପଙ୍ଖା ତଳେ ସୌଖିନ କେଦାସନ ଉପରେ ବସି ଶିକ୍ଷା ଦେଉ ନ ଥିଲେ । ରହିବା କୋଠାଘରେ ଗଦି ଚୌକିରେ ବସି ଆରାମ କରୁ ନ ଥିଲେ, କି ପଲଙ୍କ ଉପରେ ତୂଳିତଳି ଶେଯରେ ଶୋଉ ନ ଥିଲେ । ଜଙ୍ଗଲ ଭିତରେ କୁଡ଼ିଆ ଘରେ ରହୁଥିଲେ, ଖୋଲାମେଲା ମଣ୍ଡପରେ ଅଧ୍ୟାପନା କରାଉଥିଲେ, ଭିକ୍ଷାଲବ୍ଧ ଗ୍ଗଉଳ ମୁଠାକରେ ସେମାନେ ପେଟ ପୂରାଇ ସନ୍ତୁଷ୍ଟ ହେଉଥିଲେ । ସେଥି ହେତୁରୁ ହିଁ ସେମାନଙ୍କର ନ୍ୟାୟ ଓ ତାର୍କିକ ଯୁକ୍ତି କରିବାର ସାହସ ଥିଲା । ସେ ରଖୁ ନ ଥିଲେ କାହିଁ, ମାଗୁ ନ ଥିଲେ କାହିଁ, ସୁତରାଂ କାହାରି ପଛରେ ଗୋଡ଼େଇବା, କାହାରି ଝାଳୁଆ ଗୋଡ଼ ଗ୍ଗଟିବା ତାଙ୍କର ଦରକାର ପଡ଼ୁ ନ ଥିଲା ।

କିନ୍ତୁ ସେମାନେ ଥିଲେ ଅସଭ୍ୟ । ଆମେ ସଭ୍ୟ ହେଇଛୁଁ, ଆମେ ଉନ୍ନତତର ଜୀବନମାନ ଚଳେଇ ନଉଛୁଁ, ଆମର ସ୍ପୃହା ବଢ଼ିଛି, ଆମ ହାତରେ ଧନ ବଢ଼ୁଛି ବାସହସୁଲଭ ଲକ୍ଷ୍ମୀ ଗୋଡ଼ ପକେଇଛନ୍ତି ଆମ ଘରେ, ସଦର ଦୁଆର ଦେଇ । ଆଉ ଠିକ୍ ସେତିକିବେଳେ ସ୍ୱାଧୀନ ଚିନ୍ତାର, ତାର୍କିକ ଯୁକ୍ତିର, ନ୍ୟାୟବିଗ୍ଗରର ସରସ୍ୱତୀ ଝରକା, ଖିଡ଼କି, ବାଡ଼ିଦୁଆର ବା ଆଲୋକପଥ ଓ ଚମିନିର ଭିତରଦେଇ ଗ୍ଗଡ଼ି ପଳାଇଛନ୍ତି । ସରସ୍ୱତୀ ଯେବେ ଆମକୁ ଗ୍ଗଡ଼ିଲେ, ତା'ହେଲେ ଆମେ ଆଉ ଆଗ୍ଗର୍ଯ୍ୟ ବା ଅଧ୍ୟାପକ ହେବୁଁ କିପରି ?

**୩ । ତା' ନହେଲେ ଆଉ କ'ଣ ?**

ମୁଁ ଏ ଯାହା କହୁଛି, ଏଥିରେ ମୁଁ କୌଣସି ବ୍ୟକ୍ତିବିଶେଷଙ୍କୁ ଆକ୍ଷେପ କରୁନି । ମୁଁ ମଧ୍ୟ ଦିନେ କିଛି ସମୟ ଲାଗି ଅଧ୍ୟାପକ ଥିଲି । ମୋର ପୁଅମାନେ ମଧ୍ୟ ଥିଲେ ଓ କେହି କେହି ଅଛନ୍ତି । ସୁତରାଂ ସମସ୍ତଙ୍କୁ ଯେବେ ଦାୟିତ୍ୱକାମାଡ଼ ବୋଲି ଧରାଯାଏ, ତା'

ହେଲେ ସେ୍ ମତେ ସେତିକ, ତୁମକୁ ମଧ୍ୟ ସେତିକ । ଆମେ ଯେବେ ସେପରି ଆଗ୍ଧର୍ଯ୍ୟ-ଅଧ୍ୟାପକ ନ ହେଲୁଁ, ତାହେଲେ ଆମେ ଆଉ କ'ଣ ? ଏ ଅଧ୍ୟାପକ ଶବ୍ଦର ଆଉ ଦୁଇଟି ଅର୍ଥ ହୋଇପାରେ । ପ୍ରଥମଟି ହେଉଛି ଅଧିଆ-ପକା—ଅର୍ଥାତ୍ ଯେଉଁମାନେ ଠାକୁରଙ୍କ ପାଖରେ ବା ଠାକୁର ମନର ମନୁଷ୍ୟଙ୍କ ପାଖରେ ଅଧିଆ ପଡ଼ି ସ୍ୱୀକୃତି ପାଇଛନ୍ତି । ଏଥିରେ ଅପମାନିତ ମନେକରିବାର କିଛି ନାହିଁ । କାଳିଦାସ ସରସ୍ୱତୀଙ୍କ ପାଖରେ ଅଧିଆ ପଡ଼ି ବଡ଼ କବି ହୋଇପାରିଥିଲେ, ସାରଳା ଦାସ ସାରଳାଙ୍କ ପାଖରେ ଓ ଉପେନ୍ଦ୍ର ଭଞ୍ଜ ତାଙ୍କ ଘର ଠାକୁରାଣୀଙ୍କ ପାଖରେ ଅଧିଆ ପଡ଼ି ଯଥାକ୍ରମେ ବ୍ୟାସକବି ଓ କବିସମ୍ରାଟ ହୋଇପାରିଛନ୍ତି । ସୁତରାଂ ଏ ଅଧ୍ୟାପକମାନଙ୍କର ଗର୍ବ କରିବାର ବହୁତ କିଛି ଅଛି, ଅନ୍ତତଃ ଖୁବ୍ ବଡ଼ବଡ଼ିଆଙ୍କ ଗହଣରେ ବିଜେକରିଛନ୍ତି ତ ! କେହି କେହି କହିପାରନ୍ତି ଏମାନଙ୍କର ନିଜସ୍ୱ କିଛି ନାହିଁ । ନିଜର ବାହାଦୁରି ନଦାରଦ । ଦିଅଁ ହୁକୁମ ଦେଲେ, ସେ ଅଧିଆପକା ହେଲେ । ମାଗି ଆଣିଲି ରୁହଣ ଯୋଡ଼ପାଏ । ଏ କଥା ଯେଉଁମାନେ କହିବେ, ସେମାନେ ଅସହିଷ୍ଣୁକ । କହନ୍ତୁ, ଆମର ଅଧ୍ୟାପକ ସ୍ୱୀକୃତି ଖଣ୍ଡିକ ତ ଏଥିରେ ଉଡ଼ିଯାଉନି ! ଆମର ଏ ଅଧିଆପକା ପଣ୍ଡିତମାନଙ୍କର ଗୋଟାଏ ବିଶେଷ ଗୁଣ ମିଳେ । ସେମାନେ ହୁଏତ ସାରଳା ଦାସଙ୍କ ଭଳି ଅପ୍ରାସଙ୍ଗିକ ମନଗଢ଼ା କଥା-ଗୁଡ଼ାଏ ବଖାଣିଯାଆନ୍ତି ଅସରନ୍ତି, ନ ହେଲେ ଭଞ୍ଜଙ୍କ ଭଳି ଗୁଡ଼ାଏ ଶବ୍ଦକୁହେଳୀ ମଧ୍ୟରେ ନିଜର ଅତର୍କିକ, ଅଯୌକ୍ତିକ କଥାଗୁଡ଼ାକ ଯୋଡ଼ାଇପାରନ୍ତି ଅବିକଳନ୍ତି । ଏଥିରେ କିନ୍ତୁ ଆମର କିଛି ଦୋଷ ନାହିଁ । ଠାକୁରାଣୀ କଣ୍ଠରେ କଲିକରି ଯାହା ଲୁହାଉଛନ୍ତି, ତା' ଆମେ କହୁଚୁଁ, କରୁଚୁଁ । ମହାଭାରତର ମୂଳ ଛାଡ଼ିଦେଇ ମହାଭାରତ ନାଁରେ ସାରଳାଦାସ ଯେବେ ତାଙ୍କ ମନଗଢ଼ା ଅସମ୍ଭବ ଗପଗୁଡ଼ାଏ ଲେଖି ବାହା ବା ନେଇପାରିଲେ, ମୂଳ ରାମାୟଣର କଥା ଛାଡ଼ିଦେଇ ଭଞ୍ଜେ ଯେବେ ରାମଚରିତ ନାମରେ ଗୁଡ଼ାଏ ପ୍ରେମକଥା ଲେଖିପାରି କବି ସମ୍ରାଟ ବୋଲାଇଲେ, ମହାଯୋଗୀ ମହାଦେବଙ୍କର ମଧୁଶଯ୍ୟା ଘରେ ଗୁଡ଼ାଏ ଅସମ୍ଭବ ଯୌନକାର୍ଯ୍ୟର ସ୍ୱପ୍ନ ଦେଖି କାଳିଦାସ ଯେବେ ପୃଥିବୀର ଶ୍ରେଷ୍ଠକବି ହୋଇପାରିଲେ, ତା'ହେଲେ ଆମର ଦୋଷ କ'ଣ ? ଆମେ ଯେବେ ଟିଙ୍କିଶାଳର କଥା କହିବାକୁ ଯାଇ ଢେଙ୍କାନାଳର ବର୍ଣ୍ଣନା କରି ୫ ମିନିଟ୍‌ର କଥାକୁ ୫୦ ମିନିଟ ପର୍ଯ୍ୟନ୍ତ ବଢ଼ାଇନେଇ ବଡ଼ ବକ୍ତା ଓ ବଡ଼ ଲେଖକ ବୋଲାଇପାରୁଁ, ତା' ହେଲେ ସେଥିରେ ଅନ୍ୟାୟ କ'ଣ ହେଲା ?

ଆମର ଦ୍ୱିତୀୟ ଶ୍ରେଣୀ ବିଭାଗ ବା ଗୁଣ ବିଭାଗ ହେଉଛି ଅଧ୍ୟା-ପକା । ମାନେ ପୁରାଣପଣ୍ଡା ଗିରି । ଆମକୁ ଗାଇବାକୁ କହୁଚ । ଅଧ୍ୟାଟି ଗାଇଦେଲୁଁ । ତା'ପରେ ଅଳିକ ଲଗି ପୋଥିରେ ଡୋରିବନ୍ଧା । ଫେରେ ଯେଉଁଦିନ ପାଳିପଡ଼ିବ ସେ ଦିନ ଆଉ ଅଧ୍ୟାଏ ଗାଇଯିବା ଆମର କାମ । କୌଣସି ମତେ ପୋଥିଖଣ୍ଡିକ ଗାଇଯିବା ହିଁ

ଏକମାତ୍ର କର୍ତ୍ତବ୍ୟ । ଶୁଣିଲବାଲ ବୁଝିଲେ ବୁଝନ୍ତୁ, ନ ବୁଝିଲେ ନାହିଁ । ଆମ ପାଠ ପଢ଼ିଲା ବେଳେ ଆମର ଜଣେ ଅଧ୍ୟାପକ ଥିଲେ, ସେ କହୁଥିଲେ ସରକାର ମୋତେ ଦରମା ଦେଇ ଅଧ୍ୟାପକ କରିଛନ୍ତି, ମୁଁ ଏତେ କଷ୍ଟ କରି ପାଠପଢ଼ିଥିଲି ବୋଲି ନା; ତୁମକୁ ପଢ଼େଇବାକୁ କ'ଣ ଆମକୁ କିଛି ମିଳୁଛି ? ସତକଥାତ, ସେ କିଛି ମିଛ କହୁନାହାନ୍ତି । ଆମେ ବି ସେଇଆ କହୁଛୁ ବଟ୍ ଦାଣ୍ଡରେ ଢୋଲ ପିଟି । ସରକାର ଚାହାନ୍ତି ଅଧ୍ୟାପକ । ଏମ୍. ଏ. ପାଶ୍ କରିଥିବ ଅନ୍ତତଃ ୨ୟ ଶ୍ରେଣୀରେ । ସେ ପାଠପଢ଼େଇ ଜାଣନ୍ତୁ କି ନାହିଁ, ସେ ଘୋଷା ପଣ୍ଡିତ, ଭୁଷା ପଣ୍ଡିତ କି ଚଷା ପଣ୍ଡିତ ସେ କଥା ବିଚାର୍ଯ୍ୟ ନୁହେଁ । କଥା ହେଲା, ସେ ଏମ୍.ଏ. ପଢ଼ିଥିବେ । ଏଇ ଏମ୍. ଏ. ବା ତା' ଉପରେ D. Litt., D. Phil ଇତ୍ୟାଦି ପଢ଼ିଥିବା ହିଁ ମାନଦଣ୍ଡ । ପାଇଗଲ୍ ଚାକିରି । ମିଛ କ'ଣ କହିଲୁ ଆମେ ? ସରକାର ତ କେବେ ଚାହାନ୍ତିନି କି ଚାହିଁ ଦେଖନ୍ତିନି—ଯେ ସେ ଅଧ୍ୟାପକ ହେବ ସେ ପାଠପଢ଼ାଇ ପାରିବ କି ନା, ନିଜର ଭାବନା ଯୁକ୍ତିଯୁକ୍ତ ତାର୍କିକ ଉପରେ ଛାତ୍ରମାନଙ୍କ ମନରେ ଢୁକେଇପାରିବ କି ନା, ଏ ଭଲରୁ ଭେଲ ବାହାରକରିବାର ଶକ୍ତି ରଖିଛନ୍ତି କି ନା ଇତ୍ୟାଦି । ପାଠପଢ଼, ପାଶ୍ କର, ତା'ପରେ ଚାକିରି ନିଶୁଣିର ଡାଲପାହୁଆକୁ ଯାଅ ସରସର । ଏକ ପହରୁ ଆର ପହକୁ କରି ଉପରକୁ ୧୦୦୦।୧୨୦୦ ପର୍ଯ୍ୟନ୍ତ ଉଠିଯିବା ତ ସ୍ୱାଭାବିକ । ଉଚିତ୍ ହେଉଛି ସରକାର ପ୍ରତ୍ୟେକ ଅଧ୍ୟାପକଙ୍କ ଲାଗି ବାସ୍ତବ ଆତ୍ମବିଶ୍ଳେଷଣ (Practical Psycho-analysis) ଅତ୍ୟାବଶ୍ୟକୀୟ ଗୁଣ-ବିଶେଷ ବୋଲି ଦାବି କରିବା ଉଚିତ୍ । ଏଠାରେ ମଧ୍ୟ ସରକାର ସ୍ୱା କରନ୍ତି ନି । କୌଣସିଠାରେ ଆମ ଗୋସେଇଁମାନେ ଏଇ ଆତ୍ମବିଶ୍ଳେଷଣକୁ ଗୋଟାଏ ଆବଶ୍ୟକୀୟ ବିଜ୍ଞାନ ବୋଲି ସ୍ୱୀକାର କରିନାହାନ୍ତି । ମୁଁ ଦେଖେଇଛି ଆଇନ ଶାସନରେ ଏହା କରିନାହାନ୍ତି । ବର୍ତ୍ତମାନ ଦେଖେଇଲି ଅଧ୍ୟାପନାରେ ମଧ୍ୟ ଏହା କରିନାହାନ୍ତି । ବାକି ରହିଲା ସରକାରଙ୍କ ସରକାରୀତ୍ୱରେ । ଏଠାରେ ମଧ୍ୟ ସେ ତାହା କରିନାହାନ୍ତି । କାରଣ ଧନବଳ ଓ ଜନବଳରେ ସେମାନେ ଭାବିଛନ୍ତି ନିର୍ବାଚନ ସଫଳ ହୋଇପାରେ ମାତ୍ର । ତା' ଲାଗି ଫ୍ରଏଡ୍‌ଙ୍କ ତଥାକଥିତ ବିଜ୍ଞାନର କୌଣସି ପ୍ରୟୋଜନ ନାହିଁ । ଗୋସେଇଁ ଯାହାକୁ ମାନୁନାହାନ୍ତି, ତାକୁ ତୁମେ ବଡ଼ ବୋଲି କହୁଚ କେମିତି ? ଡରମାଡୁନି ? ଚାକିରି ଖଣ୍ଡେ ଚାଲିଯିବ ଯେ !!

## ମୁଁ କଣ କହିବାକୁ ଚାହେଁ ?

ବର୍ତ୍ତମାନ ପ୍ରଶ୍ନ ହେଲା ମୋର ଏ ତମ୍ବୁ ତୋଫାନ୍ କାହିଁକି ? ମୁଁ କଣ ଚାହେଁ ? ମୁଁ କଣ କହିବାକୁ ଚାହେଁ ଯେ ଫ୍ରଏଡ୍‌ଙ୍କର ଆତ୍ମବିଶ୍ଳେଷଣ ଗୋଟିଏ ବିଜ୍ଞାନ ନୁହେଁ ? ଏକଥା ମୁଁ ମୋଟେ କହୁନି । ଆମ ପୁରାଣ କାଳରେ ମଧ୍ୟ ଏ ଆତ୍ମବିଶ୍ଳେଷଣ ବିଜ୍ଞାନ ଥିଲା । ଆମର ସେଇ ମରହଟ୍ଟାଜାଲିଆ ଋଷିମୁନିମାନେ ମଧ୍ୟ ପ୍ରତ୍ୟେକ ବ୍ୟକ୍ତିର ମନରେ

ମାତୃସ୍ଵବର ପ୍ରଚ୍ଛନ୍ନ ଲୁକ୍କାୟିତ ଦେଖିପାରୁଥିଲେ । ସେଥିପାଇଁ ଉପନୟନ ଇତ୍ୟାଦି ସମୟରେ ତା ଲାଗି ପ୍ରାୟଶ୍ଚିତ୍ତ ହୋମ କରିବାର ବ୍ୟବସ୍ଥା ସେମାନେ କରିଯାଇଛନ୍ତି । ଏ ପାଠ ତୁମକୁ ନୂଆ ହୋଇପାରେ । କାରଣ ତୁମେ ତୁମର ପାଠ୍ୟ ବହି କେତେ ଖଣ୍ଡ ଛଡ଼ା ଆଉ କିଛି ପଢ଼ିନ, ଜାଣିନ । କିନ୍ତୁ ଆମର ସେଇ ମୂର୍ଖ ପୂର୍ବପୁରୁଷମାନେ ଏହାକୁ ବଡ଼ କରି ଧରିନେଇ ପାରି ନ ଥିଲେ । ଏ ବିଷୟରେ ଚର୍ଚ୍ଚା ଯେ କରିବା ଦରକାର, ତା ମଧ୍ୟ ସେମାନେ ସ୍ଵୀକାର କରି ନ ଥିଲେ । କାରଣ ଏ ଅବଶ୍ୟମ୍ଭାବୀ । ଯେତେ ଯାହା କଲେ ମଧ୍ୟ ମନୁଷ୍ୟ ମନର ଲୁଚି ଅବଚେତନ ଓ ସଂସ୍କାର ଓ ଅଭିଳାଷର ବିନାଶ ହୋଇପାରେନ । ସେଥିପାଇଁ ସେମାନେ ବ୍ୟବସ୍ଥା କରିଥିଲେ ବ୍ରହ୍ମଚର୍ଯ୍ୟ, ବର୍ଣ୍ଣାଶ୍ରମ, ପୂଜା, ଉପାସନା, ଯୋଗ ଇତ୍ୟାଦି କଷ୍ଟସାଧ୍ୟ କୃଷ୍ଟି ।

ସେକରେ ନିବୃତ୍ତି ନାହିଁ । ଅଥଚ ତୁମେ ବୁଝୁଛ ସେଗ, ଆହୁରି ସେଗ, ପୁଣି ସେଗ, ସେଇଥିଲାଗି ଫ୍ରଏଡ୍ ତୁମର ଦେବତା । ଫ୍ରଏଡ୍ କଦାପି ସେଗ ଓ ପୁନରପି ସେଗର କଥା କହିନାହାନ୍ତି । ସେ ଯାହା କହିଛନ୍ତି, ତାର ଜନମଙ୍ଗଳ ଦିଗଟା ପାଶ୍ଚାତ୍ୟ ଜଗତରେ ଯାହା ପରୀକ୍ଷାମୂଳକ ଭାବରେ ଗ୍ରହଣ କରାଯାଇଛି । ମାର୍କିନ ଦେଶରେ ଅପରାଧୀର ସଂସ୍କାର ଏଇ ନୀତିରେ କରିବାର ଗୋଟାଏ ଚେଷ୍ଟା ଚାଲିଛି । ଅପରାଧୀକୁ ତାର ମନର ଅବସ୍ଥା ଲକ୍ଷ୍ୟ କରି ଶିକ୍ଷାନବିଶ୍ ଭାବରେ ଛାଡ଼ି ଦିଆଯାଉଛି । ସେମାନଙ୍କ ମନର ଗ୍ଲାନି ଦୂର କରି, ସେମାନଙ୍କୁ ଭଲ ନାଗରିକ ଭାବରେ ଜୀବନଯାପନ କରିବା ପାଇଁ କେତେଗୁଡ଼ିଏ Probation officer ଙ୍କ ଅଧୀନରେ ରଖାଯାଉଛି । ସେମାନଙ୍କୁ କଇଦଖାନାର ପୋକଜୋକ ଆବେଷ୍ଟନୀ ମଧ୍ୟରୁ ବାହାରକରି ନିଆଯାଇ ସେମାନଙ୍କର ଆତ୍ମପ୍ରତ୍ୟୟ କିପରି ବଢ଼ିବ, ସେମାନେ କିପରି ସାଧୁ କର୍ମଶୀଳତା ଦ୍ଵାରା ଆତ୍ମଭରଣ-କ୍ଷମହେବେ, ତାହାର ଚେଷ୍ଟା ବ୍ୟାପକ ଭାବରେ କରାଯାଉଛି । ବେଶୀଦିନ ହୋଇନି ଏ କଥା । ତଥାପି ଏଇ କମ୍ ସମୟ ମଧ୍ୟରେ ଅନେକ ସୁଫଳ ଫଳିବାର ଜଣାଯାଏ । ସେମାନଙ୍କର ବ୍ୟବସାୟରେ ମଧ୍ୟ ସେମାନେ ଏଇ ନୀତିର ଅନୁସରଣ କରୁଛନ୍ତି । ସେମାନଙ୍କର ଦୋକାନ ଏପରି ସଜ୍ଜିତ କରି ରଖାଯାଏ ଯେ ଗ୍ରାହକର ଅବଚେତନ ଅଭିଳାଷ ମୂର୍ତ୍ତିମନ୍ତ ହୋଇ ଦେଖାଦିଏ । ଗ୍ରାହକ ସେଇ ହେତୁରୁ ତା ପ୍ରତି ଆକୃଷ୍ଟ ହୁଏ । ଆମ ଦୋକାନ ଦେଖିଲ ? ହୁଏତ ସେ ଦୋକାନ ଭିତରକୁ ଯିବାକୁ ତ ତୁମେ ଇଚ୍ଛା କରିବନି ।

ଫ୍ରଏଡ୍, ଜିଏସ୍ପେ ଇତ୍ୟାଦି ମନୋବିଜ୍ଞାନବିତ୍‌ମାନେ ଏତେ ପରିଶ୍ରମରେ ଯାହା କରିଯାଇଛନ୍ତି ସେ ଏକାବେଳକେ ମିଛ ନୁହେଁ । ସେଥିରେ ସତ୍ୟ ନିଶ୍ଚୟ ଅଛି । କିନ୍ତୁ ସେ ଏକମାତ୍ର ସତ୍ୟ ନୁହେଁ । ସର୍ବବ୍ୟାପି ସତ୍ୟ ନୁହେଁ । ଗୋଟାଏ ସତ୍ୟର କ୍ଷୀଣଆଭାସ ମାତ୍ର । ତୁମେ ତାକୁ ବଡ଼ କରି ଧରୁଛ, କାରଣ ବୋଧହୁଏ, ତା' ଛଡ଼ା ତୁମେ ଆଉ

କିଛି ଜାଣିନ । ଜାଣିବାର କଷ୍ଟ କରିନ । ତୁମେ ବିଚାରପ୍ରଣାଳୀ ଅନ୍ୟକୁ ଶିଖେଇବାକୁ ଯାଉଛ; ଅଥଚ ବିଚାରପ୍ରଣାଳୀର ଯେ ପ୍ରଥମ ଓ ସର୍ବାଗ୍ର ପାଠ—ଯାହା କହିବ ତାର ପ୍ରତ୍ୟେକ ଅଂଶ କି, ପ୍ରତ୍ୟେକ ଶବ୍ଦଟିକୁ ବିଚାର କରିବ, ତା ତୁମେ ଜାଣନା । ଯାହାକୁ ସମାଲୋଚନା କରୁଛ, ତା ସହିତ ତୁମେ ବ୍ୟକ୍ତିଗତ ସମ୍ପର୍କରେ କେବେ ଆସିନ । ଅଥଚ କହି ବସିବ, ସେ ଏ ବିଷୟରେ କିଛି ଜାଣେନା । ସେ ହୁଏତ ଭୁଲ କରିପାରିଥାଏ । ସେ ଭୁଲର ସଂଶୋଧନ ସର୍ବସାଧାରଣ ଆଗରେ ତାକୁ ଗାଳିଗୁଲଜ ଦବା ନୁହେଁ, ତା ଆଖି ଆଗରେ ତାର ଭୁଲକୁ ବିଶ୍ଳେଷଣ କରି ଥୋଇବା, ତା ତୁମେ ମାନିବନା । କାରଣ ବିଶ୍ଳେଷଣ ତୁମର ଶତ୍ରୁ, ଆଶ୍ଳେଷଣ ତୁମର ଯମ ।



# ପିତୃନ୍ ଆବାହୟ୍

ମଲ୍ ଗଲ । ତାକୁ ପୁଣି ଡାକପକାଅ କାହିଁକି ବର୍ଷକୁ ଥରେ ? ସ୍ୱଅବୀର ବାର-ପଣ ଲୋକ ତ କରନ୍ତନ, ତୁମେ କାହିଁକ କର ? ଲୁ ଅଧିକ ବଡ଼ପଣ ଦେଖେଇହବା ଲଗି ତାଙ୍କୁ ତୁମେ ମଣ୍ଡ ବୋଲି, ସଭା ସମିତ କର, ଲମ୍ବା ଲମ୍ବା ବକ୍ତୃତା ଦେଇ, ଢ଼ାଲ ଢାଲ ଶୁଖିଲ ଲୁହ ଢାଳି, ତୁମର ଏ ଧୂଳଧୂଷର, କାଦୁଅଚକଟା ଫସାରକୁ ଟାଣି ଆଣିବାକୁ ଚେଷ୍ଟାକର ? ସତରେ ଯେବେ ମଲପରେ ମୃତଅତ୍ମା ପ୍ରେତ ବା ପିତୃ ଭାବରେ ବଞ୍ଚି ରହୁଥାଏ, ସତରେ ଯେବେ ସେ ଆତ୍ମା ତୁମ ଡାକରେ ଫେରଆସେ ଦନକ ପାଇଁ, ଘଡ଼ିକ ପାଇଁ, ସେ କଣ ଦେଖିବ ? ଯାହା ଦେଖିବ ସେଥିରେ ସେ ଖୁସି ହେବ ତ ? ସେ ଯଦ ତୃପ୍ତିପାଉଥାଏ, ତାହେଲେ ତୁମର ଏ ପିଣ୍ଡମୁଠାକ ଭିତରେ କେତେ ଯେ ତାଚ୍ଛଲ୍ୟ, ତୁମର ଏ ସକ ସକ ବକ୍ତୃତା ଭିତରେ କେତେ ଯେ ହୃଦୟହୀନତା—ଏ ସବୁ ଦେଖି କଣ ସେ ସୁଖି ହୋଇପାରବ ?

ତୁମେ କହବ—ବୀର ପୂଜା ନ କଲେ ବୀରର ଆଦର୍ଶରେ ଅନୁପ୍ରାଣିତ ହେବ କପର ? ବୀରର ଆଦର୍ଶରେ ଅନୁପ୍ରାଣିତ ? ସେ ହୃଦୟ, ସେ ସାହସ, ସେ ଧୈର୍ଯ୍ୟ ତୁମର ଅଛି ? ସେ ଥିଲେ ଜଣେ ବୀର—ଏଇ ଦାଶ ଆପଣେ, ୰ ଗୋପବନ୍ଧୁ ଦାଶ । ବୀର ଭଲଆ ବୀରଟାଏ । ସେ ଦେଖାଇଯାଇଥିଲେ ଗୋଟାଏ ମହାନ୍ ଆଦର୍ଶ । ସେ ରଖିଯାଇଥିଲେ ଗୋଟାଏ ମହାନ୍ ଅନୁଭୂତ । ସେ ଅନୁଭୂତ—ଯାହା ଭିତରେ ନିଜକୁ ତାଙ୍କର ଛପି ଯାଇଥିଲ । କିଛି ରଖିଛ ସେଥିରୁ ? ତୁମର ଏ ହଜାର ହଜାର କାନ୍ଦଣା ଶବ୍ଦ, ପଦ ଓ ବାକ୍ୟ ତାଙ୍କ ଆଦର୍ଶର କାଣିଚାଏ ବଞ୍ଚାଇରଖିଛ ?

କ ଆଦର୍ଶ ? କ ଅନୁଭୂତ ? ତୁମେ ଜାଣ, ମୁଁ ଜାଣେ, ଆଉ ଅନ୍ୟମାନେ ମଧ୍ୟ ଜାଣନ୍ତ । ତଥାପି କହି ରଖିବାରେ ହୁଏତ ଯଦ କଛି ଲଭ ହୋଇପାରେ, ସେ କଥା ଟିକଏ ଚତ୍କାର କରଦେଲେ ଯେବେ କାହା ମୁଣ୍ଡରେ, କାହା ହୃଦୟରେ ଟିକଏ ବାଜଯାଇପାରେ । ସେଇଥିପାଇଁ କହୁଛ—କେବଳ ଗୋଟାଏ ଦୁରାଶାରେ—ଭରସା ରଖି ଲୁହେଁ ।

ମୁଁ ଦାଶ ଆପଣଙ୍କ ନକଟ ସମ୍ପର୍କରେ ଆସିନଥିଲ । ତାଙ୍କ ସତ୍ୟବାଦୀ ବିଦ୍ୟାଳୟରେ ପାଠ ପଢ଼ିଥିଲ ସତ—କନ୍ତୁ ମୁଁ ତାଙ୍କର ବା ତାଙ୍କ ସହକର୍ମୀମାନଙ୍କର କାହାର ପ୍ରିୟ ହୋଇନଥିଲ, ପ୍ରିୟ ହବାର ଚେଷ୍ଟା ମଧ୍ୟ କରନଥିଲ । କନ୍ତୁ ତୁମେ ବିଶ୍ୱାସ କର ବା ନକର, ତାଙ୍କର ଆଦର୍ଶ, ତାଙ୍କର ମହିମାରେ ମୁଁ ଯେତେ ମୁଗ୍ଧ ହୋଇଥିଲ—ବୋଧହୁଏ ତାଙ୍କର ଅତ ପ୍ରିୟତମ ସହକର୍ମୀମାନେ ହୋଇ ନଥିବେ ।

ତାଙ୍କର ଆଦର୍ଶ ବୋଲି ମୁଁ ଯାହା କହୁଛି, ଯୁ ଥେରେ ମୁଁ ମଜ୍ଜିଯାଇଥିଲି, ଯାହାକୁ ଆଜୀବନ ମୁଁ ମୋର ଶ୍ରେଷ୍ଠ ବୁଦ୍ଧି ଓ ଶ୍ରେଷ୍ଠ ପରିସର ମଧ୍ୟରେ ଅନୁସରଣ କରିଆସିଛି, ତୁମ ଆଖିରେ ହୁଏତ ସେ ତାଙ୍କର ଆଦର୍ଶ ହୋଇନପାରେ। ମୁଁ କିନ୍ତୁ ଭାବିଥିଲି, ଭାବୁଛି ମଧ୍ୟ ଯେ ସେଇ ତାଙ୍କ ଜୀବନର ଆଦର୍ଶ।

କ'ଣ ସେ ? ପ୍ରଥମ—ନିର୍ଭୀକତା। ଦାଶ ଆପଣେ କାହାରି ନାଲିଆଖିକୁ କେବେ ଡରିନାହାନ୍ତି। ଲୋକଙ୍କର ବାହା ବା ନବାକୁ, କି, ନିଜର କୌଣସି ଉପକାର କରିବାକୁ, କି କାହାରିକୁ ମିଛ ସନ୍ତୋଷ ଦେବାକୁ ସେ କେବେ ନିଜ ମୁଣ୍ଡ ନୁଆଇ ନାହାନ୍ତି, ନିଜର ବ୍ୟକ୍ତିତ୍ୱକୁ ବଳି ଦେଇନାହାନ୍ତି। ରକ୍ଷଣଶୀଳତାର ପୀଠସ୍ଥଳ ପୁରୀ ବ୍ରାହ୍ମଣ ଶାସନମାନଙ୍କର ଗୁରୁ ଉପରେ ବସି ସେ ରକ୍ଷଣଶୀଳତା ବିରୋଧରେ ଲଢ଼େଇ କରିବାକୁ ବାହାରିଥିଲେ ପ୍ରଥମ ହୋଇ। ପୁରୀ ମୁକ୍ତିମଣ୍ଡପର ବଡ଼ପଣ୍ଡିତେ ଯେତେବେଳେ ୮ ବିଶ୍ୱନାଥ ମିଶ୍ରେ ବିଲାତ ଯାଇଥିଲେ ବୋଲି ତାଙ୍କୁ ଏକଘରିକିଆ କରିବା ପାଇଁ ବ୍ୟବସ୍ଥାପତ୍ର ଖଞ୍ଜିଦେଲେ, ସେତେବେଳେ ବାରିଷ୍ଟରଙ୍କୁ ସମାଜରେ ଚଳେଇନବାଲାଗି ଅଣ୍ଟାଭିଡ଼ି ବାହାରିପଡ଼ିଥିଲେ ସେ। ସତ୍ୟବାଦୀରେ ଉଚ୍ଚ-ଇଂରାଜୀ ବିଦ୍ୟାଳୟଟିଏ ଠିଆକରି ସେତେବେଳର ଇଂରେଜ ସରକାରଙ୍କୁ ବୁଢ଼ା ଆଙ୍ଗୁଠି ଦେଖେଇଥିଲେ ସେଇ, ବିଦ୍ୟାଳୟର ପରିପ୍ରେକ୍ଷକ ହାକିମ କ'ଣ ପଦେ କହିଦେଇଥିଲେ ବୋଲି, ତାଙ୍କୁ ପାଗ୍ରେଟି ଅଣିବାକୁ ମନା କରିଦେଇଥିଲେ ସେଇ। କେତେ ଯେ ଦୃଷ୍ଟାନ୍ତ ଅଛି। କହି ବସିଲେ ପୁରାଣଟାଏ ହେବ। ମୋର ମନେପଡ଼ିଯାଏ ସେଦିନର କଥା—ଭୀଷଣ ବଢ଼ି, ଲୋକ ହାଡ଼ଭୁତ ହୋଇଯାଉଥାନ୍ତି। ଦାଶ ଆପଣେ ବିହାର ଓଡ଼ିଶା ଲାଟ୍‌ସାହେବଙ୍କୁ ଆରମ୍ଭ କରି ସମାଜ କାଗଜ ପର୍ଯ୍ୟନ୍ତ ସବୁଠି ଡାକପକେଇଲେ। ସେତେବେଳର ସରକାର, ଗ୍ରୁନିଂ ସାହେବ୍ ଓଡ଼ିଶାର କମିଶନର। ତାଙ୍କ ଡାକରେ ସରକାରଙ୍କ ଆସନ ଟଳିଲା। ଗ୍ରୁନିଂ ସାହେବ ନିଜେ ଧୋଇ ଅଞ୍ଚଳ ବୁଲି ଦେଖିବାକୁ ବାହାରିଲେ। ରାସ୍ତାରେ ତାଙ୍କର ମଟର ବିଗିଡ଼ିଗଲା। ସେ ଫେରିଗଲେ। ତାକୁ ନେଇ ଦାଶ ଆପଣେ ସେତେବେଳର ସରକାରଙ୍କୁ କି ମସ୍ତାମରୁଦ ନ କଲେ !! ସେ କଥା ଆଉ ଏ କଥା। ସେଦିନ ଦଳେଇଘାଇ ଭାଙ୍ଗିଗଲା, ଲୋକେ କେତେ ହନ୍ତସନ୍ତ ହେଲେ। କାଗଜରେ ବାହାରିଲା, ପୁଲିସଦଳ ଲୋକଙ୍କୁ ରକ୍ଷାକରିବାକୁ ମୁତୟନ ହେଲେ। କିନ୍ତୁ ସେମାନେ ପାଣି ମୁହାଁକରେ ପଶିବାକୁ ଅସ୍ୱୀକାର କଲେ, ଗଲେନି। କେହି ଟିକିଏ କହିଲା, କାହିଁକି ନଗଲ ବୋଲି ? ହଜାର ହଜାର ଲୋକଙ୍କର ପ୍ରାଣ ପାଇଁ କେତେଜଣ ସରକାରୀ କର୍ମଚାରୀ—ସେଇ ଲୋକଙ୍କର ଦାନାଖିଆ ଚାକର—ଏ ସ୍ୱାଧୀନ (?) ଦେଶରେ ଟିକିଏ ଓଦାହେବାର କଷ୍ଟ ମଧ୍ୟ ସ୍ୱୀକାର କଲେନି !! ଦାଶେ ଆପଣେଙ୍କର ସେଇ କାଗଜ ଅଛି, ସେଇ ଦାସ୍ତାବଦମାନେ ଅଛନ୍ତି। ବୋଧହୁଏ ସେଇ କର୍ମଚାରୀମାନଙ୍କର ପଦୋନ୍ନତି ହୋଇଥିବ ପୁରସ୍କାର ସ୍ୱରୂପ !!!

କହୁ କି ଲଭ ? ଗୋଟାଏ ମହାନ୍ 'ଶାଳ୍ମଳୀତରୁ' ତଳୁ ଉଧେଇଲେ ଗୁଡ଼ାଏ ବୋଳଝାଙ୍କି ! !

୨—ଦାଶ ଆପଣେଙ୍କର ଆଉ ଗୋଟିଏ ଆଦର୍ଶ ତାଙ୍କର ହୃଦୟବତ୍ତା । ସେ ପରର ଦୁଃଖ ନିଜ ହୃଦୟରେ ଅନୁଭବୁଥିଲେ – ତାଙ୍କଠୁ କିଛି ଉପକାର ପାଇବେ ବୋଲି ନୁହେଁ, ବା ସେ ତାଙ୍କର ନିଜର ପ୍ରିୟ ଆତ୍ମୀୟ ବୋଲି ନୁହେଁ । ମୋର ଅଙ୍ଗେ ନିଭେଇବା କଥା କହୁଛି । ମୁଁ ଥିଲି ଗରିବ ପିଲା । ମାଟ୍ରିକୁଲେସନ୍‌ରେ ୫୯୫-୦୦ ବୃତ୍ତି ପାଇଲି । ତଥାପି ମଧ୍ୟ କଲେଜକୁ ଆସି ନା ଲେଖାଇବାର ଶକ୍ତି ମୋର ନ ଥିଲା । କିଏ କହିଲା କେଜାଣି, ମୁଁ ତ କାହାରିକୁ କହିନି—ଜୀବନରେ କାହାରିକୁ ମୋ' ଲଗି କିଛି ମାଗିନି । ଦାଶ ଆପଣେ ସତ୍ୟବାଦୀ ବିଦ୍ୟାଳୟର ପାଣ୍ଠିରୁ ମୋର ନା ଲେଖେଇବା ଖର୍ଚ୍ଚ ଇତ୍ୟାଦି ମଞ୍ଜୁର କରିଦେଲେ । ମୁଁ କଟକ ଗଲି । କଟକରେ ପଢ଼ିବା ବାସି ଦିନ ମୋର ହେଲି ହଇଜା । ସେଇଦିନ ତାର ହେଲା ସତ୍ୟବାଦୀକୁ । ତହିଁ ଆରଦିନ ସକାଳରୁ ଦେଖେଁ ତ, ସବୁ କାମଦାମ ଛାଡ଼ି ଦାଶ ଆପଣେ, ଆଗୃହୀ ହରିହର ଓ କେତେକ ସ୍ୱୟଂସେବକଙ୍କୁ ନେଇ ହାଜର ମୋ ଲଗି । ମୁଁ ତାଙ୍କର ପ୍ରିୟ ଛାତ୍ର କେବେ ନଥିଲି । ମୁଁ ତାଙ୍କ ପାଖ ସମ୍ପର୍କରେ କେବେ ଆସି ନଥିଲି । ସତ୍ୟବାଦୀ ବିଦ୍ୟାଳୟର ସ୍ୱଶରହ ଛାତ୍ର ଭିତରୁ ମାତ୍ର ଥିଲି ମୁଁ ଗୋଟାଏ । ତେବେ କିଆଁ ? ଦରିଦ୍ର ପିଲା, ଅସହାୟ । ଅସହାୟର ଦୁଃଖ ସେ ବୁଝିପାରୁଥିଲେ । ସେ ଦୁଃଖମୋଚନ କରିବା ଲଗି ସବୁ ତ୍ୟାଗ କରିବାକୁ ମଧ୍ୟ ପ୍ରସ୍ତୁତ ଥିଲେ ।

୩—ତାଙ୍କର ସ୍ପଷ୍ଟବାଦିତା । ତାଙ୍କ ନିର୍ଭୀକତାର ଗୋଟାଏ ଅଂଶ । ଅବଶ୍ୟ ସବୁ ନିର୍ଭୀକ ପୁରୁଷ ସ୍ପଷ୍ଟବାଦୀ ନୁହନ୍ତି । କିନ୍ତୁ ଦାଶ ଆପଣେଙ୍କ ପାଖରେ ଦୁଇଟାଯାକ ଗୁଣ ସମାନ ଭାବରେ ଥିଲା । ସେ ପେଟରେ କଥାଏ ରଖି ପାଟିରେ କଥାଏ କହୁ ନଥିଲେ । ଭବାବରୋଧ (Inhibition) ତାଙ୍କର ନ ଥିଲା । ଯାହା ଅନୁଭବ କରୁଥିଲେ ତା' ସେ କହୁଥିଲେ । ସତ କଥାଟାକୁ ଚିନି ପାଗ ଦେଇ ରୁଚିକର କରିବାକୁ ସେ ଘୃଣାବୋଧ କରୁଥିଲେ । ସତ, ନିଛକ ସତ—ତାଙ୍କ ଜୀବନର ବ୍ରତ ଥିଲା । ଯେଉଁ-ମାନେ ଅସହଯୋଗ ଆନ୍ଦୋଳନରେ ତାଙ୍କ ନେତୃତ୍ୱ ତଳେ ପ୍ରଥମେ ପ୍ରଥମେ କାମ କରୁଥିଲେ, ସେମାନେ ଏହାକୁ ନିଶ୍ଚୟ ବୁଝିପାରୁଥିବେ ।

୪—ତାଙ୍କର ସମଭାଗମାପବୋଧ । ତାଙ୍କଠି ଅସହିଷ୍ଣୁଭାବ ନଥିଲା । କେହି କି'ଣ ଦୋଷ କରିପକାଇଲେ, ସେ ତା'ର ଗୁଣ ଭୁଲି ଯାଉନଥିଲେ । ମଣିଷ ମାତ୍ରକେ ଦୋଷୀ । ଚନ୍ଦ୍ରରେ କଳଙ୍କ ଅଛି ବୋଲି, ଚନ୍ଦ୍ରର ଅନ୍ୟ ଗୁଣ ଲଗି ତା'ର ପୂଜା ବାସନ୍ଦ ସେ କରୁ ନଥିଲେ । ସତ୍ୟବାଦୀ ବିଦ୍ୟାଳୟରେ ଶିକ୍ଷକ ଛାତ୍ର ନେଇ କେତେ କଥା ହୋଇଯାଇଥିଲା । କେତେ ଶିକ୍ଷକ ଧରାପଡ଼ିଥିଲେ ତାଙ୍କ ଦୁର୍ବ୍ୟବହାରରେ । ଦାଶ

ଆପଣେ ତାଙ୍କୁ ଭର୍ତ୍ସନା କରଥିଲେ, ସମସ୍ତଙ୍କ ଆଗରେ ତାଙ୍କୁ ଦଣ୍ଡ ଦଉଥିଲେ, କିନ୍ତୁ ସେଇ ସମସ୍ତଙ୍କ ଆଗରେ ତାଙ୍କର ଗୁଣ ବର୍ଣ୍ଣନା କର ସେ ଯିମିଦ ତାଙ୍କର ପୂର୍ଣ୍ଣ ଅଧିକାର ନେଇ ପୂର୍ବ କାର୍ଯ୍ୟ କରଯାନ୍ତ୍ର, ତା' ଲଗି ତାଙ୍କୁ ନିବେଦନ ମଧ୍ୟ କରୁଥିଲେ । ଏପର ଦୁଇଟା ଦୃଷ୍ଟାନ୍ତ ତ ମୋର ମନେଅଛୁ । ସତ୍ୟବାଦୀ ବଦ୍ୟାଳୟର କେତେକ ଛାତ୍ର ତାଙ୍କ ପ୍ରତ ଉଦ୍ଧତ ବ୍ୟବହାର କରଛନ୍ତ୍ର—କିନ୍ତୁ ସେଥିଲଗି ସେମାନଙ୍କୁ ସେ ବଦ୍ୟାଳୟରୁ ଛଡ଼ଦେଇନାହାନ୍ତ୍ର । ସେଇମାନେ ଥିଲେ ତାଙ୍କର ପ୍ରିଚ, ସେ ବର୍ତ୍ତମାନ ମଧ୍ୟ ଅଛନ୍ତ୍ର ସେମାନଙ୍କ ହୃଦୟର ପରମାରାଧ୍ୟ ଦେବତା । ସେ ଯେପର ଲଘୁପାପରେ ଗୁରୁଦଣ୍ଡ ଦେଇନାହାନ୍ତ୍ର—ସେହିପର ଲଘୁ କୃତତ୍ୱରେ ଗୁରୁ ପ୍ରଶଂସା ମଧ୍ୟ ଦେଇନାହାନ୍ତ୍ର । ରମାଭଣ୍ଡାରର ଦସ୍ତଖତ ଥାଇ ବଦ୍ୟାଳୟର କେତେକ ଜିନିଷ ଚ୍ଚେରକର ଥିଲ, ଧରାପଡ଼ିଥିଲ । ତଥାପି ସେ ଥିଲ ତାଙ୍କର ବିଶ୍ୱାସୀ ଅନୁଚର । କେତେ ଯେ ଦୃଷ୍ଟାନ୍ତ ତା'ର ଅଛୁ !

୫—ତୋଷାମଦର ବରୋଧୀ ଥିଲେ ସେ । ତାଙ୍କୁ ଖାଲି ଖୁସାମତ କର ତାଙ୍କର ପ୍ରିୟ ହୋଇପାରବା ଭଲ ଲୋକ କେହି ନ ଥିଲେ । ଅନ୍ତତଃ ମୁଁ ଜାଣେ ନା । ଖୋସାମଦ୍ କରୁ ନଥିଲେ କ ନିଜକୁ ଉଣ୍ଡିମ ବଜେଇ ଚଳେଇ ଦେଉ ନଥିଲେ । ସରକାରଙ୍କ ପ୍ରସ୍ତରପତ୍ରକୁ ସେ 'ବାଜଆମା' ଆଖ୍ୟା ଦେଇଥିଲେ । ଯା ମୂଳରେ କପର ସୂକ୍ଷ୍ମବ୍ୟଙ୍ଗ ଲୁଚ ରହିଚ, ବାଜଆମା ଗପ ଯେ ପଢ଼େ ସେ ବୁଝିବ ।

୬—ବଳେ ପଶି ନେତା ହବା କଥା ତାଙ୍କର ନ ଥିଲ । ତାଙ୍କୁ ଯେ ଚାହୁଁ ନ ଥିଲ ସେ ତା' ପାଖକୁ ଯାଉ ନଥିଲେ—ସେ ଯେତେ ବଡ଼ ଲୋକ ହେଉ ପଛକେ । ମୋର ମନେଅଛୁ ଉତ୍କଳ ସମ୍ମିଳନୀର ଅଧିବେଶନ ବସିଥାଏ କଟକରେ । ଆମେ ସବୁ ସ୍ୱୟଂସେବକ ହୋଇ ଯାଇଥାଉଁ । ସଭା ବସିଲ । କେତେ ବକ୍ତା କେତେ ଭାଷଣ ଦେଲେ । ବିଷୟ ନିର୍ବାଚନ ସମିତରେ କନ୍ତୁ ଗୋପବନ୍ଧୁଙ୍କୁ ବକ୍ତା ଭାବରେ ବଚ୍ଚ ଯାଇ ନଥିଲ । ସେ ସେଥିପାଇଁ ଦୁଃଖିତ ହବାର ମୁଁ ଦେଖିନାହିଁ । ନର୍ବିକାର ଭାବରେ ବସିଥାନ୍ତ୍ର । ଶେଷରେ ସଭା ପକ୍ଷରୁ ଦାଶ ଆପଣେ କଛୁ କହନ୍ତୁ ବୋଲି ଦାବି ହେଲ । ସେ ଦାବି ଏପର ମୁଖର ଓ ଜିଦ୍‌ବାଦଆ ହୋଇଉଠିଲ ଯେ କର୍ମକର୍ତ୍ତାମାନେ ବାଧ୍ୟ ହୋଇ ଦାଶ ଆପଣେଙ୍କୁ ଆଗକୁ ଠେଲିଲେ । ନିଜେ କୁଳବୃଦ୍ଧ ମଧୁବାବୁ 'ଗୋପବନ୍ଧୁ ଗୋପତରେ ଥିଲେ' ବୋଲି କହି ତାଙ୍କୁ ଭାଷଣ ଦେବା ଲଗି ଅନୁରୋଧ କରଥିଲେ । ଏହିପର ବହୁତ କଥା ଅଛୁ ।

୭—ତାଙ୍କର ଆଉ ଗୋଟିଏ ଶେଷ ଗୁଣ କହି ତୋର ବାନ୍ଧିବ । ସେ ହେଉଚ ଜାତ ପ୍ରେମ । ସେ ଓଡ଼ିଆ । ଓଡ଼ିଆ ବୋଲି ଗର୍ବ କରୁଥିଲେ । ଓଡ଼ିଆର ଖାଇବା ପିନ୍ଧିବା ରହିବା ଇତ୍ୟାଦ କୁ ଥିରେ ହେଲେ ସେ ଲଜ୍ୟା ଅନୁଭବ କରୁ ନଥିଲେ । ମନେପଡ଼େ ସାର୍ ଆଶୁତୋଷ ମୁଖାର୍ଜୀଙ୍କର ସତ୍ୟବାଦୀକୁ ଆସିବାର ଘଟଣା ।

ଘଣ୍ଟାଚକଟା ଲଗିଲା, ସେ ଜଣେ ଭାରତ ବିଖ୍ୟାତ ନେତା, ବଙ୍ଗାଳୀ । ତାଙ୍କୁ କ'ଣ ଖାଇବାକୁ ଦେଇ ଚର୍ଚ୍ଚା କରିବାକୁ ପଡ଼ିବ । କଏ କେତେ କଥା କହିଲା । ଲୁଚି, ତରକାରି, ରସଗୋଲା, କ୍ଷିରମୋହନ । ଦାଶ ଆପଣେ ସବୁ ଶୁଣି ଶୁଣି ଶେଷରେ କହିଲେ, "ଆରେ ପିଲେ, ଆମ ଓଡ଼ିଆଙ୍କର ବଡ଼ ଖାଇବା ଚୁଡ଼ାଘସା । ବାହାବ୍ରତ ସବୁଥିରେ ତ ଅଛିଥିଚଚ୍ଚ । କରିବାର ଏଇ ପ୍ରଧାନ ଜିନିଷ । ସେଇଆ କର ।" ଆମ ମନକୁ ପାଉ ନଥିଲେ ମଧ୍ୟ ସେଇଆ କଲୁଁ । ଆଉ ସାର୍ ଆଶୁତୋଷ ମଧ୍ୟ ଖାଇକରି ଖୁସି ହେଲେ । ଦାଶ ଆପଣେ କେତେଥର କହିଛନ୍ତି—ଓଡ଼ିଶାକୁ ଅନୁନ୍ନତ ରଖି ଭାରତ ଉନ୍ନତ ହୋଇ ନପାରେ ।

ମୁଁ କାହାରିକୁ ଆକ୍ଷେପ କରୁନି । ତାଙ୍କର ଯାହା ଗୁଣ ଥିଲା—ଯୁ ଗୁଣଗୁଡ଼ିକ ମୋ ମନ ତାଙ୍କ ପାଦତଳକୁ ଟାଣୁଥିଲା, ସେଗୁଡ଼ିକ କହିଲି । ସେ ସୁଗୁଣ କି ଦୁର୍ଗୁଣ ଦେଶବାସୀ ବିଚାର କରିବେ । ମୁଁ କିନ୍ତୁ ବୁଝେଁ, ଜାଣେ ଓ ଅନ୍ୟାନ୍ୟ ନଜିର ଦେଇ ପ୍ରମାଣ କରିବାକୁ ପ୍ରସ୍ତୁତ ଅଛି ଯେ ଏଇସବୁ ଗୁଣ ଜାତିସ୍ରଷ୍ଟାଙ୍କର ନିତାନ୍ତ ଦରକାର । ପରର ଅନୁକରଣ, ପରର ପଦଲେହନ, ସ୍ୱାର୍ଥ ଲାଗି ବ୍ୟକ୍ତିତ୍ୱର ବଳିଦାନ—ଏସବୁ ନେଇ ଜାତି ଛିଆ ହୋଇପାରେନି—ଜନତାକୁ ନେଇଆଣି ଥୋଇପାରିଯାଏନି । ସେ-ସବୁ ବଖାଣିବାର ସ୍ଥାନ ଓ ସମୟ ଏହି ନୁହେଁ । ତେବେ ଗୋଟିଏ କଥା ଏଠି କହିବା ଦରକାର ବୋଲି ଆଉ ଦୁଇ ଧାଡ଼ି ଲେଖୁଛି । କେହି କେହି ହୁଏତ କହିବେ ଯେ ଦାଶ ଆପଣେଙ୍କ ଯୁଗ ଯାଇଛି । ସେ ଯୁଗରେ ଯାହା ଆଦର୍ଶ ବା ଆଦରଣୀୟ ଥିଲା, ଏହି ଯୁଗରେ ସେ ହୋଇ ନ ପାରେ । ସଂସାର ସେ ଦିନରୁ ଆଜିକୁ ବହୁତ ଆଗେଇଗଲାଣି । ଟ୍ୟାଙ୍କରୁ ବଢ଼ି ବଢ଼ି ଆମେ H. Bombକୁ ଅସିଲୁଣି । ଟି ମଡ଼େଲ ଫୋର୍ଡ଼ରୁ ରୋଲସ୍‌ର-ୟେସ୍‌କୁ, ଅଣଚଳିଆ ଏରୋପ୍ଲେନ୍‌ରୁ ରକେଟ୍ ଓ ଜେଟ୍‌ପ୍ଲେନ୍‌କୁ ସଂସାର ଗତି କରି ସାରିଲାଣି । ଏ ଯୁଗରେ ସେ ଯୁଗର ଆଦର୍ଶ କହି କି ଲାଭ ? ଦାଶ ଆପଣେ ଭୂଦାନ୍‌ର ବିଷୟରେ କଣ କରିଥିଲେ ? ଶ୍ରେଣୀହୀନ ସମାଜ ବିଷୟରେ କଣ ଭାବିଥିଲେ ? ବିଶ୍ୱ ମାନବତାର ଭାବନା ହିଁ ତାଙ୍କ ମୁଣ୍ଡରେ ଢୁକି ନ ଥିଲା । ଆମେ ସବୁ ତାଙ୍କଠାରୁ ଢ଼େର ବେଶୀ ଜାଣୁଁ, ଢ଼େର ବେଶୀ ଭାବୁଁ ।

ମାନିବାକୁ ପଡ଼ିବ । ଟ୍ୟାଙ୍କ, H. Bomb, ରକେଟ, ପ୍ଲେନ୍ ଏସବୁ କଥା ସେ ହୁଏତ ଭାବୁ ନ ଥିଲେ । କାରଣ ସେ ଯୁଦ୍ଧ ପାଇଁ ଜୀବନର କୌଣସି ଅଂଶ ଦେବାକୁ ପ୍ରସ୍ତୁତ ନ ଥିଲେ । ଶାନ୍ତି ତାଙ୍କର ଥିଲା କାମ୍ୟ, ପୂଜ୍ୟ ଓ ଅନୁସରଣୀୟ । ତୁମେ ଏହି ସବୁ ଭାବୁଚ, ପୃଥିବୀର ଧ୍ୱଂସ ଲାଗି । ସେ ଭାବୁଥିଲେ ପୃଥିବୀର ରକ୍ଷା ଲାଗି । ଏହି ସବୁ ଭାବି ଜାଣି ତୁମେ କରିଚ କଣ ? କେବଳ ନିଜ ନିଜ ଭିତରେ ବାଡ଼ିଆପିଟା, କାମୁଡ଼ା କାମୁଡ଼ି, କେବଳ ପର ପ୍ରତି ଅସହିଷ୍ଣୁତା ଓ ଈର୍ଷ୍ୟା, କେବଳ ଅନ୍ୟମାନଙ୍କ ମୂର୍ଦ୍ଧାର ଗଦା ଉପରେ

ବସି ତୁମର ସ୍ୱର୍ଗ—ଏଇଆ ତ ତୁମେ ଭାବୁଛ ? ତୁମେ ଶାନ୍ତି ଶାନ୍ତି, ମୁହଁରେ କହୁଛ, କିନ୍ତୁ ପେଟ ଭିତରେ ତୁମେ ପାଖପଡ଼ଶାର ଅନିଷ୍ଟ ହିଁ ଭାବୁଛ, ମନରେ ପାଞ୍ଚୁଛ ଓ କର୍ମରେ କରୁଛ । ଯେ ପର୍ଯ୍ୟନ୍ତ ଏଇ କ୍ଷୁଦ୍ର ମନୋଭାବ, ଏଇ ବ୍ୟକ୍ତି ବ୍ୟକ୍ତି ଭିତରେ ଥକ୍କିଚା ନ ଯାଇଛି, ସେ ପର୍ଯ୍ୟନ୍ତ ବିଶ୍ୱଶାନ୍ତି ଅସମ୍ଭବ । ବିଶ୍ୱ ବ୍ୟକ୍ତିମାନଙ୍କର ସମଷ୍ଟି, ବ୍ୟକ୍ତି ପ୍ରତ୍ୟେକେ ଯେପରି ଭାବିବେ ଯେ ମାନସିକ ଭାବ ପୋଷିବେ, ସେଇ ଭାବନା ଓ ସେଇ ଭାବ ସମଷ୍ଟି, ସମାଜ ବା ବିଶ୍ୱକୁ ଚଳାଇବ । ତୁମେ ଯେବେ ଭାବୁଥାଅ ଯେ କେଉଁଠାରେ ଶାନ୍ତିର ମନ୍ତ୍ରଣା କଲେ କାମ ହୋଇଯିବ, ପୃଥ୍ୱୀ ବାସେଲୀ ସାହୁରେ ବା କଟକ ବଡ଼େଇ ସାହିରେ ଯାହା ହେଉନା କାହିଁକି, ତେବେ ତୁମେ କେବଳ ସ୍ୱପ୍ନ ଦେଖୁଛ, ଖାଲି ଅଳୀକ ହବା ସ୍ୱପ୍ନ । ଦାଶ ଆପଣେ ବ୍ୟକ୍ତିମାନଙ୍କର ପରସ୍ପର ଭିତରେ କିପରି ଶାନ୍ତି ସୌହାର୍ଦ୍ଦ୍ୟ ବଢ଼ିବ ତାହାରି ଚିନ୍ତା କରୁଥିଲେ, ତାହାରି ଚେଷ୍ଟା କରୁଥିଲେ । ସେ ଏ ଯୁଗର ମାନସିକ ବିକାରକୁ ବେଶ୍ ବୁଝିପାରିଥିଲେ । ଆଉ ତୁମେ ଯେବେ ଭାବୁଥାଅ ଯେ ତୁମର ଏଇ ସବୁ ନୂଆ ନୂଆ ମାରଣ ଆବିଷ୍କାର ଦ୍ୱାରା ତୁମର ଗୋଟାଏ କିଛି ନୂଆ ମାନସିକ ଭାବ ଆସିଯାଇଛି, ତାହେଲେ ମୁଁ କହିବ, ତୁମେ ଏ ଯୁଗର ତ ଏ ଯୁଗର, କୌଣସି ମାନବିକ ଯୁଗର ଉପଯୁକ୍ତ ନୁହଁ । ମଣିଷ ପଥରଖଣ୍ଡକରୁ ଲୁହା କଟୁରୀ ଆବିଷ୍କାର କରିବା ମୂଳରେ ଯୁ ମନୋଭାବ ଥିଲା H. Bomb ତିଆରିକରିବାରେ ଠିକ୍ ସେଇ ଓ ସେତିକି ମନୋଭାବ ଅଛି । ଜଙ୍ଗଲୀ ହୋଇ ପର୍ବତଗୁମ୍ଫାରେ ବା ଗଛଶିଖରେ ଏକ-ଶିଙ୍ଗିଆ ରହିବାଠାରୁ ପଲ୍ଲୀଗଢ଼ି ଗାଁଟିଏ ହୋଇ ରହିବାରେ ଯେ ମନୋଭାବ, ବର୍ତ୍ତମାନ ରାଜ୍ୟଗୋଷ୍ଠୀ ତିଆରିକରିବା ଭିତରେ ସେଇ ଓ ସେତିକି ମନୋଭାବ ଅଛି ମାତ୍ର । ବିଶ୍ୱଶାନ୍ତି ଆଣିବାକୁ ହେଲେ ସତ୍ୟବାଦୀ ବିଦ୍ୟାଳୟର ପ୍ରାର୍ଥନା, "ସର୍ବେ ଭବନ୍ତୁ ସୁଖିନଃ, ସର୍ବେ ସନ୍ତୁ ନିରାମୟାଃ, ସର୍ବେ ଭଦ୍ରାଣି ପଶ୍ୟନ୍ତୁ, ମା କଶ୍ଚିତ୍ ଦୁଃଖ ଭାକ୍ ଭବେତ୍"—ଯାକୁ ଖାଲି ବାକ୍ୟରେ ନୁହେଁ, କାର୍ଯ୍ୟରେ କରିବାକୁ ଓ କରାଇବାକୁ ପଡ଼ିବ । ଦାଶ ଆପଣେ ଓ ତାଙ୍କର ସହକର୍ମୀମାନେ ସେହି ହେତୁରୁ ବାଛି ବାଛି ଉପନିଷଦ ଦରାଣ୍ଡି ଦରାଣ୍ଡି ସେଇ ପ୍ରାର୍ଥନାପଙ୍କ୍ତିଗୁଡ଼ିକ ଏକାଠି କରିଥିଲେ ଓ ତାଙ୍କ ଶିଷ୍ୟମାନଙ୍କୁ ନିତିଦିନରେ ଦୁଇଥର ଅନ୍ତତଃ ସେଇ କଥାଗୁଡ଼ିକ କହୁଥିଲେ ଓ ବୁଝାଉ-ଥିଲେ । ସେ ପ୍ରାର୍ଥନା ଶେଷ ହେଉଥିଲା—'ଓଁ ଶାନ୍ତିଃ, ଓଁ ଶାନ୍ତିଃ, ଓଁ ଶାନ୍ତିଃ' କାମନାରେ । ତୁମର ଏ ପ୍ରଗତି ଯୁଗରେ ବଡ଼ ଆଦର୍ଶ, ବଡ଼ କାମ୍ୟ ହୋଇଛି—ଶାନ୍ତି । ତୁମେ ତାକୁ ପଞ୍ଚଶୀଳ ନୀତି ପ୍ରୟୋଗ କରିପାର, ବା H. Bomb ପ୍ରୟୋଗ କରିପାର । ଦରକାର ଶାନ୍ତି । ଏ ଶାନ୍ତି ଆସିପାରେନି, ଯେ ପର୍ଯ୍ୟନ୍ତ ପ୍ରତ୍ୟେକ ଲୋକ, ତା ନିଜ କାର୍ଯ୍ୟରେ, ତା ପାଖପଡ଼ଶାଙ୍କ ସହିତ ଏଇ ଶାନ୍ତିମନ୍ତ୍ର ନ ଲଗାଉଚି, ଯେ ପର୍ଯ୍ୟନ୍ତ ପ୍ରତ୍ୟେକ ଲୋକର ମନ ଶାନ୍ତି ନ ହଉଚି । ଦାଶ ଆପଣେ ଏଇ ଶାନ୍ତିର କାମନା କରୁଥିଲେ । ମୋର ମନେଅଛି ତାଙ୍କର ଶିକ୍ଷା ଓ ଆଦର୍ଶ ବଳରେ ସେ ସମସ୍ତର

ସତ୍ୟବାଦୀ ପାଖଆଖ ଗାଁକୁ ମାଲି ମକଦ୍ଦମା, ଲଢ଼େଇ ଝଗଡ଼ା କେତେ କମି ଯାଇଥିଲା । ପ୍ରକୃତ ପଞ୍ଚାୟତ ରାଜ୍ୟ କେତେ ପାଖେଇଆସିଥିଲା ।

ଆଉ ଶ୍ରେଣୀହୀନ ଆଦର୍ଶ କଥା କହିବ ? ଗୋଟିଏ ଦୃଷ୍ଟାନ୍ତ ମାତ୍ର ଦେବି । ସତ୍ୟବାଦୀ ବିଦ୍ୟାଳୟରେ ବାହାର ଆକ୍ରମଣରୁ ଛାତ୍ରାବାସକୁ ରକ୍ଷା କରିବା ପାଇଁ ଦୁଇଜଣ ଲୋକ ଦାସ ଆପଣେ ରଖିଥିଲେ—ସେ ହେଉଛନ୍ତି ଜଣେ ଶାସନୀ କୁଳୀନ ବ୍ରାହ୍ମଣ, ଆଉ ଜଣେ ହାଡ଼ି । ଦିହେଁଯାକ ଏକା କାମ କାନ୍ଧକୁ କାନ୍ଧ ମିଳେଇ କରୁଥିଲେ ଦାସ ଆପଣେଙ୍କ ଆଖି ଆଗରେ ଓ ତାଙ୍କର ପ୍ରରୋଚନାରେ । ସତ୍ୟବାଦୀ ଛାତ୍ରାବାସରେ ହାଡ଼ି ଛାତ୍ର ତ ଥିଲେ ବ୍ରାହ୍ମଣ ଛାତ୍ରମାନଙ୍କ ସହିତ । ସମସ୍ତେ ଏକାଠି ବସି ଖାଉଥିଲେ । ସେ ହେଉଛି ୧୯୧୪-୧୫ର କଥା । ଅସହଯୋଗ ଆନ୍ଦୋଳନର ଭାବନା ମଧ୍ୟ ସେତେବେଳେ ଏ ଦେଶରେ ପଶି ନ ଥିଲା ।

ଆଉ ବାକି ରହିଲା ଭୂଦାନର । ତୁମେ ଭଲେ ଯାହା କରୁଚ, ତା କଣ ତୁମର ଅଭାବ ପୂରଣ କରିବ ? ବଡ଼କଥା ହେଲା ଏ ଦେଶର ଲୋକେ ପେଟପୂରାଇ ଖାଇଲା ଭଳି ଖାଦ୍ୟପଦାର୍ଥର ଉତ୍ପାଦନ । ଲୋକସଂଖ୍ୟା ବଢ଼ି ଚାଲିଛି । ଜମି ରହିଛି ସ୍ଥିର । ଏଥିରେ ଜମିକୁ ଚିକିଟିକି କରି ସମସ୍ତଙ୍କୁ ବାଣ୍ଟିଦେଲେ କଣ ଅଭାବ ମେଣ୍ଟିଯିବ ? ଏକା ଜମିରୁ କିପରି ବେଶୀ ଶସ୍ୟ ଉପୁଜିବ, ମାଣକରୁ ତୋଳାଏ ମିଳୁଥିବା ସ୍ଥଳେ, କିପରି ଭରଣେ ମିଳିବ, ଲୋକେ କିପରି ଜମିଆଡ଼କୁ ,କୃଷିବାସ ଆଡ଼କୁ ଟାଣିହେବେ—ଏହାହିଁ ପ୍ରଧାନ ସମସ୍ୟା । ଏ ସମସ୍ୟା ସମାଧାନ କରିବା ପାଇଁ ଦାସ ଆପଣେ ଆରମ୍ଭ କରିଥିଲେ କୃଷି । ଛାତ୍ରମାନେ ଯାଇ ନିଜେ ଜମି ଚାଷ କରିବେ, କିପରି ଭଲ କ୍ଷେତ ହେବ, କିପରି ଗୌଣିକ ଠି ଦି'ଗୌଣି ବାହାରିବ—ଏ ସବୁ ଶିଖିବେ । ଏଇଥିପାଇଁ ।

ସବୁଠୁ ବଡ଼ କଥା—ତୁମର ଏ ମିଛ ବଡ଼େଇ । ତୁମେ ତାଙ୍କଠୁ ବଡ଼ ହୋଇନ, କାରଣ ସେ ନିଜକୁ ବଡ଼ ବୋଲି କେବେ କହି ନ ଥିଲେ; ତୁମେ ତାଙ୍କଠୁ ବଡ଼ ହୋଇ-ପାରିବନି, କାରଣ ତାଙ୍କର ବଡ଼ହବା ମୂଳରେ ଯେ ଆଦର୍ଶ, ସେ ଆଦର୍ଶ ତୁମେ ମୋଟେ ବୁଝିପାରିନ । ସେ ଥିଲେ ବଡ଼ । ଅତି ବଡ଼ । ଅତଏବ, ମୁଁ ଓ ମୋର କ୍ଷୁଦ୍ରବୁଦ୍ଧି ଡାକ ପକାଏ 'ସିତରଂ ଆବାହୟାମି—ଆବହୟ' ।



# କଖାରୁ ଫୁଲ

ଧର ତୁମେ ଜଣେ ମାନସିକ ରୋଗୀ, 'ମାନେ ତୁମ ମୁଣ୍ଡ ଖରାପ ହୋଇ-ଯାଇଛି' । ମୁଁ ହେଲି ଜଣେ ମନ ବା ମୁଣ୍ଡ ଡାକ୍ତର, 'ତୁମେ ମୋ ପାଖକୁ ଆସିଲ' । ଆସିବା ଆଗରୁ ପେଟକ ଖାଇକରି ଆସିଛ, "ମନଟା ବିରକ୍ତିଆ ହୋଇଯାଇଛି, କାହିଁକି ନା ଭାତରୁ ବାହାରିଲା ଗୋଡ଼, ଡାଲି ଯାଇଥିଲା ପୋଡ଼ି, ମାଛ ହେଲା ଲୁଣି, ଖଟା ହେଲା ପାଣି ।" ମୁଁ ତୁମକୁ ପରୀକ୍ଷା କରି ବସିଲି । ଆମ ମନ ବୈଦ୍ୟବିଦ୍ୟାର ପ୍ରଧାନ ଅସ୍ତ୍ର ହେଲା, ରୋଗୀକୁ ଆମେ କେତେଗୁଡ଼ାଏ କଥା ପଚାରିବୁଁ, ରୋଗୀ ଉତ୍ତର ହାଙ୍ଗେ ସାଙ୍ଗେ ଦେଇଯିବ । ସେଥିରୁ ଆମେ ତା ମନର ଭିତରିକଥା ଖୋଜି ଦେଖି ତା ମନକଥା ସବୁ ବୁଝିପାରିବୁଁ, ସେଇ ଉପାୟ ଧରି ମୁଁ ତୁମକୁ ପଚାରିଲି ।

| | |
|---|---|
| ପ୍ରଶ୍ନ—ଭାତ | ଉତ୍ତର—ଗୋଡ଼ |
| ପ୍ରଶ୍ନ—ଡାଲି | ଉତ୍ତର—ପୋଡ଼ା |
| ପ୍ରଶ୍ନ—ମାଛ | ଉତ୍ତର—ଲୁଣି |
| ପ୍ରଶ୍ନ—ଆମ୍ବିଲ | ଉତ୍ତର—ପାଣି |

ଏଇଥିରୁ ମୁଁ ବୁଝିନେଲି ଯେ ତୁମ ଘରେ ଖାଇବା ପିଇବା ଭଲ ନ ଥିବାରୁ ତୁମ ମୁଣ୍ଡ ଖରାପ ହୋଇଯାଇଛି, ଅତଏବ ସିଦ୍ଧାନ୍ତ ହେଲା ଯେ ତୁମ ଘରଣୀ ତୁମର ଯତ୍ନ ନିଅନ୍ତିନି, ସୁତରାଂ ଘରଣୀଙ୍କଠାରୁ ଅଲଗା ହୋଇ ରହିଲେ ତୁମ ମୁଣ୍ଡ ଭଲ ହୋଇଯିବ । ବ୍ୟବସ୍ଥା—ବଡ଼ ଡାକ୍ତରଖାନାର ନରସିଂହ ହୋମ୍‌ରେ ରହିଲେ ସିଠା ଭଉଣୀମାନଙ୍କ ହାତରନ୍ଧା, ହାତପରଶା ଓ ପରାମର୍ଶ ପାଇଲେ ତୁମର ସବୁ ରୋଗ ଭଲ ହୋଇଯିବ ।

ଅଥଚ ଅସଲ କଥା ଯେ ତୁମ ଘରଣୀ ତୁମକୁ ଖୁବ ଭଲପାଆନ୍ତି, ତୁମର ବହୁତ ଯତ୍ନ ନିଅନ୍ତି । ସେଦିନ ସେ ବାପଘରକୁ ଯାଇଥିଲେ, ଆଉ କେହି ତୁମ ପାଇଁ ରାନ୍ଧିଥିଲା, ମୁଁ ସେକଥା ଜାଣେନି । ମୁଁ ତୁମକୁ ପ୍ରଶ୍ନ ପଚାରିଲି, ତୁମ ମନ କଥା ବାରିଲି, ବ୍ୟବସ୍ଥା କରିଦେଲି । ତୁମ ଘରଣୀ ଯେତେବେଳେ ଏ କଥା ଜାଣିଲେ, ସେତେବେଳେ ଲାଗିଗଲା ଗୋଟାଏ ଅଘଟନ ଝଡ଼ବର୍ଷା । ସେ ବର୍ଷାପାଣିରେ ତୁମ ମୁଣ୍ଡ ଏବେବେଳକେ ଥଣ୍ଡା । ଏହିପରି ଏ ବିଦ୍ୟା, ଏହିପରି ଆମର ସବୁ ବିଦ୍ୟା ଆଜିକାଲିର, ଯାହା କିଛି ଗୋଟିଏ ନୂଆ ହେଉ, ତା ନିଶ୍ଚୟ ଭଲ । କାରଣ ସେ ନୂଆ, ଘରେ ସ୍ୱର୍ଗ ଅପ୍‌ସରୀ ଘରଣୀ ଥିଲେ ମଧ୍ୟ, ସାବେଜୀ କ କାଳୀ, କାଳକୁରୂପୀଟିଏ ନୂଆ କରି ଦେଖିଦେଲେ, ସେ ନିଶ୍ଚୟ ହବ ଭଲ । ତୁମେ ଗୋଡ଼େଇଲ ତା ପଛରେ, କାହିଁକିନା ସେ ନୂଆ । ସୁନ୍ଦରୀ ଘରଣୀ । ସେ ପୁରୁଣା ! ସିମିତିକା ଯାହାକିଛି ଆମକୁ କଏ ଆସି ନୂଆକଥା କହୁଦଉଛି, ଆମେ

ସେଇଥିରେ ମାତିଯାଉଚୁ, ତାର ପଛରେ ଗୋଡ଼େଇ ମରୁଚୁ । ଦେଖିବାର ବା ଭାବିବାର ସମୟ ନାହିଁ, ଏ ସତରେ ଭଲ ନା ମନ୍ଦ, ଏଇ ମନସ୍ତାତ୍ତ୍ୱିକ ବିଦ୍ୟା ଇଏ—ମନ ଡାକ୍ତର, ସାଇକୋଲଜି ଓ ସାଇକୋଆନାଲିସିସ୍ ବା ସାଇକୋଥେରାପି । ଏହାକୁ ବାହାର କରିଥିଲେ, ଫ୍ରଏଡ଼ । ଏ ଥିଲେ ପାଗଳ, ଖିଆଲମତ ବାଇଆ, ନୂଆକଥା । ମାତିଗଲେ ଥୋଡ଼ାଏ ଲୋକ, ତାଙ୍କ ପରେ ଯେ ଏ ବିଦ୍ୟାର ଗୁରୁ ହେଲେ ସେ ମଧ୍ୟ ପାଗଳ । ( ଯାହାହେଉ ସତ ବା ମିଛ, ଭଲ ବା ମନ୍ଦ, ଏ ହେଉଚି ଗୋଟାଏ ଖିଆଲ, ବା ଗୋଟାଏ ଫେସନ । )

ଖାଲି ଚିକିତ୍ସାବିଦ୍ୟାରେ ନୁହେଁ ସାହିତ୍ୟରେ ଓ କଳାରେ ମଧ୍ୟ ଏ ଆସି ଆସନ ମାଡ଼ି ବସିଲାଣି । ଯେଉଁ ଗଳ୍ପ, ଉପନ୍ୟାସ, ନାଟକ ଇତ୍ୟାଦିରେ ଏଇ ମନ ଘଣ୍ଟା କଥା ଯେତିକି ଅଛି ସେ ସେତିକି ଉଚଦରର ବୋଲାଉଚି । ଅଥଚ ଆମ ଦେଶର ଏ ସାହିତ୍ୟିକ ବା କଳାକାରମାନଙ୍କ ମଧ୍ୟରୁ ଶତକଡ଼ା ୯୯ ମନୋବିଜ୍ଞାନ, ମନସ୍ତତ୍ତ୍ୱ ବା ମନଭେଷଜ ପଢ଼ି ନାହାନ୍ତି । ସେମାନଙ୍କୁ ଏ ସବୁର ଅର୍ଥ ପଚାରିଲେ ହୁଏତ ସେମାନେ କହି-ପାରିବେନି । ଶୁଣିଚନ୍ତି ଫ୍ରଏଡ଼ ଇତ୍ୟାଦିଙ୍କ ନା । ଶୁଣୁଚନ୍ତି ମୋ କହିଲି ଭଲ ଉପର-ଠାଉରିଆ ଗୋଟାଏ ଢ଼'ଟା କଥା । ବେଶ୍ ତାର ଉପରେ ଡାଲି ଖତରୁ ନରସିଂହ-ହୋମ୍‌ର ବ୍ୟବସ୍ଥା ହେଇଯାଉଚି, ଅଥଚ ଆମର ସେଇପ୍ରକାର ସାହିତ୍ୟ ଓ କଳା ପସନ୍ଦ । ତା ଯେବେ କରୁଚ, ତାହେଲେ ତ ତୁମ ମୁଣ୍ଡ ଓ ମନରୋଗର ଚିକିତ୍ସା କରିବା ଲାଗି ଏଇ ସାହିତ୍ୟିକ ଓ କଳାକାରମାନଙ୍କୁ ନିଯୁକ୍ତ କଲେ ହୁଅନ୍ତା, ସେଥିଲାଗି ପୁଣି ବୈଜ୍ଞାନିକ ଓ ଡାକ୍ତରଙ୍କର ଦରକାର କିଆଁ ? କ'ଣ କହୁଚ, ତୁମ ମୁଣ୍ଡ ରୋଗଟା ଦେଖିବା ପାଇଁ ଯେବେ କହିବ, ମୁଁ କଟକର ଅନେକ ସାହିତ୍ୟିକ ଓ କଳାକାରଙ୍କୁ ଦେବି, ସେମାନେ ଯେ କେଛି ଟଙ୍କା ଗୋଟାଏ ଢ଼'ଟା ବା, କମ୍‌ରେ କମ୍ ଗିନେ ଢ଼'ଗିନା ଗ୍ ବଦଳରେ ତୁମକୁ ଭଲ କରିଦେଇପରିବେନି ? ଯାଇପାରିବେନି ? କିଆଁ ? ସେମାନେ ପରା ମନସ୍ତାତ୍ତ୍ୱିକ, ଲେଖକ ଓ କଳାକାର ? ସେମାନେ ପରା ତାଙ୍କ ଚରିତ୍ର ଏ ନାୟକ-ମାନଙ୍କର ମନସ୍ତତ୍ତ୍ୱ ତାଙ୍କ ଲେଖା ଓ ଅଙ୍କାରେ ତୁମ ଆଗରେ ପ୍ରକାଶ କରିପକାନ୍ତି ? ଆଉ ତୁମ ରୋଗଟା ଭଲ ନ କରିଦେବେ କିଆଁ ?

କଥାଟା କ'ଣ କି, ତୁମକୁ ଏଇ ନୂତନତ୍ୱର ଭୂତ ଲାଗିଚି । ନୂଆ ନାଗରୀଟିଏ ପାଇଲେ କବି ଯେପରି କାଳନାଗୁଣୀଠାରୁ ଆରମ୍ଭ କରି କଳାଭଅଁର, କଳାକୋଇଲି ପର୍ଯ୍ୟନ୍ତ, ତାଳମୂଳଠାରୁ ଆରମ୍ଭ କରି ପାଟଳି ଗଛ ପର୍ଯ୍ୟନ୍ତ ସବୁଥିରେ ତାର ରୂପ ଓ ଗନ୍ଧ ଦେଖୁଥାଏ, ନୂଆ ନାଗରଟିଏ ପାଇ ଗୋପୀମାନେ ଯେପରି ବୃନ୍ଦାବନର କଣ୍ଟାବୁଦା ଠାରୁ ଆରମ୍ଭ କରି କଦମ୍ବଗଛ ପର୍ଯ୍ୟନ୍ତ ସବୁଥିରେ କୃଷ୍ଣଙ୍କ ଅଙ୍ଗସୁଖ ପାଇଯାଉଥିଲେ, କଂସର ଦନ୍ତାହାତୀଟା ମଧ୍ୟ ପ୍ରାଣଭୟରେ ଯୁଆଡ଼େ ଗ୍ଲହେଁ ତେଣେ କୃଷ୍ଣଙ୍କୁ ଦେଖେ

ଯେପରି, ଆମେ ସେମିତିକା ହୋଇଯାଇଚୁ । ନୂଆକଥାଟାଏ ବାହାରିଲା, ଆମକୁ ଲାଗିଗଲା ତାରି ନିଶା ।

କିନ୍ତୁ ଆମର ଏ ନିଶା ପଛରେ କ'ଣ ଅଛି, ସୁବଳ ହାଣ୍ଡିର ଭସ୍ମ ଭେଳକି, ନା, ଗୋପୀମାନଙ୍କର ପ୍ରେମ ଭେଳେକି ? ମୁଁ ଜାଣେନି, ବୁଝିପାରେନି, ଯୁ କଲେଜ ଓ ସ୍କୁଲ ପିଲାମାନଙ୍କୁ ହୁଏତ Psychology, Psycho-Analysis ବା Psycho-Therapyର ବନାନ ପର୍ଯ୍ୟନ୍ତ ଆସେନି, ସେମାନେ ଏଥିରେ ମାତିଯାନ୍ତି କିପରି ? ସ୍ୱାଗ ଦୁହାଇଦେଇ ଭଲକୁ ଖଣ୍ଡିଆ କରନ୍ତି ଓ ଖଣ୍ଡକୁ ଭଲ କରନ୍ତି କିପରି ? ନିଶ୍ଚୟ ଏ ପ୍ରେମ ନୁହେଁ, କାରଣ ପ୍ରେମ ଅନ୍ଧ ହେଲେ ମଧ, ଖଣ୍ଡିଆ କୋଢ଼ିଆ ନୁହେଁ । ସେ ନ ଦେଖି ପାରୁଥିଲେ ମଧ, ସ୍ପର୍ଶସୁଖ ଅନୁଭୂତିର ଉନ୍ମାଦନା ଠିକ୍ ପାଇପାରେ । ହଁ ଗୋଟାଏ କଥା, 'ପ୍ରେମ ଅନ୍ଧ', ଏ କଥାଟା ଆମ ଦେଶୀ କଥା ନୁହେଁ । ଆମର ପ୍ରେମ ଦେବତା କାମଦେବ, ଆମର ପ୍ରେମ ଦେବୀ ରତି, ଏମାନେ ପରମ ସୁନ୍ଦର, ଶ୍ରେଷ୍ଠ । ବିଲାତି କାମଦେବ କ୍ୟୁପିଡ଼ ହୁଏତ ଅନ୍ଧ, ଆମେ ବିଲାତି ଯାଇବ ଏକଦମ ନିଚ୍ଛକ ଯାଇବ କି ନା ଭଲେ, ସେଥିହେତୁ କାମଦେବଙ୍କୁ ଛାଡ଼ି କ୍ୟୁପିଡ଼ଙ୍କୁ ଧଇଲୁଣି । ଆମେ ଆଖିରେ ଦେଖିପାରୁନୁ, କିଛି ଦେଖିପାରୁନୁ, ପରାଧୀନ ପୁରୁଣା ଭାରତର ଧୂଆଁସ ଅନ୍ଧାର ଭିତରୁ ହଠାତ୍ ସ୍ୱାଧୀନତାର ବିଲାତି ନିଅନ୍ ଆଲୁଅକୁ ଆସିଯାଇ ଆମ ଆଖି ଖାଲି ଝଲସିଯାଇନି, ଆଖିର କଣ୍ଟିଆ ଚଲ୍‌ଚୁଲ ପୋଡ଼ିଯାଇନି, ଛିଣ୍ଡିଯାଇଚି । ତା' ସାଙ୍ଗରେ ମଧ ବିଲାତି କଣ୍ଟା ଚାମୁଚରେ ବିଲାତିଖାନା ଖାଇବାକୁ ଯାଇ ମୁସ୍କିଲରେ ପଡ଼ିଯାଇଛୁ । ହଇହେ, ଯିଏ ଦ'ଗୁଣଟା ଫାଲୁଆ ଗୁଣ୍ଡାରେ ଅଳିଏ ଭାତ ପାରକରି ବଜ୍ରଗର୍ଜନ ସମାନ ଏହୁଡ଼ରେ ଗାଁ କମ୍ପେଇ ଦଉଥିଲେ, ସେ ଏତେ ଟିକିଏ ଚାମୁଚରେ ଟିକିଏ ଟିକିଏ ନେଇ କେତେ ଖାଇବେ ? ସେ ବ୍ରହ୍ମୋଦର ପୂରିବ କିମିତି ? ଫଳ ପାଉଚୁ । ଆମ ହାତ ଗୋଡ଼ ଶୁଖି ତାଙ୍ଗ ହେଇଯାଉଚି, ବିଲାତି କ୍ୟୁପିଡ଼ଙ୍କର ସ୍ପର୍ଶସୁଖ ମଧ ପାଇବାର ଶକ୍ତି ଆମର ନାହିଁ । ସେଥି ହେତୁରୁ ଏ ନୂଆ ନୂଆ ନିତ୍ୟନୂତନରୁ ଆମେ କିଛି ବୁଝୁନୁ, କିଛି ଦେଖୁନୁ ଶୁଣୁ ଶୁଣୁ ଖାଲି ଆରେ ନୂଆକଥାଟେ ବାହାରିଚି, ଆମେ ଏଥିରେ ନମାତି ଗଲେ ଆମକୁ କାଲେ କହିବେ ମରହଟ୍ଟିଆ, ଗୁଆଁର, ସେବେଲେ, Old foggy, ସୁତରାଂ ନ ବୁଝି ପଛକେ, ନ ଦେଖୁ ପଛକେ, ନ ଚାଖୁଁ ପଛକେ, ତାରି ସେଇ ନିତ୍ୟ ନୂତନର ଦଉଡ଼େଇ କରି ଚାଲୁ, ଗୋଟିଏ କଳଯନ୍ତ୍ର ଭଳି ।

ସେଇ ବିଲାତି ଲୋକଙ୍କର ଗୋଟାଏ କଥା ଅଛି, ପୁରୁଣା ମାଇପ ଓ ପୁରୁଣା ମଦ ସବୁଠୁଁ ଭଲ, Old Wife and Old Wine—ଆମେ ସେ କଥା ବୁଝୁନୁ, Old Wine, ପୁରୁଣା ମଦ ଛାଡ଼ି ଆମେ ଭଲେ ଚଲେଇନୁ ଆମୋନିଆ ଫସ୍‌ଫେଟ୍ ଦିଆ କାଲି ତିଆରି ମଦ, ଘଡ଼ାକୁଘଡ଼ା, ବୋତଲକୁ ବୋତଲ, ହାକିମମାନଙ୍କ କ୍ଲବରୁ ଆରମ୍ଭ କରି ମଜୁରିଆର ଆଡ୍ଡା ପର୍ଯ୍ୟନ୍ତ । ଆଉ ପୁରୁଣା ସ୍ତ୍ରୀ, ସେଇ ଦରବୁଢ଼ୀ

ମାଇକନଆଟା । ଆରେ ଛି, ଛି, ଦାଣ୍ଡରେ ହାଟରେ ଏତେ ଶିକ୍ଷିତା, ସୁନ୍ଦରୀ, ଷୋଡ଼ଷୋଡ଼ଶୀ ଥିବା ଜାଗାରେ ।

ସୁତରାଂ ତମେ ଦେଖୁଚ ତୁମର ସ୍ନେ ଯୁ ନୂଆ ଭେଲେଣ, ସ୍ନେ ଯୁ ନିତ୍ୟ-ନୂତନର ନଟ, ସ୍ନେ ଗୋପୀଙ୍କ ପ୍ରେମ ନୁହେଁ, ଏ ପ୍ରକୃତରେ କୁବଳୟାର ଲସ୍ୟ । ତୁମେ ଭାବୁଚ, ସ୍ଥା ପଛରେ ନ ଗୋଡ଼େଇଲେ କାଳେ ତୁମକୁ ଲୋକେ ନାପସନ୍ଦ କରିବେ । (ପର ପଛରେ ଗୋଡ଼େଇବା ପର ଅଇଁଠା ଗୁଣ୍ଟିବା—ଏଇଆ ଆମ ସ୍ୱାଧୀନତାର ଫଳ, ଏଇଆ ଆମ ସ୍ୱରାଜ୍ୟର ଅମୃତ, ହାୟ ମହାତ୍ମା ଗାନ୍ଧି !)

ତୁମେ କହିବ, ମୁଁ ଗୋଟାଏ ନିନ୍ଦୁକ । (ମୁଁ ଆଜିକାଲି ଟୋକା ଟୋକୀଙ୍କର ଶ୍ରୀ ସହିପାରୁନି, ନ ହେଲେ ମୁଁ ନିହାତି ମରହଟ୍ଟିକାଳିଆ ମୂର୍ଖ । ମୁଁ ସହିପାରୁନି, ସତ, ତୁମର ଶ୍ରୀ ନୁହେଁ, ତୁମର ଏଇ ବିଶ୍ରୀକୁ, ଏଇ କୁଶ୍ରୀକୁ ।) ଆଉ ମରହଟ୍ଟିକାଳିଆ ହବାରେ, ପୁରୁଣା ହବାରେ, ସେ କାଳର ହବାରେ, Old foggy ହବାରେ ମୁଁ ସେପରି କିଛି ଗନ୍ଧ ପାଉନି ତ ! ମରହଟ୍ଟିକାଳି ଥିଲି ଆମର, ଦେଶର, ଏ ଜାତିର । ନିଜ ଦେଶ ଓ ଜାତି ସହିତ ଏକ ହେଇଯିବାରେ ଅଗୌରବଟା କ'ଣ ?

ଅଗୌରବ ନାହିଁ ? ନିଶ୍ଚୟ ଅଛି । ତୁମେ ମୂର୍ଖ, ତୁମେ ନିର୍ବୋଧ, ତୁମେ ବୋକା । ଏ ଆଟମିକ ଯୁଗରେ ତୁମେ ଯେବେ ରକେଟ୍ ପ୍ଲେନ ଛାଡ଼ି ବଳଦ ଗାଡ଼ିକୁ ପସନ୍ଦ କର, ତାହେଲେ ଲୋକେ ତୁମକୁ ଛି' ଛିକର କରିବେନି ? ଜମାନା ବଦଳିଯାଇଚ ଭାଇ । ଜମାନା ବଦଳିଯାଇଛି ।

(ବଦଳିଯାଇଚ, ହଁ, ନିଶ୍ଚୟ ବଦଳିଯାଇଚ । କିନ୍ତୁ ନ ବଦଳିଚ କେତେବେଳେ ? ବଦଳିବାଟା ହିଁ ଜମାନାର ଧର୍ମ ।) ବୀଜାଣୁ ଓ ଜୀବାଣୁଠାରୁ ଆରମ୍ଭ କରି ମଣିଷ ପର୍ଯ୍ୟନ୍ତ ବହୁତ ଜମାନା ବଦଳିଯାଇଚ । ଗଛ ଉପର ବସା ଓ ପର୍ବତ ଗୁମ୍ଫାଠାରୁ ନିଉୟର୍କର ଷ୍ଟେଟ୍ ବିଲଡ଼ିଂ ପର୍ଯ୍ୟନ୍ତ ବହୁତ ବାଟ ଗଡ଼ିଗଡ଼ି ଆସିଚ, ସେ କଥା ମୁଁ ଜାଣେ । ସୁତରାଂ ମୁଁ ଯେଉଁ କାଳକୁ ନେଇ ବସିଚି, ଯେଉଁ ବଳଦଗାଡ଼ି ଯୁଗକୁ ନେଇ ବସିଚି ବୋଲି ତୁମେ ନାକ ଟେକୁଚ, ସେ ପୁରୁଣା ଯୁଗ ନୁହେ ଆଜ୍ଞା, ସେ ବି ଥିଲା ଗୋଟାଏ ନୂଆ ଯୁଗ ଦିନେ । ମୁଁ ସେ ଯୁଗକୁ ଚହ୍ନେ, ବୁଝେ, ଜାଣେ । ସୁତରାଂ ତାକୁ ନେଇ ବସିଚି । ସେ ଯୁଗର ପ୍ରତି କଥାଟି ମୋର ଦେହର ପ୍ରତି ରକ୍ତବିନ୍ଦୁ ସହିତ ମିଶିଚି, ସୁତରାଂ ସେ ମତେ ସୁହାଉଚି । ସ୍ନେ ଯୁ କଥା ତୁମେ କହୁଚ, ତୁମେ ବୁଝୁନ, ଜାଣିନ, କରିଯାଉଚ ଖାଲି, କେବଳ ଡରରେ । ସ୍ନେ ମନୁଷ୍ୟତା ନୁହେଁ ଭାଇ, ସ୍ନେ ମାଙ୍କଡ଼ ବଣ ମନୁଷ୍ୟତା । (ମୁଁ ଶଗଡ଼ ଯୁଗକୁ ଆବୁରିଧରି ଅନ୍ତତଃ ମଣିଷ ଅଛି, ତୁମେ ଯେ ଅବୁଝା, ଅଚିହ୍ନା, ଅଜଣା ଆଟମିକ ଯୁଗକୁ କୁଣ୍ଢାଇଧରି ବଣମଣିଷ ପାଲଟିଯାଉଚ ଯେ ।)

କମିତ ତୁମେ କହୁଚ, ସ୍ରେ ଖାଲି ଗାଳି, ସ୍ରେ ଖାଲି ମୁଣ୍ଡ ହଗିଲ ବକାବକି ଅସ୍ଥ । ସତେ ? ଆଚ୍ଛା, ମୁଁ ହାତେ ହାତେ ପ୍ରମାଣ କରିଦଉଚି । ଆଗରୁ ତ ତୁମକୁ ଦେଖେଇଦେଇଚି, ଯେଉଁମାନେ ସାଇକୋଲୋଜି ଶବ୍ଦଟାକୁ ଇଂରେଜିରେ ଶୁଦ୍ଧଭାବରେ ଲେଖିପାରିବେନି, ସେଇମାନେ ହିଁ ସାହିତ୍ୟରେ ଓ କଳାରେ ସାଇକୋଲୋଜି ଖୋଜି ବସନ୍ତି । ଏଇଟା ସତ, ନା ମିଛ ? ହଲପ କରି କହ ତ, ଏଡ଼୍ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ଛପାରେ ଗୀତରେ ହାତ ଦେଇ କହିଁତ । ତା'ପରେ ସାଇକୋଲୋଜି ଓ ସାଇକୋ-ଆନାଲିସିସ୍ ଯେବେ ସାହିତ୍ୟ ଓ କଳାର ପ୍ରଧାନ ବିଷୟବସ୍ତୁ ହୁଏ, ତା'ହେଲେ ସେକ୍ସପିଅର, ମିଲ୍ଟନ୍, ସେରିଡ଼ାନ, ଗୋଲଡ଼ସ୍ମିଥ୍, ସେଲି, ବାଇରନ୍, ଟେନିସନ୍, ବ୍ରାଉନିଂ, ରୁସୋ, ହୁଗୋ, ଡୁମା, ଭଲଟେୟାର, ଗେଟେ ଇତ୍ୟାଦି ସାହିତ୍ୟିକମାନେ, ମାଇକେଲ ଆଞ୍ଜେଲୋ, ବେନଭେନୁଟୋ ସେଲିନି, ରଫୁକନ୍ ଇତ୍ୟାଦି କଳାକାରମାନେ ବଡ଼ ହେବେ ନା ନାହିଁ ? ଏମାନଙ୍କ ବେଳକୁ ଫ୍ରଏଡ଼ଙ୍କ ପୟଗମ୍ବରୀ ଆରମ୍ଭ ହୋଇ ନ ଥିଲା । ସାଇକୋ-ଆନାଲିସିସ୍ ଓ ସାଇକୋ-ଥେରାପି କଥା ଏମାନେ କାନରେ ମଧ୍ୟ ଶୁଣି ନ ଥିଲେ । ତା'ହେଲେ ତୁମେ କ'ଣ କହିବ ? ଏମାନେ ବଡ଼ କଳାକାର, ନା, ଏମାନଙ୍କ ନା କଳାକାରରେ ଗଣ୍ୟ ନୁହେଁ ? ମନେରଖ, ମୁଁ ଏ ଯୁଗର ଭାରତବର୍ଷର ପୁରୁଣା ଫ୍ରଏଡ଼—ପୂର୍ବ କଳାକାରମାନଙ୍କ ନା ମାତ୍ର ଧରିନି ଏଠି । କାରଣ ମୁଁ ଜାଣେ ଆମ ପୂର୍ବପୁରୁଷଗୁଡ଼ାକ, ଏପରିକି ରବି ଠାକୁର ମଧ୍ୟ, ନିତାନ୍ତ ଗଣ୍ଡିଆ, ପୋଚରା । ସେଇଥିପାଇଁ ତୁମର ପ୍ରିୟତମ ବିଳାତ କଳାକାର—ଏଁ, ଏଗୁଡ଼ାକ ବିଳାତ କଳାକାର ? ଏ ସବୁ କିଏ ମ ?

ଓ, ନା ବି ଶୁଣିନ । ଯାଉ, ନ ଶୁଣିଥିଲେ ତୁମ ଗୋସେଇଁମାନଙ୍କୁ ପଚାରି, ସେ କହିବେ । ଏଥରକ ତ ବୁଝିଲ ତୁମର ଏକ ଉପାସ୍ୟ ସାଇକୋଲୋଜି ଓ ସାଇକୋ-ଆନାଲିସିସ୍ ଛଡ଼ା ଉଚ୍ଚଦରର ସାହିତ୍ୟ ଓ କଳା ନିଶ୍ଚୟ ହୋଇପାରେ, ହେଇଚି, ହେଉଚି, ହେବ ମଧ୍ୟ । ବରଂ ତୁମର ଏବରୁ ନୂଆ ଢଙ୍ଗ ଯୁ କଳାରେ ପଶିବ, ସେ ଏକାବେଳେକେ ଫିକା ପଡ଼ିଯିବ, ପଡ଼ିଯାଉଚି ମଧ୍ୟ । ସ୍ରେ ମୋର ତୃତୀୟ ପ୍ରମାଣ ଯେ ତୁମେ କିଛି ବୁଝୁନ, ଖାଲି ବାନରଙ୍କ ଭଳି, ବଣ ମଣିଷଙ୍କ ଭଳି ଅନୁସରଣ କରିଯାଉଚ ମାତ୍ର ।

ଶୁଣ, ଶୁଣ, ଗାଳି ଦିଅନି । ମୁଁ କହୁନି ଯେ, ମୁଁ ତୁମଠାରୁ ବେଶି ପଢ଼ିଚି କି ବେଶି ଜାଣିଚି । କିନ୍ତୁ ମୁଁ ଗର୍ବ କରି କହିପାରେ, ମୁଁ ଯେତିକି ପଢ଼ିଚି ଓ ଜାଣିଚି, ତାକୁ ଭଲକରି ବୁଝିଚି, ବେଶ୍ କରି ହଜମ କରିନେଇଚି । ତୁମେ ଯାଇ ଡାକ୍ତର ମିଶ୍ର, କି ଡାକ୍ତର ପଟ୍ଟନାୟକଙ୍କୁ ପଚାରିଲ, ଅଳ୍ପ ଖାଇ ହଜମ କରିପାରିବାଟା ଭଲ ନା, ବେଶିଗୁଡ଼ାଏ କଲବଲ କରି ଗିଳି ପକାଇ ଅଜୀର୍ଣ୍ଣରେ ଘରେ ରଖେଇ ନ ଦବାଟା ଭଲ ? ଶୁଣିବ, କ'ଣ କହିବେ ସେ । ତୁମକୁ ସେଇଆ ହେଇଚି, ବଦହଜମ । ବେଶି ଗିଳିଚ କି

ନ କହୁ ? ପାରିବନି । ତୁମର ସେ ଉଦରରେ କେତେ ମାଲ ଧରିପାରିବ ତା ମୁଁ ଜାଣେନି । ଲୋକେ ଅଛନ୍ତି ଯେ କି ଏକା ବସକେ ଦଶ ସେର, ପନ୍ଦର ସେର ଖାଇ ହଜମ କରି-ପାରିବେ । ବଡ଼ାଣିଆ କଥା ? ବାଜି ମାରିବ ଶହେ ଟଙ୍କା ? ମୁଁ ତାଙ୍କୁ ତୁମରି ସାମନାରେ ଖୁଆଇ ପ୍ରମାଣ କରିଦେବି, ଏକାବେଳକେ ସତ ଏ କଥା । ଏଇ ଲୋକେ ଅଛନ୍ତି ଯେ କି ପାଏ ଖାଇଲେ ବି ମନ୍ଦକେଇଦେବେ ଘର । ସିମିତି ତୁମ ମଗଜ କଥା ତୁମେ ଜାଣ । ( ଜାଣି ଯେତିକି ପାରିବ ସେତିକି ଖାଅ । ଗୁଡ଼ାଏ ଗିଳି ଆହ୍ମମାନଙ୍କ ନାକ ଫଟାଅନି, କି ବାଡ଼ିଆଡ଼ ମଇଳା କରନି । )

ଏଇଟି ତୁମର ମୋର ପ୍ରଭେଦ । ପାଠ ପଢ଼ିଲେ, ବେଶି ଗୁଡ଼ାଏ ଜାଣିଲେ ମଣିଷ ବଡ଼ ହୁଏନି । ଏପରି କବି ଅଛନ୍ତି ବା ଥିଲେ ଯେଉଁମାନେ କି ଅପାଠୁଆ ଓ ଅଳ୍ପ ପାଠୁଆ । ଏଇ ଦେଖନା ତୁମରି ବିଳାତି କବି ବର୍ଣ୍ଣସ୍ ବା ଗୋଲ୍ଡସ୍ମିଥ, ସେଲି ବା କିଟ୍ସ । କିନ୍ତୁ ସେ ଯେତିକି ପଢ଼ିଥିଲେ, ତାକୁ ଭଲ କରି ଦଖଲ କରିନେଇଥିଲେ । କବି ବା ସାହିତ୍ୟ ଲାଗି ଦରକାର ହୁଏନି ପଣ୍ଡିତେଇ । ଆମ ସଂସ୍କୃତ କବିମାନଙ୍କ ମଧ୍ୟରେ ଭାରବୀ ଓ ଭବଭୂତି କାଳିଦାସଙ୍କଠାରୁ ବଡ଼ ପଣ୍ଡିତ ଥିଲେ । ଭାରବୀଙ୍କ ସମ୍ବନ୍ଧରେ ଗୋଟାଏ କଥା ଅଛି । ତାଙ୍କର ପଣ୍ଡିତେଇ ଏତେଦୂର ବେଶି ହୋଇ-ଯାଇଥିଲା ଯେ, ତାଙ୍କ କଥା ତାଙ୍କ ବାପ ମା ମଧ୍ୟ ବୁଝିପାରୁ ନ ଥିଲେ । ଲମ୍ବା ଲମ୍ବା ଘଡ଼ଘଡ଼ିଆ ଶବ୍ଦ ଓ ବାକ୍ୟ ସବୁବେଳେ, ସବୁ ବିଷୟରେ ତାଙ୍କ ପାଟିରୁ ବାହାରୁଥିଲା । ଦିନେ ତାଙ୍କ ମାମୁଁ ଆସି ପହଞ୍ଚିଲେ । ଭଣଜାଙ୍କୁ ଦେଖି କୁଶଳ ହାଲ ପଚାରିଲେ । ଭଣଜା ଯାହା ଜବାବ ଦେଲେ, ସେ ମାମୁଁଙ୍କ ମୁଣ୍ଡରେ ପଶିପାରିଲାନି । ମାମୁଁ ଭେଣେଇଙ୍କ ଆଡ଼କୁ ଚାହିଁଲେ । ଭେଣେଇ କପାଳରେ ହାତମାରି କହିଦେଲେ, କଣ କରିବୁ. ଗୁଡ଼ାଏ ପଢ଼ି ଏ ଅବସ୍ଥା । ମାମୁଁ କହିଲେ, ତୁମେ ଏଣିକି ତାକୁ ଖାଲି ବ୍ରୀହି ଖୁଅଅ । ବ୍ରୀହି ଖାଇଲେ ବୁଦ୍ଧି ମୋଟା ହୋଇଯିବ । ସେଇଆ ହେଲା । ପୁଣି କିଛିଦିନ ପରେ ମାମୁଁ ଆସିଲେ । ଭାବିଲେ ଏତେଦିନର ବ୍ରୀହି ଖିଆ ପରେ ଭଣଜାର ପଣ୍ଡିତେଇ କମି ଯାଇଥିବ । ପଚାରିଲେ, ବାପା. କିମିତି ଅଛୁ ? ଜବାବ ଦେଲା ।

ଅଶେଷ ସେମୁଷି ମୋଷ
ମାଷମଶ୍ନାମି କେବଲଂ ।

ଅର୍ଥାତ୍ ଖାଲି ବ୍ରୀହି ଖାଇ ଖାଇ ମୋର ବୁଦ୍ଧି ଲୋପ ହୋଇଗଲାଣି । ମାମୁଁ ଦେଖିଲେ ବ୍ରୀହି ଖାଇ ବୁଦ୍ଧିଲୋପର ଚିହ୍ନ ଯେବେ ଏଇଆ ହୁଏ, ତାହେଲେ ଆଉ କ'ଣ କରାଯାଇପାରେ ? ଅଥଚ ଭାରବୀ ଓ ଭବଭୂତିଙ୍କ ତୁଳନାରେ କାଳିଦାସେ କେତେ ବଡ଼ । ଉଦାହରଣ ତ ବହୁତ ଅଛି । ସୁତରାଂ ତୁମ ଏ ଆଟମିକ ଯୁଗର ସ୍ପେ ସାଇକୋ-ଆନାଲିସିସ୍ ବା ଚତୁଷ୍ଟୁର କଥା ନ ଜାଣିଲେ ଯେ ସାହିତ୍ୟିକ ହୋଇ

ପାରିବନି, ଏପରି କିଛି ନାହିଁ । ତା ପରେ ତୁମର ଏଇ ୟୁ ସାଇକୋଗଣ, ସ୍ୱେ ଇମିତ ଗୋଟାଏ କିଛି ବଡ଼କଥା ନୁହେଁ ମ ! ମୋ ଘରଣୀ ଅପାଠୋଇ ନହେଲେ ମଧ୍ୟ ଅଳ୍ପପାଠୋଇ । ଏ ସାଇକୋ ଫାଇକୋ କଥା ସେ କାନରେ ମଧ୍ୟ ଶୁଣିନାହାନ୍ତି । ତଥାପି ମୋ ସାଇକୋଲୋଜିଟା ସେ ଯେତେ ବୁଝନ୍ତି, ମୁଁ ହୁଏତ ସେତେ ବୁଝେନି, କି ତୁମର ଫ୍ରଏଡ଼ ହୁଏତ ସେତେ ବୁଝିପାରିବେନି । ତାଙ୍କ ପୁଅ ଝିଅ, ନାତି ନାତୁଣୀ—ଘରେ ଯେତେ ଲୋକ ଅଛନ୍ତି, ସମସ୍ତଙ୍କ ସାଇକୋଲୋଜି ତାଙ୍କୁ ବେଶ୍ ଜଣା । ସେଇଥି-ପାଇଁ ସେ ଠିକ୍ ବେଳକାଳ ଦେଖି ତତଲା ତେଲ ଠିକ୍ ଜାଗାରେ ପକାନ୍ତି, ସମସ୍ତେ ସିଧା ହୋଇଯାନ୍ତି । ସେ ଫ୍ରଏଡ଼ଙ୍କଠାରୁ ମଧ୍ୟ ବଡ଼ । କିଛି ନ ପଚାରି ଖାଲି ମୋ ଆଖିରୁ ଓ ମୁହଁର ଭାବରୁ ସେ ଠିକ୍ ଠଉରେଇନିଅନ୍ତି ମୋ ମନ କୁଆଡ଼େ ବୁଲୁଚି । ସ୍ୱେ ମୋ ଘରଣୀ ଯେମିତି, ତୁମର ମା, ଭଉଣୀ ଓ ଘରଣୀମାନେ ମଧ୍ୟ ସେମିତି । ସ୍ୱେ ମାଇପି ପାଠ, ଆଜ୍ଞା, ମାଇପି ପାଠ । ସମସ୍ତଙ୍କୁ ହୃଣେଇଶି ବିଶ୍ ମାଲୁମ ଅଛି । କଳାକାର ଓ ସାହିତ୍ୟିକକୁ ମଧ୍ୟ ତାହା ବରଂ ବେଶି ଜଣା । କାରଣ ସେ ଜୀବନ ଗଢ଼େ । କଳାକାରର ବାହାଦୁରି—ସେ ତିଆରି ମାଟି କୁଣ୍ଢେଇର ବା ଚନ୍ଦ ପ୍ରତିମାର ପ୍ରତ୍ୟେକ ଅଙ୍ଗରେ ତା ମନର ଭାବ ଫୁଟାଇପାରେ । ସାହିତ୍ୟିକର ବାହାଦୁରି—ସେ ତା' କଲମ ମୁନରେ ଜୀବନର ବିଶ୍ଳେଷଣ କରିପାରେ, ମାନେ ସୃଷ୍ଟିର ଚନ୍ଦ ଦେଇପାରେ, ଅର୍ଥାତ୍ ଫୁଲରେ, ଫଳରେ, ପର୍ବତରେ, ନଈରେ, ଧୂଳିରେ, ମଳରେ, ନାୟକରେ, ନାୟିକାରେ, ସେ ସୃଷ୍ଟିଜୀବନ ଦେଖେ ଓ ସେଇ ସୃଷ୍ଟିଜୀବନକୁ ପରିଷ୍କାର ଭାବରେ ଫୁଟାଇପାରେ । କୋଣାର୍କ ଦେଉଳ କାନ୍ଥରେ ତୁମେ ନଟୀର ମୂର୍ତ୍ତି ଦେଖିଚ, ଦେଖିଥିବ ନିଶ୍ଚୟ, କେଜାଣି ? କୋଣାର୍କ ସିନା ଅଛି, ବିଲାତ ଓ ମାର୍କିନ ଦେଶର ଲୋକମାନେ ଦେଖିବା ଲାଗି ତୁମର ଦେଖିବା ଦରକାର କଣ ? ଗୁଡ଼ାଏ ପଥର ଦେହରେ କେତେଗୁଡ଼ାଏ ଲଙ୍ଗଳା ମୂର୍ତ୍ତି ? ସେଇ ନଟୀ ନାଚୁଚି ତାର ମୁହଁରେ, ତାର ହାତ ଗୋଡ଼ର ଭଙ୍ଗିରେ ନାଚିବାର ଉନ୍ମାଦନା, ଯମୁନ୍ତାର ଛଳ ଛଳ ଚଞ୍ଚଳ ତରଳ ଭାବ, ପଥର ଦେହରେ ନିହାଣ ମୁନରେ କଳାକାର ଫୁଟାଇପାରିଚି । ତାର ଦେହଟା କେବଳ ନାଚୁନି, ତାର ମନ, ତାର ହୃଦୟ, ତାର ପ୍ରାଣ ମଧ୍ୟ ନାଚୁଚି । (ତା' ଦେହରେ ତାର ସେଇ ସାମୟିକ ମନସ୍ତତ୍ତ୍ୱ ନୁହେଁ ତ । ଜୀବନଟାଯାକର ମନସ୍ତତ୍ତ୍ୱ ଲେଖାହୋଇ ରହିଛି । ଯାଅ, ଦେଖ, ପଢ଼, ଶିଖ, ସେ ଶକ୍ତି ତୁମର ଯେବେ ଅଛି !)

ତୁମ ବିଲାତି ଦେଶର କଥା ଫରାସୀ ବିପ୍ଲବ । ଲୋକେ ଶହ ଶହ ବର୍ଷର ରାଜକୀୟ ଅତ୍ୟାଚାରରେ ଜର୍ଜରିତ ହୋଇ ମାତି ଉଠିଚନ୍ତି । ମା' ଜନଶକ୍ତି ରକ୍ତମୁଖା । ଖୁବ୍ ତାର ବଳି; ରାଜପୁରୁଷଙ୍କର ବଳି ବଗ୍ରିରି ଚାଲିଚି । ବସିଚି ବିଚାରାଳୟରେ ମାଡ଼ମ୍ ଡିଫାର୍ଜେ । ବଡ଼ କଷ୍ଟ । ସେ, ଅତି ବେଶି ଅତ୍ୟାଚାରିତା । ରକ୍ତମୁଖା ମା' ଜନଶକ୍ତିର ସାକ୍ଷାତ ଜୀବନ୍ତ ପ୍ରତିମା । ହାତରେ ତାର ମହାଅସ୍ତ୍ର ସିଲେଇ ଛୁଞ୍ଚି ଓ କନା, ସେ ସିଲେଇ କରି

ସ୍ଖଳିତ । ଗୋଟାଏ ବସ୍ତ୍ରର ପରି ଗିଲୋଟିନ୍‌ରେ ଦଣ୍ଡାଦେଶ ହେଲା ମାତ୍ରକେ ତାର ଚୁଟି ଓ ସୂତାରେ ଗୋଟିଏ ଗଣ୍ଠି ପଡ଼ିଯାଉଛି । ଚଳ ଯିବା ଶ୍ମଶାନକୁ, ଗିଲୋଟିନ୍ ଠିଆ ହୋଇଛି । ମାଡ଼ାମ୍ ମଞ୍ଚ ଗଲେ ତା ପାଖେ ପାଖେ । ହୁଏତ ସେଇ ଟମ୍ବ୍ରିଲ୍ ବା ଶବବାହୀ ଗାଡ଼ିରେ । ଶହ ଶହ କ୍ଷୁଧାର୍ତ୍ତ ଜନତା ଆଗ୍ରହରେ ଠିଆ ହୋଇଛି, ଦେଖିବ ରାଜପୁରୁଷର ମୁଣ୍ଡ କିପରି ଗିଲୋଟିନ୍‌ର ବ୍ଲେଡରେ ଗଣ୍ଡିଠାରୁ ଅଲଗା ହୋଇଯିବ, ଗଡ଼-ଗଡ଼େଇ ଯିବ, ରାଜପୁରୁଷର ଗଣ୍ଡିରୁ କିପରି ରକ୍ତର ଫୁଆର ପିଚକାମାରି ଚାରିଆଡ଼େ କରିଦେବ ରଙ୍ଗିନ । ଏଇ ରଙ୍ଗିନ ଫୁଆରରେ ତାର ସେମିଜ ପେଟ ଭରିଯିବ, ତାର ପୋଡ଼ିଲା ହୃଦୟ ଥଣ୍ଡା ହୋଇଯିବ । ମୁଣ୍ଡ ତଳେ ଗଡ଼ଗଡ଼େଇବା ମାତ୍ରକେ ଡିଫାର୍ଜେଙ୍କର ସୂତାରେ ଆଉରି ଗୋଟାଏ ଗଣ୍ଠି ପଡ଼ିଯିବ । କିନ୍ତୁ ତାଙ୍କର ମୁହଁ ନିର୍ବିକାର, ହସ ନାହିଁ, ଘୃଣା ନାହିଁ । ଗୋଟାଏ ପଥର ମୁହଁ, ପିରାମିଡ଼୍‌ର ସ୍ଫିଙ୍କସ୍‌ର ଭାବ । ଏଇ ଯେ ଚାର୍ଲ୍ସ ଡିକେନସ ଦେଇଛନ୍ତି, ମାଡ଼ାମ ଡିଫାର୍ଜେଙ୍କର ଏଇ ଯେ ବର୍ଣ୍ଣନା ସେ କରିଛନ୍ତି, ତା' ମୂଳରେ କେତେ ବଡ଼ ମନସ୍ତତ୍ତ୍ୱ ଅଛି, ତୁମେ ବୁଝ ? ବୁଝିପାର ? କହିଲ ଦେଖି, ସେ କେଉଁ ବହିର କଥା ? ଡିକେନ୍‌ସ ? ଫ୍ରଏଡ଼ଙ୍କ ଆଗରୁ ତାଙ୍କର ଲେଖା । ସେ ସାଇକୋଲୋଜୀଗଣଙ୍କ କଥା ଜାଣି, ଜାଣି ନ ଥିଲେ । କିନ୍ତୁ ସାଇକୋ ବିଷୟ ବୁଝିଥିଲେ ସେ ।

ଉଁହୁଁ, ଏଗୁଡ଼ାକ ତୁମକୁ ଭଲ ଲାଗିବନି । ତୁମର ମନସ୍ତତ୍ତ୍ୱ ଦରକାର ନାହିଁ, ତୁମର ଦରକାର ମନୋବିଶ୍ଳେଷଣ, ମାନେ ମନର କଥାଟା ଘାଣ୍ଟିଘୁଣ୍ଟି, ଚକଟା ଚକଟି କରି ତୁମ ଆଗରେ ଖିନଭିନ କରି ଥୋଇଲେ ତୁମେ ସେଥିରୁ ଆନନ୍ଦ ପାଇବ । ତୁମେ ଖୋଜ ମାତୃଧନ୍ଦା, ପିତୃଧନ୍ଦା, ସ୍ୱସା ଧନ୍ଦା, "Mother Complex, Father Complex, Sister Complex" । "ମା'ର ପୁଅ ପ୍ରତି ଯେ ଅଗାଧ ଅକୃତ୍ରିମ ସ୍ନେହ, ତା ଭିତରେ ତୁମେ ଦେଖିବାକୁ ଖୋଜ ମା'ଙ୍କର ପୁଅ ପ୍ରତି ଯୌନଭାବ, ବାପର ଝିଅପ୍ରତି ଯେ ସ୍ନେହ ଓ ଆଦର, ତା ଭିତରେ ତୁମେ ଦେଖିବାକୁ ଖୋଜ, ବାପର ଝିଅ ପ୍ରତି ଯୌନଭାବ", କି କଦର୍ଯ୍ୟ ! ଆଉ ଏଇତା କି ସତରେ ? ମା'ର ସ୍ନେହ ଭିତରେ ଯେବେ ବେଶି କମ୍ କିଛି ଥାଏ, ତାହେଲେ ସେ ହେଉଛି ଯେ "ପୁଅଙ୍କ ଅପେକ୍ଷା ଝିଅ ପ୍ରତି ତାର ସ୍ନେହ ବେଶି ।" ତା ଭିତରେ କି ଯୌନଭାବ ଅଛି ନ ଜାଣି 'ତୁମ ପାଖରେ ସବୁ ସମ୍ଭବ' ଯେ ମା ପୁଅଙ୍କ, ବାପ ଝିଅଙ୍କ ସ୍ନେହ ଭିତରେ କଦର୍ଯ୍ୟ ଯୌନଭାବ ଦେଖିପାରନ୍ତି ଓ ଦେଖିବାକୁ ବ୍ୟାକୁଳ ହୁଅନ୍ତି, ତାଙ୍କର ସୌନ୍ଦର୍ଯ୍ୟବୋଧ କାହିଁ ? ସେ ଗୋଲାପ ଫୁଲର ମହକରେ ନାକରେ ଲୁଗା ମାଡ଼ିବେ । କଖାରୁ ଫୁଲର ସୌନ୍ଦର୍ଯ୍ୟରେ ସେ ଓତଃପ୍ରୋତ ହୋଇଯିବେ, ଗୋଲାପ ଫୁଲରେ ଟିକିଏ ମହୁମାଛି ହେବାକୁ ତାଙ୍କର ଇଚ୍ଛା ନାହିଁ । ତାଙ୍କର ଇଚ୍ଛା 'କଖାରୁ ଫୁଲର ବଗଟ ପାରୁଡ଼ା ପୋକ' । ବାହା ବାହା ବା ରେ ରସିକ, ଗୋଲାପ ଫୁଲ ! ଛିଃ, ସେ ତ କେବଳ ବୁର୍ଜୁଆମାନଙ୍କ ବିଳାସର ସାମଗ୍ରୀ, ସର୍ବହରାର

ରକ୍ତ ଦେଇ ସେ ଗୋଲାପ ଗଛ ବଢ଼ିଛି ।' "କାଟିଦିଅ ତାଙ୍କୁ, ଦଳିଦିଅ ସେ ଗୋଲାପ ଫୁଲକୁ ପାଦତଳେ" ! ଆଉ କଖାରୁ ଫୁଲ, "ଆହା ହା ହା, ସର୍ବହରାର ସୌଖୀନ ସ୍ୱାଦ ।" କଖାରୁଫୁଲର ବଡ଼ା, କଖାରୁଫୁଲର ଭଜା—ସେ ଯେ ସର୍ବହରାର ଖାଦ୍ୟ ! 'ଏଇଥିରେ ସଂସାରର ସୌନ୍ଦର୍ଯ୍ୟତତ୍ତ୍ୱ' ! ସେ ପାରୁଡ଼ାପୋକ ହୃଦୟରେ ପ୍ରକୃତ ସୁବାସ ମହକ ଉଠୁଛି । (ଭଲକଥା 'ପାରୁଡ଼ା ପୋକ ତୁମର ପ୍ରକୃତି', ପାରୁଡ଼ା ପୋକ ହୋଇ ରହିବ ତୁମେ ।)



# ଆକାଶ କଇଁଆ

ଆକାଶରୁ କଇଁଆଚୋଳା ହେବ, ଚାଳକାରୁ ମାଛ ମଗହୋଇ ଆସିବ, ଆଉ ପୁଅ ଅମର ବସି ଗାସ ମାଣବେ । କଥାଟା ବଡ଼ ଅପସନ୍ଦ ବୋଲି ଆମ ଦେଶରେ ଲୋକେ କହନ୍ତି । ଯେଉଁମାନେ ହାତେ ମାପି, ଗୃଖେଣ୍ଡେ ଗୃଲବା ଲୋକ, ସେମାନଙ୍କ ପକ୍ଷରେ ଏ କଥାଟା ଅପସନ୍ଦ ନିଶ୍ଚୟ । କିନ୍ତୁ ଏଇ ଅପସନ୍ଦ କଥା ଅନେକ କରନ୍ତି, ପୁଣି ଅନେକ ମଧ୍ୟ ହାତେ ମାପି ଗୃଖେଣ୍ଡେ ଗୃଲନ୍ତି । ଏ ସଂସାରଟା ଇ ଏଇଆ । କାହା ପକ୍ଷରେ ଚିଙ୍କି ଗିଳିବା ଏକାବେଳେକେ ଅସମ୍ଭବ, କିଏ ପୁଣି ଚିଙ୍କି ଭ ଚିଙ୍କି ପର୍ବତ ଗିଳି ମଧ୍ୟ ପାର କରିଦଉଚ । କିଏ କହୁଚ, ନିଆଁ ପାଖକୁ ଗଲେ ପୋଡ଼ି ମରିବ, କିଏ ପୁଣି ନିଆଁରେ ଗୃଲୁଚ, ନିଆଁ ଭିତରେ ରହୁଚ, କିଏ ବା ନିଆଁରେ ପୋଡ଼ିଜାଳି ଶୁଦ୍ଧ ସୁବର୍ଣ୍ଣ ପାଲଟିଯାଉଚ । ପିଲା ଯେତେବେଳେ ଗୁରୁଣ୍ଡି ଗୁରୁଣ୍ଡି ଯାଇ ଖଟ ଉପରକୁ ଉଠୁଥିବେ, ସେତେବେଳେ ମା' କଥାଟାକୁ ନାପସନ୍ଦ କରି ଡାକ ପକାଏ, "ପଡ଼ିଯିବୁରେ ବାପ, ମୁଣ୍ଡ ଛେଚ ହୋଇଯିବ ।" ପିଲା ମା' ଆଡ଼କୁ ଗୃହେଁ, ମୁହଁକୁ କହେସାଟିଏ ଦେଇ ପଡ଼ହଠି ଖଟ ଉପରକୁ ଚଢ଼େ । ସେତେବେଳେ ମା' ମନରେ କେତେ ଖୁସି, କେତେ ଗର୍ବ ! କ'ଣ ନା, ତା'ର ପୁଅ କେତେ ପାରିବାର ଜଣେ ହୋଇଗଲାଣି । ଘଇତା ଯେତେବେଳେ ବନ୍ଧୁକ ଧିନ ବାଘ ଶିକାର କରିବାକୁ ଯାଏ, ମାଇପ କଥାଟାକୁ କେତେ ନାପସନ୍ଦ କରେ । ଘଇତା, କଥା ନ ମାନି ଗୃଲିଗଲେ, କବାଟ କୁଣରେ ବସି, କେତେ ସକେଇ ସକେଇ କାନ୍ଦେ, କିନ୍ତୁ ଘଇତା ଯେତେବେଳେ ସତକୁ ସତ ବାଘଟାଏ ମାରି ଆଣି ପହଞ୍ଚେ, ସେତେବେଳେ ତା' ମନରେ କେତେ ଗର୍ବ ! ସାଙ୍ଗସାଥୀ ସାଇପଡ଼ୋଶୀଙ୍କ ଆଗରେ ଗ୍ରୀବ ଫୁଲାଇ, ମୁହଁ ନଗୃଇ କେତେ ବାକ୍-ଗୃତୁରୀ କରେ ସେ । ଏଇ ଯେ ଆନନ୍ଦ, ଏଇ ଯେ ଗର୍ବ, ସେ ହାତେମାପି ଗୃଖେଣ୍ଡେ ଗୃଲିବାରେ ଅଛୁ ଟିକେ ? ମୋର ଦ' ପଇସା ଅଛୁ, ମୁଁ ତାକୁ ଜଗି ଥୋଇ ହାତେ ମାପି ଗୃଖେଣ୍ଡେ ଗୃଲି, ସାରା ଜୀବନଟାରେ ସେଇ ଦ'ପଇସାକୁ ଗୃରି ପଇସା କରି ଥୋଇଲି । ଅଥଚ ଟିକିଏ ସାହସ କରିଥିଲେ, ଟିକିଏ ଆଖିବୁଜି ଅନ୍ଧାରକୁ ଡେଇଁଥିଲେ, ସେଇ ଦ' ପଇସାଟି ମୋର ଦଶଟଙ୍କା ହୋଇପାରିଥାନ୍ତା । ନ ହେଲେ ସେ ଦ' ପଇସାଟି ଯାଇଥାନ୍ତା । କେଉଁଟା ଭଲ ? କେଉଁଟା ମନ୍ଦ ?

ଭଲ ମନ୍ଦ ବା କଣ? ଏଇଟା ଭଲ ବୋଲି କାହୁ ସିନ୍ଦୁର ମସି ଅଛୁ କି ? ଏଇଟା ମନ୍ଦ ବୋଲି କାହୁ ତୂନକଳା ଲେସା ଅଛୁ ? ତୁମ ଆଖିକି ଯାହା ସୁନ୍ଦର, ସେ ମୋ ଆଖିରେ ଅସୁନ୍ଦର ଦିଶିପାରେ । କିମିତି ଜାଣିବ ଏଇଟା ଭଲ, ସେଇଟା ମନ୍ଦ ? ତୁମେ ହୁଏତ କହିବ, ଯାହା ପାଞ୍ଚଜଣଙ୍କ ଆଖିକି ସୁନ୍ଦର, ସେଇଆ ହିଁ ସୁନ୍ଦର । କିନ୍ତୁ ସେ ପାଞ୍ଚ-

କଣ କଏ ? କେଉଁ ଦେଶର ? କେଉଁ ଯୁଗର ? ମୋର ବଢ଼ିଲା ଝିଅ ଦାଣ୍ଡର ପଞ୍ଝାଏ ଟୋକା ଯେବେ ଭୁଲିଲେ ଆମ ଦେଶର ପାଞ୍ଚଜଣଙ୍କ ଆଖିକି ଅସୁନ୍ଦର ଦିଶିପାରେ କିନ୍ତୁ ବିଲାତ ଲୋକଙ୍କ ଆଖିକି ଅସୁନ୍ଦର ଦିଶିବ ନାହିଁ । ମୋର ବ୍ରାହ୍ମଣ ଘର । ପୁଣି ଡେପୁଟି ବାବୁଙ୍କ ଘର । ମୋ ମାଇପ ବଜାର ହାଟକୁ ସଉଦାପାତି କରିବାକୁ ଗଲେ ସୁନ୍ଦର ଦିଶିବ ନାହିଁ; ମାତ୍ର ଗୁମା ବାଉରୀ ମାଇପ ବଜାର ହାଟକୁ ସଉଦାପାତି କାମଧନ୍ଦାରେ ନଗଲେ ବରଂ ସେଇଟା ଅସୁନ୍ଦର ଦିଶିବ । ତେବେ କଣ ଖାଲି ଦେଶେକେ ଫାଙ୍କ, ନଈକେ ବାଙ୍କ ନୁହେଁ, ଶେଷରେ ଜାତି ଜାତିକେ ଫାଙ୍କ, ଘର ଘରକେ ଫାଙ୍କ ହବ ? ସେ ହୁଏତ କହିବେ, ନା, ନା, ଯାହା ମତେ ଭଲ ଦିଶିଲା, ସେଇଆ ଭଲ । ହପ୍ଟମ୍ୟାନ୍‌ଙ୍କୁ ସୁନ୍ଦର ଦିଶିଲା, ସେ ଲିଣ୍ଡବର୍ଗଙ୍କ କୁନି ପୁଅଟିକୁ ମାରିଦେଲେ । ସେଇଟା କଣ ତେବେ ସୁନ୍ଦର ? ନଟିଆ ଚୋର ମୋ ଘରେ ପଶି ମୋର ସର୍ବସ୍ୱ ଲୁଟି କରି ନେଇଗଲା । ତାକୁ ସେଇଟା ସୁନ୍ଦର ଦିଶିଲା ବୋଲି ତ ? ତେବେ ସେ କଣ ସୁନ୍ଦର ?

ପୁଣି ଦିଶିବା ଅର୍ଥ କଣ ? ଲାଗିବା ଅର୍ଥ କଣ ? ତୁମର ଦୁଇଟା ଆଖି ଅଛି । ମୋର ମଧ୍ୟ ଦୁଇଟା ଆଖି ଅଛି । ଏକା ଆଖି, ଏକା ଜିନିଷରେ ତିଆରି । ଏକା ମନ ଏକା ଜିନିଷରେ ତିଆରି, ଏକା ଜିନିଷରେ ଅଛି । ଗୋଲାପ ଫୁଲଟିଏ ଫୁଟି ସଞ୍ଜ ପବନରେ ଢଳ ଢଳ ହେଉଛି । ତୁମେ ତାକୁ ଦେଖି ଘଣ୍ଟାଏ କାଳ ତାଟକା ପରି ଠିଆ ହୋଇଗଲ, କେତେ ଗୀତ, କେତେ ଭାବ ଅଜାଡ଼ି ଦେଲ । ମୁଁ ମଧ୍ୟ ଦେଖିଲି । ଚାଲି-ଗଲି । ମୋ ମନରେ କାହିଁକି କିଛି ତ ହେଲା ନାହିଁ ? ବୈକୁଣ୍ଠ, କାଳିନ୍ଦି, ହରିଶ୍ଚନ୍ଦ୍ର, ହରିହର, ଶରତ ଏମାନଙ୍କଠାରୁ ମୁଁ ବେଶୀ ପାଠୁଆ । ନା କହିଲେ ଚଳିବ ନାହିଁ । ବିଶ୍ୱବିଦ୍ୟାଳୟରୁ ଖେତାପ ହାସଲ କରିଛି । ନ ମାନିଲେ ମାନହାନି ମକଦ୍ଦମା ପର୍ଯ୍ୟନ୍ତ କରିପାରେ । ଅଥଚ ହୋସେନ-ହେନାର ଗନ୍ଧରେ ସେମାନେ କାହିଁକି ଗୋଲାପୀ ସ୍ୱପ୍ନ ଦେଖନ୍ତି, ଆଉ ହୋସେନ ହେନା ଫୁଲଟା କାହିଁ ମୋର ତ ପସନ୍ଦକୁ ଲାଗେନାହିଁ !

ତୁମେ କହିବ ଏଗୁଡ଼ାକ ମନର କଥା । ଆଉ ମନ ହେଲା ଗୋଟାଏ ତିଆରି ଜିନିଷ । ସାଙ୍ଗ ସାଥୀ ରହିବା ଜାଗା ତୁମର ବେଳକାଳ ଅନୁସାରେ ତୁମର ମନ ତିଆରି ହୁଏ । ଅତଏବ ଭିନ୍ନଲୋକର ଭିନ୍ନପ୍ରକାର ମନ ହବ ଆଉ ମନକଥା ନେଇ ସତ ଅସତ, ଠିକ୍ ଭୁଲ ବିଚାର କରି ହେବ ନାହିଁ । ଏ କଥାଟା ମଧ୍ୟ ବେଠିକ୍ । କାହିଁକି ନା, ଏପରି କିଛି କଥା ନାହିଁ, ଯହିଁରେ କି ମନ ତାର ରଙ୍ଗ ବୋଳି ନ ଦିଏ । ସେ କଥା ବଳେ ବଳେ ଆସିବ ପରେ । ଧରିନେଲି ତୁମର ଯୁକ୍ତିଟା ଠିକ୍, ତା' ହେଲେ ସତ ଅସତ ଠିକ୍ କରିବାର ଉପାୟ କଣ ? ତୁମେ କହିବ ଆମର ପଞ୍ଚେନ୍ଦ୍ରିୟ, ଅର୍ଥାତ୍ ଆଖି, କାନ, ନାକ, ଜିଭ, ଚମ କଥାରେ କହନ୍ତି—

ଯାହା ନ ଦେଖିବ ବେନି ନୟନେ
ପରତେ ନ ଯିବ ଗୁରୁ ବଚନେ ।"

ଭଲକଥା । ତୁମେ କଲିକତା ଯାଇଚ, ଉଡ଼ାଜାହାଜ ଦେଖି ଆସିଚ । ଆସି ମତେ କହିଲ—ମୁଁ କଲିକତା ଯାଇଥିଲି ଯେ, ଇମିତି ଉଡ଼ାଜାହାଜ ଦେଖିଲି, ସେ—ଇମିତି ଜିନିଷ ଇଆଡ଼କା ଉଡ଼ିଲା । ମୁଁ ଉଡ଼ାଜାହାଜ କେବେ ଦେଖିନାହିଁ ଆଖିରେ । ଯାହା ନ ଦେଖିବି, ସେ ତ ସତ ନୁହେ । ଅତଏବ ମୁଁ ଯଦି ତୁମକୁ ମିଛୁଆ ବୋଲି କହେଁ, ତା' ହେଲେ ତୁମେ ସହିବ ତ ? ନା, ମୋତେ ଜୋତା ଖିଆ ମାରିବାକୁ ଦୌଡ଼ିବ ? ତୁମେ କହିବ, ମୁଁ ଯାହା ଦେଖିଚି ସେ ମତେ ସତ, ତୁମେ ଯାହା ନ ଦେଖିଚ, ସେ ତୁମକୁ ମିଛ । ସ୍ୱା ଲାଗି ମଥାକୋଡ଼ା କଅଁ ? ଭଲ କଥା, ତୁମ ଘରେ ପଶି ଦାମିଆ ହାଡ଼ି ତୁମକୁ ନିସ୍ତୁକ ବାଡ଼େଇଲା । ତୁମେ ଗଲ ଫେରାଦି ହେବାକୁ । ସାକ୍ଷୀ ଗୁହା, ପ୍ରମାଣ ଦେଲ । କିନ୍ତୁ ମେଜଷ୍ଟର ବିଗ୍ୱର କରେ କଣ ? ତୁମକୁ ଦାମିଆ ହାଡ଼ି ବାଡ଼େଇବା ସେ ତ ନିଜ ଆଖିରେ ଦେଖିନାହିଁ । ତୁମ ସାକ୍ଷୀ ଗୁହା ପ୍ରମାଣ ପରେ ମଧ୍ୟ ସେ ଯଦି ତୁମକୁ ମିଛୁଆ ବୋଲି ଗ୍ୱୟ ଦିଏ, ତା' ହେଲେ ତୁମେ ସହିବ ତ ? ତୁମେ କହିପାର ସତ ଓ ମିଛ ଭିତରେ ଆଉରି ଗୋଟିଏ କଥା ଅଛି, ସମ୍ଭବ ଓ ଅସମ୍ଭବ, ପସନ୍ଦ ବା ନାପସନ୍ଦ । ମାନିନେଲି ସେ କଥା । ତୁମର ଏଇ କଥାଟାର ଉଦ୍ଦେଶ୍ୟ ଏଇ ତ ଯେ ସମ୍ଭବ, ସତଠାରୁ କମ, ଅସମ୍ଭବ ମିଛଠାରୁ ବେଶୀ । କେତେ କମ, କେତେ ବେଶୀ ସେ କଥା ତୁମେ କହୁନାହଁ । ସେ କଥା ମଧ୍ୟ ଇଲେ ଦରକାର ନାହିଁ । ବେଲ ପଡ଼ିଲେ ସେ ବିଷୟରେ ଅଧ୍ୟାଏ ଗାଇପାରେଁ । ମୋଟଉପରେ କଥା ହେଲା, ତୁମେ ଯାହା ଦେଖିଚ ସେଇଟା ଅନ୍ୟ ପକ୍ଷରେ ସତ ନୁହେଁ, ଅଥବା ନ ହେଇପାରେ । ଆଚ୍ଛା, ତୁମେ ଯାହା ଦେଖିଚ, ସେଇଟା ଯେ ତୁମର ପକ୍ଷରେ ସତ, ଏକଥା ତୁମେ ହଲପ ନେଇ କହିପାରିବ ? ଧର ତୁମେ ଦିନ ଦ'ପହରେ ବାଟରେ ଯାଉଚ । ଜଣେ ଲୋକ ପଛରୁ ଆସି ତୁମ ପିଠିରେ ଗୋଟିଏ ବିଢଣି-ପଳିଆ ଲଦିଦେଲା । ତୁମ ଆଖି ଆଗରେ ସବୁ ଅନ୍ଧାର ହୋଇଗଲା, ଜୁଳୁଜୁଳିଆ ପୋକ ଉଡ଼ିଗଲା । ତୁମେ ଦେଖିଲ ଅନ୍ଧାର ଆଉ ଜୁଳୁଜୁଳିଆ ପୋକ । ତେବେ କଣ ଦିନ ଦ'ପହରେ ଘମଘୋଟିଆ ଅନ୍ଧାର, ଜୁଳୁଜୁଳିଆ ପୋକ ଠିକ୍ ? ଚନ୍ଦ୍ରପକ୍ଷ ଗ୍ୱତି, ଜହ୍ନିଫୁଲ ପରି ଆଲୁଅ ପଡ଼ିଛି । ତୁମେ ବେଶଭୂଷା, ଖିଅରବାଆର ହେଇ, ଅତର ଲଗେଇ, ବାଡ଼ି ଧରି ବାହାରିଚ ଶ୍ରୀମତୀଙ୍କ ଅଭିସାରରେ । ଗାଁ କାନେ-ଟା ବଉଳ ଗଛ ହେଇଚି ସଙ୍କେତସ୍ଥଳ । ତୁମେ ଯାଇ ପହଞ୍ଚି ଦେଖିଲ ବଉଳ ଗଛ ମୂଳରେ ଧୋବ ଫରଫର ଲୁଗାଟିଏ ପିନ୍ଧି ଠିଆହେଇଚନ୍ତି ତୁମର ଅଭିସାରିକା । ତୁମେ ତାଙ୍କ ଆଡ଼କୁ ଗ୍ୱଲି ଗ୍ୱଲି ହେଇ ଗଲ । ପାଖରେ ହେଲାକ୍ଷିଣି ଦ'ବାହୁକୁ ବଢ଼େଇଦେଲ ଶ୍ରୀମତୀଙ୍କୁ ତୁମ ଛାତିକି ଟାଣିନେବା ପାଇଁ । ଦେଖିଲ ସେଠି ନା ଅଛନ୍ତି ଶ୍ରୀମତୀ, ନା ଅଛନ୍ତି ଆଉ କେହି । କେଇଁଟା ତା' ହେଲେ ତୁମର

ଠିକ୍ ? ତୁମେ କହିବ ଏଗୁଡ଼ାକ Optical delusion, ଆଖିର ଭୁଲ । ତା'ହେଲେ ସେଇକଥାଟି ମାନ ଯେ, ତୁମର ଆଖି ଭୁଲ କରିପାରେ । ଆଖି ଯଦି ଥରେ ଭୁଲ କରିପାରେ, ତା' ହେଲେ ପଚାଶ ଥର, ଶହେ ଥର ଭୁଲ କରିପାରିବ ନାହିଁ କି ? ଆଖି କେତେବେଳେ ଠିକ୍ ଦେଖିଲା, କେତେବେଳେ ଭୁଲ ଦେଖିଲା, ତାର ପ୍ରମାଣ କଣ ? ତୁମେ ଦୁଇଟି ପ୍ରମାଣ ଦେଇପାର । ପ୍ରଥମ ମୁଁ ଯାହା ଦେଖିଲି, ଆଉ ପାଞ୍ଚ ଜଣ ଯଦି ସେଇଆ ଦେଖନ୍ତି, ତାହେଲେ ସେ ନିଶ୍ଚୟ ଠିକ୍ । ସେଠାରେ ଆଖି ଠିକ୍ ଦେଖିଛି । ଦ୍ୱିତୀୟରେ ଆଖି ଯଦି ଭୁଲ ଦେଖେ, ତା'ହେଲେ ସେ ଭୁଲ ଲୋକ ପରେ ବୁଝିପାରେ । ଅତଏବ ଯେ ଦେଖିବାଟା ଭୁଲ ବୋଲି ଲୋକ ପରେ ନ ବୁଝିପାରେ, ସେଇ ଦେଖିବାଟା ଠିକ୍ । ଏଇ ଦୁଇଟା ପ୍ରମାଣ ବର୍ତ୍ତମାନ ପରୀକ୍ଷା କରାଯାଉ । ମତେ ଯଦି ମୋର ସାଙ୍ଗସାଥିମାନେ ମୁନ୍ଦୁରରେ ଗୁଡ଼ାଇ, କୋକେଇରେ ବାନ୍ଧି ମଶାଣିରେ ପକାଇଦେଇ ଆସନ୍ତି, ତା'ହେଲେ ସେ ବାଟରେ ଯେ ଯିବ, ସେ କହିବ ଯେ ମୁର୍ଦାରଟା ପଡ଼ିଛି । ତା' ପରେ କେହି ନଥିଲାବେଳେ ମୁଁ ଟାଙ୍କୁଡ଼ି ହୋଇ ଘରକୁ ଚାଲିଯାଇପାରେ । ତା'ହେଲେ ଏ ଯେଉଁ ପାଞ୍ଚଜଣ ଦେଖି କହିଲେ ଯେ ଏଇଟା ମୁର୍ଦାର, ସେମାନଙ୍କ ଦେଖିବାଟା ତା'ହେଲେ ଠିକ୍ ହେଲା କିପରି ? ଆଉ ଗୋଟିଏ ଉଦାହରଣ ଦେଖ, ତୁମର ପ୍ରେୟସୀ, ସେ ସୁନ୍ଦରୀ ନା ଅସୁନ୍ଦରୀ ? ତୁମେ କହିବ ନିଶ୍ଚୟ ସୁନ୍ଦରୀ । ତୁମ ଆଖିରେ ଏ ଜଗତରେ ତାଙ୍କଠାରୁ ବଳି ବେଶୀ ସୁନ୍ଦରୀ କେହି ନାହିଁ । କିନ୍ତୁ ପାଖ-ପଡ଼ଶା, ଏପରିକି ତୁମ ପ୍ରେୟସୀଙ୍କ ସାଙ୍ଗସାଥୀ ପାଞ୍ଚଜଣଙ୍କୁ ପଚାର, ସେମାନେ କହିବେ, "ହଁ' ଯୁ ସୁନ୍ଦରୀ, ଫାଡ଼ୁଙ୍ଗାମୁହିଁ ନହେଲେ ଧାରମୁହିଁ, ଚେପେଟାନାକୀ ନହେଲେ ଖଣ୍ଡାନାକୀ, କୋଡ଼ିଦାନ୍ତୀ ନହେଲେ ଉଞ୍ଚୁଦାନ୍ତୀ ଇତ୍ୟାଦି ଇତ୍ୟାଦି ।" ତୁମ ଦେଖିବାରେ ଯେବେ ପାଞ୍ଚଜଣ ରାୟ ଦେଲେ ତୁମ ଦେଖିବାଟା ଠିକ୍ ହୁଏ, ତା'ହେଲେ ତୁମ ପ୍ରେୟସୀଙ୍କର ସୁନ୍ଦରପଣିଆ କାହିଁ ? ତୁମେ ହୁଏତ କହିବ, ଏଗୁଡ଼ାକ ଖାଲି ଗାଳୁ । ଆଗ୍ରୁ ଆମ ଗାଳୁକଥା ଥାଉ । ଏଇ ସବୁଦିନର କଥାଟା ଦେଖ । ଆମେ ଆଖିରେ ଦେଖୁଛୁଁ; ସୂର୍ଯ୍ୟ ପୂର୍ବଦିଗରେ ଉଇଁଛି, ଆସ୍ତେ ଆସ୍ତେ ଉଠିଉଠି ମୁଣ୍ଡ ଉପରକୁ ଆସୁଛି, ପୁଣି ଖସିଖସି ଯାଇ ପଶ୍ଚିମରେ ଅସ୍ତ ହେଉଛି । ଅଥଚ ଏ ବସୁନ୍ଧରାଟା ପଡ଼ିରହିଛି ସେଇ ମାନ୍ଧାତାଙ୍କ ଅମଳରୁ ଆଜଯାଏ, ଯୁ କଡ଼ରେ ସେଇ କଡ଼ରେ । ଏ ଦେଶର ବାରପଣ ଲୋକ କହିବେ, ସୂର୍ଯ୍ୟ ବୁଲୁଛି, ପୃଥିବୀ ରହିଛି ସ୍ଥିର । ତୁମେ ଭଲା କଥାଟା ମାନିବ ତ ? ଓଲଟି କହିବ, ଆରେ ମୂର୍ଖ ମରହଣ୍ଡି ଆଗୁଡ଼ାକ, ଆରେ ତୁମେ ଆଜଯାଏ ଶିଖିଲ ନାହିଁ ଏତିକ, ପୃଥିବୀ ବୁଲୁଚି, ସୂର୍ଯ୍ୟ ରହିଚି ସ୍ଥିର । ତୁମେ ପୁଣି ଏ କଥାଟା କମିତି କହିଲ ? ଯାହା ଆଖିରେ ଦେଖିଲ ତା ହେଲାନାହିଁ । ଯାହା ପାଞ୍ଚଜଣ ଦେଖିଲେ ଓ କହିଲେ, ତା ମଧ୍ୟ ହେଲାନାହିଁ ! ଏ ପୁଣି କି କଥା ? ତୁମେ ପାଠଶାଠ ପଢ଼ିଛ, ମାଷ୍ଟ୍ରେ କହିଲେ ପୃଥିବୀ ବୁଲୁଚି, ତୁମେ ସେଇ କଥାଟା ବିଶ୍ୱାସ

କରଗଲ । ଜଣେ କଏ ବସି ବସି ଗୋଟାଏ ଦୂରବୀକ୍ଷଣରେ ଖୁବ୍ ଖୁବ୍ ଠିକ୍ କଲେ ଯେ ସୂର୍ଯ୍ୟ ରହୁଚ ସ୍ଥିର । ଯୁକ୍ତିତର୍କ ଇତ୍ୟାଦ ବଳରେ ପ୍ରଚାର କର ବସିଲେ ଯେ ପୃଥିବୀ ବୁଲୁଚି, ସୂର୍ଯ୍ୟ ରହୁଚି ସ୍ଥିର । ସମସ୍ତେ ସେଇଥିରେ ଖାପିଗଲେ । ସେଇକଥା ବିଶ୍ୱାସ କଲେ । ଆଉ ପାଞ୍ଚଜଣ ହୁଏତ ସେହୁପର ଅନୁବୀକ୍ଷଣ ବା ଦୂରବୀକ୍ଷଣରେ ଖୁବ୍ ସେଇଆ ଦେଖିଲେ । କଥାଟା ସାର ହୋଇଗଲା । ତା'ହେଲେ ତୁମେ ଦେଖିବା, ପାଞ୍ଚ ଜଣଙ୍କ ଦେଖିବା ସବୁ ଗଲା ଚୁଲିକ । ରହିଲା କଣ ନା, ଯାହା ଯୁକ୍ତିଯୁକ୍ତ ତାହା ହିଁ ଠିକ୍ ।

ଆଚ୍ଛା ଆର କଥାଟାକୁ ଆସ । ଯାହା ଦେଖିଲ ସେଇଟା ଯଦ ଭୁଲ ବୋଲି ବୁଝି-ନ ପାର ତାହେଲେ ସେହିଟା ଠିକ୍ । ଯାହା ଦେଖିଲ ସେହିଟା ଯେ ଭୁଲ—ଏ କଥା ତୁମେ ବୁଝିବ କପର ? ତୁମେ ଇଲେ ଦେଖିଲ ମଣିଷଟା ଗଛମୂଳେ ଠିଆ ହେଇଚ, ପୁଣି ପରେ ଦେଖିଲ ମଣିଷଟା ସେଠି ନାହିଁ । ଏଥିରୁ ତୁମେ ବିଶ୍ୱାସ କରପାରବ କେଉଁଟା ? ଅଛୁ, ନା, ନାହିଁ; ଥିଲ, ନା, ନଥିଲ ? ହୁଏତ ପ୍ରକୃତରେ ସେ ଥିଲ । ତୁମେ ଯାହା ଦେଖିଥିଲ ସେହିଟା ଠିକ୍ । ପରେ ସେଠାରୁ ଚାଲିଯାଇଚ; କେହି ଆସିବାର ଭୟ କର ଚାଲିଯାଇଚ; ନ ହେଲେ ତୁମ ସାଙ୍ଗରେ ଟିକଏ ଖେଳବ ବୋଲି ଗଛ ଉହାଡ଼ରେ ଲୁଚ ଯାଇଚ୍ଛ । ତୁମେ କପର କହିବ କେଉଁଟା ଭୁଲ ଆଉ କେଉଁଟା ଠିକ୍ ? ତୁମେ ଯଦ ଆଉ ଦୂରକୁ ନ ଯିବ, ତାହେଲେ ତୁମ ମନରେ ଗୋଟାଏ ଧୋକା ରହିଯିବ । ଯଦ ଆଉ ଟିକଏ ଦୂରକୁ ଯାଅ, ତା'ହେଲେ ହୁଏତ ଗୋଟିଏ ମୀମାଂସାରେ ପହଞ୍ଚିବ । ଏଠାରେ ମଧ୍ୟ ତା'ହେଲେ ଆମେ ଦେଖିଲୁଁ ସେଇ ଯୁକ୍ତିତର୍କର ବଳ ଖଟିଲ ।

ତା'ହେଲେ ଶେଷରେ ଆମ୍ଭେମାନେ ଦେଖିଲୁ ଯେ ଯାହା ଯୁକ୍ତିଯୁକ୍ତ ତାହାହିଁ ଠିକ୍ । ଯୁକ୍ତିଯୁକ୍ତ ଅର୍ଥ ଯାହା ନ୍ୟାୟଶାସ୍ତ୍ରର ନିୟମ ଅନୁସାରେ ସିଦ୍ଧ । ଯେପରକି ମନୁଷ୍ୟ ମାତ୍ରକେ ମରବେ । ରାମ ଜଣେ ମନୁଷ୍ୟ । ଅତଏବ ରାମ ମରବ । ପୁଣି ରାମର ବାପ ଏତେ ବର୍ଷରେ ମରଥିଲେ, ତାର ମା ଏତେ ବର୍ଷରେ, ତା'ଭଉଣୀ ଏତେ ବର୍ଷରେ, ତା ଭାଇ ଏତେ ବର୍ଷରେ । ଅତଏବ ରାମ ଏତେ ବର୍ଷରେ ମରପାରେ । ଏଇ ଦୁଇଟା ହେଲ ନ୍ୟାୟଶାସ୍ତ୍ରର ପ୍ରଧାନ ଦୁଇଟି ନିୟମ । ସମସ୍ତଙ୍କ କଥାରୁ ଜଣକ କଥା ଅନୁମାନ କରବା । ଜଣ ଜଣଙ୍କ କଥାରୁ ସମସ୍ତଙ୍କ କଥା ଅନୁମାନ କରବା । ବର୍ତ୍ତମାନ ଦେଖାଯାଉ, ଏ ଦୁଇଟା କେତେ ଦୂର ଠିକ୍ । ମୋ ବାଡ଼ରେ ୫୦ଟା ଆମ୍ବ ଗଛ ଅଛୁ । ମୁଁ ଗୋଟି ଗୋଟି କର ଦେଖିଲ ସବୁଥିରେ ଆମ୍ବ ଫଳଚ ଏ ବର୍ଷ । ପାଞ୍ଚବର୍ଷ ଦଶ ବର୍ଷ ଧର ମୁଁ ଦେଖିଲ ବରାବର ଆମ୍ବ ଫଳୁଚ । ଅତଏବ ମୁଁ ଅନୁମାନ କରନେଲ ଯେ ଏ ଗଛଗୁଡ଼ାକରେ ଆମ୍ବ ବରାବର ଫଳବ । ବର୍ଷେ ଦେଖିଲ କେତେଥିରେ ଫଳିଲ, କେତେ ଥିରେ ଫଳିଲ ନାହିଁ । ଆଉ ବର୍ଷେ ଦେଖିଲ ମୋଟେ ଫଳିଲ ନାହିଁ । ଅବଶ୍ୟ ଯୁକ୍ତିତର୍କ ପଢ଼ିଲବେଳେ ପଣ୍ଡିତମାନେ କହିବେ ଯେ ତୁମ୍ଭର ଉପାଦତ କଥାଗୁଡ଼ାକ (Premises)

ଠିକ୍ ହୋଇନାହିଁ । ସେ କଥାଟା ଏହିପରି ହୋଇଥାନ୍ତା । ଯଦି ଏହି ବର୍ଷମାନଙ୍କ ପରି ପାଗ ରହେ ଓ ମାଟିରେ ଯଦି ଏହି ବର୍ଷ ପରି ବଳ ରହେ, ତାହେଲେ ଆମ୍ବ ଗଛରେ ନିଶ୍ଚୟ ଆମ୍ବ ଫଳିବ । ସେହିପରି ସାଧାରଣ ନିୟମ ହେଲା ଯେ, "ନିଆଁରେ ଗୋଡ଼ ପୁରାଇଲେ, ଗୋଡ଼ ପୋଡ଼ିଯିବ । ରାମ ନିଆଁରେ ଗୋଡ଼ ପୁରାଇଲା, ଅତଏବ ତା'ର ଗୋଡ଼ ପୋଡ଼ିଯିବ ।" କିନ୍ତୁ ଆମ ଏ ଭାରତବର୍ଷର ମିଆଁପୁଅ ସେ ବଲ୍ଲତରେ ଜଳନ୍ତା କୋଇଲା ରଙ୍ଗ ନିଆଁ ଭିତରେ ଚାଲି ଭଲ ରହିଛନ୍ତି, ଆଉ ବିଲାତ ଲୋକଙ୍କୁ ଚମକେଇ ଦେଇଛନ୍ତି, ସେ କପରି ହେଲା ? ପୁଣି ପଣ୍ଡିତମାନେ କହିବେ ଯେ "ନିଆଁରେ ପୋଡ଼ିବା ଅଭ୍ୟାସ ନ ଥିଲେ, ନିଆଁରେ ଗୋଡ଼ ପୁରାଇଲେ ଗୋଡ଼ ପୋଡ଼ିଯିବ ।" କିନ୍ତୁ ଏଇ ପଣ୍ଡିତିଆ କଥାଗୁଡ଼ାକ ସେଡ଼କ ପାଏନାହିଁ କି ଚୁଲିକି ପାଏନାହିଁ । ଇମିତି କଥା କଟାକଟି କରି ଧଳାକୁ କଳା କରାଯାଇଛି, କଳାକୁ ଧଳା କରାଯାଉଛି । କିନ୍ତୁ ଅସଲ କାମବେଳେ କେତେ ଜଣ 'ଏପରି ହୋଇଥାନ୍ତା', 'ଏପରି ହୁଅନ୍ତା' ଇତ୍ୟାଦି ଲଗାଇ କାମ କରନ୍ତି ? ତାପରେ ଯଦି ଅସମ୍ଭବ ସମ୍ଭବ ହୁଅନ୍ତା, ଯଦି ସମସ୍ତେ ନ୍ୟାୟ-ଶାସ୍ତ୍ର ଅନୁସାରେ ଠିକମତ ହିସାବକିତାବ କରି କାମ କରୁଥାନ୍ତେ, ଆଉ ନ୍ୟାୟଶାସ୍ତ୍ରର ହିସାବକିତାବ ଯଦି ନିର୍ଭୁଲ ହୋଇଥାନ୍ତା, ତାହାହେଲେ ଯେ ଯାହା କରନ୍ତା, ତାର ଫଳ ଅବଶ୍ୟ ପା'ନ୍ତା । କାରଣ ଦିନ ପଛରେ ରାତି ପରି, କାମ ପଛରେ ଫଳ ଲାଗି ରହିଛି । କିନ୍ତୁ ତାହା ହୁଏନାହିଁ । ନ୍ୟାୟର ହିସାବ ଅନୁସାରେ କାମ କରି ହୁଏନାହିଁ । ପୁଣି ନ୍ୟାୟର ହିସାବ ମଧ୍ୟ ନିର୍ଭୁଲ ନୁହେଁ । ଅସଲ କଥାଟି ହେଲା, ଏ ସଂସାରଟା ଏପରି ସହଜ ଓ ସରଳ ନୁହେଁ ଯେ, କୌଣସି ଗୋଟାଏ ନିୟମମାନି ଚାଲିଲେ ଚାଲିବାର ଫଳ ମିଳିଯିବ । ବ୍ୟବସାୟୀ ହିସାବପତ୍ର କରି, ଚାରିଆଡ଼ର ଖବର ଅଣ୍ତିର ନେଇ ଠିକ୍ କଲେ ଯେ ସେ ଯଦି ଚିନାବାଦାମଗୁଡ଼େ ଇଲେ କିଣିରଖନ୍ତି, ତାହାହେଲେ ଆଉ ବର୍ଷକ ପରେ ଚିନାବାଦାମର ଏତେ ଲୋଡ଼ା ହେବ ଯେ, ସେ ବୋଧହୁଏ ଶହେ ଟଙ୍କାରେ ପାଞ୍ଚ-ଶ ଟଙ୍କା ଲାଭ କରି ବସିବେ । ସେ କିଣି ପକାଇଲେ । ତା'ପରେ ହଠାତ୍ ଲାଗିଗଲା ଇଟାଲି ଆବିସିନିଆ ଯୁଦ୍ଧ । ଚିନାବାଦାମର ବଜାର ପଡ଼ିଗଲା । ବ୍ୟବସାୟୀ ଯେତିକରେ କିଣିଥିଲେ ତା'ଠାରୁ କମ୍‌ଦରରେ ବିକିଲେ । ମୂଳପାଣ୍ଠି ମଧ୍ୟ ଗଲା । ଲାଭର ଆଶାରେ, ନ୍ୟାୟଶାସ୍ତ୍ରର ନିୟମ ଅନୁସାରେ କାମକରି ସେ ଯେତେବେଳେ ଦେଖିଲେ ଯେ ତାଙ୍କର ଶେଷରେ କରଜଗୁଡ଼ାଏ ହୋଇଗଲା, ଆତ୍ମହତ୍ୟା କରି ବସିଲେ । ଅନ୍ୟପକ୍ଷରେ ସେହିପରି । ଯୁଦ୍ଧ ଲାଗିଚି । ଜଣେ ବ୍ୟବସାୟୀ ଦେଖୁଚନ୍ତି । ସେ ବୁଝିଲେ ଯେ ଗୋଟାଏ ପକ୍ଷରେ ଅନେକଗୁଡ଼ାଏ ସୈନ୍ୟ ସାହାଯ୍ୟ ଆସି ପହଞ୍ଚିଗଲାଣି, ଅତଏବ ସେଇପକ୍ଷରୁ ହିଁ ଜିତାପଟ ସମ୍ଭବ । ସେ ତ ତତ୍‌କ୍ଷଣାତ୍ ଯୁଦ୍ଧଭୂମି ଛାଡ଼ି ଚାଲିଆସିଲେ ସହରକୁ । ବନ୍ଧୁବାନ୍ଧବମାନଙ୍କ ସାଙ୍ଗରେ ଦେଖାକରି କଥାରେ କଥାରେ ସଙ୍କେତଦେଲେ ଯେ ଯାହାର ପ୍ରକୃତରେ ଜିତାପଟ

ହେବାର କଥା, ସେଇ ହାଣଯିବ । କାନକୁ ଡାକ ହୋଇ କଥାଟା ସମ୍ପୂର୍ଣ୍ଣମାତ୍ରେ ସ୍ପଷ୍ଟ ହୋଇଗଲା ସାଙ୍ଗେ ସାଙ୍ଗେ । ସେଇପକ୍ଷର ଯାହା କାରବାର ସେଥିରେ ମାନ୍ଦା ଭାବ ଆସିଗଲା । ଏ ବ୍ୟବସାୟୀ ସେ କାରବାରଗୁଡ଼ାକ ଚଟାପଟ କିଣି ପକାଇଲେ । ତହିଁ ଆରଦିନ ଖବର ଆସିଲା ଯେ, ନାହିଁ ସେଇ ପକ୍ଷଟା ଜିତିଚି । ସେ ପକ୍ଷର କାରବାର ହୁ ହୁ କରି ବଢ଼ିଗ୍ଲାଲା । ଆଉ ବ୍ୟବସାୟୀ ଗୋଟାଏ ଦିନରେ ହୁଏତ କୋଟି କୋଟି ଟଙ୍କା ମାରିନେଲେ । ଦୁଇଟାଯାକ କଥାରେ ଆପଣମାନେ ଦେଖିବେ ସବୁ କଥା ଆଶା ଉପରେ ହେଉଚି । ଉଭୟେ ଭାବଚନ୍ତି ଯେ ଏପରି ହେଲେ ସେପରି ହେବ, ସେହି ଅନୁସାରେ କାମ କରିଚନ୍ତି । ମଝିରେ ଅନ୍ୟାନ୍ୟ କେତେକ କଥା ପଶିଯାଇଚି । ସେ କଥାଗୁଡ଼ାକ ଉପରେ ତାଙ୍କର କୌଣସି ହାତ ନାହିଁ । ଆଉ ସେଇକଥାଗୁଡ଼ା ହିଁ ଫଳ ଆଣି ଦେଇଚି । ସେ ସବୁ ଘଟିଗଲା ପରେ ଇଲେ ପଣ୍ଡିତମାନେ ବହି କହିପାରନ୍ତି, "ନାଁ ହେ, ସେ ଲୋକଟା ବୋକା, ସେ ଠିକ୍ ନ୍ୟାୟ୍ୟହିସାବ କରିପାରିଲା ନାହିଁ । ଆଉ ସେ, ସେ କେଡ଼େ ବୁଦ୍ଧିମାନ । ତାଙ୍କର ହିସାବ କେତେ ଠିକ୍" । କିନ୍ତୁ, ପ୍ରକୃତରେ ଯେତେବେଳେ Rothschild ଆସି ଫ୍ରାନ୍ସ ଜିତିବ ବୋଲି ସ୍ପଷ୍ଟ କରିଦେଲେ, ସେତେବେଳେ କଣ ତାଙ୍କ ଛାତି ଦୁରୁ ଦୁରୁ ହେଉନଥିଲା ? ତାଙ୍କର କଣ ନିଜ ବୁଦ୍ଧି ଉପରେ, ନିଜ ନ୍ୟାୟ୍ୟ ଉପରେ ଏକଦମ ବିଶ୍ୱାସ ଥିଲା ? ସେ ସେତେବେଳେ ଜୁଆ ଖେଳୁଥିଲେ । ଦାଉ ବାଜି ଯିବ ତ, ଥୋଡ଼ାଏ ମାରିନେବ, ନ ବାଜିବ ତ ନ ହବ, ଏହିପରି ଭାବରେ ହିଁ ।

ମୋର ଏ କଥାଗୁଡ଼ାକରୁ କେହି କେହି ହୁଏତ ଅନୁମାନ କରିନେବେ ଯେ ମୁଁ କହିବାକୁ ଯାଉଚି ଯେ ଏ ସଂସାରଟା ମିଛମାୟା, ଏଥିରେ କିଛି ଠିକ୍ ନାହିଁ । ତା'ପରେ ହେଲେ ହବ ଗାଳିର ବରଷା । ଦାଇକା ମାଡ଼ର ଧୁରମୁଷା । କଣ ନା, ଏଇ କଥାଟା ଆମ ଛପନ ପୁରୁଷ ଆଗରୁ ଲୋକେ ବରାବର କହି ଆସୁଛନ୍ତି; ସେଇ ପୁରୁଣା କଥାଟାକୁ କହିବାକୁ ଏତେ କଲବଲ କାହିଁ ! ମୁଁ ସତରେ ସେକଥା କହୁନାହିଁ, ସତରେ ମୁଁ ସେ କଥା ବିଶ୍ୱାସ ମଧ୍ୟ କରେନାହିଁ । ଏ ସଂସାରଟା ଯେ ମିଛମାୟା— ଏ କଥା ମାନିବାକୁ ମୁଁ ଏକାବେଳକେ ରାଜି ନୁହେଁ । ଏ ସଂସାରଟା ଗୋଟାଏ ଜଳ ଜ୍ୱଳନ୍ତା ପଦାର୍ଥ ଏ ଅଛି । ଆଉ ସେଥିରେ ଅଛି ମାତ୍ର ଗୋଟିଏ ଜୀବ—ସେ ହଉଚି ମୁଁ । ଆଉ ଯଦି ସଂସାରରେ କିଛି ଥାଏ—ତା'ହେଲେ ସେ କେବଳ ମୋର ପାଇଁ—ମୋର ଖେଳର ସାଥି, ମୋର ବିଳାସର ସଙ୍ଗୀ । ଏଇ ଜବାବଟି ମୋର ଆଗ ପ୍ରଶ୍ନର ଉତ୍ତର । ମୁଁ ଯାହା ଦେଖେଁ, ମୁଁ ଯାହା ଅନୁଭବ କରେଁ, ମୁଁ ଯାହା ଭୋଗ କରେଁ— ସେଇ-ଆ ହିଁ ଠିକ୍ ।

ତୁମେ କହିପାର, ମୁଁ ତା' ହେଲେ ମୋ ନିଜ କଥା ନିଜେ କାଟୁଚି । ତୁମର ଭୁଲ ମୋ ନିଜ କଥା ମୁଁ କାଟିନାହିଁ; କାଟି ପାରେନାହିଁ । ମୁଁ ଯଦି ଏ କାଗଜଟାକୁ

୫ଟା ବାଜି ୨୫ ମିନିଟରେ କହେ ଧଳା, ପୁଣି ୫ଟା ବାଜି ୩୦ ମିନିଟରେ କହେ କଳା, ତା' ହେଲେ ମୋର ଦୁଇଟାଯାକ କଥା ହିଁ ଠିକ୍ । ମୋର ଭୁଲ ହେଇପାରେ ନାହିଁ । କାମିଁ ଥକା ଏପରି କଥା ହେଇପାରେ । ଭଲମନ୍ଦ, ଭୁଲ ଠିକ୍ ବୋଲି ଯାହାକୁ ସଂସାରରେ ତୁମେ କହ—ସେ ସବୁ ଭୁଲ୍; ମୁଁ ଏଇ କଥାଟା ଏତେ ବଡ ବଡ ଆଗରେ ବୁଝାଇବାକୁ ଚେଷ୍ଟା କରିଥିଲି । ପାଞ୍ଚ ଜଣଙ୍କ ଆଖିକୁ ଭଲ ଦିଶିବ, ପାଞ୍ଚଜଣଙ୍କ ମନକୁ ଭଲ ଲାଗିବ, ଦଶ ଜଣ ବାହାବ୍‌ବା କରିବେ—ଏଇ ହେଲା ଆମ ଭଲମନ୍ଦ, ଭୁଲ ଠିକ୍‌ର ମାପକାଠି । ସ୍ୱାର ମୂଳରେ ଅଛି ମନୁଷ୍ୟର ଗୋଲାମ ପ୍ରବୃତ୍ତି । ଆମେ ନିଜକୁ ବଡ଼ ବୋଲି କହୁଁ; ନିଜକୁ ସଭ୍ୟ, ଶିକ୍ଷିତ, ଉନ୍ନତ ବୋଲି ଗର୍ବ କରୁଁ, ପରାଧୀନତାକୁ ଫୋପାଡ଼ି ଦେଇ ସ୍ୱାଧୀନ ହେବାକୁ କେତେ ବକ୍ତୃତା କରୁଁ; କିନ୍ତୁ ସବୁ କଥାରେ ଆମେ ପାଖପଡ଼ଶା, ସାଙ୍ଗସାଥିଙ୍କ ମୁହଁକୁ ଚାହୁଁ, ତାଙ୍କର ପ୍ରଶଂସା ନେବା ପାଇଁ । ଏ ବଡ଼ ଦାସତ୍ୱ; ଏ ପ୍ରକୃତ ଗୋଲାମୀ । ଏଇ ଗୋଲାମୀ ଭିତରୁ ଏ ସଂସାରଟା ମିଛମାୟା ବୋଲି ମନେହୁଏ ।

ଧର ଏଇ କଳାଧଳା କଥାଟା । ମୁଁ ଯଦି ଧଳା ଜିନିଷଟାକୁ କଳା ବୋଲି କହେଁ, ବା ଯାହାକୁ ଧଳା ବୋଲି କହୁଚ, ତାକୁ କଳା ବୋଲି କହେଁ, ତା'ହେଲେ ମୋର ଭୁଲ ହେଲା ବୋଲି କିଏ କହିବ ? କିମିତି ଜାଣିବ ? ଏଇ ଦଶ ଜଣଙ୍କ କଥାରୁ । ଦଶ ଜଣ କହିବେ, "ମଲା, ଧଳାଟାକୁ କଳା ବୋଲି କହିଲ କିମିତି ମ ?'' ନ ହେଲେ. "ମ, ଇଲେ କହୁଚ ଧଳା, ଇଲେ କହୁଚ କଳା; ଏ କିମିତି ମଣିଷ ମ ?'' ଅତଏବ ମୁଁ ହେଲି ଦୋଷୀ । ମୁଁ ନିଜକୁ ଭାବିଲି ଦୋଷୀ । ଏଇ ଦଶଜଣଙ୍କ କଥାକୁ ଡର, ମୁଁ ମନକଥା କହିପାରିଲି ନାହିଁ । ମୋର ତା'ହେଲେ ସ୍ୱାଧୀନତା ଆସିଲା କାହିଁ ? ଆଉ ମୋର ଉନ୍ନତି ବା ହେଲା କେଉଁଠାରେ ? ଉନ୍ନତିର ବାଟ ବା କାହିଁ ? ଗୋଟାଏ କଥା କହେଁ । ମୁଁ ଓଡ଼ିଆ ସାହିତ୍ୟର ଜଣେ ମହାରଥୀ, ମୁଁ ବରାବର ପରଜାତି ସାହିତ୍ୟର ଭାବ ଓ ଭାଷା ନେଇ ବହି, ପ୍ରବନ୍ଧ, କବିତା, ନାଟକ ଲେଖି-ଆସିଚି । ପରେ ମୋର ମନେହେଲା, ନା, ଏ ଭାବ ଭାଷା ଭୁଲ । ମୋର ସହଜ ସରଳ, ସୁବୋଧ ଓଡ଼ିଆ ଭାଷାରେ ଓଡ଼ିଆ ଜାତିର କଥା ଲେଖିବା ଉଚିତ; ତାହା ହିଁ ପ୍ରକୃତ ସାହିତ୍ୟ । କିନ୍ତୁ ମୁଁ ଲେଖିବି ନାହିଁ, କି ସେ କଥା ମାନିବି ନାହିଁ, କି ସେ କଥା କହିବି ନାହିଁ । ଓଲଟି ନାନାପ୍ରକାର, ଗାଲୁ, ଗାଲି, ଗୁଜବ କରି ମୁଁ ପ୍ରମାଣ କରିବାକୁ ଚେଷ୍ଟା କରିବି ଯେ, ମୋର ଏ ମନର କଥାଟା ଭୁଲ; କାରଣ ତା' ନ ହେଲେ, ମତେ ଲୋକେ କହିବେ କ'ଣ ? ଆମେ ଦେଶର ଅତୀତଟାକୁ ଯେତେ ଫୋପାଡ଼ି ଫିଙ୍ଗିଦବାକୁ ହସ୍ତାରଡ଼ି ଦଉଁ ପଛକେ, ନିଜର ଅତୀତଟାକୁ ଫିଙ୍ଗିବାକୁ ରାଜି ନୋହୁଁ । ଲୋକେ କହିବେ କ'ଣ ? ଯାହାଙ୍କ ଆଗରେ ଆମର ପର-ଗତି ପରଚେଷ୍ଟାର ବଢେଇକରି ଆସୁଥିଲୁଁ, ସେମାନେ କହିବେ କ'ଣ ? ଏଇ ଗୋଲାମୀ ମତେ ବାନ୍ଧି ରଖେ । ମୋ

ମନର କଥା, ବାଲିବଧିବାର ଅଭିଳାଷ ପରି ନିଜ ମନରେ ଉଠି ନିଜ ମନରେ ଶୁଖିଯାଏ । ଏ ଅବସ୍ଥାରେ ଉନ୍ନତି ସମ୍ଭବ ହେବ କିପରି ? ମୁଁ ଯେବେ ସତରେ ଆଗକୁ ଚାଲିବାକୁ ଇଚ୍ଛା କରେ, ତା' ହେଲେ ମୋତେ ମୋ ବାଟ ବାଛି ନବାକୁ ପଡ଼ିବ । ମୁଁ ଥରେ ଅଧେ ବାଟବଣା ହୋଇଯାଇପାରେଁ; ସେତେବେଳେ ମତେ ସେ ବାଟ ଛାଡ଼ି ଆଉ ବାଟରେ ଯିବାକୁ ପଡ଼ିବ । ସେ କଥାଟା ମୋର ମାନିନବା ଉଚିତ୍ । ପର ଦେଖା କି ପର ଚଲି ବାଟ ମୋ କାମକୁ ନ ଆସିପାରେ । ଜୋତା-ବାଟ ମୋ ଖାଲି ଗୋଡ଼କୁ ସୁବିଧା ନ ହୋଇପାରେ । ଶ୍ୟାମ ଯୁ ରାସ୍ତା ପନ୍ଦର ଘଣ୍ଟାରେ ଯାଇପାରନ୍ତି—ସେ ରାସ୍ତାତକ ଯିବାକୁ ମତେ ହୁଏତ ଜୀବନ ଗୋଟାକଯାକ ଲାଗିଯାଇପାରେ । ମୋର ଏ କଥାଗୁଡ଼ାକ ମାନିନବା ଉଚିତ୍ । ଦଶଲୋକ ମୋ ଚାଲି ବା ମୋ ବାଟକୁ ନାପସନ୍ଦ କରିବେ ବୋଲି ଡରି ବାମନ ହୋଇ ଯେବେ ମୁଁ ଶ୍ୟାମଙ୍କ ପରି ପାହୁଲ ପକାଇବାକୁ ଯାଏଁ, କି ସାଇବମାନେ ବୁଟ୍ ପିନ୍ଧି କଣ୍ଟାଙ୍କୋରେ ଯାଉଛନ୍ତି ବୋଲି, ମୁଁ ଯେବେ ଖାଲି ଗୋଡ଼ରେ ସେଇ କଣ୍ଟାଙ୍କୋରେ ଯାଏ, ତା' ହେଲେ ମୁଁ ହେବ ନିଜର ବଇରି । ମୋ ହାଣି କୁରାଢ଼ି ମୋ ବେକରେ ମୁଁ ବସେଇବ ।

ଅତଏବ ମୋ ଆତ୍ମାର ଉନ୍ନତି ଲାଗି, ମୋ ମନର ଆନନ୍ଦ, ସନ୍ତୋଷ ଓ ଆମୋଦ ଲାଗି ମତେ ଏଇ ଦଶଜଣଙ୍କ ଗୋଲାମୀ ଛାଡ଼ିବାକୁ ପଡ଼ିବ । ଦେଶର ଓ ଜାତିର ଉନ୍ନତି ଲାଗି ଶାସନଗତ ସ୍ୱାଧୀନତାର ବଡ଼ ବେଶୀ ଲୋଡ଼ାନାହିଁ । ଶାସନଗତ ସ୍ୱାଧୀନତା ଆମ୍ବଗଛରେ ନାରଙ୍ଗ ଫଳିଲି ପରି ଗୋଟାଏ ହପ୍ପା; ସ୍ୱର୍ଗକୁ ଯିବାପାଇଁ ପୁରୀର ସ୍ୱର୍ଗଦ୍ୱାର ପରି ଗୋଟାଏ ମନଭୁଲାଣିଆ ସହଜ ବାଟ । ଦେଶର ସ୍ୱାଧୀନତା ଲାଗି ବ୍ୟକ୍ତିର ସ୍ୱାଧୀନତା ଦରକାର । ମୁଁ ଯଦି ନିଜକୁ ଦେଶର ଓ ଜାତିର ଅଧୀନତାରୁ ମୁକୁଳେଇ ପାରିବି, ତା'ହେଲେ ମୁଁ ହେବି ସ୍ୱାଧୀନ ଆଉ ଦେଶ ମଧ୍ୟ ହବ, ସ୍ୱାଧୀନ ।

ସ୍ୱାଧୀନତାର ଅର୍ଥ ସବୁପ୍ରକାର ବନ୍ଧନରୁ ମୁକ୍ତ ରହିବା । ଆଉ ପରକଥା ଉପରେ ଯେ ମୋର ସୁଖ ଦୁଃଖ ନିର୍ଭର କରେ, ସ୍ୱା' ଠାରୁ ବଳି ବଡ଼ରକମ ମାୟାବନ୍ଧନ ଏ ଜଗତରେ କିଛି ନାହିଁ । ଏ ବନ୍ଧନ; କାହିଁକି ନା, ଏହାରି ହେତୁରୁ ମନୁଷ୍ୟର ନିଜ ଗତି ଓ ନିଜ ବିବେକ ଉପରେ ଅବିଶ୍ୱାସ ଆସେ । ଆଉ ଏ ମାୟା; କାହିଁକି ନା, କୌଣସି ଲୋକମତ ସ୍ଥିର ନୁହେ । ସତ୍ୟ, ସ୍ଥିର ସନାତନ । ଯାହା ଅସ୍ଥିର, ଚଞ୍ଚଳ ତାହା କଦାପି ସତ୍ୟ ହୋଇ ନପାରେ । ବିଶେଷରେ ପୁଣି ଥରେ ଲୋକମତର ଗୋଲାମୀ ମାନିନେଲେ, ମନୁଷ୍ୟ ଏତେ ଅନ୍ଧ ହୋଇ ବସେ ଯେ—ସେ ଭଲ ଭେଲ ବାଛିପାରେ ନାହିଁ । ତେଣିକି ଖାଲି ପାଞ୍ଚଜଣ ଯାହାକୁ ଭଲ ବୋଲି କହିଲେ, ତାହା ଯେ କରିବାକୁ ହବ, ଏପରି ନୁହେ; ପାଞ୍ଚଜଣ କଣ କହିପାରନ୍ତି—ତାକୁ ମଧ୍ୟ ଅନୁମାନ କରି ସେଇ ଅନୁମାନ ଅନୁସାରେ ମତେ କାମ କରିବାକୁ ପଡ଼ିବ ।

ସାଧାରଣତଃ ଆମେ ଯେ ଲୋକମତକୁ ଗୁହିଁ କାମକରୁଁ—ସେ ପ୍ରକୃତ ଲୋକମତକୁ ଗୁହିଁ ନୁହେଁ; ଲୋକମତ କଣ ହୋଇପାରେ ତାକୁ ଗୁହିଁ । ପ୍ରକୃତରେ ଲୋକମତ କଣ ହବ—ତାହା ଠିକ୍ କର ଜାଣି କୌଣସି ଦ୍ଧନକଥା କାମ ହୋଇ ନପାରେ । ଜୀବନର ପନ୍ଦରପଣ କାମ ଏପର ଯେ ଯିମିତ ପଡ଼ିଲା ସିମିତ ସାଙ୍ଗେ ସାଙ୍ଗେ କରିବାକୁ ହବ । ନହେଲେ ସେ କାମ ହବନାହିଁ ଏକାବେଳେକେ । ସେତେବେଳେ ଲୋକମତ କଣ ଉପରେ କର ବୁଝିବାର ବେଳ ନଥିବ । କାମ କରିବାକୁ ହବ ଲୋକମତ ଅନୁମାନ କର । ତୁମେ ଏଠି କହିପାର ଯେ—ଲୋକମତ ଉଣା ଅଧିକେ ସବୁ ବିଷୟରେ ଜଣାଶୁଣା; ଯେପର କ ଚୋର କରିବ ନାହିଁ, ମିଛ କହିବ ନାହିଁ, ପର ସ୍ତ୍ରୀକୁ ଚାହିଁବ ନାହିଁ ଇତ୍ୟାଦ । ସତ କଥା । କେତେକ ବିଷୟରେ ଲୋକମତ ଗୋଟାଏ ଧାରାରେ ପଡ଼ିଆସିଚ । କନ୍ତୁ ସେ ଧାରାଟି ଯେ ମିଛ । ପ୍ରଥମ କଥା ହେଲା—ମନୁଷ୍ୟର ସାଧାରଣ ଜୀବନରେ ମିଛ କହିବାର ବଡ଼ କମ୍ ଦରକାର ପଡ଼େ । ତା' ଅର୍ଥ ନୁହେଁ ଯେ ଲୋକ କମ୍ ମିଛ କହେ । ମୁଁ ଅନେକ ମିଛ କହେ; କନ୍ତୁ ସେ ଅକାମରେ ଯେତେ, କାମରେ ସେତେ ନୁହେଁ । ମାଇପ ଆଗରେ, ବନ୍ଧୁବାନ୍ଧବଙ୍କ ମେଳରେ, ଚାକରବାକରଙ୍କ ପାଖରେ ବଡ଼େଇକର ବାହା ବା ନବା ପାଇଁ ମୁଁ ଅନେକ ମିଛ କହେଁ, କାମଟେ କରିସାର ତା'ର ମନ୍ଦ ରୂପ ଘୋଡ଼େଇବା ପାଇଁ ମଧ୍ୟ ମୁଁ କମ୍ ମିଛ କହେନାହିଁ । କନ୍ତୁ ଅସଲ କାମବେଳେ ମୁଁ କ'ଣ ବା ମିଛ କହିବ ? ମିଛ କହି ବା କ କାମ କରିବ ?

ସେହିପର ଚୋର କରିବା । ଯେ ଚୋର ସେ କାହିଁ କଦବା ଚୋର କରେ । ତା'ର ସାଧାରଣ ସବୁକଥାରେ ଚୋର କରିବା ଖାଟେ ନାହିଁ । ପୁଣି ନୟମ ଅଛୁ ବୋଲ ଚୋର ନକରନ୍ତି କେତେ ଜଣ ? ବଡ଼ ବଡ଼ କୋଟିପତଙ୍କଠାରୁ ଆରମ୍ଭ କର ନା'ରେଣିଆ ବାଉରୀ ପର୍ଯ୍ୟନ୍ତ ଅଧିକାଂଶ ଚୋର କରନ୍ତି । କଏ ଧରାପଡ଼ି ଜେଲଯାଏ, ଦାଗି ବୋଲାଏ; କଏ ଧରା ନ ପଡ଼ି ବଡ଼ ଲୋକ ହୋଇ ଛତା ଟେକେ । ସେହିପର ପର ସ୍ତ୍ରୀକୁ ନଚାହିଁବା । ଆମେ ହଜାରେ ନୀତଶାସ୍ତ୍ର ଗାଇଯାଉଁ ପଛକେ, ଆମ ଆଖିରେ ପରଧନ, ପର ଗୌରବ, ପର ବୈଭବ ପର ପର ସ୍ତ୍ରୀ ମଧ୍ୟ ବେଶୀ ସୁନ୍ଦରୀ, ବେଶୀ ନାଗରୀ । ନ ପାଉଁ ପଛକେ, ଟିକଏ କ'ଣ ଆଖିରେ ଦେଖିଦେଲେ ତ ହେଲେ ପେଟ ପୂରଯିବ, ମନ ଅରମାନ ମେଣ୍ଟିଯିବ । ଆଉ କାମ କରିବା ସାଙ୍ଗରେ ପର ସ୍ତ୍ରୀ କ ନ ଚାହିଁବାର କଛୁ ସମ୍ବନ୍ଧ ନାହିଁ । ଅତଏବ ଆମେ ଦେଖିଲୁଁ, ଲୋକମତ ଯାହା ସବୁ ଭେଲ ବୋଲ ଆଗରୁ ଠିକ୍ କର ନେଇଚ, ଶାସ୍ତ୍ର ପ୍ରମାଣ କର ଥୋଇଚ, ସେଇ ଭେଲ କଥାଗୁଡ଼ାକ ଅନେକ ଲୋକ କରନ୍ତି । ଫେରେଇ ଲୁଚେଇ ନ ହେଲେ ଦେଖେଇ ଶୁଣେଇ । ପୁଣି ଏ ଢଥାର ଭଲ-ଭେଲ ସାଙ୍ଗରେ କାମ କରିବାର କଛୁ ସମ୍ବନ୍ଧ ନାହିଁ ।

ତା' ହେଲେ ଏଇ କଥାଟା ହେଲା ସାର ଯେ—ଆମେ କାମ କରୁଁ ଲୋକମତ ନେଇ ନୁହେଁ, ଲୋକମତ କ'ଣ ହୋଇପାରେ, ତାକୁ ଅନୁମାନ କରି । ଏପରି ଅନେକ ସମୟରେ ଦେଖାଯାଇଚି କାମଟା ହୋଇସାରିଲା ପରେ ଲୋକମତ ସେ କାମ ବିରୋଧରେ ଯିବାର ସନ୍ଦେହ ହେଲେ, ଖବରକାଗଜ, ସଭାସମିତି, ଲାଞ୍ଚ, ଅଣ୍ଡାଗୁଣ୍ଡା ଇତ୍ୟାଦି ନାନା ପ୍ରକାର ଉପାୟ କରି ଲୋକମତ ତା'ର ସପକ୍ଷରେ ଆଣିବାକୁ ଚେଷ୍ଟା କରାଯାଏ । ସେଇଥିପାଇଁ କହୁଥିଲି ଆମର ମନ ଗୋଲାମୀ କମିଟି ନାକ ବାଳ ଧରେଇ ଖାଲି ଲୁଚ ଡରରେ ଆମକୁ ଚପାଇରଖିଚି । ପାଠୁଆ ବଡ଼ ବଡ଼ିଆ ହୋଇ ଏଇ ସ୍ଥିତିକୁ ଦେଖି ଡରିବାଠାରୁ ବଳି ଆଉ ବଡ଼ ସରମର କଥା କ'ଣ ଥାଇପାରେ ?

ଯଦି ମୋର ପ୍ରବନ୍ଧଟା କେହି ପଢ଼େ, ତା'ହେଲେ ସେ ବୁଝିପାରିବ—ମୋର କହିବାର କଥା । ମୁଁ ଅଛି, ଆଉ ମୋର ଲାଗି ଏ ସଂସାରଟା ଅଛି । ମୋର ସୁଖ ଦୁଃଖ, ଭଲ ମନ୍ଦ, ସଂସାରର ସୁଖ ଦୁଃଖ, ଭଲ ମନ୍ଦ ଓ ହାନିଲାଭ । ମୁଁ ସମାଜ ବନ୍ଧନର ବାହାରେ; ଦଶ ଜଣଙ୍କ ଉପରେ । ମୁଁ ଯଦି ପାଲ ପକାଇ ଉଚ୍ଚ ହୁଏ, ତା'ହେଲେ ସେ ପାଲ ମୋର ସତ, ପ୍ରକୃତ; ତୁମର ରତ୍ନ ସିଂହାସନ ମିଛ, ଅବାସ୍ତବ । ମୋର ଆଇନ କାନୁନ ମୋର—କାରଣ ମୁଁ ମନୁଷ୍ୟ, ଆଉ ମନୁଷ୍ୟ ଯେକୌଣସି ଶବ୍ଦରୂପୀ ନାରାୟଣଙ୍କଠାରୁ ବୃହତ୍ତର ଓ ଉଚ୍ଚତର । ଆଇନକାନୁନ, ମତ, ଅମତ, ନୀତି ଅନୀତି ଯାହା କହ ସେଗୁଡ଼ାକ ଖାଲି ପବନର ସୃଷ୍ଟି, ଅଶରୀର, ଅପ୍ରାକୃତ ମାୟା । କିନ୍ତୁ ମୁଁ, ମୁଁ ବାସ୍ତବ, ଶରୀର ଓ ପ୍ରାକୃତ ।

ମୁଁ ଏହା କହିଲି ବୋଲି ସମସ୍ତେ ହୁଏତ ଡେଇଁପଡ଼ିବେ । କହିବେ—ଏ କି କଥା ? ଏ ଯେ ଅପସାର୍ଥିକତାର ଚୂଡ଼ାନ୍ତ । ଏତେ ସ୍ୱାର୍ଥପରାୟଣତା, ଅନୀତି, ଅନ୍ୟାୟ; ଅତଏବ ଏ ବାୟାଟାର ମୁଣ୍ଡରେ ଠେଙ୍ଗାମାଡ଼ ଦରକାର । ତା' ନହେଲେ ପୃଥିବୀର ଯେ ଏତେ ସ୍ୱାର୍ଥତ୍ୟାଗ, ଦଧିଚିଙ୍କଠାରୁ ଆରମ୍ଭ କରି ଗୋପବନ୍ଧୁଙ୍କ ପର୍ଯ୍ୟନ୍ତ—ଏତେ ଯେ ପରାର୍ଥ, ଏ ଗୁଡ଼ାକର କଣ ହେବ ? ଲୋକଙ୍କର ଆଦର୍ଶ ଯେ ନଷ୍ଟ ହୋଇଯାଏ ।

ବଡ଼ବଡ଼ଆଙ୍କର ନା' କରି ମତେ ମାରିବାର ଉଦ୍ୟମଟାରେ ବିଶେଷ କିଛି ମୌଳିକ ବା ବାହାଦୁରି ବା ନୂତନତ୍ୱ ନାହିଁ । କିନ୍ତୁ କଥାଟା ହେଉଚି ଯେ ଖାଲି ସ୍ୱାର୍ଥତ୍ୟାଗ ପାଇଁ ସ୍ୱାର୍ଥତ୍ୟାଗ କରି କେହି ସଂସାରରେ ଆଦର୍ଶ ହୋଇ ରହିନାହିଁ । ଏପରି ଯେବେ କେହି କରିଥାଏ, ତା'ହେଲେ ସେ ପାଗଳା ଗାରଦର ଡାଲି, ଛାତଖିଆ ବୋକା । ଦଧିଚିଙ୍କର ଅସ୍ଥିବଳି ତାଙ୍କ ଆତ୍ମାର ଉଦ୍ଧାର ପାଇଁ, ସ୍ୱାର୍ଥଲାଭ ପାଇଁ । ଗୋଟାଏ ଜୀବନ ବଳିଦେଇ, ମୁଁ ପଚିଶ ଜନ୍ମର ଦୁଃଖ ଏଡ଼ିପାରେ, ତା'ହେଲେ ସେଥିରେ ମୋର ସ୍ୱାର୍ଥ ବାରପଣ ହେଲେ, ନିଃସ୍ୱାର୍ଥ ଗୁରୁଥଣା ମାତ୍ର । ଗୋପବନ୍ଧୁଙ୍କ ଜୀବନର ଆନନ୍ଦ ଥିଲା ଦରିଦ୍ରର ସେବା କରିବା । ଏତକ ସେ ନକରି ପାରିଥିଲେ ତାଙ୍କ ଜୀବନ, ଅର୍ଥାତ୍

ତାଙ୍କର ସ୍ୱାର୍ଥ ନିଷ୍ଫଳ ହୋଇଥାନ୍ତା । ତାଙ୍କର ଏଇ ବ୍ୟକ୍ତିଗତ ସ୍ୱାର୍ଥର ସଫଳତା ପାଇଁ ସେ ସ୍ୱାର୍ଥତ୍ୟାଗ କରିଥିଲେ—ନିଃସ୍ୱାର୍ଥ ପାଇଁ ନୁହେଁ । ଏହିପରି ଦେଖିବାକୁ ଗଲେ ଅନାମ ମିଶ୍ରଙ୍କ ସ୍ୱାର୍ଥପରାୟଣତାଠାରୁ ଗୋପବନ୍ଧୁଙ୍କର ସ୍ୱାର୍ଥତ୍ୟାଗ କିଛି ଉଚ୍ଚଦରର ନୁହେଁ । ପ୍ରଭେଦଟା କେବଳ ଉଦ୍ଦେଶ୍ୟରେ, ଆଉ ଉଦ୍ଦେଶ୍ୟ ବ୍ୟକ୍ତିଗତ । ସମସ୍ତଙ୍କର ଉଦ୍ଦେଶ୍ୟ ଦରିଦ୍ର ସେବା ହୋଇ ନ ପାରେ, ହେବା ଉଚିତ ମଧ୍ୟ ନୁହେଁ; ଯେପରି ସମସ୍ତେ ଦେବତା ହୋଇ ନ ପାରନ୍ତି, ହେବା ଉଚିତ ମଧ୍ୟ ନୁହେଁ । ସଂସାରର ଏ ମରୁଭୂମିରେ ଗୋଟାଏ ଦୁଇଟା ହୋସେନ ହେନା କବର ଆଖିକୁ ଓ ମନକୁ ତୃପ୍ତିକର ହୋଇପାରେ ମାତ୍ର ଏ ସଂସାରଟା ଯେବେ ଖାଲି ହୋସେନ ହେନା ଗଛରେ ପୂର୍ଣ୍ଣ ହୋଇଥାନ୍ତା, ତା'ହେଲେ କବି ବୋଧହୁଏ ମରୁଭୂମିର ସ୍ୱପ୍ନ ଦେଖନ୍ତେ ।

ଅତଏବ, ଆମେ ଦେଖିଲୁଁ ଯେ 'ମୁଁ ମୋର ଏବଂ ଏ ଜଗତଟା ମୋରି ପାଇଁ ।' ଏହା କହିବା ଦ୍ୱାରା ମୁଁ କୌଣସି ଅହିତ ନୀତି ବଳିବଳଉ ନାହିଁ—ଯାହା ସଂସାରରେ ନିରୁତା ସତ, ସେଇଆ କହୁଚି ମାତ୍ର ।

ତେବେ ବର୍ତ୍ତମାନ ତୁମେ ପଚାରିପାର ଯେ ଧରିନିଅ, ଆମେ ମାନିନେଲୁଁ, ତୁମେ ବ୍ୟକ୍ତିଗତ ଭାବରେ ସ୍ୱାଧୀନ । କିନ୍ତୁ ତା ବୋଲି ତୁମେ ଯେବେ ଭଲେ ଗୋଟାଏ ଜିନିଷକୁ ଧଳା ବୋଲି କହ, ପୁଣି ଆଉ କିଛି ସମୟ ପରେ ସେଇ ଜିନିଷଟାକୁ କଳା ବୋଲି କହ, ତା'ହେଲେ ତୁମର ଦେଖିବାଟା ଅନ୍ୟମାନଙ୍କ ଦେଖିବାପରି ଖାଲି ଗୋଟାଏ ଅନ୍ଧାଳି ଅନୁଭବ ନ ହେବ କିଆଁ ? ତୁମେ ପାଞ୍ଚଜଣଙ୍କର ଦେଖିବାକୁ ଅବିଶ୍ୱାସ କରିପାର । ମାତ୍ର ତୁମର ନିଜର ଦେଖିବାକୁ ଅବିଶ୍ୱାସ କରିବ କିପରି ? କଥାଟା ମୋଟାମୋଟି ଭାବରେ ସତ; କିନ୍ତୁ ଟିକିଏ ତଳେଇକରି ଦେଖିଲେ, କଥାଟା ଯେ ମିଛମସ୍ତ, ସମସ୍ତେ ବୁଝି-ପାରିବେ । ମୁଁ ଅଛି ବୋଲି କହିଲେ, ମୁଁ କଣ ମନେକରେଁ ? ତୁମେ ବା କଣ ମନେକର ? ମୁଁ ଯେ ମୁହୂର୍ତ୍ତରେ ଅଛି ବୋଲି କହୁଚି, ସେଇ ମୁହୂର୍ତ୍ତରେ ଅଛି ମାତ୍ର; ତା ପରମୁହୂର୍ତ୍ତରେ ମୁଁ ନ ଥାଇପାରେଁ, ବା ଥିଲେ, ମୋର ବିଶେଷ ପରିବର୍ତ୍ତନ ହୋଇପାରିଥାଏ । ମୁଁ ଭଲେ ଅଛି ଭଲ, ପରମୁହୂର୍ତ୍ତରେ ମୋ ଆଖି ଫୁଲି ଯାଇପାରେ, ମୋ ଆଖିରେ ଶୁଖୁଆ କଣ୍ଟା ଲାଗିଯାଇପାରେ, ପରଳ ମାଡ଼ିଯାଇପାରେ, ମୁଁ ଅନ୍ଧାରକଣା ବା ଆଲୁଅ କଣା ହୋଇଯାଇପାରେ ଇତ୍ୟାଦି । ମୋର ମୁହୂର୍ତ୍ତିକ, ମୁହୂର୍ତ୍ତିକର ଯେ ପରିବର୍ତ୍ତନ ସେ ଖାଲି ଶାରୀରିକ ନ ହୋଇ, ମାନସିକ ମଧ୍ୟ ହୋଇପାରେ । ହବ ମଧ୍ୟ ନିଶ୍ଚୟ, ନ ହେବାଟା ଆଦୌ ବାଞ୍ଛନୀୟ ନୁହେଁ । ମୁଁ ଯଦି ଜୀବନର କୌଣସି ଦୁଇଟି ମୁହୂର୍ତ୍ତରେ ଏକାପରି ମନରେ, ଦେହରେ, ବୁଦ୍ଧିରେ, ବିବେକରେ ରହେଁ, ତା'ହେଲେ ମୁଁ ବୁଝିବି ଯେ ସେ ଦୁଇଟି ମୁହୂର୍ତ୍ତଲାଗି ମୁଁ ମରିଚି । ମୁଁ ଚୋର ହୁଏଁ, ଡକେଇତ ହୁଏଁ, ଖଣ୍ଡ ହୁଏଁ, ସାଧୁ ହୁଏଁ, ମହାତ୍ମା ହୁଏଁ, ରଜା ହୁଏଁ, ଭିଖାରି ହୁଏଁ—କିନ୍ତୁ ମୁଁ ଏ

ମୁହୂର୍ତ୍ତିରୁ ସେ ମୁହୂର୍ତ୍ତି ଅଚଞ୍ଚଳ ହୋଇ ରହି ନ ପାରେଁ । ମୋର ଆଶ୍ରସ୍ଥ କରିଥିବା ଢଙ୍ଗରେ ମତେ ବରାବର ଚାଲିବାକୁ ପଡ଼ିବ; ମୁଁ ମୋ ଠିକଣା କାହାରେ ପହଞ୍ଚି ନ ପାରେଁ, ତଥାପି ମତେ ଚାଲିବାକୁ ପଡ଼ିବ । ଯେତେବେଳେ ମୁଁ ଅଟକି ହୋଇ ବସି ପଡ଼ିବି, ସେତେବେଳେ ମୁଁ ମରିଚି ।

ମୁଁ ଚାଲିବ, ମୋର ଶାରୀରିକ ଓ ମାନସିକ ପରିବର୍ତ୍ତନ ହେବ । କିନ୍ତୁ ସେ ପରିବର୍ତ୍ତନ ଲାଗି ମୋର ମୁଁ ହଜିଯିବ ନାହିଁ କି ବଦଳି ମଧ୍ୟ ଯିବନାହିଁ । ମୋର ବର୍ତ୍ତମାନ ମୁହୂର୍ତ୍ତି ଲାଗି ମୁଁ ଯେପରି ମୋର ଭବିଷ୍ୟତ ପାଖରେ ଦାୟୀ ନୁହେଁ, ସେହିପରି ମୋର ଅତୀତ ପାଖରେ ମଧ୍ୟ ବନ୍ଧା ନୁହେଁ । ମୁଁ ଯେ ଖାଲି ସ୍ୱାଧୀନ—ତା' ନୁହେଁ, ଜୀବନର ପ୍ରତ୍ୟେକ ଲତା ବଲ୍ଲରୀ ମଧ୍ୟ ପରସ୍ପରଠାରୁ ସ୍ୱାଧୀନ । ମୋ କାର୍ଯ୍ୟର ବିଚାର ଯେପରି ଦଶ ଜଣଙ୍କ ମତାମତ ଉପରେ ନିର୍ଭର କରେନାହିଁ, କରେ ପ୍ରକୃତ ଗୋଟାକଯାକର କାର୍ଯ୍ୟ ଓ ଉପସଂହାର ଉପରେ; ସେହିପରି ମୋ ଜୀବନର ଏଇ ମୁହୂର୍ତ୍ତିର କାର୍ଯ୍ୟକଳାପର ବିଚାର ମୋ ପୂର୍ବ ମୁହୂର୍ତ୍ତିର କାର୍ଯ୍ୟ ବା ପରମୁହୂର୍ତ୍ତିର କାର୍ଯ୍ୟ ଉପରେ ନିର୍ଭର କରିପାରେ ନାହିଁ, କରେ ମୋର ସଂପୂର୍ଣ୍ଣ ଜୀବନର ଉପସଂହାର ଉପରେ ।

କଥାଟା ଶୁଣି କେହି କେହି ହୁଏତ କହିପାରନ୍ତି ଯେ ଏ ଖାଲି ଭୁରୁଡ଼ୁ । ଟିକିଏ ବୁଝେଇ କହିବା ଦରକାର ପଡ଼ୁଚି ସେହି ହେତୁରୁ । ଧର, ମୁଁ ୧୦ଟା ବାଜି ୨୫ ମିନିଟିରେ ପୋଷାକପତ୍ର ପିନ୍ଧିଲି । ଏଥିରୁ ଯଦି ତୁମେ ଅନୁମାନ କର ଯେ ୧୦।୩୦ ରେ ବା ୧୧ଟା ରେ କଲେଜ ଯିବି ବୋଲି, ତା' ହେଲେ ତୁମର ଅନୁମାନ ମିଛ ହୋଇପାରେ । କାରଣ ୧୦।୨୫ ପରେ ଏପରି ଘଟଣା ଘଟିପାରେ ଯେ ମୁଁ ଡାକ୍ତର ଡାକିବାକୁ ଦୌଡ଼ିପାରେ, ଥାନାକୁ ଲସରପସର ହୋଇ ଧାଇଁ ଯାଇପାରେ; ଅଥବା କୋକେଇରେ ବନ୍ଧାହୋଇ ମଶାଣିକି ନିଆ ହୋଇପାରେ । ସେହିପରି ୧୦।୨୫ ରେ ମୁଁ ଲୁଗାପଟା ପିନ୍ଧିବାର ଦେଖି, କେହି ଯେବେ ଅନୁମାନ କରନ୍ତି ଯେ ମୁଁ ତା ଆଗରୁ ଭାତ ଖାଇଚି, ତାହେଲେ ତାଙ୍କ ଅନୁମାନ ବ୍ୟର୍ଥ ହେବ । ଅତଏବ ମୋ ଜୀବନର କୌଣସି ଏକ ମୁହୂର୍ତ୍ତି ଚାଲୁଥିବାବେଳେ ତା ସମ୍ବନ୍ଧରେ କୌଣସି ଉପସଂହାର ପରବର୍ତ୍ତୀ ବା ପୂର୍ବବର୍ତ୍ତୀ ମୁହୂର୍ତ୍ତିରୁ କରାଯାଇ ନ ପାରେ । ଅର୍ଥାତ୍ ମୋ ଜୀବନର ପ୍ରତ୍ୟେକ ମୁହୂର୍ତ୍ତି ଅନ୍ୟ ମୁହୂର୍ତ୍ତିମାନଙ୍କଠାରୁ ସ୍ୱାଧୀନ । ତେବେ ମୋ ଜୀବନର ଗୋଟିଏ ଦିନ ସରିଲା ପରେ ସେ ଦିନର ମୁହୂର୍ତ୍ତିମାନଙ୍କୁ ଗୋଟିଏ ସୂତାରେ ବାନ୍ଧି ମାଳା ତିଆରି କରାଯାଇ-ପାରେ । ମୋ ଜୀବନର ପ୍ରତ୍ୟେକ ମୁହୂର୍ତ୍ତି ଯେବେ ସ୍ୱାଧୀନ, ତା'ହେଲେ ମୁଁ ଏ ମୁହୂର୍ତ୍ତିରେ ଯାହା ଦେଖିଲି ବା କହିଲି ତାହା ପରମୁହୂର୍ତ୍ତିର ଦେଖିବା ବା କହିବାଠାରୁ ଭିନ୍ନ ହେଲେ ସେଥିରେ ଦୋଷ କଣ ଅଛି ବା ଅସମ୍ଭବ କଣ ଅଛି ?

ତା'ପରେ କେହି କେହି ଗାଲୁ ମାରିପାରନ୍ତି ଯେ ଯୁକ୍ତିତର୍କ ବଳରେ କଥାଟାକୁ ସତ ବୋଲି କହିଲେ ମଧ୍ୟ, ପ୍ରକୃତ ଜୀବନରେ ଏ ସତ ନ ହୋଇପାରେ । ବର୍ତ୍ତମାନ ଆମେ ଯିମିତି ଚାଲୁଛୁ, ସେଥିରେ ଏ କଥାଟା ସତ ନୁହେ । କିନ୍ତୁ ଆମେ ଯିମିତି ଚାଲୁଚୁ—ସେଇଟା ଆଦର୍ଶ ଚାଲି ନୁହେ । ସେଇଟା ସତ ମଧ୍ୟ ନୁହେ । ଅତଏବ ଯାହା ଅସତ୍ୟ, ଯାହା ଅନାଦର୍ଶ, ତାକୁ ଧରି ଏ କଥାଟାର ବିଚାର କରିବା କେବଳ ଗାଲୁର ପରିସୀମା । ଆପଣମାନେ ଦେଖନ୍ତୁ, ରାମ ମତେ ଗାଳିଦେଲା କୌଣସି କାରଣରୁ । ମୁଁ ଯଦି ରାଗିଯାଇ ତା ପର ମୁହୂର୍ତ୍ତରେ ଥାନାକୁ କି କଚେରୀ କି ଧାଇଁ-ଯାଏ, ତା' ହେଲେ କଣ ହବ ? ରାମ ଓ ମୋ ମଧ୍ୟରେ ଗୋଟାଏ ଶତ୍ରୁତା ସବୁଦିନକୁ ରହିଯିବ । ଅଥବା ଶ୍ୟାମ ମତେ କୁ ଦିନ କେତେବେଳେ କଣ କହିଥିଲା ବୋଲି ମୁଁ ଯଦି ମନରେ ରାଗ ରଖି ମୋ ଦାଉଁ ପଡ଼ିଲାବେଳେ ତା ଉପରେ ଶତ୍ରୁତା ସାଧେଁ, ତା'ହେଲେ କଣ ହବ ? ଅଥଚ ମୁଁ ଯଦି ଏଇ ମୁହୂର୍ତ୍ତରେ ରାମର ଗାଳିକୁ ବା ଶ୍ୟାମର କୁହାକୁ ପରମୁହୂର୍ତ୍ତରେ ଭୁଲିଯାଏଁ, ତା'ହେଲେ କଣ ହବ ? ପୃଥିବୀରେ ଆଜି କାଲି ଏଇ ଯେ ବାଡ଼ିଆବାଡ଼ି, କାମୁଡ଼ାକାମୁଡ଼ି—ଏ ତ ସେଇ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ଏକା କରିବାର ଚେଷ୍ଟାର ଫଳ; ସେଇ ଦଶ ଜଣଙ୍କ ମତର ଅଧୀନତାର କାରସାଦି ।

(କ୍ରମଶଃ)

ପ୍ର : ଆ :—ବରଟ୍ରାଣ୍ଡ ରସେଲ୍‌ଙ୍କ ଦର୍ଶନ ପଢ଼ି ମୋ ମନରେ ଯେ-ଭାବ ହୋଇଥିଲା ତାର ଫଳ ଏ ।



(ନବଭାରତ ପୃ. ୯ ରୁ ୧୦)
୪ର୍ଥ ବର୍ଷ—୧ମ ସଂଖ୍ୟା
ମିଥୁନ-୧୩୪୪/୧୯୩୭

# ଆକାଶ କଇଁଆ (୨)

ମୋର ଏ କଥାଟା ଶୁଣି ପଣ୍ଡିତମାନେ କହିବେ, ଏ ଖାଲି ଉଦ୍ଭଟ । ଉଦ୍ଭଟ କହିବାର ଅର୍ଥ ମୁଁ ଏ ପର୍ଯ୍ୟନ୍ତ ବୁଝିନାହିଁ । ସେ ଶବ୍ଦଟା ମୋ ଅଭିଧାନରେ ନାହିଁ । ତେବେ ଯୁକ୍ତିତର୍କ କରିବାର ଅନେକ ଜିନିଷ ଅଛି ସ୍ଥା ଭିତରେ । ଜୀବନର ପ୍ରତ୍ୟେକ ମୁହୂର୍ତ୍ତ ଅନ୍ୟ ମୁହୂର୍ତ୍ତଠାରୁ ସ୍ୱାଧୀନ କହିବା ଅର୍ଥ ଯେପରି କି ୧୦।୩୧ ମିନିଟ୍ ସହିତ ୧୦।୩୨ ମିନିଟ୍‌ର କିଛିମାତ୍ର ସମ୍ବନ୍ଧ ବା ସମ୍ପର୍କ ନାହିଁ ଓ ରହି ନ ପାରେ । ତା ଯଦି ହୁଏ, ତାହେଲେ ଜୀବନରେ କାମ କରିବାର ଇଚ୍ଛା ବା ରହିବ କାହିଁକି, କିଏ କାମ କରିବ ଓ କାହିଁକି ? ତା ହେଲେ ଏ ସଂସାରର ଉଦ୍ଦେଶ୍ୟ କଣ ଓ ଅସ୍ତିତ୍ୱ କେଉଁଠାରେ ? ମୁଁ ପାଠ ପଢ଼ିଲି ଡେପୋଟି ହେବାକୁ, ମୋର ପେଟ ପୋଷିବାକୁ, ବାହାଘୋଳା ହୋଇ ପିଲାପିଚିକା ଧିଳି ମନ ଆନନ୍ଦରେ ଘର ସଂସାର କରିବାକୁ । ଭବିଷ୍ୟତ ସୁଖର ଏ ଆଶା ଓ କଳ୍ପନା ଯେବେ ମୋର ନଥାନ୍ତା, ମୁଁ ପାଠ ପଢ଼ିଥାନ୍ତି କାହିଁକି ? ତାପରେ ଏ ମୁହୂର୍ତ୍ତରେ ଯୁ କାମ ମୁଁ କରୁଛି, ତାର ଫଳ ଯେତେବେଳେ ମତେ ପର ମୁହୂର୍ତ୍ତରେ ଭୋଗିବାକୁ ହିଁ ପଡ଼ିବ, ଆଉ ଏ ମୁହୂର୍ତ୍ତରେ ମୁଁ ଯାହା କରୁଛି, ସେ ଯେତେବେଳେ ମୋର ପୂର୍ବତନ ମୁହୂର୍ତ୍ତମାନଙ୍କର ପରିଣାମ; ସେତେବେଳେ ମୋ ଜୀବନରେ ପ୍ରତ୍ୟେକ ମୁହୂର୍ତ୍ତଗୁଡ଼ିକ ସ୍ୱାଧୀନ, ଏକଥା କହିବା ବୋକାମିର ଲକ୍ଷଣ ନୁହେଁ କି ? ତାପରେ କାମ କରିବାର ଇଚ୍ଛା ହୁଏ ଯେତେବେଳେ, ଯାହା ସଙ୍ଗରେ କାମ କରିବାକୁ ହୁଏ ତା କଥାରେ ସ୍ଥିରତା ଥିଲେ । ଯଦି ପ୍ରତ୍ୟେକ ଲୋକ ପ୍ରତ୍ୟେକ ମୁହୂର୍ତ୍ତରେ ତାର ଗତି ବଦଳାଏ, ତା'ହେଲେ ତା ସାଙ୍ଗରେ ବା ତା କଥାରେ କାମ କରିହେବ କିମିତି ? କଥାରେ କହନ୍ତି, 'ବାଟପିଙ୍କ କଥାରେ ଠିକ୍ ନ ଥାଏ' । କାରଣ ସେ ବାଟପି । ପୁଣି କଥାରେ କହନ୍ତି, 'ଯାହାର କଥାରେ ଠିକ୍ ନ ଥାଏ, ସେ ପାଗଳ, ବାଇଆ' । ତାହେଲେ କଣ ମୁଁ ଏ ସାରା ସଂସାରଟାକୁ ଖାଲି ବାଟପି ବା ବାଇଆ କରିଦେବାକୁ କହୁଛି ? ଧର ମୁଁ ଯେବେ ସେହିକଥା କହୁଥାଏଁ—ତାହେଲେ ଦୋଷଟା ଯେ ମୋର କେଉଁଠାରେ, ମୁଁ ଦେଖିପାରୁନାହିଁ । ଏ ସଂସାରଟା ବର୍ତ୍ତମାନ ତ ଅଛି ସେଇଆ, କେବଳ ଗୋଟେ ବଡ଼ ରକମ 'କାଙ୍କେ' । କାଁ ଭାଁ ଗୋଟାଏ ଅଧେ ଲୋକ ଛାଡ଼ିଦେଲେ ଆଉ ସମସ୍ତେ ଯୁଆଡ଼ୁ ପବନ ବୁହେ, ତେଣେ ଆଉଜି ପଡ଼ନ୍ତି ନା ନାହିଁ ? ନିଜର ସ୍ୱାର୍ଥ-ସିଦ୍ଧି ପାଇଁ ଲୋକେ 'ରାମାୟ ସ୍ୱାହା' ପୁଣି 'ରାବଣାୟ ସ୍ୱାହା' କହନ୍ତି ନା ନାହିଁ ? ତେବେ ମୁଁ ସେ କଥା କହୁନାହିଁ । ମୁଁ କହୁଛି ସ୍ଥା କରିବା ଉଚିତ ନୁହେଁ, ଏଥିରେ ମନୁଷ୍ୟତା ନାହିଁ । ଏ କେବଳ ଦାସ-ଦାସତ୍ୱ । ମୋର ପ୍ରତ୍ୟେକ ମୁହୂର୍ତ୍ତର ସ୍ୱାଧୀନତା ଓ ମୋର ଗୋଟାଏ ଧାରା ବା ନିୟମ ବାନ୍ଧି କାମ କରିବା ଓ କହିବାରେ ଅସାମଞ୍ଜସ୍ୟ କିଛି ନାହିଁ

ବରଂ ଦୁଇଟାଯାକ ମୋ ମନୁଷ୍ୟ ଜୀବନର ହକ୍ ଅଧିକାର । କିମିତି ? ମୁଁ ଗୋଟିଏ ଫୁଲର ହାର ଗୁନ୍ଥିଲି । ସେ ହାରରେ ପ୍ରତ୍ୟେକ ଫୁଲ ଅନ୍ୟ ଫୁଲଠାରୁ ଭିନ୍ନ । ହାର ଭିତରେ ଗୋଟିଏ ଫୁଲ ରହିଲେ କିଛି ବିଡ଼ମ୍ବନା ହେବନାହିଁ, ସୁନ୍ଦର ନ ଦିଶିପାରେ, ହାରର ସାର୍ଥକତା କିଛି ନ ଆଇପାରେ, କିନ୍ତୁ ଫୁଲର ସ୍ୱାଧୀନତା ଓ ସାର୍ଥକତାରେ ବାଧା ପଡ଼ିବ ନାହିଁ । ପ୍ରତ୍ୟେକ ଫୁଲ ତା ନିଜ ଡେମ୍ପରୁ ନିଜର ବାସନା ଓ ସୌନ୍ଦର୍ଯ୍ୟ ଘେନି ଆସିଛି । ସେହିପରି ମୋର ଏ ଜୀବନର ମୁହୂର୍ତ୍ତଗୁଡ଼ାକ ପରସ୍ପରଠାରୁ ସ୍ୱାଧୀନ, ଅଥଚ ସେମାନଙ୍କୁ ଏକ କରିଦେଲେ ମୋର ଜୀବନ । ମୋ ଜୀବନର ଗୋଟିଏ ଗୋଟିଏ ମୁହୂର୍ତ୍ତକୁ ଅଲଗା ଅଲଗା କରି ବିଚାର କଲେ, ମୋ ଜୀବନର କାମ ଓ ଲକ୍ଷ୍ୟ ବୁଝି ନ ହୋଇପାରେ, କିନ୍ତୁ ତା ବୋଲି ମୋର ସେଇ ମୁହୂର୍ତ୍ତରେ ସ୍ୱାଧୀନ ଅସ୍ତିତ୍ୱରେ ବାଧା ପଡ଼ିବନାହିଁ । ମୁଁ ଏ ମୁହୂର୍ତ୍ତରେ ଯେ କାମ କଲି ସେଇ ହେଲା ସେଇ ମୁହୂର୍ତ୍ତର ସାର୍ଥକତା । ସେ କାମର ଫଳ ସାଙ୍ଗରେ ଏ ମୁହୂର୍ତ୍ତର କୌଣସି ସମ୍ବନ୍ଧ ନାହିଁ । କାରଣ ମୁଁ ଯେ କାମ କରିବି, ତାର ଫଳ ଯେ ନିଶ୍ଚୟ ଫଳିବ ତାର କିଛି ଠିକଣା ନାହିଁ । ପୁଣି ସେ ଫଳ ଯେ ମୋ ଆଶା ଅନୁସାରେ ହେବ ତାର ମଧ୍ୟ କିଛି ସମ୍ଭାବନା ନାହିଁ । ମୁଁ ଯଦି ଏଇ ମୁହୂର୍ତ୍ତରେ କାହାରିକୁ ଦି' ବିଧା କଷି ଦିଏ, ତାହେଲେ ପରମୁହୂର୍ତ୍ତରେ ସେ ମତେ ତି' ବିଧା ଫେରାଇ ଦେଇପାରେ, ମୋ ନାଁରେ ମକଦ୍ଦମା କରିପାରେ, ମନରେ ଗାଁ ଗାଁ ହୋଇ କିଛି ନକରି ପାରେ ଅଥବା ଭୁଲିଯାଇପାରେ । ମତେ ମୋ ସାଙ୍ଗ କାଳିନ୍ଦି କି ହରିଶ ଦି' ବିଧା ପକାଇଲେ ମୁଁ ହୁଏତ ଗୋଟାଏ ଲଙ୍କା ଯୁଦ୍ଧ ଭିଆଇପାରେ । ଅଥଚ ମୋ ଉପରି ହାକିମ * ବିଧା ପକାଇଲେ, ମୁଁ ହୁଏତ ତାଙ୍କ ହାତ ପୋଛିଦେଇ କହି ପାରେଁ, "ଆହା, ଆହା, ଶ୍ରୀଗ୍ରୁମୁଙ୍କ ହାତକୁ କେଡ଼େ କାଟିଥିବ ।" ମୁଁ ବନସିରେ ଯୋପ ପକେଇ ବସିଚି, ମାଛ ପଡ଼ିବ ମୁଁ ଖାଇବି । ମାଛ ନ ପଡ଼ିପାରେ, ମୋର ଖିଆ ମଧ୍ୟ ନ ହୋଇପାରେ । ମୁଁ ଭାତ ଥାଳି ଘେନି ଖାଇବାକୁ ବସିଚି, ଏପରି ଘଟଣା ଘଟିଯାଇପାରେ ଯେ, ମୁଁ ଖାଇପାରେ ନାହିଁ । ଏ ସଂସାରରେ ନିରାଶାର ଭଙ୍ଗା ମନ ଯେତେ, ଆଶାର ଫୁଲ୍ଲମନ ତା'ଠାରୁ ଢେରଢେର କମ । ସେଇହେତୁରୁ ଗୋଟାଏ ଅଧେ ଆଶା କୁଠେଇଁ ସଫଳ ହେଲେ ଆମେ ଏପରି କୃତକୃତ୍ୟ ହୋଇଯାଉଁ ଯେ ସେ କଥାଟା ଡେଙ୍ଗୁରା ଦେଇ ବସୁଁ । ଲୋକେ ଜାଣନ୍ତି ଆଶା ସଫଳ ହୋଇଚି । ନିରାଶା କିନ୍ତୁ ଘର-କୁଣରେ ବସି କାନ୍ଦେ । ତାର ଦୁଃଖ କେହି ଦେଖନ୍ତି ନାହିଁ, କେହି ଶୁଣନ୍ତି ନାହିଁ । ଏଥିପାଇଁ ନିରାଶାର ବଡ଼ ସଂସାରରେ ଜଣାଶୁଣା ଭାବରେ ଖେଳପାରେ ନାହିଁ । ତେବେ ଆମେ ଦେଖିଲୁଁ, ଭବିଷ୍ୟତ ଫଳ ସାଙ୍ଗରେ ବା ଅତୀତର କାମ ସାଙ୍ଗରେ ମୋର ଏଇ ମୁହୂର୍ତ୍ତର କୌଣସି ନିର୍ଭର ନାହିଁ । ଏଥିପାଇଁ ଗୀତାରେ କହିଚନ୍ତି—ଫଳାଫଳ ନେଇ ମନୁଷ୍ୟର ମୁଣ୍ଡଘୂରାଇବା ବୃଥା । ତାକୁ ମାତ୍ର କାମ କରିଯିବାକୁ ହେବ । ଫଳ ଭଗବାନଙ୍କ ହାତରେ । ଅବଶ୍ୟ କେତେକ କହିପାରନ୍ତି ଯେ, ଏ ସନ୍ନ୍ୟାସୀର କଥା,

ଯୋଗୀର ମତଲବ । ସଂସାରୀ ଗୃହସ୍ଥ ଏପରି ଭାବ ଆଣିପାରେ ନାହିଁ ମନରେ, ଆଉ ଆଣିଲେ ସଂସାରଟା ଟେକିବ ନାହିଁ । କିନ୍ତୁ କଥାଟା ଏକାବେଳେକେ ଭୁଲ । ଯଦି ସଂସାରର ସବୁଲୋକ ଆଶା ଓ କାମନା ଛାଡ଼ିଦିଅନ୍ତି, ତାହେଲେ କିଛି କ୍ଷତି ହବ ନାହିଁ ବରଂ ଅନେକ ଲାଭ । ମନୁଷ୍ୟଟାକୁ ଏପରି ଭାବରେ ତିଆରି କରିଚନ୍ତି ଭଗବାନ ବା ପ୍ରକୃତି ଯେ, ସେ କାମ ନ କରି ରହିପାରେ ନାହିଁ । କୌଣସି ଆଶା, କୌଣସି ବାସନା ନ ଥିଲେ ମଧ୍ୟ ମଣିଷ କାମ କରିଯାଏ । ମା'ର ବାଇଶି ବର୍ଷର ପୁଅ ମରିଯାଏ, ତା ମନରେ କେତେ ନିରାଶା କେତେ ବୈରାଗ୍ୟ ଆସି ପହଞ୍ଚିଯାଏ ସେତେବେଳେ । ତଥାପି ସେ ତ ଚୁନଟି ହୋଇ ବସି ରହିପାରେ ନାହିଁ । କାମ କରିଯାଉଥାଏ; ସେ ପାଣିରେ ବୁଡ଼ି ମରିବାକୁ ହଉ, ଦଉଡ଼ି ଲଗେଇବାକୁ ହଉ, କନିଆର ମଞ୍ଜି ଖାଇବାକୁ ହଉ, ପାଗଳ ପରି ବାଣ୍ଡରେ ଘାଟରେ ବୁଲିବାରେ ହେଉ ଅଥବା ଗୃହ ଜଞ୍ଜାଳରେ ବୁଡ଼ି ରହିବାକୁ ହଉ । ଯୋଗୀ କାମନା ବିନାଶ କରି ନିଷ୍କର୍ମା ହୋଇ ବସି ରହିପାରେ ନାହିଁ । ସେ ମଧ୍ୟ କାମ କରିଯାଏ; ଯୋଗସାଧନାରେ ହେଉ, ପରୋପକାରରେ ହେଉ, ଧର୍ମ ସଂସ୍ଥାପନାରେ ହଉ । ତା ପରେ ଆଶା ମନୁଷ୍ୟ ମନରେ ଜନ୍ମଦିନରୁ ଅସ୍ଥାନ ମାଡ଼ି-ବସେ । କିଏ କୋଟିପତି ହୋଇ ବିଳାସ ବ୍ୟସନରେ ଜୀବନଟାକୁ ଭସାଇଦେବାକୁ ଆଶାକରେ, କିଏ ଅବା ଯୋଗ ଧ୍ୟାନ କରି ଭଗବତ୍ ପ୍ରେମରେ ଜୀବନଟାକୁ ଭସାଇ-ଦେବାକୁ ଚେଷ୍ଟାକରେ । ଆଶା ରହିଚ । ଆଶା ରହିବ । ଆଉ ଆଶା ହିଁ ମଣିଷକୁ ତା କାମରେ ଘଉଡ଼େଇ ନବ । କିନ୍ତୁ ସେଇ ଆଶାଟା ଅଭିଳାଷରେ ପହଞ୍ଚି ଯାଇପାରେ ଅଥବା ଆଶାଟା ଆଶା ହୋଇ ରହିଯାଇପାରେ । ଯେତେବେଳେ ଆଶା ଅଭିଳାଷ ହୁଏ, ସେତେବେଳେ ସେ ମୋ ଜୀବନକୁ ବେଡ଼ି ଶାଙ୍କୋଳି ଦେଇ ନିଗଡ଼ ପାଶରେ ବାନ୍ଧି ରଖେ । ଆଉ ଯେତେବେଳେ ଆଶା କେବଳ ଆଶା ହୋଇ ରହେ, ସେତେବେଳେ ସେ ସ୍ୱତାଖିଅ ହୋଇ ମୋ ଜୀବନର ମୁହୂର୍ତ୍ତଗୁଡ଼ିକୁ ଗୁନ୍ଥି ହାର ତିଆରିକରେ । ମତେ କାମରେ ଲଗେଇ ରଖେ, ମୋର ଜୀବନରେ ପୂର୍ଣ୍ଣତା ଆଣେ । କଥାଟା ସରଳ । ବୋଧହୁଏ ବୁଝେଇ କହିବା ଦରକାର ନାହିଁ ।

ତା' ହେଲେ ଆମେ ଦେଖିବୁଁ, ମୋ ଜୀବନର ପ୍ରତ୍ୟେକ ମୁହୂର୍ତ୍ତଟା ଅନ୍ୟ ମୁହୂର୍ତ୍ତଠାରୁ ସ୍ୱାଧୀନ ବୋଲି କହିବାରେ ଓ ଅଭ୍ୟାସ କରିବାରେ ମଣିଷ ବାଆଜି ହୋଇଯାଏ ନାହିଁ କି ନିଷ୍କର୍ମା ହୋଇ ବସି ରହେନାହିଁ । ତେବେ ମୋର କଥା ଓ କାମ ଯେବେ 'ଘଡ଼ି ଘଡ଼ିକେ ଆନ' ହୋଇଯାଏ, ତା' ହେଲେ କାମର ପୂର୍ଣ୍ଣତା ଆସିବ କେଉଁଠାରୁ ଓ କାମର ସହଯୋଗ ମିଳିବ କିପରି ?

ମୁଁ ଏଗୁଡ଼ାକ ଖାଲି ମନଗଢ଼ା କଥା କହୁନାହିଁ । ପୃଥିବୀର ବଡ଼ ବଡ଼ ଧର୍ମ କେତୋଟାରୁ ମୁଁ ଯାହା ବୁଝିଚି—ମୋର ମନେହୁଏ ଯେପରି, ସବୁ ଧର୍ମରେ ଏଇ

ବ୍ୟକ୍ତିଗତ ମୁକ୍ତି ଓ ସ୍ୱାଧୀନତା ସେମାନେ ହୁକୁମ କରିଯାଇଛନ୍ତି । ଧର୍ମ ସବୁଯୁଗରେ, ସବୁଦେଶରେ, ସବୁ ସଭ୍ୟତାରେ ବ୍ୟକ୍ତିଗତ । ଧର୍ମର ମୁକ୍ତି, ମୋକ୍ଷ ବା ନିର୍ବାଣ ପାଇବା ପାଇଁ ଦେଶ, ସମାଜ, ଜାତି କାହାରିକୁ ଅପେକ୍ଷା କରିବା ଦରକାର ନାହିଁ । ଏଇ ଭାଇ ବନ୍ଧୁ କୁଟୁମ୍ବଙ୍କୁ ମାରିବେ ନାହିଁ ବୋଲି ଅର୍ଜୁନ ଯେତେବେଳେ ଅସ୍ତ୍ରଶସ୍ତ୍ର ଥୁଣ୍ଟି ବସିଗଲେ ବୈରାଗ୍ୟରେ—ସେତେବେଳେ ଭଗବାନ ଶ୍ରୀକୃଷ୍ଣ ତାଙ୍କୁ କହିଥିଲେ, "ପ୍ରକୃତ ବୈରାଗ୍ୟ ଏହା ନୁହେ । ସେ ତାଙ୍କୁ କହିଥିଲେ, ତୁମର ଏ ଭାଇବନ୍ଧୁ କୁଟୁମ୍ବମାନଙ୍କୁ ମରାଇ ଓ ମାରି ତୁମେ ଯେବେ ଜୟଯୁକ୍ତ ହୁଅ ତା' ହେଲେ ଏ ପୃଥିବୀ ଗୋଟାକଯାକର ମାଲିକ ହବ; ନହେଲେ ତୁମେ ଯଦି ସେଥିରେ ମର, ତା' ହେଲେ ତୁମେ ସ୍ୱର୍ଗକୁ ଯିବ ।" ଯିଶୁ ଓ ମହମ୍ମଦଙ୍କର ଜୀବନ ଏଇ ଦଳଦାସତ୍ୱରୁ ନିଜକୁ ମୁକୁଳେଇ ତାଙ୍କ ନିଜ ବ୍ୟକ୍ତିଗତ ସ୍ୱାଧୀନତା ଓ ମୁକ୍ତି ପାଇବାର ଗୋଟାଏ ଅପାର ଅଦ୍‌ଭୁତ ଚେଷ୍ଟା ।

ଯାଉ, ମୁଁ ଧର୍ମ ନେଇ ଗୋଳମାଳ କରିବାକୁ ଏଗୁଡ଼ାକ ଲେଖୁନାହିଁ । କେବଳ କହୁଥିଲି ଯେ ମୋର ସ୍ୱାଧୀନତା ମୁଁ ପାଇଚି ମୋର ଜନ୍ମଦିନରୁ, ପ୍ରକୃତି ହାତରୁ; ଏବଂ ତା' ପଛରେ ଅଛି ଧର୍ମର ଅନୁମତି । କେବଳ ପାଞ୍ଚଜଣଙ୍କ ମୁହଁକୁ ଚାହିଁ, ମୋ ଜୀବନ ଗଢ଼ିବା ଖାଲି ମନୁଷ୍ୟର କାମ ନୁହେଁ ବୋଲି କହିଲେ ଯଥେଷ୍ଟ ହବନାହିଁ—ସେ ଏକାବେଳେକେ ପଶୁପଣ । ଗାଈଗୋଠରେ, ମେଣ୍ଢାପଲରେ, ହାତୀପଲରେ ଜଣେ ଯୁଆଡ଼େ ଯାଏ, ଆଉ ସମସ୍ତେ ତେଣେ ଯା'ନ୍ତି । ମନୁଷ୍ୟ ଯାଏ ନାହିଁ, ମନୁଷ୍ୟର ଯିବା ଉଚିତ ନୁହେଁ—ଏଇଥିରେ ହିଁ ମନୁଷ୍ୟର ପଶୁଠାରୁ ବଡ଼ ବାହାଦୁରି ।

ବର୍ତ୍ତମାନ କଥା ହୋଇପାରେ ମୁଁ ଯେବେ ମୋ ମନକୁ ଯାହା ଆସିଲା କରିଯିବି, ମୁଁ ଯେବେ ମୋ କାମଦାମରେ ପୁରା ସ୍ୱାଧୀନ ହୁଏ, ତା' ହେଲେ ଏ ରାଜ୍ୟ ଚଳିବ କିପରି ? ମୋ ଦେହରେ ବେଶୀ ଜୋର, ମୁଁ ଦୁର୍ବଳକୁ ମାରି ସର୍ବସ୍ୱ ଲୁଟି ନେଇପାରେ । ମୋର ବେଶି ବୁଦ୍ଧି, ମୁଁ ବୋକା ଧନୀ ପୁଅକୁ ଠକାଇ ଟଙ୍କା ପଇସା ନେଇଯାଇପାରେ । ଏସବୁ ତେବେ କ'ଣ ଭଲ ? ଏସବୁ ତେବେ କ'ଣ ରୋଧିବାର କିଛି ଦରକାର ନାହିଁ ? ମୁଁ କହେଁ, ସ୍ୱାକୁ ରୋଧିବାର ପ୍ରକୃତରେ କିଛି ମାତ୍ର ଦରକାର ନାହିଁ । ମଣିଷ ଲଙ୍ଗଳା ହୋଇ ଜଙ୍ଗଲରେ ବୁଲିବା ଦିନଠାରୁ ଆଜିର ଏଇ ସଭ୍ୟଯୁଗ ଯାଏ, ସ୍ୱାକୁ ରୋକିବା ପାଇଁ କେତେ ଆଇନକାନୁନ୍, କେତେ କାଇଦା କଟକଣା ହୋଇ ଆସିଛି; ଆହୁରି ମଧ୍ୟ କେତେ ହଉଚି । ତଥାପି ସବଳ ମେଲିଖୋଲି ଭାବରେ ଦୁର୍ବଳ ଉପରେ ଅତ୍ୟାଚାର କରିଯାଉଚି । ରାବଣର ସୀତା-ହରଣଠାରୁ ଇପି ଫକିରଙ୍କର ହିନ୍ଦୁ ଯୁବତୀ ଅପହରଣ ପର୍ଯ୍ୟନ୍ତ; ପୂତନାର କଅଁଳା ପିଲା ମାରଣଠାରୁ ହପ୍‌ଟମାନର ଯାଇବ ଛୁଆ ମାରଣ ପର୍ଯ୍ୟନ୍ତ ସବୁ ପ୍ରକାର ଅତ୍ୟାଚାର, ଅନାଚାର ହୋଇଯାଉଚି । ଯେ ହାରିଯାଉଚି ତା'ର ଅଧର୍ମ, ପାପ, ଅନ୍ୟାୟ । ଯେ ଜିତିଯାଉଚି ତା'ର ଧର୍ମ, ପୁଣ୍ୟ ଓ ନ୍ୟାୟ ।

ନେପୋଲିୟନ ଭାବିଥିଲେ, ଇଉରୋପରେ ଗୋଟିଏ ସାମ୍ରାଜ୍ୟ ସ୍ଥାପନ କରିବେ । ଆଲେକ୍‌ଜାଣ୍ଡର ଓ ସିଜର ମଧ୍ୟ ସେଇଆ ଭାବିଥିଲେ । କାଇଜର ମଧ୍ୟ ସେଇଆ ଭାବିଥିଲେ । ନେପୋଲିୟନ ହାରିଗଲେ ତାଙ୍କର ବନବାସ । ଆଲେକ୍‌ଜାଣ୍ଡର ଓ ସିଜର ଜିତିଗଲେ, ସେ ହେଲେ ମହାପୁରୁଷ ଓ ମହାବୀର । କାଇଜର ହାରି ନଥିଲେ କି ଜିତି ନଥିଲେ ବୋଲି ତାଙ୍କର ହେଲା ଦେଶ ବାହାର । ଦୋକାନୀ ପସରା ମେଲେଇ ବସିଚି । ଜିନିଷ ବିକୁଚି । ଜାଣିବା ଲୋକେ, ଚହ୍ଲିବା ଲୋକେ ପାଞ୍ଚ ପଇସାର ମାଲକୁ ପାଞ୍ଚ ପଇସା ଦେଇ ନେଉଚନ୍ତି । ଅଗୁଆଁର, ଅଚହ୍ଲିବା, ପାଞ୍ଚ ପାଇଁ ପଚିଶ ଦେଉଚନ୍ତି । ସେହିପରି ଔଷଧ-ଖାନାରେ, ବଜାର ହାଟରେ ଇସ୍କୁଲ କଲେଜରେ, ଖେଳପଡ଼ିଆରେ ଓ ମଶାଣି ଭୂଇଁରେ ସବୁଠେଇଁ ଠକେଇ ଚାଲିଚି । ମୁଁ ବଜାରକୁ ଗଲି, ଦେଖିଲି କେତେ ମାଛ ପସରା ବସିଚି । ଭଲ ମାଛଟିଏ ନେଇ କେଉଟୁଣୀକି ପଚାରିଲି 'ଏ ମାଛ ଭଲ ?' ସେ କହିଲା, 'ହଁ, ଟଟକା' । ମୁଁ ବାରଗଣ୍ଡା ପଇସା ଦେଇ ନେଇଆସିଲି ସେ ମାଛକୁ । ଘରେ ରାନ୍ଧି ଖାଇଲାବେଳକୁ ଦେଖିଲି ସେଇଟା ପୋଚା । ମୁଁ ଯଦି ଯାଇ କେଉଟୁଣୀକି ମାଛ ଫେରାଇଦେବି, ସେ ନେବ ? ମୋ ପଇସା ଫେରାଇଦେବ ? ସେ ଫେରାଇ ନଦେଲେ ମୁଁ ଯେବେ ତା'ଠାରୁ ପଇସା ଛଡ଼ାଇନେବି, କି ତାକୁ ଚାପୁଡ଼ାଏ ପକାଏଁ, ତା'ହେଲେ ମୁଁ ଆଇନ ହାତରୁ ରକ୍ଷା ପାଇବି ? ହାକିମ ମତେ ଛାଡ଼ିଦେବେ ? ଅଇନ ବ୍ୟବସାୟୀ-ମାନେ କହିବେ, ଏହା ଯୁକ୍ତିର କଥା ତୁମେ ଦେଖିଲ, ଚହ୍ଲିଲ, ପରୀକ୍ଷା କଲ, ନେଲ । ତୁମ ବୋକାମି ହେତୁରୁ ତୁମେ ଯେବେ ଭଲମନ୍ଦ ଚହ୍ଲିନପାର, ତା'ହେଲେ ସେଥିପାଇଁ ତୁମେ ଦାୟୀ । ବିଚାରି କେଉଟୁଣୀ ଦାୟୀ ହେବ କିଆଁ ? ଏ ଯେଉଁ ଠକାମିକୁ ଛାଡ଼ିଦେବା ନ ହୁଏ, ତା' ହେଲେ ଆଉ କ'ଣ ହୋଇପାରେ !

ଆମେ ଦେଖିଲୁ, ଦେଖୁଚୁଁ ଓ ଅନୁଭବ କରୁଚୁଁ ଯେ ଯାହାର ଯାହା ମନ ହେଉଚି, ସେ କରିଯାଉଚି । ତାକୁ ରୋଧିବା ଅସମ୍ଭବ । ଯଦି ରୋଧି ହୁଏ, ତା'ହେଲେ ସେ କେବଳ ଗରିବ ନିଃସହାୟକୁ । ଏସବୁ ସେଇ ଦଣ-ଦାସତ୍ୱର ଫଳ । ଏଥିରେ ବ୍ୟକ୍ତିଗତ ସ୍ୱାଧୀନତା ନାହିଁ; ଏ କେବଳ ଦଣଙ୍କର କୋଟିଙ୍କ ଉପରେ ହାକିମି ମାତ୍ର । ତା'ପରେ ମନୁଷ୍ୟ ବ୍ୟକ୍ତିଗତ ସ୍ୱାଧୀନତା ପାଇଲେ ସେ ଯେ ଯଥେଚ୍ଛାଚାର କରିଯିବ, ଏହା କହିବା ଓ ଭାବିବା ବିଡ଼ମ୍ବନା । ମଣିଷର ଦେହ ଦେବତା'ର ମନ୍ଦିର, ମଣିଷର ମନ ଲକ୍ଷ୍ମୀଙ୍କର ଖେଳଘର । ସେଥିରେ ଅନ୍ୟାୟ, ପାପ, ଅତ୍ୟାଚାର ସ୍ଥାନ ପାଇବାର ନାହିଁ । ଯେତେବେଳେ ଦଣଙ୍କ ଦାଉରେ ମନୁଷ୍ୟ ନିଜର ପ୍ରକୃତି ଓ ପ୍ରବୃତ୍ତିକୁ ଦବେଇରଖି ସୁଆଙ୍ଗର ନାଟବାଲା ପରି ବ୍ୟବହାର କରିବାକୁ ବାଧ୍ୟ ହୁଏ, ସେତେବେଳେ ତା'ମନରେ ପାପ, ଅତ୍ୟାଚାର ଓ ଅନାଚାର ଆସି ଗାଦିମାଡ଼ି ବସେ । ଇମିତି ଗୋଟାଏ ଅଭ୍ୟାସ ପଡ଼ିଗଲାଣି ଆମର ଯେ, ଆମେ ଯାହା କହୁଁ, ଯାହା କରୁଁ; ତା ସେଇ ଦଣଙ୍କ ମୁହଁରୁ କି ? ଆଉ ସେ ଦଣ କିଏ ? ରାମା, ଶ୍ୟାମା, ଧିମା, କପିଳା, ନା, ମିଃ. ଅମୁକ, ପଣ୍ଡିତ

ସମୁକ, ସାଙ୍ଗ କ, ଦେବାନ ବାହାଦୁର ଖ, ରାୟବାହାଦୁର ଗ, ଖାଁ ବାହାଦୁର ଚ, ମହାରାଜା ଅମୁକ ଓ ନବାବ ସମୁକ । ରାମା, ଶ୍ୟାମା, ଧିମାଙ୍କର ନିଜ ବିଷୟରେ କିଛି କହିବାର ଅଧିକାର ନାହିଁ । ତାଙ୍କର ଯେ ଗୋଟାଏ ମତ, ଗୋଟାଏ ମତଲବ ଥାଇପାରେ, ଏ ବିଶ୍ୱାସ ଆମର ନାହିଁ । ସବୁ ହେଉଛି ଏଇ ମୁଖିଆମାନଙ୍କ ଦ୍ୱାରା, ତାଙ୍କରି ମନ ତାଙ୍କରି ରୁଚି ଓ ତାଙ୍କରି ଧାରଣା ଅନୁସାରେ । ଆମେ ଆଇନ ତିଆରି କଲୁ, କାହାପାଇଁ ? ଗରିବ ପାଇଁ ? ଏ ଆଇନ ଧନୀର । ଭାରତୀୟ ପେନାଲ କୋଡ଼ଟା ଟିକିଏ ବିଚାର କରି ବସିଲେ ଆପଣମାନେ ଦେଖିବେ, ସେଥିରେ ଧନୀ, ଦୋଷୀ ଖସିଯିବା ପାଇଁ ଯେତେ କୌଶଳ ଅଛି, ଗରିବ ନିର୍ଦ୍ଦୋଷକୁ ଡେଣ୍ଟେଇବା ପାଇଁ ସେତିକି ଖାପଚ ରହିଛି । ଏ ଆଇନକାନୁନ୍ ଦଶଙ୍କର ଆଇନ କାନୁନ୍ । ଏଥିରେ ବ୍ୟକ୍ତିଗତ ସ୍ୱାଧୀନତାର ନାମ ନାହିଁ ।

ତଥା ହେଉଛି, ବ୍ୟକ୍ତିଗତ ସ୍ୱାଧୀନତା ବଜାଏ ରଖି ଆଇନକାନୁନ ହୋଇ-ପାରେ କିପରି ? ଆଇନକାନୁନ ରହିବା ଅର୍ଥ, ଗୋଟାଏ ରାଜ୍ୟ, ଗୋଟାଏ ସରକାର ରହିବ । ଆଉ ସରକାର ରହିଲେ ବ୍ୟକ୍ତିଗତ ସ୍ୱାଧୀନତା ଆସି ନ ପାରେ । ଏପରି ଯୁକ୍ତି ଯେଉଁମାନେ କରନ୍ତି, ସେମାନଙ୍କର ପ୍ରକୃତ ରାଜନୀତି ବା ରାଷ୍ଟ୍ରନୀତି ସମ୍ବନ୍ଧରେ କୌଣସି ଧାରଣା ନାହିଁ ବୋଲି ମୋର ମନେହୁଏ । ମୋର ବ୍ୟକ୍ତିଗତ ସ୍ୱାଧୀନତା ଅବାଧ ସ୍ୱାଧୀନତା ହୋଇ ନ ପାରେ । ପ୍ରକୃତି କରେଇ ଦବନାହିଁ; ମୋର ସ୍ୱାର୍ଥ ମଧ୍ୟ କରେଇ ଦବ ନାହିଁ । ମୁଁ ଯଦି ରାମକୁ ମାରେ, ରାମ ମତେ ବାଡ଼ି ଯେନି ଗୋଡ଼ାଇବ । ମୁଁ ଯଦି ତୁମ ଘରୁ ଚୋରି କରିବାକୁ ଯାଏଁ, ତା'ହେଲେ ତୁମେ ପିସ୍ତଲ ଧରି ମତେ ଖୁଣ୍ କରିବ । ଅତଏବ ମୋର ସ୍ୱାର୍ଥ ଲାଗି ମତେ ତୁମର ସ୍ୱାର୍ଥ ଦେଖିବାକୁ ପଡ଼ିବ । ଫଳରେ ମତେ କେତେକ ପରିମାଣରେ ମୋର ସ୍ୱାଧୀନତା ବଜାଏ ରଖିବା ପାଇଁ ଜଗି ଚାଲିବାକୁ ହବ ହିଁ ହବ । ସେହିପରି ଅନ୍ୟଦିଗରେ ମୋର ସମ୍ପତ୍ତି, ମୋର ସ୍ୱାର୍ଥ ପର ହାତରୁ ବଞ୍ଚାଇବା ପାଇଁ ମୋର ସାହାଯ୍ୟ ଦରକାର । ମୋର ଏଇ ସ୍ୱାର୍ଥ ଦୃଷ୍ଟିରୁ ମୋର ଗୋଟାଏ ରାଷ୍ଟ୍ରର ଅଙ୍ଗ ହୋଇ ରହିବା ଆବଶ୍ୟକ । ଏ ରାଷ୍ଟ୍ରଟା ମୋ ପାଇଁ, ମୁଁ ରାଷ୍ଟ୍ର ପାଇଁ ନୁହେଁ । ଏ ରାଷ୍ଟ୍ରର ଯାହା ଆଇନକାନୁନ ତିଆରି ହେବ ମୋର ବ୍ୟକ୍ତିଗତ ସ୍ୱାଧୀନତାକୁ ବଜାଏ ରଖିବା ପାଇଁ; ରାଷ୍ଟ୍ରନେତାମାନଙ୍କ ସ୍ୱାର୍ଥଯଜ୍ଞରେ ମତେ ବଳିଦେବା ପାଇଁ ନୁହେଁ । ଅବଶ୍ୟ କଥାଟା ଆଜିକାଲିକା ପାଣି ପବନରେ ଖରାପ ଶୁଣାଯିବ ବୋଧହୁଏ । ସାମ୍ୟବାଦ, ସାମାଜିକବାଦ, ବଳସେବିବାଦ ଇତ୍ୟାଦି ଏ ବହୁ-ବାଦ ଯୁଗରେ ବ୍ୟକ୍ତିଗତ ସ୍ୱାଧୀନତା ଲଙ୍କାରେ ରାମାୟଣ ପଢ଼ିଲା ପରି ଲାଗିପାରେ । ଅବଶ୍ୟ ଗଣତନ୍ତ୍ର, ସାମ୍ୟବାଦ, ସାମାଜିକବାଦ, ବଳସେବିବାଦ ସବୁ ଆରମ୍ଭ ଏଇ ବ୍ୟକ୍ତିଗତ ସ୍ୱାଧୀନତାରୁ । ସମସ୍ତେ କହନ୍ତି ଯେ ସବୁ ମଣିଷ ସମାନ, ଅର୍ଥାତ ସମସ୍ତଙ୍କର ସମାନ ଭାବରେ କରିବାର, ବୋଲିବାର, କହିବାର ଅଧିକାର ଅଛି । ମୋଟଉପରେ ପ୍ରତ୍ୟେକ ଲୋକ ସ୍ୱାଧୀନ ।

କିନ୍ତୁ ସେ କଥାଟା ସେଇଠି ଲୁଚିଯାଏ । ତା'ପରେ ଆସେ ଫରାସୀ ବିପ୍ଳବର ମଣିଷମାରୁ ଯାଉଳାଗି, ରୁଷ ବିପ୍ଳବର ଭଙ୍ଗାରୁଜା ବାହାଦୁରି ଓ ନାଜି—ଫାସିଷ୍ଟ ଦଳର କଇଦ-ଖାନା ଗିରି । କଥାଟା ଏଇପରି ଭାବରେ ହେଉଯାଏ । ସମସ୍ତେ ଯେବେ ସ୍ୱାଧୀନ ଓ ସମସ୍ତଙ୍କର ଯେବେ ସମାନ ଅଧିକାର ଥାଏ, ତା'ହେଲେ ବଡ଼ଲୋକ କାହିଁ କୋଠା ଘରେ ରହିବ, ଆଉ ଗରିବ କାହିଁ କୁଡ଼ିଆ ଘରେ ରହିବ ? ଅତଏବ, କୋଠାଘର ସବୁ ଭାଙ୍ଗିଦେଇ ରାଜ୍ୟଟାଯାକ କୁଡ଼ିଆ ଘର କରି ଦିଆଯାଉ । ଧନୀର ଧନ ବୁହାଇଦେଇ ତାକୁ ମଧ୍ୟ କାଙ୍ଗାଳ କରିଦିଆଯାଉ । ମୋର ଯଦି ନାକ ନାହିଁ, ତାହାହେଲେ ସମସ୍ତଙ୍କୁ ସୂର୍ପଣଖା କରିଦିଆଯାଉ । ବୁଝି ହୁଏନାହିଁ ଏହାଦ୍ୱାରା କାହାର କି ଲାଭ ? ଧନୀର ଧନ ଗଲା, ମାନୀର ମାନ ଗଲା, ଗୁଣୀର ଗୁଣ ଗଲା । ସେମାନଙ୍କର ହେଲା କି ଲାଭ ? ଆଉ ଯେଉଁ ଗରିବମାନଙ୍କ ନାଁରେ ଏସବୁ କରାଗଲା; ସେମାନେ ପାଇଲେ କଣ ? ଫରାସୀ ବିଦ୍ରୋହବେଳେ ଯେ ଧନ ଲୁଟି ହୋଇଥିଲା, ତାହା ମୁଖିଆ କେତେଜଣଙ୍କ ହାତରେ ପଡ଼ିଲା । ଗରିବଙ୍କ ପେଟରେ ଯେ ଓଦାକନା ସେଇ । ଖାଲି ମଦଗୁଡ଼େ ପିଇ ମାତାଲ ହୋଇ ରକ୍ତସ୍ରୋତ ବୋହିବା ହେଲା ସାର । ଏ କେତେଦିନ ରହିଲା ? ରହିଲା ଅବା କେତେଦିନ ? ତା'ପରେ ରୁଷ୍ ବିପ୍ଳବ । ଲକ୍ଷଲକ୍ଷ ମାନ୍ୟଗଣ୍ୟ ଲୋକଙ୍କ ପ୍ରାଣ ଗଲା, ଧନ ଗଲା, ମାନ ଗଲା, ଗରିବ ଚାଷୀ ବାପୁଡ଼ା ପାଇଲା କଣ ? କନ୍ଦା ପିମ୍ପୁଡ଼ି ପରି ଖାଲୁରୁ ଖାଲୁରୁ ହୋଇ ସେମାନେ ବି ମଲେ । ତା'ପରେ ଷ୍ଟାଲିନ୍‌ଙ୍କ ମୁଣ୍ଡରେ ଢୁକିଲା, ମୂଳ ବଲସେଭି-ବାଦ ମିଛ ଓ ମାୟା । ସେ ଆସ୍ତେ ଆସ୍ତେ ବଲସେଭି-ବାଦରୁ ସାମାଜିକ-ବାଦକୁ ଆସୁଛନ୍ତି । ଅନ୍ୟ ପକ୍ଷରେ ଇଟାଲି ଓ ଜର୍ମାନୀ । ନାମକୁ ମାତ୍ର ସେମାନେ ସାମାଜିକବାଦୀ । କିନ୍ତୁ ପ୍ରକୃତରେ ସେମାନେ ମଧ୍ୟ ସାମ୍ରାଜ୍ୟବାଦୀ । ସେମାନଙ୍କର ରାଜା ଗୃହ, ରାଜ୍ୟ ଗୃହ ପ୍ରଭୃତି ଗୃହ । ସେଠାରେ କୋଟିପତି ଅଛନ୍ତି, କାଙ୍ଗାଳ ମଧ୍ୟ ଅଛନ୍ତି । କେବଳ ଏତିକି ମାତ୍ର ଯେ ଯାହାର ଯାହା ଅଛି, ଧନ, ଜନ, ଗୋପ, ଲକ୍ଷ୍ମୀ ସବୁ ଦେଶର ଓ ଦଶର । ସମୁଦାୟ ରାଜ୍ୟଟା ଗୋଟାଏ ସୈନିକ ଛାଉଣୀ; ସବୁ ଲୋକେ ସୈନିକ ପରି ରାଜ୍ୟର ଆଦେଶକୁ ମାନି ଚଳିବେ । ରାଜ୍ୟର କର୍ତ୍ତା ହିଟଲର୍‌, ଗୋଏରିଙ୍ଗ ବା ମୁସୋଲିନିଙ୍କ ବିରୋଧରେ ପଦେ ଯେବେ କିଏ କିଛି କହିଲା, ତାହେଲେ ମାମୁଁଘରକୁ ସାଙ୍ଗେ ସାଙ୍ଗେ । ଅବଶ୍ୟ କହିବାକୁ ହେବ ଯେ ଧନୀଲୋକଙ୍କର ସାମ୍ୟବାଦ ଓ ବଲସେଭିବାଦ ହାତରେ ଏଇ ଯେ ବିପତ୍ତି ସେଥିପାଇଁ ସେମାନେ ଅନେକ ପରିମାଣରେ ଦାୟୀ । ସେମାନେ ଯେତେବେଳେ ଗଦିମାଡ଼ି ବସିଥିଲେ, ସେତେବେଳେ ଏଇ ଦରିଦ୍ରାସହ୍ୱରେ ନିଜେ ବୁଡ଼ି ପରକୁ ବୁଡ଼ାଇବାକୁ ବରାବର ଚେଷ୍ଟା କରିଆସିଛନ୍ତି । ସେମାନେ ଯେବେ ଏଇ ଦରିଦ୍ରାସହ୍ୱ ଛାଡ଼ି ନିଜ ମନକୁ ଭାବି, ନିଜ ମନରୁ କାଢ଼ି କାମ କରିଥାନ୍ତେ, ତା'ହେଲେ ତାଙ୍କ ଅମଳରେ ଗରିବ ପ୍ରତି ଏ ଅତ୍ୟାଚାର ହୋଇନଥାନ୍ତା, ଆଉ ତାଙ୍କ ଆସନ ଏପରି ଟଳମଳ ହେଉନଥାନ୍ତା ।

ହିଟଲର ବା ମୁସୋଲିନି ଯେ ତାଙ୍କ ନିଜ ଦେଶମାନଙ୍କରେ ଏହିପରି ବଡ଼ଲୋକ ହୋଇପାରିଥିଲେ, ଜର୍ମାନୀ ଓ ଇଟାଲି ଭଳି ଦେଶଗୁଡ଼ାକୁ ନିଜ ମୁଠା ଭିତରେ ରଖି-ପାରିଥିଲେ, ତା'ର କାରଣ ହେଉଛି—ସେମାନେ ପ୍ରଥମେ ଏଇ ଦଶଦାସଙ୍କ ଗୁଡ଼ ନିଜ ମନଗଢ଼ା ଏଇ ଆକାଶ କଇଁଆ ତୋଳିବାକୁ ଚେଷ୍ଟା କରିଥିଲେ ବୋଲି । ସେମାନଙ୍କ ମନର ଏଇ ମୌଳିକତା ଯଦି ନଷ୍ଟ ନ ହୋଇଥାଏ ହାକିମିର ନିଶାରେ, ତା' ହେଲେ ହିଦେଶୀଙ୍କି ପରେ ସେମାନେ ବ୍ୟକ୍ତିର ପୂର୍ଣ୍ଣ ସ୍ୱାଧୀନତାରେ ଆଉ ହାତ ଦେବେ ନାହିଁ । ତା' ହେଲେ ସେ ବଞ୍ଚିଥିବାଯାଏ ତାଙ୍କର ଯଶ ଅମର ରହିବ । କିନ୍ତୁ ଯେ ଯେବେ ସେ ମୌଳିକତା ହରାଇଥାନ୍ତି, ତା' ହେଲେ ତାଙ୍କ ବେଳକାଳ ଅଉ ଅଳ୍ପଦିନ ମାତ୍ର । ଯେ ରାଜ୍ୟ ବା ଯେ ରାଷ୍ଟ୍ରନୀତିରେ ମନୁଷ୍ୟର ବ୍ୟକ୍ତିଗତ ସ୍ୱାଧୀନତା ପାଇଁ ଯଥେଷ୍ଟ ସ୍ଥାନ ରଖାଯାଇନାହିଁ ଓ ପ୍ରତ୍ୟେକ ଲୋକର ସ୍ୱାଧୀନ ଜୀବନ ଗଢ଼ିବା ପାଇଁ ସୁବିଧା ଦିଆଯାଇ ନାହିଁ—ସେ ରାଜ୍ୟ ଓ ସେ ରାଷ୍ଟ୍ରନୀତି ନିରର୍ଥକ, ଆଉ ତା'ର ରହିବା ମଧ୍ୟ ଅସମ୍ଭବ । ମୁସୋଲିନି ଥରେ କହିଥିଲେ, "It is necessary for any one who establishes a republic to pre-suppose that all men are bad and that they will always apply the maligrity of their mind when they have an opportunity. Men never work for good except under compulsion"—ଯେ ଗଣତନ୍ତ୍ର ଶାସନ ବସାଏ, ତାର ବୁଝିବା ଉଚିତ ଯେ ମଣିଷଗୁଡ଼ାକ ଖରାପ, ଆଉ ସୁବିଧା ପାଇଲେ ସେମାନେ ତାଙ୍କ ଭିତରର ବିଷ ଅଜାଡ଼ି ପକେଇବେ । ଚାବୁକ୍ ନପଡ଼ିଲେ ମଣିଷ କେବେ ଭଲକାମ କରେ ନାହିଁ । କେଜାଣି ବାବୁ, ବଡ଼ ଲୋକଙ୍କ ବଡ଼ ବଡ଼ କଥା । ଭଗବାନଙ୍କ ଅଂଶରେ ଜନ୍ମ ହୋଇଛି ଯେ ମଣିଷ, ତା ପ୍ରତି ଏପରି ଶ୍ରେଷ୍ଠ ନଜର ଯେ କରେ, ତା'ର ମନଟା ସେହିପରି ଖରାପ । ଏ ପୃଥିବୀରେ ଯାହା କିଛି ଭଲ କାମ ହୋଇଛି—ସେ ସ୍ୱାଧୀନ ଚିନ୍ତାରେ, ସ୍ୱାଧୀନ ଭାବରେ । କିଙ୍ଗ୍ସ୍ଲି କଇଦଖାନାପାଇଁ ଯେ କାମ କରିଥିଲେ, ନାଇଟିଙ୍ଗେଲ ଯୁଦ୍ଧଭୂଇଁରେ ଖଣ୍ଡିଆ ସୈନ୍ୟଙ୍କର ଯାହା କରିଥିଲେ, ସିଡ଼ନି ନିଜ ପ୍ରାଣ ବଳି ଦେଇ ଯେ ସାଧାରଣ ସୈନିକର ଜୀବନ ବଞ୍ଚାଇଥିଲେ; ଲର୍ଡ଼ ନୁଫିଲ୍ଡ଼, ହେନେରି ଫୋର୍ଡ଼, କାର୍ଣିଜ ଇତ୍ୟାଦି ଯେ ମହତ ଦାନ କରିଯାଇଛନ୍ତି, ଦଧିଚି ନିଜର ଆତ୍ମବଳି ଦେଇ ଯେ ଗୋଟାଏ ଧର୍ମ ଓ ସଭ୍ୟତା ରକ୍ଷା କରିଥିଲେ, ସରଳ ରାଜପୁତ ରମଣୀ ପାନ୍ନା ଯେ ନିଜର ପୁଅକୁ ବଳିଦେଇ ରାଜ୍ୟକୁ ରକ୍ଷା କରିଥିଲେ, ଗୋପବନ୍ଧୁ ଯେ ସର୍ବସ୍ୱ ଛାଡ଼ି ଦରିଦ୍ରଙ୍କ ପାଇଁ ସନ୍ନ୍ୟାସୀ ହୋଇଥିଲେ, ଗାନ୍ଧୀ ଯେ ଭାରତବର୍ଷର କୋଟି କୋଟି ଦରିଦ୍ର ଲୋକଙ୍କ ପାଇଁ ପ୍ରାଣପାତ କରି ଲାଗିପଡ଼ିଛନ୍ତି—ଏସବୁ କେଉଁ ଗୁଣ୍ଟ ଭୟରେ ହୋଇଥିଲା ? ଏ ସବୁ ସ୍ୱାଧୀନ ମନର ସ୍ୱାଧୀନ କାମ । ଏ କାମ ଚିରସ୍ଥାୟୀ । ଚାବୁକ ଭୟରେ ଯେ ଭଲ କାମ କରାଯାଏ, ସେ କେବଳ ଚାବୁକର ଭୟ ଥିବା ପର୍ଯ୍ୟନ୍ତ । ସେ

କେବଳ ଦଶଚାଷଭୂତର ମାପକାଠି । ଏପରି ଭଲ କାମ ଯାହାପାଇଁ କରାଯାଏ, ତାହା ତା' ପ୍ରତି ଅପମାନ, କୁକୁରକୁ ଅଇଣ୍ଠା ହାଡ଼ ଖଣ୍ଡେ ଫିଙ୍ଗିଦେଲା ଭଳି । ଏଇ ଗୋଟାଏ ଅବସ୍ଥା ଅନୁମାନ କରିନିଅନ୍ତୁ । ସରକାର କହିଲେ ଯେ ଗାଁଗଣ୍ଡା ସବୁ ଟିକିଏ ମଣିଷ ରହିବା ଭଳି କରିବା ଦରକାର । ସରକାର ଟଙ୍କା ଦେଲେ, ଜମିଦାର-ମାନଙ୍କୁ କହିଲେ, ତୁମେ ବି ସାହାଯ୍ୟ କର । ସରକାରୀ ଗାଁ ଦେବତାମାନେ ଯେଉଁ ଜମିଦାର କିଛି ନଜର ଫାଙ୍କିଦେବାପାଇଁ ଗଲେ ତାଙ୍କୁ ଗୁରୁକ ଦେଖେଇଲେ , ସେ ମୋଡ଼ମାଡ଼ି ହୋଇ କିଛି ଫିଙ୍ଗିଦେଲା ଭଳି ଦେଲେ, ନ ହେଲେ କିଛି କଡ଼ଛଡ଼ା ଦେଲା ଭଳି କଲେ, ଖାଲି ହାକିମଙ୍କ ମନନେବାକୁ ଆଉ ତାଙ୍କ ଗୁରୁକ ଏଡ଼ିବାକୁ । ତେଣେ ପ୍ରଜାଙ୍କ ଉପରେ ହେଲା ଜୁଲୁମ; ବେଠି, ବେଗାରି, ମାଗଣା, ଘୁଷ, ଖର୍ଚ୍ଚ । ହୋଇ ଦେଇଥିଲେ ଯେତେ ତା'ର ଚାରିଗୁଣ ଆଦାୟ କରିନେଲେ । ସରକାରୀ ହାକିମ ତାଙ୍କ କାମ ହାସଲ କରିଚନ୍ତି; ଟଙ୍କାପଇସା ନେଇ ବଡ଼ ବଡ଼ ରାସ୍ତାଘାଟ ତିଆରି କରି ଉପର ହାକିମଙ୍କଠାରୁ ବାହାବା ବାହାବା ପାଇଚନ୍ତି; କିନ୍ତୁ ଗରିବ ପ୍ରଜାର ଅବସ୍ଥା ଯେପରି ଥିଲା ତା'ଠାରୁ ହେଲା ଖରାପ । ପେଲି ଗୁଞ୍ଜି ଧର୍ମ କରାଇ ହୁଏନାହିଁ । ମୁସୋଲିନି ତାଙ୍କ ମୁଷଲ ଡରରେ ଲୋକଙ୍କୁ ଭଲ କାମରେ ଲଗାଇ ରଖିପାରନ୍ତି କିଛି ଦିନ ପାଇଁ, କିନ୍ତୁ ସବୁଦିନକୁ ନୁହେଁ । ମୁସୋଲିନି ଓ ହିଟଲର କିଛି ନୂଆ କରି ନାହାନ୍ତି; ଇମିତିକା ସ୍ପାର୍ଟାରେ ହୋଇଥିଲା । ସ୍ପାର୍ଟା ରହିଲା ନାହିଁ । ଇଟାଲି ଓ ଜର୍ମାନୀରେ ଇଲେ ହଉଚି; ଏ ଇଟାଲି ଓ ଜର୍ମାନୀ ମଧ୍ୟ ରହିବ ନାହିଁ; ରହି ନ ପାରେ । ଏତେଦିନ ଯେ ରହିଚି ସେ ଖାଲି ଲୋକଙ୍କ ଦେଶ ଓ ଜାତିର ନା'ରେ ଭୁଲେଇ, ଲୋକଙ୍କର ଦେଶଭକ୍ତି ଓ ଜାତିପ୍ରାଣତାର ସୁବିଧା ନେଇ । କିନ୍ତୁ ଜାତି ଗୋଟାଏ କ'ଣ ? ସେ ଗୋଟାଏ ନିର୍ଜୀବ ଜଡ଼ ପଦାର୍ଥ । ଟାଗିଟସ୍ କହିଥିଲେ "Men made a machine and called it a nation" ଗୋଟାଏ କଳଯନ୍ତ୍ର ପରି ଜାତିଟା । ଏ ନିର୍ଜୀବ ପଦାର୍ଥର ପୂଜା ଲୋକ ମନରେ ବେଶୀ ଦିନ ରହିପାରେ ନାହିଁ । ମଣିଷର ଆଖି ଯେତିକି ଫିଟିବ, ତା' ମନରୁ ଏ ଦଶଦାସତ୍ୱ ମୋହ ଯେତେ ଅପସରିଯିବ । ସେ ବୁଝିବ ଯେ ଏଇ ଜାତିର ମାୟା ଓ ଦେଶର ମୋହ, ପୃଥିବୀର ସବୁ ଅମଙ୍ଗଳ ପାଇଁ ଦାୟୀ । ଦେଶ-ପ୍ରାଣତା, ଜାତିପ୍ରାଣତା ଦଶଙ୍କ ଆଖିରେ ଭଲ ଦିଶିପାରେ, କିନ୍ତୁ ମନୁଷ୍ୟ ଜାତିରୂପୀ ନାରାୟଣଙ୍କ ଆଖିରେ ସେ ମହାପାପ । ମଣିଷମାରୁ, ପର ସ୍ତ୍ରୀ ହରଣ, ବିଶ୍ୱାସରେ ବିଷ ଖୁଆଇବା, ଠକାମି, ଭଣ୍ଡାମି—ସବୁ ଏଇ ଜାତି, ଧର୍ମ ବା ଦେଶ ନାଁରେ କରାଯାଇଚି ଓ ଯାଉଚି । ରଘୁ ଦେଶ ଜୟ କରି ବାହାରିଲେ ଦଶଙ୍କ ତୁଣ୍ଡରେ ବଡ଼ ବୋଲେଇବେ ବୋଲି; ଆଲେକ୍‌ଜାଣ୍ଡର୍ ଦେଶ ଜୟ କରିବାକୁ ବାହାରିଥିଲେ, ପୃଥିବୀବିଜେତା ବୋଲେଇବେ ବୋଲି । ଏମାନେ ଟିକିଏ ଭାବିନାହାନ୍ତି, ଏଇ ଯେ ଦଶରୂପୀ ଦେଶର ପ୍ରଶଂସା ପାଇଁ ସେ ଏଡ଼େବଡ଼ ଯୁଦ୍ଧଟାଏମାନ କଲେ, ସେଥିରେ କେତେ ହଜାର,

କେତେ ଲକ୍ଷ ଲୋକଙ୍କର ସର୍ବନାଶ ହୋଇଗଲା । ଏଇ ଯେ ଦେଶପ୍ରାଣତା, ଦଳ ପ୍ରାଣତା, ଏ ଖାଲି ଏଇ ଦଳଙ୍କର ଜୀବିକା ବଜାଏ ରଖିବାର ଫିକର । ଦେଶର ଦ୍ରୋହ, ଜାତିର ଦ୍ରୋହ ଦବାକୁ ନ ହେଲେ, ଏଇ ଦେଶନେତା ଓ ରାଷ୍ଟ୍ରନେତାମାନଙ୍କର ଅବସ୍ଥା ଯେ କ'ଣ ହବ, କଏ କହିବ ? ଏମାନଙ୍କର ପ୍ରଧାନ ମନ୍ତ୍ର—ଦେଶପ୍ରାଣତା ଆଉ ପ୍ରଧାନ ସାଧନ—ଜବରଦସ୍ତି । ନେପୋଲିୟନ ଜବରଦସ୍ତି କରିଥିଲେ, ଭାବି ଥିବଥିଲେ ଏ ପୃଥିବୀଟା ତାଙ୍କ ହାତମୁଠାରେ ରଖିପାରିବେ; କିନ୍ତୁ ମନୁଷ୍ୟ ସମାଜରୁ ଏପରି ଏକ ଧକ୍‌କା ପାଇଲେ ଯେ, ତାଙ୍କର ମୋହ ଭାଙ୍ଗିଗଲା । ସେଇହେତୁ ଶେଷ ଜୀବନରେ କହିପକାଇଥିଲେ, "The longer I live, the more convinced I am that nothing permanent can be achievee by bare force." ମୁସୋଲିନି, ହିଟଲର୍, ଷ୍ଟାଲିନ୍ ଇତ୍ୟାଦି ମଧ୍ୟ କାଲବେଳରେ ବୁଝିବେ ଓ କହିବେ ଏଇ କଥା । କାରଣ, ମନୁଷ୍ୟ ଏ ଅସାର ଦେଶପ୍ରେମ, ଜାତିପ୍ରେମରେ କ୍ଷଣକ ପାଇଁ ଅନ୍ଧ ହୋଇଗଲେ ମଧ୍ୟ ସେ ବୁଝିବ ଦିନେ ଯେ ସେ ଦେଶ ଓ ଜାତିଠାରୁ ବଡ଼; ଦେଶ ଓ ଜାତି ତା' ପାଇଁ, ସେ ଦେଶ ଓ ଜାତି ପାଇଁ ନୁହେଁ । ଦେଶ ଓ ଜାତି ନାଁରେ ମୋର ବ୍ୟକ୍ତିଗତ ସ୍ୱାଧୀନତାକୁ ବଳି ଦେବା ପାଇଁ କହିବା ର ଅଧିକାର କାହାରି ନାହିଁ । ମଣିଷ ଯେତେବେଳେ ଏ କଥା ବୁଝିବ, ସେତେବେଳେ ପୃଥିବୀରେ ଗୋଟାଏ ନୂଆ ରାଜନୀତି, ଗୋଟାଏ ନୂଆ ରାଷ୍ଟ୍ରନୀତି ତିଆରି ହବ । ମଣିଷ ଯେ ଏକଥା ବେଳେବେଳେ ବୁଝେ ନାହିଁ, ଏପରି ନୁହେଁ । ଇଂରେଜ ଜାତି ଏକଥା ବୁଝିଛି, ସେଇ ହେତୁରୁ ଇଂରେଜ ରାଜ୍ୟରେ ବ୍ୟକ୍ତିଗତ ସ୍ୱାଧୀନତା ଉପରେ ଇଂରେଜ ଆଇନକାନୁନ୍ ତିଆରି ହୋଇଛି । ବଲଡୁଇନ୍, ଲୟେଡ ଜର୍ଜ ପ୍ରଭୃତି ବଡ଼ବଡ଼ିଆଙ୍କ ବ୍ୟକ୍ତିତ୍ୱ ପ୍ରଭାବରେ ବେଳେବେଳେ ଇଂରେଜର ଏଇ ବ୍ୟକ୍ତିଗତ ସ୍ୱାଧୀନତା ଉପରେ ଯେ ଚଢ଼ାଉ ନ ହୋଇଛି ଏପରି ନୁହେଁ । କିନ୍ତୁ ଇଂରେଜ ଜାତି ସେ ଚଢ଼ାଉର ମର୍ମ ବୁଝିପାରନ୍ତି ସାଙ୍ଗେ ସାଙ୍ଗେ । ଆଉ ସାଙ୍ଗେ ସାଙ୍ଗେ ଏଇ ହାମବଡ଼ିଆ, ଆପଗଢ଼ା ବଅଁଶୁଙ୍ଗାଙ୍କୁ ତାଙ୍କର ସେଇ ସୁନାପାଣି ଦିଆ ସିଂହାସନରୁ କାଢ଼ି ଫୋପାଡ଼ି ଦେଇଚନ୍ତି; ନହେଲେ ଏ ବଅଁଶୁଙ୍ଗାକ ନିଜର ଅବସ୍ଥା ବୁଝିପାରି ନିଜକୁ ସମ୍ଭାଳି ନେଇଚନ୍ତି । କହିଁଚ ହାତ ଗୋଡ଼ ଲୁଚେଇଦେଲା ପରି, ସେମାନେ ମଧ୍ୟ ନିଜର ସବୁ ହାମବଢ଼ା ଦର୍ପ ଲୁଚେଇ ନେଇ ତାଙ୍କ କୁରୁମ ଖୋଳ ଭିତରେ ପଶି ମୁଣ୍ଡ ଟୁଙ୍ଗାରିଚନ୍ତି । ଏଇହେତୁରୁ ପ୍ରାୟ ୨୫ ବର୍ଷର ଚେଷ୍ଟା ପରେ ମଧ୍ୟ ଇଂରେଜୀ ରାଜ୍ୟରେ ସାମ୍ୟବାଦ, ସାମାଜିକବାଦ, ବଲସେବିବାଦ ବା ଜବରଦସ୍ତିବାଦ ଉଧେଇ ପାରିନାହିଁ । ସେମାନେ ବୁଝିଛନ୍ତି ଯେ, ମୋର ଧନ ନାହିଁ ବୋଲି ଜଗତଟାକୁ ନିର୍ଦ୍ଧନ କରିବା କେବଳ ଲଙ୍ଗୁଳକଟା ବିଲୁଆ ପରି । ତା' ଅପେକ୍ଷା ବରଂ ନିର୍ଦ୍ଧନକୁ ଧନୀ କରିବା ଚେଷ୍ଟା ବେଶୀ ଭଲ ଓ ମଙ୍ଗଳ ।

(କ୍ରମଶଃ)



# ଆକାଶ କଇଁଆ (୩)

ପୂର୍ବକାଳରେ ଆମ ଦେଶର କେହି ରଜା ଯଦି ଦରିଦ୍ରାସକ୍ତି ଗ୍ରସ୍ତ ହୋଇ ମନକୁ କିଛି କରି ପାରିଥିଲା, ତା'ହେଲେ ତାର ଉଦ୍ଦେଶ୍ୟ ରହୁଥିଲା, 'ମୁଁ ସମସ୍ତଙ୍କ କାଖରେ ପିତଳ ଗରା ଦେବି ।' ଗରିବ ଲୋକ ମାଟି ମାଠିଆରେ ପାଣି କାଢ଼େ, କାରଣ ପିତଳ ଗରା କିଣିବାକୁ ତାର ସମ୍ବଳ ନଥାଏ ବୋଲି । ରଜାଙ୍କର ଇଚ୍ଛା ଯେ ଗରିବର ମଧ୍ୟ ପିତଳ ଗରା କିଣିବାର ସମ୍ବଳ ରହିବ । ଗ୍ରମରାଜତ୍ୱରେ ଧନୀ ନିର୍ଦ୍ଧନ ହୋଇନଥିଲା, ମାତ୍ର ନିର୍ଦ୍ଧନ ଧନୀ ହୋଇପାରିଥିଲା । ଏଇ ହେଲା ଗ୍ରଜ୍ୟଟିର ବାହାଦୁରି । ଅବଶ୍ୟ ମୁଁ କହୁ-ନାହିଁ ଯେ ଧନୀ ଧନମଦରେ ଗରିବର ଗ୍ରଣ୍ଡି ଉପରଦେଇ ଗ୍ଲଲିଯିବ ଆଉ ଗରିବ ମୁଠାଏ ଖାଇବାକୁ ପାଇଲେ ସେସବୁ ସହିଯିବ । ଧନୀର ଧନଗର୍ବ—ସେ ଖାଲି ଏଇ ଦରିଙ୍କର ଦୋଷ । ଏଇ ଦରିଦ୍ରପୂଜାକୁ ଗୋଟାଏ ଉଚ୍ଚ ସିଂହାସନରେ ବସାଇ ପୂଜା କରିଚନ୍ତି ଓ ଅନ୍ୟମାନଙ୍କୁ ତାଙ୍କର ଭଳି ପୂଜା କରିବାକୁ ବାଧ୍ୟ କରିଚନ୍ତି । ବେଳେବେଳେ ଗରିବ ଗ୍ରଣ୍ଡରୁ ବାହାରିପଡ଼େ, "ମୁଁ ରଜାର ପରଜା ନୁହେ କି ସାହୁର ଖାତକ ନୁହେ ।" ଏ ତାର ସ୍ୱାଧୀନତା ଜ୍ଞାନର ମରମ କଥା । କିନ୍ତୁ ଦରି ଏହା ରଖାଇଦଏ ନାହିଁ । ଏ ଦରିଦଶା ଯେବେ ମନିଷ ସମାଜରୁ ଯାଏ, ତାହାହେଲେ ଲୋକେ ବୁଝିବେ ଯେ ଧନ ଗୋଟାଏ ସାଧାରଣ ଘଟନା । ଦଦ୍ଦିର ଭଲ ମନ୍ଦ ପରି ଏ ଗୋଟାଏ ବାଜେ କଥା । ସୁସ୍ଥଲୋକ ରୋଗୀ ଉପରେ ଅଣ୍ଡିଗ୍ରପଣିଆ ଦେଖାଇନ୍ଥଏ ନାହିଁ । ସେହିପରି ଧନୀର ନିର୍ଧନ ଉପରେ ଅଣ୍ଡିଗ୍ରପଣିଆ ଦେଖେଇହେବାର କିଛି କାରଣ ନାହିଁ ।

ଧନୀର ଧନମଦ ଯେପରି ଦେଶ, ଜାତି ଓ ସଭ୍ୟତାର ଅନିଷ୍ଟକାରୀ, ଗରିବର ଗରିବଆନ ଭଙ୍ଗୀ ମଧ୍ୟ ସେହିପରି ଦେଶର, ଜାତିର ଓ ସଭ୍ୟତାର ମରମ ପୋକ । ଧନୀ ଧନବାନ୍ ବୋଲି ଯେବେ କୌଣସି ବିଶେଷ ଅଧିକାର ପାଇବାର ହକ୍‌ଦାର ନୁହେ, ଗରିବ ଗରିବ ବୋଲି ମଧ୍ୟ କୌଣସି ବିଶେଷ ଅଧିକାର ପାଇବା ପାଇଁ ଦାବି କରିବା ବା ଆଶା ରଖିବା ଉଚିତ ନୁହେଁ । ଏ ସଂସାରଟା ଖାଲି ହରିଜନଙ୍କର ବା ମଜଦୁରଙ୍କ ହୋଇପାରେନାହିଁ । ଆମ ଦେଶରେ ଆଜକାଲି ସବୁକଥାରେ ଏକାବେଳକେ ପଞ୍ଚମକୁ ଯିବାର ଚେଷ୍ଟାଟା ବଡ଼ ବେଶି । ଧରି ଏଇ ସ୍ତ୍ରୀ ସ୍ୱାଧୀନତା କଥା । ମୁଁ ଯଦି କହେ ଯେ ସ୍ତ୍ରୀମାନେ ପୁରୁଷଙ୍କ ସଙ୍ଗେ ସମାନ ହୋଇ ନ ପାରନ୍ତି, ତା' ହେଲେ ଖଡ଼ୁମୁଣାଠାରୁ ଆରମ୍ଭ କରି ବୋମା ପର୍ଯ୍ୟନ୍ତ ମୋ ଉପରେ ପଡ଼ିଯିବ । ଅଥଚ ରେଲଗାଡ଼ିରେ ମୁଁ ଜଣେ ସ୍ତ୍ରୀଲୋକ ଠିଆ ହେବାର ଦେଖି ଯଦି ମୋ ଜାଗାଟିରେ ତାଙ୍କୁ ସାଦର ନିମନ୍ତ୍ରଣ କରି ବସାଇ, ନିଜେ ଠିଆହୋଇ ଗୋଡ଼ଯୋଡ଼ା ନ କରିଏଁ, ତା' ହେଲେ ମଧ୍ୟ ସ୍କୁପୁଡ଼ା ଝୁଡ଼ାଠାରୁ ଆରମ୍ଭ କରି ଠେଙ୍ଗା ବାଡ଼ି ପର୍ଯ୍ୟନ୍ତ ପାଇପାରେ । ସ୍ତ୍ରୀ ଯଦି ମୋର ସମାନ,

ମୋର ପ୍ରତ୍ୟେକ ଅଧିକାରରେ ଯେବେ ସ୍ତ୍ରୀର ଭାଗ ରହିଛି, ତାହେଲେ ମୁଁ ଠିଆହୋଇ ସ୍ତ୍ରୀକୁ କାଗା ଛାଡ଼ିଦେବି କାହିଁକି ? ସ୍ତ୍ରୀ ମୋ ଠାରୁ ବିଶେଷ ବ୍ୟବହାର ପାଇବାର ଆଶା ରଖିବ କାହିଁକି ? ସେହିପରି ଗରିବ ବା ମଜଦୁ ର(ମଜଦୁର ଯେ କାହିଁ, ମୁଁ ଏ ପର୍ଯ୍ୟନ୍ତ ବୁଝି ପାରିଲି ନାହିଁ, ଏ ଦେଶର ଓ ଭାଷାର ଚଳନ୍ତି 'ମଳୁରିଆ' ଶବ୍ଦଟାରେ କ'ଣ ଗନ୍ଧ ଲାଗିଗଲା ଯେ ତାକୁ ଛାଡ଼ି 'ମଜଦୁର' 'ମଜଦୁର' ବୋଲି ଗୋଟାଏ ହିପ୍‌ପା ଉଠିଛି ? ) ମାନେ ଯେବେ ମୋ ସହିତ ସବୁ ବିଷୟରେ ସମାନ, ଏପରି କି ମୋର ଝାଳବୁହା ପଇସା ଦ'ଟାରେ ମଧ୍ୟ ଏ କୋଟି ଲୋକଙ୍କର ଭାଗ ରହିଛି, ତାହେଲେ ପୁଣି ମଳୁରିଆଙ୍କ ପାଇଁ, ହରିଜନଙ୍କ ପାଇଁ ବିଶେଷ ସୁବିଧାର ଦରକାର କାହିଁ ? ଜବାବ ହୋଇପାରେ ଯେ ଏ ପର୍ଯ୍ୟନ୍ତ ଏଇ ଧନକୁବେର ବଡ଼ମୁଣ୍ଡିଆମାନେ ଏ ହରିଜନ ଓ 'ମଜଦୁର'ମାନଙ୍କୁ ପଦତଳେ ମଡ଼େଇ ରଖିଥିଲେ । ସେମାନଙ୍କର ନିଜର ଅଧିକାର ବୁଝିବା ଓ ଆଦାୟ କରିନେବା ଭଳି ଶକ୍ତି ଆସିନାହିଁ । ସେହି ଶକ୍ତି ଆଣିବା ପାଇଁ ଓ ସେମାନଙ୍କ ହକ୍ ଦାବିକୁ କିଛି କିଛି ଦେବାପାଇଁ ଏ ବିଶେଷ ଅଧିକାର ଦାବି । ସେମାନଙ୍କ ଆଖି ଫିଟିଗଲେ, ସେମାନଙ୍କ ହାତରେ କୋର୍ ଆସିଗଲେ, ଆଉ ଏସବୁ କିଛି କରିବା ଦରକାର ପଡ଼ିବ ନାହିଁ । ଏଇ ଯୁକ୍ତିରେ ବଙ୍ଗଳା ଓ ପଞ୍ଜାବରେ ହିନ୍ଦୁଙ୍କର ଦାବି ଓ ଓଡ଼ିଶା ବିହାରରେ ମୁସଲମାନମାନଙ୍କର ଦାବି ଓ ପୃଥିବୀ ପଞ୍ଚାୟତରେ ଗ୍ରେଟ ବାଡ଼ର ବଡ଼ ବାଡ଼ ଉପରେ ଦାବି । ଏଥିରେ ବ୍ୟକ୍ତିଗତ ସ୍ୱାଧୀନତାର ତୋଟି ଚିପି ହୋଇଯାଉଛି । ହରିଜନକୁ ଗୁଡ଼ିକରି ଦେବାପାଇଁ ଯେବେ ମୋର ଦାବିଟା ଛାଡ଼ିଯାଏ, ତା'ହେଲେ ମୋର ସ୍ୱାଧୀନତାରେ ବାଧା ଦିଆହେଲା । ସେହିପରି ଉପଯୁକ୍ତ ହରିଜନକୁ ସେ ଖାଲି ହରିଜନ ବୋଲି ଯେବେ ସୁବିଧାରୁ ତଡ଼ାଯାଏ, ତା' ହେଲେ ତା'ର ସ୍ୱାଧୀନତାକୁ କାଟି ଦିଆଗଲା । ଏ ଦ' ଆଡ଼ଟା ଖରାପ । ପ୍ରକୃତ କଥା ହେଉଛି, ହରିଜନ ବୋଲ, ମୁସଲମାନ ବୋଲ, କିରସ୍ତାନ ବୋଲ, ହିନ୍ଦୁ ବୋଲ, ଦୋ'ମିଶା ସାଇବ ବୋଲ, ଖାଣ୍ଟି ସାଇବ ବୋଲି ସମସ୍ତଙ୍କୁ ରାଜ୍ୟ ଭିତରେ ସମାନ ସୁବିଧା ଦେବା ଉଚିତ । ଦେଶଟାକୁ ଭାଗ ଭାଗ କରି ୟାକୁ ଇଥିରୁ ଫୁଲେ ଦେଇ ତାକୁ ସିଥିରୁ ଫୁଲେ ଦେଇ କାମ ହାସଲ କରିବା ସହଜ; କିନ୍ତୁ ଧନୀ ଗରିବ ଗ୍ରେଟ ବଡ଼ ଜାତି ଅଜାତି ସମସ୍ତଙ୍କୁ ସବୁ ବିଷୟରେ ସମାନ ସୁବିଧା ଦେଇ ଚଳେଇବା କାଠିକରପାଠ । ତଥାପି ଏହାହିଁ ପ୍ରତ୍ୟେକ ଲୋକର ବୁଝିବା ଉଚିତ, ପ୍ରତ୍ୟେକ ଲୋକର କରିବା ଉଚିତ । ମଳୁରିଆଙ୍କୁ ଉଠାଇବା ପାଇଁ ଧନୀକୁ ପକେଇବା ସହଜ ନୀତି ହୋଇପାରେ କିନ୍ତୁ ସରସ ନୀତି ନୁହେଁ । ପୃଥିବୀର ସୃଷ୍ଟିକାଳରୁ ଯେତେପ୍ରକାର ରାଷ୍ଟ୍ରନୀତିର ଚଳନ ହୋଇଛି, ତା' ଭିତରେ ରୋମ ସାମ୍ରାଜ୍ୟର ରାଜନୀତି ଥିଲା ସବୁଠାରୁ ଭଲ । କିନ୍ତୁ ସେ ମଧ୍ୟ ରହିପାରିଲା ନାହିଁ, ଏହି ହେତୁରୁ, ସେମାନେ ନିଜ ଜାତିକୁ ଟେକିବାକୁ ଯାଇ ଦାସ ଜାତିକୁ ପକାଇବାକୁ ଚେଷ୍ଟା କରିଥିଲେ ବୋଲି । ଜାତିର ଗୋଟାଏ ଅଙ୍ଗକୁ ପୀଡ଼ା ଦେଇ ଜାତିର ଜୀବନ ସୁଖକର ହୋଇପାରେ ନାହିଁ ।

ସେହି ହେତୁରୁ କହୁଥିଲି ସାମ୍ରାଜ୍ୟବାଦ ପର ଆଜିକାଲିର ଏ ବଲସେଭିବାଦ, ସାମ୍ୟବାଦ, ସାମାଜିକବାଦ, ଗଣତନ୍ତ୍ରବାଦ ସବୁ ଖାଲି ମିଛ ହାଉଆ । ଏଥିରେ କାହାର ମଙ୍ଗଳ ନାହିଁ । ପ୍ରକୃତ ରାଷ୍ଟ୍ରବାଦ ସେହି, ଯେଉଁଥିରେ ମୋର ବ୍ୟକ୍ତିଗତ ସ୍ୱାଧୀନତା ବଜାଏ ରହିବ, ଅଥଚ ମୁଁ ସମାଜର ବା ଜାତିର ଜଣେ ହୋଇ ରହିବ । ରାଜ୍ୟ ନାଁରେ ବ୍ୟକ୍ତିର ସ୍ୱାଚ୍ଛନ୍ଦ୍ୟରେ ହାତଦବା, ଅଥବା ବ୍ୟକ୍ତିବିଶେଷର ଖୁସି ଅନୁସାରେ ରାଜ୍ୟ ଚଳେଇବା—ଉଭୟେ ଏକକଥା । ପ୍ରକୃତ କଥା କହିବାକୁ ଗଲେ ହିଟ୍‌ଲର ଓ ଷ୍ଟାଲିନ୍‌ଙ୍କ ମଧ୍ୟରେ କିଛି ପ୍ରଭେଦ ନାହିଁ । ଉଭୟେ ରାଜ୍ୟ ବା ଜାତି ନାଁରେ ପ୍ରଜାର ବ୍ୟକ୍ତିଗତ ସ୍ୱାଧୀନତାକୁ ଗିଳି ପକାଇଛନ୍ତି । ସେହିପରି ଗଣତନ୍ତ୍ର (Democracy)ରେ ମଧ୍ୟ ବ୍ୟକ୍ତିଗତ ସ୍ୱାଧୀନତା ରହିପାରେ ନାହିଁ । କାରଣ ପ୍ରତ୍ୟେକ ଗଣତନ୍ତ୍ରର ମୂଳରେ ସଂଖ୍ୟାଧିକ ଦଳର ପୂର୍ଣ୍ଣ ରାଜତ୍ୱ । ଯେଉଁ ଭୋଟ ନେଇ ଦଳେ ଯେବେ ବେଶୀ ସଂଖ୍ୟାରେ ରାଜ୍ୟସଭାକୁ ଯାଇପାରିଲେ, ତା'ହେଲେ ସେମାନଙ୍କର ହୁକୁମ ହେଲା କାଏମ୍ । ତାଙ୍କର ଭିତରୁ ମନ୍ତ୍ରୀ, ତାଙ୍କର ଭିତରୁ ସଭାପତି, ତାଙ୍କର ଭିତରୁ କର୍ମଚାରୀ ହୋଇଗଲେ । ଯେବେ ସେମାନଙ୍କ ଭିତରେ କେହି ଜଣେ ବଡ଼ମୁଣ୍ଡିଆ, ବଡ଼କୁହା, ବଡ଼ବୁଦ୍ଧିଆ ଥାଏ, ତା' ହେଲେ ସେ ରାଜ୍ୟର ସବୁକଥା ନିଜ ହାତରେ ରଖି ଚଳିଲା । ଫଳଟେ ଏ ଗଣତନ୍ତ୍ର, ଏକତନ୍ତ୍ର ବା Dictatorshipରେ ପାଲଟିଗଲା । ଇଟାଲୀରେ ମୁସୋଲିନିଙ୍କର ଓ ଜର୍ମାନୀରେ ହିଟ୍‌ଲରଙ୍କର ଏକଛତ୍ର ଶାସନ ଏହିପରି ଭାବରେ ହୋଇପାରିଥିଲା । ବିଲାତରେ ସୀମାବଦ୍ଧ ରାଜତ୍ୱ ଥିବାରୁ, ଏଠାରେ ଗଣତନ୍ତ୍ର ସ୍ଥାନରେ ଏକଛତ୍ର ରାଜତ୍ୱ ବଡ଼ ଜଲଦି ସମ୍ଭବ ପାରୁନାହିଁ । ତଥାପି ସେଠାରେ ମଧ୍ୟ ଏକଛତ୍ର ରାଜତ୍ୱ ବେଳେ ବେଳେ ହୋଇଯାଉଚି । ପିଟ୍, ଗ୍ଲାଡଷ୍ଟୋନ୍, ବଲ୍‌ଡୱିନ ପ୍ରଭୃତିଙ୍କ ପ୍ରଧାନ ମନ୍ତ୍ରୀତ୍ୱ ଅମଳରେ ସଂଖ୍ୟା-କମ୍ ମାନେ ଦଳ ଓ ଶ୍ରମିକ ଦଳ ଏହାର ଯଥାର୍ଥ୍ୟ ଖୁବ୍ ଅନୁଭବ ପାଇଥିଲେ । ଆମେରିକା ଗଣତନ୍ତ୍ର ରାଜ୍ୟ, କିନ୍ତୁ ଆମେରିକାର ବର୍ତ୍ତମାନ ସଭାପତି ରୁଜ୍‌ଭେଲଟ୍ ସାହେବ ଖାଲି ଦଳ ବଳରେ ଅନେକ ଏକଛତ୍ରି କାମକରି ଯାଉଛନ୍ତି । ଆୟରଲଣ୍ଡ ବା ବର୍ତ୍ତମାନ ନାମ ଏଇରେ ଡି ଭାଲେରଙ୍କ ପ୍ରତାପ ଏହିପରି । ଭାରତବର୍ଷରେ ପ୍ରାଦେଶିକ ସ୍ୱାୟତ୍ତ ଶାସନ ଚଳିବା ପରେ କଂଗ୍ରେସ ରାଜୁତି ଦେଶ ସମ୍ବନ୍ଧରେ ମୁସଲମାନମାନେ ଓ ମୁସଲମାନ ରାଜୁତି ଦେଶ ସମ୍ବନ୍ଧରେ ହିନ୍ଦୁମାନେ ଯାହା କହୁଚନ୍ତି, ତାହା ଗଣତନ୍ତ୍ରର ଏହି ଦୋଷ ହେତୁରୁ ସମ୍ଭବ ହୋଇପାରୁଚି ।

ତା' ହେଲେ କ'ଣ ? ରାଜୁତି, ସାମ୍ୟବାଦ, ଗଣତନ୍ତ୍ର, ସାଧାରଣତନ୍ତ୍ର ଓ ଏକଛତ୍ର ରାଜୁତି ଓ ସୀମାବଦ୍ଧ ରାଜୁତି କାହିଁରେ ଯେବେ ବ୍ୟକ୍ତିଗତ ସ୍ୱାଧୀନତା ସ୍ଥାନ ନ ପାଇଲା, ତା'ହେଲେ ସେ ଆସିବ କେଉଁଠାରୁ ? ତା'ହେଲେ ତା'ପାଇଁ ମୁଣ୍ଡକୋଡ଼ା କାହିଁ ? ଯାହା ସମ୍ଭବ ନୁହେଁ, ତା' ଲାଗି ଏତେ ପେଟବଥା କାହିଁକି ? ପ୍ରକୃତରେ କୌଣସି ସରକାର ବା ଶାସନକୁ ନିନ୍ଦାକରିବା ଆଗରୁ ବୁଝି ନେବାକୁ

ହୁଏ ଯେ, ଶାସନ ମାତ୍ରକେ ଖରାପ । ଏହାର ମୂଳରେ ପରାଧୀନତା ଟିକିଏ ବରାବର ଲାଗି ରହିଚି । ଏ ପର୍ଯ୍ୟନ୍ତ ଯେତେ ପ୍ରକାର ଶାସନ ନୀତି ଉଦ୍ଭାବିତ ହେଲାଣି, କୌଣସିଥିରେ ସବୁ ଲୋକଙ୍କୁ ସମାନ ସ୍ୱାଧୀନତା ଦେବାଭଳି ପଦ୍ଧତି ବାହାରିପାରିନାହିଁ । ସ୍ୱା' ବୋଲି କେହି ଯେପରି ନ ଭାବନ୍ତି ଯେ, ଅରାଜକତାରେ ବ୍ୟକ୍ତିଗତ ସ୍ୱାଧୀନତା ମାତ୍ର ମିଳି-ପାରେ । ଅରାଜକତାରେ ସବଳର ଦୁର୍ବଳ ଉପରେ ଅତ୍ୟାଚାର ବଢ଼ିଯାଏ । ଅରାଜକତାର ଏକମାତ୍ର ଫଳ ଓ ପରିଣାମ ଏକଚ୍ଛତ୍ର ରାଜତ୍ୱ । ଅରାଜକତା ରାଜ୍ୟର ଗୋଟାଏ ବିକାର ମାତ୍ର; ତାହା ରାଜ୍ୟର ନୀତି ବା ରୀତି ହୋଇପାରେ ନାହିଁ । ଗୋଟାଏ ରାଜ୍‌ତନ୍ତ୍ରକୁ ଜବରଦସ୍ତି ଭାଙ୍ଗି ତା' ଜାଗାରେ ଆଉ ଗୋଟାଏ ରାଜ୍‌ତନ୍ତ୍ର ଆଣିବାକୁ ଗଲାବେଳେ, ଏହିପରି ଅରାଜକତା କିଛି ସମୟ ପାଇଁ ଆସିଯାଇଥାଏ । ସେଥିରେ କାହାରି ଲାଭ ହୁଏ ନାହିଁ; ବରଂ ଗରିବ ଦୁର୍ବଳ ନିଃସହାୟ ଲୋକଙ୍କର ପରମ ବିପଦ । ଇଂରେଜୀ ଇତିହାସରେ ପ୍ରଥମ ଚାର୍ଲସଙ୍କ ଏକଚ୍ଛତ୍ର ରାଜ୍‌ତନ୍ତ୍ର ଭାଙ୍ଗି ପ୍ରଜାତନ୍ତ୍ର ବସାଇବାକୁ କ୍ରମ୍‌ୱେଲ ଚେଷ୍ଟା କଲାବେଳେ ଏହିପରି ଅରାଜକତା ଆସିଯାଇଥିଲା । ଆଉ ତା'ର ଫଳ ହେଲା, କ୍ରମ୍‌ୱେଲଙ୍କର ଏକଚ୍ଛତ୍ର ଶାସନ ଓ ଶେଷରେ ଦ୍ୱିତୀୟ ଚାର୍ଲସଙ୍କର ଉତ୍ଥାନ । ବୁରବନ ବଂଶର ଏକଚ୍ଛତ୍ର ରାଜ୍‌ତନ୍ତ୍ର କାଟିବାକୁ ଯାଇ ହେଲା ଯେ ଫରାସୀ ବିପ୍ଳବ, ତା'ର ଫଳରେ ଦୀର୍ଘ ସାତବର୍ଷ ଧରି ସମୁଦାୟ ଫରାସୀ ଦେଶରେ ରକ୍ତତର୍ପଣ । ଗରିବ ଓ ଧନୀ ନିଃସହାୟମାନଙ୍କ ଅତ୍ୟାଚାରରେ, ଗୁଣ୍ଡା ଛେଉଣ୍ଡଙ୍କ ବୋବାଳରେ କୁମ୍ଭୀପାକକୁ ମଧ୍ୟ ବଳି ଯାଇଥିଲା । ତା'ପରେ ଜର୍ମାନୀରେ ହିଟଲର ଯୁଗ ଆରମ୍ଭରେ ବା ରୁଷିଆର ଲେନିନ୍ ଯୁଗ ଆରମ୍ଭରେ ସେହିପରି ଅତ୍ୟାଚାର, ଅନାଚାର ଓ ଅରାଜକତା ହୋଇଯାଇଚି । ଆଉ ଏସବୁର ଫଳରେ ନେପୋଲିଅନଙ୍କର, ହିଟଲରଙ୍କର ଓ ଲେନିନ୍, ଟ୍ରଟ୍‌ସ୍କି ଓ ଷ୍ଟାଲିନ୍‌ଙ୍କର ଏକଚ୍ଛତ୍ର ଶାସନ ।

ତା'ହେଲେ ବ୍ୟକ୍ତିର ଗତି କେଉଁଠାରେ ? ଆଜି ପର୍ଯ୍ୟନ୍ତ ପୃଥିବୀର ରାଜନୈତିକ ଇତିହାସ ଆଲୋଚନା କଲେ ଗୋଟାଏ କଥା ବଡ଼ ଜୋର ମନେହୁଏ—ତାହା ଏହି 'ନାଗରିକ ମାୟା' । ସହର, ବଜାର ବା ରାଜପ୍ରତିନିଧିଙ୍କ ଆସ୍ଥାନ, ଦେଶର ମହାତୀର୍ଥ । ଚୁମ୍ବକ ଲୁହାକୁ ଭିଡ଼ିଲା ପରି, ଦୀପ ଆଲୁଅ ପତଙ୍ଗକୁ ଲୋଭେଇଲା ପରି, ଏଇ ସହର ଜୀବନ ଦେଶର ସବୁ ଭଲ ମନ୍ଦକୁ ନିଜଆଡ଼େ ଟାଣି ଆଣେ । ରାଜା ଦେଶର ସବୁ ଶକ୍ତି ନିଜ ହାତରେ ରଖିଲା ପରି ସହର ଦେଶର ସବୁ ରତ୍ନ ନିଜ ହାତରେ ରଖେ । ଫଳରେ ସହରର କେତେ ହଜାର ଲୋକ ହୁଅନ୍ତି ପଣ୍ଡିତ, ଜ୍ଞାନୀ, ଧନୀ, ଶକ୍ତିଶାଳୀ, ଆଉ ମଫସଲର କୋଟିଏ ପ୍ରଜା ଅନ୍ଧାରରେ ଅଜ୍ଞାନରେ ସଡ଼ି ମରନ୍ତି; ସହର ଲୋକଙ୍କୁ ବଡ଼ ବୋଲି ଜ୍ଞାନ କରି ସେମାନଙ୍କ ପାଦରେ ନିଜର ବ୍ୟକ୍ତିତ୍ୱ ହଜାଇ ବସନ୍ତି ।

ଏଣେ ସହରବାସୀ ମଧ୍ୟ ଧନୀ ଓ ହାକିମହୁକୁମାଙ୍କ ପ୍ରତାପରେ ନିଜକୁ ମଣିଷ ବୋଲି ଜ୍ଞାନ କରିପାରନ୍ତି ନାହିଁ । ଅବଶ୍ୟ ସ୍ୱାୟତ୍ତଶାସନ ଇଲାକାରେ ଭୋଟ ଅଧିକାର

ଦ୍ୱାରା ସହର ଓ ମଫସଲ ଲୋକର ଗୁରୁତ୍ୱ ଟିକିଏ ବଢ଼ିଯାଏ । କିନ୍ତୁ ସେ ନିତାନ୍ତ ଟିକିଏ । ଏତେ ଟିକିଏ ସମୁଦ୍ରକୁ ଗଙ୍ଗେ ପାଣି ପରି ତାର କୌଣସି ମୂଲ୍ୟ ରହେନାହିଁ । ପୃଥିବୀରେ ବ୍ୟକ୍ତିଗତ ସ୍ୱାଧୀନତା ଓ ଗୁରୁତ୍ୱ ଆଣିବାର ଏକମାତ୍ର ପନ୍ଥା, ଏଇ ଦଳଙ୍କ ହାତରୁ—ସେ ସାମ୍ୟବାଦୀ ଦଳ ହୁଅନ୍ତୁ ଅଥବା ରାଷ୍ଟ୍ରବାଦୀ ଦଳ ହୁଅନ୍ତୁ—ଅଧିକାର କାଢ଼ିନେଇ, ପ୍ରତ୍ୟେକ ମଫସଲ ଗାଁ ଓ ସହରର ଲୋକଙ୍କ ହାତରେ ଦେଇଦେବା । ଆଉ ତାର ଉପାୟ—ସହରର ରାଜୁତି ଭାଙ୍ଗିବା । ଏହିଟା ଖାଲି ଆଦର୍ଶବାଦୀର କଥା ନୁହେଁ, ବର୍ତ୍ତମାନ ଯୁଗରେ ଖାଣ୍ଟି ପ୍ରାକୃତ ରାଷ୍ଟ୍ରନୀତି । କିମିତିକା ? ଏଇ ଦେଖନ୍ତୁ ଗ୍ରାମ୍ୟ ପଞ୍ଚାଏତ୍ । ଯଦି ରାଜ ହୁକୁମ ଅନୁସାରେ ପ୍ରତି ଗାଁରେ ଗୋଟିଏ ଗୋଟିଏ ପଞ୍ଚାୟତ ବସାଯାଏ, ଆଉ ସେଇ ପଞ୍ଚାୟତଙ୍କ ହାତରେ ସେଇ ଗାଁର ସମସ୍ତ ଶାସନ ଭାର ଦିଆଯାଏ, ତା ହେଲେ ଗାଁବାଲାଙ୍କୁ ମୁଠା ମୁଠା ପଇସା ଖର୍ଚ୍ଚ କରି ସହରକୁ ଧାଇଁ, ଅଜଣା ଅଶୁଣା ଠକଙ୍କ ହାତରେ ପଡ଼ି ହନ୍ତସନ୍ତ ହେବାକୁ ପଡ଼ିବ ନାହିଁ, ଅଥବା ଗାଁବାଲା ଗାଁ କଥା ବୁଝିବାରୁ ଗାଁର ଦୁଃଖ ସୁଖ ସହଜରେ ଚଳେଇ ହେଇଯିବ । ପ୍ରତ୍ୟେକ ଗାଁ ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ଓ ରାଜ୍ୟର ଚଳାଚଳ ଭାର ସେଇ ଗାଁ ଲୋକଙ୍କ ହାତରେ । କେହି କେହି କହିବେ ଯେ ଗାଁବାଲା ମୂର୍ଖ, ନିରକ୍ଷର, ସେମାନେ ଗାଁ ଚଳେଇବେ କିପରି ? କଥାଟା ଦଶଦଶାର ଫଳ । ଗାଁ ଚଳେଇବା ପାଇଁ, ରାଜ୍ୟ ଚଳେଇବା ପାଇଁ, ପାଣ୍ଡିତ୍ୟ ଦରକାର ନାହିଁ । ଦରକାର ଖାଲି ସାଧାରଣ ଜ୍ଞାନ ଓ ବିବେକ । ଦେଖିବାକୁ ଗଲେ ଗାଁବାଲାଙ୍କ ଗାଁ ଭିତର ସାଧାରଣ ଜ୍ଞାନ ଓ ବିବେକ ଅନେକ ପାଠୁଆ ପଣ୍ଡିତଙ୍କଠାରୁ ଢେର ବେଶୀ । ପୁଣି କଥା ହେଇପାରେ ଯେ, ଆମେ ତ ଆଜିକାଲି ଦେଖୁଛୁଁ, ଗାଁ ଗାଁ ଭିତରେ କିମିତି ଦଳାଦଳି, ବାଡ଼ା ବାଡ଼ି । ଏମାନଙ୍କ ଭିତରେ ଏକତା ତ ନାହିଁ, ଏମାନେ ଗାଁ ଚଳେଇବେ କିପରି ? ଗାଁର ପଞ୍ଚାୟତ ପ୍ରତ୍ୟେକ ଗାଁବାଲାଙ୍କ ଭୋଟ ଉପରେ ଗଢ଼ାହେବ । ଗାଁର ଆକାର ଓ ପ୍ରକୃତି ଯେମିତି ଯେବେ ପ୍ରତି ୫ ଜଣରେ ବା ଦଶଜଣରେ ଜଣେ ମେମ୍ବର ପ୍ରତି ବର୍ଷ ବଛା ହୁଅନ୍ତି ତାହେଲେ ଗାଁର ଦଳାଦଳି ପଞ୍ଚାଇତ ଉପରେ ବେଶୀ କିଛି ଦାଉ ସାଧି ପାରିବ ନାହିଁ । ଆଉ ଏପରି ନିୟମ ହବା ଉଚିତ ଯେ ଗାଁର ସଂଖ୍ୟାଲଘିଷ୍ଠ ଦଳ ଯେବେ ପଞ୍ଚାୟତର କୌଣସି ରଫାରେ ଅରାଜି ହୁଅନ୍ତି, ତା'ହେଲେ ସେମାନେ ମଣ୍ଡଳ ପଞ୍ଚାୟତ ଓ ଥାନା ପଞ୍ଚାୟତ ପାଖରେ ଆପତ୍ତି କରି ନିଜର ଅଭିଯୋଗ ସାବ୍ୟସ୍ତ କରିପାରିବେ । ଏହି ପଞ୍ଚାୟତଙ୍କ ଉପରେ ଖଜଣା ଅସୁଲଠାରୁ ମାଏ ଲଗାଏତ ମକଦ୍ଦମା ବିଚାର ଓ ଗାଁର ଆଇନ ତିଆରି ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟର ଭାର ଦିଆଯିବ । ମକଦ୍ଦମା ବିଚାରରେ କେହି କେହି କହିପାରନ୍ତି ଯେ, ଓକିଲ ମୁକ୍ତାର ନ ଥିଲେ, ମକଦ୍ଦମା ବିଚାରରେ ନ୍ୟାୟ ମୀମାଂସା ହବ କିମିତି ? କଥାଟା କେବଳ ଓକିଲ ରାଜନୀତିକମାନଙ୍କ ମୁହଁରେ ଶୋଭା-ପାଏ । ଓକିଲ ମୁକ୍ତାର ନ୍ୟାୟ ବିଚାରରେ ସାହାଯ୍ୟ କରନ୍ତି ଯେତେ, ଅନ୍ୟାୟ

ବିସ୍ତରରେ ପ୍ରସ୍ତୁତ ମଧ୍ୟ ହୋଇଥାନ୍ତି ସେତକ । ପ୍ରକୃତ କଥା ନ ଜାଣିଥିବା ହାକିମ ପାଖରେ ବିସ୍ତର କରିବାପାଇଁ ଓକିଲ ମୁକ୍ତ୍ୟାର ଦରକାର । କିନ୍ତୁ ଗାଁର ମକଦ୍ଦମା, ଗାଁବାଲା ତାର ଖିନ୍ନଭିନ୍ନ କରି ସବୁ ଜାଣନ୍ତି । ତାଙ୍କ ପାଖରେ ଓକିଲ ମୁକ୍ତ୍ୟାର କଣ କରିବେ ? ଗାଁରୁ ଯାହା ଖଜଣା ବା ଟିକସ ଆଦାୟ ହବ, ଗାଁବାଲା ତାକୁ ପ୍ରଥମେ କେନ୍ଦ୍ର ସରକାରଙ୍କ ମୁଷ୍ଟିଭିକ୍ଷା, ପଞ୍ଚାୟତର ଯେ ଜଣେ ଦୁଇଜଣ କର୍ମୀ ରହିବେ, ତାଙ୍କ ଦରମା, ପଞ୍ଚାୟତ କାର୍ଯ୍ୟର ଖର୍ଚ୍ଚ ଓ ଗ୍ରାମର ସ୍ୱାସ୍ଥ୍ୟ, ଶିକ୍ଷା ଓ ରାସ୍ତାଘାଟ ଇତ୍ୟାଦିରେ ଖର୍ଚ୍ଚ କରି ପାରିବେ । ଏହି ଗ୍ରାମ ପଞ୍ଚାୟତ ଉପରେ ମଣ୍ଡଳ ପଞ୍ଚାୟତ ବା ଇଉନିୟନ ପଞ୍ଚାୟତ, ଗ୍ରାମ ପଞ୍ଚାୟତରେ ମେମ୍ବରମାନଙ୍କ ଭିତରୁ ଶ୍ରେଷ୍ଠ ବଛା ହୋଇ ତିଆରି ହେବ । ଏହାର ପ୍ରଧାନ କାମ ହବ ଗାଁ ଗାଁ ଭିତରେ କଳକୋଳର ମୀମାଂସା ଓ ଗାଁ ପଞ୍ଚାୟତର ବିସ୍ତର ବିରୋଧରେ ପକ୍ଷ୍ୟାଲଗ୍ରିଷ୍ଟ ଦଳର ଗୁହାରି ଶୁଣା । ଇଉନିୟନ ପଞ୍ଚାୟତରୁ ଶ୍ରେଷ୍ଠ ବଛା ହୋଇ ଥାନା ପଞ୍ଚ ଓ ଥାନା ପଞ୍ଚରୁ ଶ୍ରେଷ୍ଠ ବଛା ହୋଇ ଜିଲ୍ଲା ପଞ୍ଚ ତିଆରି ହବ । ଏମାନେ କେବଳ ଯାଞ୍ଚ ଓ ଦେଶର ସାଧାରଣ ନୀତି ପାଇଁ ରହିବେ । ଥାନା ଓ ଜିଲ୍ଲା-ପଞ୍ଚ କେନ୍ଦ୍ର ସରକାରର ଜଣେ ଜଣେ କର୍ମଚାରୀଙ୍କ ଅଧୀନରେ ରହିବେ ଓ ସେମାନଙ୍କ ଇଲାକାର ମଣିଷମାନଙ୍କୁ ପ୍ରଭୃତି ବଡ଼ ବଡ଼ ମକଦ୍ଦମାର ଶେଷ ବିସ୍ତର କରି ପାରିବେ । ଏହିପରି ପ୍ରଣାଳୀରେ ରାଜ୍ୟ ଚଳେଇବାର ଖର୍ଚ୍ଚ ଯେପରି କମିବ, ଶାସନ ପ୍ରଣାଳୀ ସେହିପରି ସହଜ ଓ ସରଳ ହେବ, ଅଥଚ ପ୍ରତ୍ୟେକ ବ୍ୟକ୍ତି ନିଜର ଗୁରୁତ୍ୱ ଓ ବ୍ୟକ୍ତିତ୍ୱ ଅନୁଭବ କରି ପାରିବେ । ମୁଁ ଯାହା ଉପରେ କହିଲି, ସେ ଖାଲି ଟିକିଏ ସୂଚେଇ ଦେବା ମାତ୍ର । ମୁଁ ବୁଝୁଛି ଆହୁରି ଅନେକ କଥା ସ୍ୱା' ଭିତରେ ରହିଗଲା । ସେ ସବୁ ଖିନ୍ନଭିନ୍ନ କରି ବିଚାର କରିବାର ଜାଗା ଏ ନୁହେଁ । ଏହିପରି ଭାବରେ ଗୋଟାଏ ଦେଶର ଶାସନ ତିଆରି ହେଲେ, ତା'ପରେ ଭିନ୍ନ ଦେଶ ସାଙ୍ଗରେ ଏ ଦେଶର କିପରି ସମ୍ବନ୍ଧ ରହିବ, ତାହାର ବିସ୍ତର କରାଯିବ । ସେ ମଧ୍ୟ ସେହିପରି ପଞ୍ଚାୟତ ସଭା ଦ୍ୱାରା ହେବ । ସେ ପଞ୍ଚାୟତ ସଭା ଆଜିକାଲିର ନପୁଂସକ League of nations ବା ଆନ୍ତର୍ଜାତିକ ସଭା ଭଳି ହେବନାହିଁ । ପୃଥିବୀର ସୈନ୍ୟଶକ୍ତିର ଭାର ଏଇ ଜାତିଆଣ ସଭା ଉପରେ ରହିବ । କୌଣସି ଜାତି ଏଇ ସୈନ୍ୟ ଛଡ଼ା ଅନ୍ୟ ସୈନ୍ୟ ରଖି ପାରିବେ ନାହିଁ । ଏହି ସଭା ହାତରେ ଗୋଟାଏ ବଡ଼ ବ୍ୟାଙ୍କ ରହିବ ଯେଉଁଥିରେ କି ପୃଥିବୀର ଯେତେକ ଅମାନତ ଟଙ୍କା ସବୁ ରହିଥିବ । ଏହିପରି ଧନ ଓ ଜନ ବଳରେ ବଳୀୟାନ୍ ଏ ସଭା ପୃଥିବୀ ଭିତରେ ଶାନ୍ତିରକ୍ଷା କରିବ, ବଳୁଆ ଜାତି ପଡ଼ିଶା ଦୁର୍ବଳ ଜାତିର ତୋଟି ଚପି, ଯେପରି ତାର ଶେଷ ରକ୍ତ ବିନ୍ଦୁଟିକ ଶୋଷିନେଇ ନ ପାରେ ତାହା ଦେଖିବ । ଆଜିକାଲିର ଆନ୍ତର୍ଜାତିକ ସଂଘ ଏତେ ଦୁର୍ବଳ ଓ ଏତେ ହୀନମାନ ଏଇଥିପାଇଁ ଯେ, ଏ ମଣିଷ ଜାତିର ସଭା ନୁହେଁ, ଦଶଜଣଙ୍କର ସଭା ମାତ୍ର । ସ୍ୱା ହାତରେ ସୈନ୍ୟବଳ ବା ଧନବଳ ଦବାରେ କେବଳ ଦୁର୍ବଳ ପ୍ରତି ଅତ୍ୟାଚାର ସିନା, ଆଉ କିଛି ଲାଭ ନାହିଁ ।

ଏ ବିଷୟରେ ଅନେକଗୁଡ଼ାଏ ଗପି ଯାଇଛି । ଏଥରକ ସ୍ୱାର ଉଢ ହେବା ହଉଚି । ମୁଁ ବୁଝୁଛି ମୋର ଏ କଳ୍ପନା ଆକାଶ କଇଁଆ ମାତ୍ର । କିନ୍ତୁ ଆକାଶରୁ କଇଁଆ ତୋଳା ହୋଇପାରେ, ଚିଲ୍‌କାରୁ ମାଛ ମରା ହୋଇପାରେ ଓ ସେଥିରୁ ଯେ ରସୁଆ ମାଲ ତିଆର ହେବ, ତାକୁ ଖାଇ ଆମର ଏ ମଣିଷ ଜାତି ଧୁଣ୍ଡା ହୋଇପାରନ୍ତି । ଏଥିରେ ବିଚିତ୍ର କିଛି ନାହିଁ; ଅସମ୍ଭବ ମଧ୍ୟ କିଛି ନାହିଁ ।



# କାନୁନ ବେଶ୍ୟା

ଆଜକାଲି ଟୋକା ଟୋକୀଙ୍କ ଭିତରେ ଗୋଟାଏ ହୁଜୁଗ ଆରମ୍ଭ ହୋଇଛି । ସେଥିପାଇଁ ଦାୟୀ ଅନେକାଂଶରେ ବର୍ଣ୍ଣାର୍ଡ ଶ । ତାଙ୍କର ଗୋଟାଏ ଖୋଇ, ଯାହା ଅଛି ତାକୁ ନାହିଁ ବୋଲି ପ୍ରମାଣ କରିବା—ଯାହାକୁ ସମସ୍ତେ ଭଲ ବୋଲି କହନ୍ତି, ତାକୁ ଖରାପ ବୋଲି ବୁଝେଇବା । ତାଙ୍କର ଏପରି କରିବାଟା ଠିକ୍ ନୁହେଁ; କାହିଁକି ନା, ଆମ ଋଷି ମହର୍ଷିମାନେ କହିଛନ୍ତି, 'ସତ୍ୟଂ ବ୍ରୂୟାତ୍, ପ୍ରିୟଂ ବ୍ରୂୟାତ୍, ମା ବ୍ରୂୟାତ୍ ସତ୍ୟମ ପ୍ରିୟଂ ।' ସତ କହ—ଯୁ କଥା ଭଲ ଲାଗିବ, ସେ କଥା କହ । ଯୁ କଥା ସତ ହେଲେ ବି ଭଲ ନଲାଗିବ, ତା' କହନି । କଥାଟା ବୁଝୁଛ ତ ? ସତ କଥା ଭଲ ନ ଲାଗିଲେ କହିବାକୁ ହବନି । ଭଲ ଲାଗିବା କଥାଟା ମିଛ ହେଲେ ବି କହିବ । ଏଥିଲାଗି ବାରଣ ନାହିଁ । ସତ କହିବାଟା ଭଲ, ଯେବେ ସେ ମନକୁ ପାଏ । ନହେଲେ ମିଛ କହିବ ପଛକେ, ସତ କେବେ କହିବନି ଟି ! ଏଇ ଆମର ଯୋଗାରୂଢ଼ ଋଷି ମହର୍ଷି—ଅବଶ୍ୟ ସେ କାଳର । ବର୍ଣ୍ଣାର୍ଡ୍ ଶ ଏ କାଳର ଯୋଗୀ କି ନା; ତାଙ୍କର ସବୁ କଥା ବିପରୀତ । ଯୁ ସତକଥାଗୁଡ଼ିକ ପିଠିରେ ଲାଠି ବାଜିବା ଭଳି ଲାଗିବ, ସେ ସେଇଆ କହିବେ, ଦୁଗୁଣେଇ ହେଇ । ଯୁ କଥା ମିଠା ସତ, ସେ ତାଙ୍କୁ ଲାଗିବ ପିତା । ତୁମେ ମିଛକୁ ଯେତେ ଚନ୍ଦନ ପୁଟଦେଇ ରଙ୍ଗ ବେରଙ୍ଗ କରି ତାଙ୍କ ଆଗରେ ଥୋଇବ, ସେ ତାଙ୍କୁ ଷାଙ୍ଗି ବୁଜି ତା ଭିତରୁ ସେଇ ବିଷ ପିତାଟିକ ବାହାର ନ କରିବାଯାଏ ଥୟ ଧରିବେନି । ସେ କୁ'ଠେଇ କୁ'ବହିରେ ତାଙ୍କର ଥରେ ଲେଖି ପକାଇଥିଲେ, "Marriage is legalised prostitution" ଅର୍ଥାତ୍ କି ନା, ବିବାହ କାନୁନ ବେଶ୍ୟାବୃତ୍ତି । କଥାଟା ଯେ ନିତାନ୍ତ ଅପସନ୍ଦିଆ, ସେଇଟା ବୋଧହୁଏ ବୁଝାଇଦବାକୁ ହବନି । କାହିଁକି ନା, ବିବାହମାନେ ଦି' ଜଣଙ୍କର ହାତ ଛନ୍ଦାଛନ୍ଦି । ଦି'ଜଣ ହବା ଗୃହି—ଗୋଟାଏ ମର୍ଦ ଓ ଗୋଟାଏ ସ୍ତ୍ରୀ । ଏମାନଙ୍କ ବିବାହଟା ଯେବେ ବେଶ୍ୟାବୃତ୍ତି ହୁଏ, ତା'ହେଲେ ବେଶ୍ୟା କିଏ ? ମର୍ଦ, ନା ସ୍ତ୍ରୀ ? ସେ କଥା ତ କହିଲେନି ସେ । ତୁମେ କହିବ ବେଶ୍ୟା ଶବ୍ଦ ସ୍ତ୍ରୀ ଲିଙ୍ଗ । ଅତଏବ ସ୍ତ୍ରୀ ହିଁ ହବ ବେଶ୍ୟା । ସେ ତ ବେଶ୍ୟା କଥା କହିନାହାନ୍ତି; ବେଶ୍ୟା-ବୃତ୍ତି କଥା କହିଚନ୍ତି । ବେଶ୍ୟାବୃତ୍ତି ଆଉ ବେଶ୍ୟା ଭିତରେ ପ୍ରଭେଦ ଅନେକ । ଯିମିତି ଚଷା ଓ ଚଷାବୃତ୍ତି, ଗୁଡ଼ିଆ ଓ ଗୁଡ଼ିଆବୃତ୍ତି, ରଜା ଓ ରଜବୃତ୍ତି ଇତ୍ୟାଦି । ବ୍ରାହ୍ମଣ ମଧ୍ୟ ଚଷାବୃତ୍ତି କରିପାରେ, ହାଡ଼ି ମଧ୍ୟ ରଜବୃତ୍ତି କରିପାରେ । କରୁଚନ୍ତି ବି ଗଦା ଗଦା ! ଅତଏବ ବେଶ୍ୟାବୃତ୍ତିଟା ପୁରୁଷକୁ ବି ଯିମିତି ବୁଝେଇବ, ସ୍ତ୍ରୀକୁ ବି ସିମିତି ! ଶ ଯେତେବେଳେ ସେ କଥାଟାକୁ ଠିକ୍ କରି କହିନାହାନ୍ତି, ସେତେବେଳେ ହୁଏତ ତାଙ୍କର କହିବାଟା ଭୁଲ, ନ ହେଲେ ସେ ପୁରୁଷ ଓ ସ୍ତ୍ରୀ ଉଭୟଙ୍କି ବେଶ୍ୟା ଟଲେ କାଟି

ଦେଇଚନ୍ତି । ଏ ଛଡ଼ା ତ ଅନ୍ୟ କୁଣିସି ଅର୍ଥ ସେଥିରୁ ବାହାର ପାରେନା । ନା ହେ, କଣ କହୁଚ ?

ତୁମେ କହିବ, ପୁରୁଷର ବେଶ୍ୟାବୃତ୍ତି କମିତ ? କଅଁ ନ ହବ ? ଆମେ ତ ଦେଖୁଚୁଁ, ବଡ଼ ବଡ଼ ମୁଣ୍ଡିଆମାନେ Prostitution of intelligence, Prostitution of knowledge ବୁଦ୍ଧିର ବେଶ୍ୟାବୃତ୍ତି, ଜ୍ଞାନର ବେଶ୍ୟାବୃତ୍ତି ଇତ୍ୟାଦି କେତେ କେତେ ଅଭିଯୋଗ, ତାଙ୍କ ଲଢୁଆ ଗଜାଭେଣ୍ଡାଙ୍କ ଉପରେ ଆଣୁଚନ୍ତି । ସେମାନେ କଣ ମିଛ କହୁଚନ୍ତି ? ରାମ, ରାମ ! ମହାତ୍ମାଜୀ, ଜହରଲାଲଜୀ, ଜୟପ୍ରକାଶଜୀ, ଜିନ୍ନା ସାହେବ, ନୁର ସାହେବ, ଆରେ ଏମାନେ କ କେବେ ମିଛ କହିପାରନ୍ତି ? ତାଙ୍କ ତୁଣ୍ଡରୁ ଯାହା ବାହାରିଲା, ସେ ଯେ ଏକାବେଳେକେ ଭଗବାନଙ୍କ ଆଦେଶ । ଚାଳିଶି କୋଟି ଭାରତବାସୀଙ୍କର ଏମିତ ୩୦ କୋଟି ଭଗବାନ । ସେମାନେ ଯେତେବେଳେ ବୁଦ୍ଧି, ବିବେକ, ଜ୍ଞାନ, ଧ୍ୟାନ—ସବୁର ବେଶ୍ୟାବୃତ୍ତି ହୁଏ ବୋଲି କହନ୍ତି । ସେତେବେଳେ ସେ କଥା ମିଛ ହବ କମିତ ? ସ୍ୱୟଂ ଶ ସାହେବ ମଧ୍ୟ ଏସବୁର ବେଶ୍ୟାବୃତ୍ତି କଥା ମଝିରେ ମଝିରେ କହିଚନ୍ତି । ତେବେ ଆଉ ତୁମେ ଗାଲୁମାରୁଚ କଅଁ ? ଦେବତାମାନଙ୍କର ଅପମାନ ହବ । ଭଗବାନମାନେ ଯିବେ ରାଗି । ହୁଁ, ସାବଧାନ !

ଏ ସବୁ ବାଦ୍ ମଧ୍ୟ, ଆମେ ହାତେ ହାତେ ପ୍ରମାଣ କରିଦବୁଁ ଯେ, ସ୍ତ୍ରୀର ଯେପରି ବେଶ୍ୟାବୃତ୍ତିରେ ଅଧିକାର ଅଛି, ପୁରୁଷର ମଧ୍ୟ । ଆଚ୍ଛା, ଦେଖ—ବେଶ୍ୟାବୃତ୍ତି କଣ ? ବେଶ୍ୟା ଯାହା କରେ, ତାହା ହିଁ ନା ? ତୁମ ଘରଣୀମାନେ ଯାହା କରନ୍ତି, ତା'ଠାରୁ ଅଧିକା କଣ କରେ ବେଶ୍ୟା ? ତୁମ ଘରଣୀମାନେ ତୁମକୁ ଦେହ ଦିଅନ୍ତି । ସେ ଆଉ କୁ ପୁରୁଷକୁ ଦେହ ଦିଏ । ତୁମେ କହିବ, ପ୍ରଭେଦ ଏଇ ଯେ, ଆମ ଘରଣୀ ଆମକୁ ପ୍ରେମକରେ ବୋଲି ଦେହ ଦିଏ, ଆଉ ଖାଲି ଆମକୁ । ବେଶ୍ୟା ପଇସା ଲାଗି ଅନ୍ୟକୁ ଦେହ ଦିଏ, ଆଉ ସେ ଅନେକଙ୍କୁ । ତୁମେ ଠିକ୍ କହୁଚ ତ, ତୁମ ଘରଣୀ ତୁମକୁ ପ୍ରେମକରେ ବୋଲି ଦିହ ଦିଏ ଖାଲି ? ଭାବିଚନ୍ତି କରି କହିବ, ଦେଖ, ନ ହେଲେ ଖାପଚରେ ପଡ଼ିଯିବଟି !

ଆଚ୍ଛା, ତୁମ ଘରଣୀ କଷ୍ଟେ କୁ'ଦିନ ଗୋଟାଏ ସୁନାହାର, ମୋତି କାନଫୁଲ, ସାର୍ ମୁଦି, କ ପାଟ, ଜର୍ଜେଟ, ବନାରସି କ ମିଲ ସୂତାଶାଢ଼ୀ ଆଣିଦବାକୁ ଅଳି କରିଚନ୍ତି । ତୁମେ ଆଣି ଦେଇନ । ମନେପଡ଼ିଲା ନ ବୋଲି ହଉ, ବା ଅଣ୍ଟାରେ ମାଲ ନଥିଲା ବୋଲି ହଉ । ତାପରେ କଣ ହେଲା ? ଦେଖାଜା ଗଲେ ତୁଣ୍ଡି । ଶୋଇଲେ ତୁମ ଆଡ଼କୁ ପିଠିକା କରି । କେତେ ସାଧ୍ୟସାଧନା ତୁମେ କରିନ, ସେ ତୁମକୁ କୁ' କାଳର କେତେ କଥା ନ ଉଦେଇଛନ୍ତି ! ତୁମେ କେତେ କାନ୍ଦୁଣୁମାନ୍ଦୁଣୁ ନ ହୋଇଚ, ଆଉ ସେ କେତେ ଲୁହରେ ମାଣ୍ଡି ଗୋଟାକଯାକ ଓଦା ନ କରିଚନ୍ତି, ରାତି

ପାଉଥାଇଛ । ପ୍ରେମ ରହିଲା କୁ'ଠି ? ମତେ, ଦିଅ, ତୁମେ କହ । ଏଇ ସବୁଦା ନା ସେଥିରେ ? ଆଛା, ତୁମେ ତୁମ ଘରଣୀଙ୍କୁ ଖାଇବାକୁ ନଦେଲେ ମୁଠେ ଭାତଜଳ, ପିନ୍ଧିବାକୁ ନଦେଲେ ମନଘେନ, ତାଙ୍କ ମନ ପାଇବ ? ମୁଁ ମୋ ଶକ୍ତିକୁ ପୁଛେଁ, ଦରକାର ପଡ଼ିଲେ ମୋ ଶକ୍ତି ବାହାରେ ବି, ଧାର କରଜ କରି, ବଢ଼ା ଛନ୍ଦା ପଡ଼ି, ମୋ ଘରଣୀକୁ ତ ପାଳିବି, ପୋଷିବି, ତା ବଦଳି ସେ ଦେବେ ମତେ ତାଙ୍କର ପ୍ରେମ— ଦହି ମୁଣ୍ଡ ହେଲେ ଦେବେ ଟିକିଏ ମୁଣ୍ଡରେ ଗୋଡ଼ରେ ହାତ ଚଳେଇ । ମୁଁ ଯେବେ ତା ନକରେ, ତାହେଲେ ସେ ତା ବି କରିବେନି । ଏଇ ଯେ କିଣାବିକା, ଏଇଟା କଣ ବେଶ୍ୟାର କିଣାବିକାଠୁ ଅଲଗା ? ସେ ବି ତ ସେଇ ଭଲ ଖାଇବା, ଭଲ ପିନ୍ଧିବାର ବଦଳି ତା ଦେହଟାକୁ ଗୋଟାଏ ପୁରୁଷକୁ ଦିଏ ? ସେ ତେବେ ବେଶ୍ୟା ହେଲା କିଆଁ, ଆଉ ତୁମ ଘରଣୀ ସତୀସାଧ୍ୱୀ ହେଲେ କିଆଁ । ହଁ, ତୁମେ କହିବ, ସେ ବାର ପୁରୁଷକୁ ଦେହ ଦିଏ, ତୁମ ଘରଣୀ ଖାଲି ତୁମକୁ ହିଁ ଦିଅନ୍ତି । ମୁଁ କହୁଛି, କେହି ଯେବେ ବିବାହ ନକରି ଜଣେ କାହାର ରକ୍ଷିତା ହୋଇ ରହେ, ତା ହେଲେ ତୁମେ ତାକୁ ବେଶ୍ୟା ବୋଲି କହିବନି ତ ? ତାଆଡ଼ୁ ଯେ ପିଲା ଛୁଆ ହେବେ, ତାଙ୍କୁ ସେଇ ପୁରୁଷର ସମ୍ପତ୍ତିରେ ତା ଭିଆଣ ମାଇପର ଛୁଆ ପିଲାଙ୍କ ସାଙ୍ଗରେ ସମାନ ଅଧିକାର ଦେବ ତ ? ତାକୁ ସମାଜରେ ତୁମର ଘରଣୀଙ୍କ ସାଙ୍ଗରେ ଏକ ଆସନରେ ବସେଇବ ତ ? ତା ତ କରିବନି, ସେ ଯେ ବେଶ୍ୟା । ତୁମ ମାଇପ ଯିମିତି ପେଟ ଗୃଖଣ୍ଡକ ଲାଗି ତୁମ ପାଖରେ ଦେହ ବିକଚନ୍ତି, ସେ ମଧ୍ୟ ତା ପେଟ ଗୃଖଣ୍ଡକ ପାଇଁ ଅନ୍ୟ ପାଖରେ ଦେହ ବିକଚି । ପ୍ରଭେଦ ଏତିକି ଯେ, ଗୋଟାଏ ବ୍ରାହ୍ମଣ ବସି ମନ୍ତ୍ର ପଢ଼ିଲା, ନିଆଁରେ ଘିଅ ଢାଳା ହେଲା, ବାଇଦ ବାଜିଲା, କେତେଗୁଡ଼ାଏ ଲୋକ ଆସି ପିଠାପଣା ମାଛମାଉଁସ କରି ତୁମ ଘରେ ଗିଳିଲେ । କଣ ନା, ତୁମର ତୁମ ମାଇପଙ୍କ ସାଙ୍ଗରେ ବାହାଘର ହୋଇଗଲା । ତାପରେ ତୁମକୁ ବସେଇ ତୁମ ମାଇପ ଆଉ ପାଞ୍ଚଟା ଅଣ୍ଡିରଙ୍କ ସାଙ୍ଗରେ ରସକେଳି କରନ୍ତୁ ବା ରସକେଳି କରିବାର ଇଚ୍ଛାଟା ମନ ଭିତରେ ରଖି ଦାନ୍ତ ଲଗକୁ କଷ୍ଟ କରି ନ ପାରି ଗୁମୁରି ଗୁମୁରି ତୁମ ଉପରେ ତାର ଦାଉ ଶୁଝାନ୍ତୁ, ଅଥବା ତୁମଠାରୁ ଇନ୍ଦ୍ରିୟ ସୁଖର ବଢ଼ିଆ ମଜା ପାଉଚନ୍ତି ବୋଲି ଅନ୍ୟ ଆଡ଼େ ଯିମିତି ମନ ନଦିଅନ୍ତୁ, ସେ ହୋଇଗଲେ ଘରର ଘରଣୀ, ସମାଜର ନେତ୍ରୀ, ଆଉ ପରମା ସତୀ । ଶଗୁଷ୍ଟ ବେଶ୍ୟାର ଝିଅ ଯେତେବେଳେ ବଡ଼ହୋଇ ପ୍ରଥମ ପୁରୁଷ ପାଖକୁ ଯାଏ, ସେତେବେଳେ ମଧ୍ୟ ତାର ବାଜା ବାଜେ, ପୂଜା ଝୁଣା ହୁଏ ଓ ଭୋଜି ଚାଲେ । କିନ୍ତୁ ସେ ରହିଯାଏ ବେଶ୍ୟା ଭଳି । ତୁମେ ତାହେଲେ ଦେଖୁଚ, ପ୍ରକୃତ ପକ୍ଷରେ ଆମର ଏ ବିବାହପ୍ରଥା ଆମକୁ ବେଶ୍ୟା ଉପରକୁ ଟେକି ନିଏନି । ବିବାହ ଓ ଅବିବାହ ଉଭୟ ମଧ୍ୟରେ ବେଶ୍ୟାବୃତ୍ତିଟା ବଜାଏ ରହେ—ତୁମଠି ଓ ତୁମ ସ୍ତ୍ରୀଙ୍କଠି । ମାଫ୍ କରିବେ, ମୁଁ ଠିକ୍ ତୁମର ସ୍ତ୍ରୀଙ୍କ କଥା କହୁନି । ମୁଁ ବୁଝି

ଭଲକରି ଜାଣେ, ସଂସାରଟାଯାକର ସ୍ତ୍ରୀ ଦୋଷ୍ଟରିଣୀ ହୋଇପାରନ୍ତି, ବେଶ୍ୟାବୃତ୍ତି କରିପାରୁଥାନ୍ତି, କରୁଛନ୍ତି ବି, ରମା ମାଇପ, ଶ୍ୟାମା ମାଇପ, ହରି ମାଇପ, ସରି ମାଇପ—ସମସ୍ତେ । କିନ୍ତୁ ତୁମ ସ୍ତ୍ରୀ ? ହରେ ରାମ ! ସେ ସାକ୍ଷାତ୍ ସୀତା, ନ ହେଲେ ସାବିତ୍ରୀ । ମୁଁ ମୋଟେ ତାଙ୍କ କଥା ବା ତାଙ୍କୁ ଦେଖାଇ କହୁନି । ଏଇଟା ଖାଲି କହିବା ଭଙ୍ଗୀ । 'ତୁମେ' ଯାଗାରେ 'ତାଙ୍କୁ' ବୁଝିବା ହେବେ, କେବଳ ତୁମ ସ୍ତ୍ରୀଙ୍କ କଥା ପଡ଼ିଲି ବେଳେ ।

ତୁମ କଥା ବେଳକୁ ନୁହେଁ; ତୁମ କଥା ବେଳକୁ ତୁମେ ତୁମେଇ ରହିବ । ତୁମେ ବେଶ୍ୟା ବୃତ୍ତି କରୁଚ—ସେକଥା ମୁଁ କହୁଚି ଓ ପ୍ରମାଣ କରିବାକୁ ଯାଉଚି । ବେଶ୍ୟାବୃତ୍ତି ତା ହେଲେ ଏଇ ହେଲା—ନିଜର ସ୍ୱାର୍ଥସିଦ୍ଧି ଲାଗି ଯାହା ନ କରିବାର କଥା, ତା ଯେବେ କରାଯାଏ, ତା'ହେଲେ ସେଇ ବେଶ୍ୟାବୃତ୍ତି । ଆଚ୍ଛା ସତ କହ, ତୁମେ କେବେ କରିନ ଏମିତି କଥା ? ଏଇ ତୁମର ବାହାଘର କଥା କହୁନା ? ତୁମେ ଯେ ଶ୍ରୀମତୀଙ୍କୁ ବିବାହ କରି ତାଙ୍କୁ ଏତେ ହିନସ୍ତା କରୁଚ, ସେଇଟା ତାଙ୍କ ସୁଖ ଲାଗି, ନା ଜଗତର ସୁଖ ଲାଗି, ନା ତୁମରି ଭଲେଇ ଲାଗି ? ତୁମକୁ ରାନ୍ଧି ବାଢ଼ି ଦବ, ଦେହ ମୁଣ୍ଡ ହେଲେ ତୁମକୁ ସେବା କରିବ, ତୁମର ଘରସଂସାର ସମ୍ଭାଳିବ, ତୁମର ଇନ୍ଦ୍ରିୟ ତୃପ୍ତି କରିବ, ତୁମର ବଂଶ ରକ୍ଷା କରିବ—ଏଇଥିଲାଗି ନା ତୁମେ ବାହାହୋଇଚ ? ତୁମର ବିବାହ ହବାର ଏଇ ମୂଳ କାରଣଟା କେବଳ ତୁମର ସ୍ୱାର୍ଥସିଦ୍ଧି ଲାଗି । କେବଳ ତୁମରି, ଆଉ କାହାରି ନୁହେଁ । ଯାହାଙ୍କୁ ବାହା ହେଲ, ତାଙ୍କୁ ହୁଏତ ବାହା ଆଗରୁ ତୁମେ ଦେଖିଇନ । ଯଦିବା ଦେଖିଥାଅ, ତା'ହେଲେ ସେ ଫଟରୁ ବା ଥରେ ଅଧେ ନିଜ ଆଖିରେ । ତାଙ୍କ ବାପା ତୁମକୁ ଟଙ୍କା ଥଳି ଦେଲେ, କି ସେ ବଡ଼ ଅଫିସର ବୋଲି ପଦମର୍ଯ୍ୟାଦା ପାଇବା ଆଶାରେ, କି ତାଙ୍କ ରୂପର ଝଲକ ମୋହରେ ତୁମେ ରାଜି ହୋଇଗଲ । ଏଇ ଯେ ଟଙ୍କା ବା ପଦମର୍ଯ୍ୟାଦାର ମୋହରେ ତୁମେ ତୁମର ପ୍ରେମ ଗୋଟାଏ ସ୍ତ୍ରୀକୁ ଦେବାକୁ ରାଜି ହୋଇଗଲ ଓ ଶେଷରେ ଦେଇଦେଲ, ଏଇଟା ତୁମର ବେଶ୍ୟାବୃତ୍ତି ନୁହେଁ ତ ଆଉ କଣ ? ତୁମେ ଯେବେ କେବଳ ରୂପର ଛଟକ ବା ଗାଣ-ବାଜଣାର ଚମକରେ ମୁଗ୍ଧ ହୋଇ ରାଜି ହୋଇଥାଅ, ତା ହେଲେ ସେଇଟା ବି ସେଇ ବେଶ୍ୟାବୃତ୍ତି ହବ ନା କି ? ତୁମେ କହିବ, ଆମେ ତାକୁ ଦେଖିଲୁଁ, ତାର ଗାଣ-ବାଜଣା ଶୁଣିଲୁଁ, ତା ପ୍ରତି ଆମର ପ୍ରେମ ହେଲା, ସେଥିଁ ଆମେ ବାହାହେଲୁଁ, ଏ ବେଶ୍ୟାବୃତ୍ତି ନୁହେଁ, ପ୍ରେମ ।

ଏଇ ପ୍ରେମ ଶବ୍ଦଟାର ଗୋଟାଏ ଟିକା ଟିପ୍ପଣୀ କହିବା ଦରକାର । ପଣ୍ଡିତ-ମାନେ ବ୍ରହ୍ମସୂତ୍ର ଉପରେ ପୃଷ୍ଠା ପୃଷ୍ଠା ଭାଷ୍ୟ ଲେଖିଗଲେ । ଅଥଚ କଲମ ମୁନ ଘଷି ଘଷି ଶେଷରେ ସିଦ୍ଧାନ୍ତ କଲେ କଣ ନା ବ୍ରହ୍ମଙ୍କ ରୂପ, ଗୁଣ ନିର୍ଧାର୍ଯ୍ୟ କରିହବନି । ଏ ବ୍ରହ୍ମ ସହିତ ଆମର ସାଧାରଣ ଜୀବନର ବା କି ସମ୍ବନ୍ଧ ? ସ୍ନେହ କଣ ନା ଷେକାଳି

ପେଟରେ ଦାନା ଦବ, ନା ଶୋଷିଲା ତୋଣ୍ଟିରେ ପାଣି ଦେବ ? ପ୍ରେମ ଜିନିଷଟି କିନ୍ତୁ ଆମର ପ୍ରତିଦିନିଆ ଜୀବନରେ ବଡ଼ ଗୋଳମାଳ କରେ । ସେହି ପଣ୍ଡିତଗୁଡ଼ାକ ସ୍ତ୍ରୀ ଉପରେ ଗମ୍ଭୀର ଗବେଷଣା କରି ଗୋଟାଏ ବଡ଼ରକମ ଭାଷ୍ୟ ଲେଖିଥିଲେ, ଏ ସଂସାରର ବହୁତ ଉପକାର କରିଥାନ୍ତେ । ସେମାନେ ଯେତେବେଳେ କହିନାହାନ୍ତି, ଆମେ ଶ୍ରେଷ୍ଠ ଲୋକ, ଶ୍ରେଷ୍ଠ ରକମ ଗୋଟାଏ ଟିପ୍ପଣୀ ଏଠାରେ ଦେବା ଅନ୍ୟାୟ ହେବନି ବୋଧହୁଏ । ଦୁଇଜଣଙ୍କ ଭିତରେ, ସେ ଜଣେ ପୁରୁଷ, ଜଣେ ସ୍ତ୍ରୀ ହଉ, ବା ଦୁଇ ଜଣ ପୁରୁଷ ହୁଅନ୍ତୁ ବା ଦୁଇଜଣ ସ୍ତ୍ରୀ ହୁଅନ୍ତୁ, ହୃଦୟର ଏକ ଭାବ ଓ ବିକାରକୁ ପ୍ରେମ କହିବା ଉଚିତ । ଯୋଉଠି ଏ ପ୍ରେମ ହେଉଛି, ସେଠି ସେହି ଦୁଇଟି ଆତ୍ମାର ମିଳନ ହେବା ଉଚିତ । ସେଇଆ ହିଁ ଭଗବାନଙ୍କର ପୂଜା । ସେ ମିଳନରେ ବାଧା ଦେବା ପାପ । କିନ୍ତୁ ଗୋଟାଏ କେଁ ଏଥିରେ ରହିଯାଉଛି । ପ୍ରକୃତ ମିଳନଟା ତୁମେ ଜାଣିବ କିଆଡୁ ? ଧରିନିଅ, ତୁମେ ଗୋଟିଏ ଯୁବତୀଙ୍କୁ ଭେଟିଲ । ତୁମେ ଟୋକା; ସୌନ୍ଦର୍ଯ୍ୟର ନିଶା ଏଡ଼ିବା ତୁମ ପକ୍ଷରେ କଷ୍ଟକର । ସେ ସୁନ୍ଦରୀ । ତୁମେ ତାଙ୍କ ରୂପରେ ଭୁଲିଗଲ । ତାଙ୍କର ବାହା ହବା ନିତାନ୍ତ ଜରୁରି । ତୁମେ ସୁପାତ୍ର । ତୁମକୁ ସେ ଫାନ୍ଦରେ ପକାଇବାକୁ ନିଜ ଇଚ୍ଛାରେ ହଉ, ବା ବାପ ମାଙ୍କ ଶିଖାଣିରେ ହେଉ, ସେ ନିଶ୍ଚୟ ଚେଷ୍ଟା କରିବେ । ତୁମକୁ ମନେଇବା ଲାଗି, ତୁମ ମନ ଧରିବା ଲାଗି, ସେ ତୁମର ସବୁ କଥାରେ ହଁ ଭରିବେ । ତୁମେ ଭାବିବ, ତୁମର ହୃଦୟ ତାଙ୍କ ହୃଦୟ ସହିତ ଖୁବ୍ ମିଳିଯାଉଛି । ତୁମେ ଯେବେ ତାଙ୍କର ରୂପ ଦେଖି ଭୁଲିଥାଅ, ତା' ହେଲେ ତୁମେ ମଧ୍ୟ ତାଙ୍କୁ ପାଇବା ଲାଗି ତାଙ୍କର ଖୋସାମତ କରିସିବ । ସେ ଭାବିବେ, ତୁମେ ପ୍ରେମ କର ତାଙ୍କୁ । ବେଶ୍, ବିବାହ ହୋଇଗଲା । ଏଇ ଯେ ପରସ୍ପରକୁ ଭୁଲେଇବାର ଫନ୍ଦି, ଏ ବେଶ୍ୟାବୃତ୍ତି ନୁହେଁ ? ବେଶ୍ୟା ତ ଏଇଆ କରେ ବୋଲି ତୁମେ ତାକୁ ଘୃଣା କର । ତୁମେ ଆଉ କୁ ଭଲ ହୋଇଗଲ ? ଏ ମନଭୁଲାଣିଆ ଫନ୍ଦି ଭିତରେ ହୃଦୟର ମିଳନ ଥାଏନି । ଥାଏ କେବଳ ହୃଦୟର ଅମେଳକୁ ଘୋଡ଼ାଇ ଗୋଟାଏ ଲୋକକୁ ତୁମର ଖାପଟରେ ପକାଇବାର ଚେଷ୍ଟା । ଯେଉଁ ଦେଶମାନଙ୍କରେ ଆପଣା-ବଛା ବିବାହ ପ୍ରଥା ରହିଛି, ସେଠି ଯେତେ ବିବାହ ହୁଏ, ତା' ଭିତରେ ଶହେକେ ଅନେଶତ କେବଳ ଏହିପରି ଛଳନା ଉପରେ ହୋଇଥାଏ । ଯୁବକ ଯୁବତୀର ଚଞ୍ଚଳ ମନରେ ହୃଦୟର ମିଳନ ଭଳି ଗୋଟାଏ ଗମ୍ଭୀରିଆ କଥାର ସମାଧାନ ହେବା କଷ୍ଟକର । ଅସହିଷ୍ଣୁ ଯୌବନ ନିଜର ଭୋକ ମେଣ୍ଟାଇବାରେ ବ୍ୟସ୍ତ ହୋଇପଡ଼େ—ଯୌବନର ଭୋକକୁ ହୃଦୟର ମିଳନ ବୋଲି ଭାବେ । ଫଳ ହୁଏ, ବିବାହର ପ୍ରଥମ ଜନ୍ମଦିନ ଯାଉଁ ନ ଯାଉଁଣୁ ଦେଖାଦିଏ ମତାନ୍ତର, ମନାନ୍ତର ଓ ହୃଦୟାନ୍ତର ! ତା'ପରେ ସମାଜର ଛି ଛି ଭୟରେ, ଉପାୟାନ୍ତରର ଅଭାବରେ, ପଇସା କଉଡ଼ିର ଡରରେ, ଏଇ ଫଟାଯୋଡ଼ା ପ୍ରେମର ଆଉରି ଗୋଟାଏ ମସ୍ତବଡ଼ ଛଳନା କରି ଏକାଠି ପଡ଼ିରହନ୍ତି । ରକ୍ତମାଂସର

ତାଡ଼ନାରେ ବେଳେ ବେଳେ ଏକାଠି ହେଲେ ବି, ସେ ଏକାଠି ହେବା କେବଳ କୁକୁର ବିରାଡ଼ିଙ୍କ ଏକାଠି ହେବା ଭଳି ଗୋଟାଏ ପାଶବିକ କ୍ରିୟା । ସେଥିରେ ପ୍ରେମର ଆଗ୍ରହ ଥାଏନି ମୋଟେ । ଏ ବେଶ୍ୟାବୃତ୍ତି ତାଙ୍କର ଘନେଇଯାଏ, ଦିନ ଯେତେ ଗଡ଼ି-ଯାଉଥାଏ । ପାଶ୍ଚାତ୍ୟ ଜଗତରେ ଛାଡ଼ପତ୍ରର ଅନୁପାତ ଯେତେ, ତା'ଠାରୁ ଏ ବ୍ୟଭିଚାରର ପାଞ୍ଚଗୁଣ ବେଶୀ ।

ଆମ ଦେଶରେ ତ ଆପଣା-ବସ୍ତୁ ଆସିନି; ଆସିବାର ଚେଷ୍ଟା କରୁଚି । ଆମର ବିବାହ ଅଧିକାଂଶ ସ୍ଥାନରେ ବାପ ମା'ଙ୍କ ବସ୍ତୁବହୁ ଉପରେ ନିର୍ଭର କରେ । ବାପ ମା' ବସ୍ତୁବହୁ କରିପାରିଲେ, ଆମର ପାଳି ଆରମ୍ଭ ହୁଏ । ଏତେ ଟଙ୍କା ଗୃହ, ମଟର ଗାଡ଼ି ଗୃହ, ସାଇକଲ ଗୃହ, ସୁନା ଘଡ଼ି ଶିକୁଳି ଗୃହ—ଏମିତି କେତେ କଥା । ଯେ ଯେତେ ବେଶୀ ଦେଇପାରିବ, ତା'ରି ଜୟ । ଏଇ ଯେ ନିଲମ ଡାକରା କରି ତୁମେ ନିଜକୁ ଗୋଟାଏ ସ୍ତ୍ରୀ ପାଟରେ ବା ପୁରୁଷ ପାଖରେ ବିକି ଦଉଚ, ଏଇଟା ବେଶ୍ୟା ବୃତ୍ତି ନୁହେଁ ? ତୁମେ କହିବ, ଶ୍ୱଶୁରଙ୍କ ଝିଅ' ମୁଁ ଯେତେବେଳେ ପାଳିବି, ପୋଷିବି, ଶ୍ୱଶୁରଙ୍କର ତା'ଲଗି ମତେ କ୍ଷତି-ପୂରଣ ଦେବା ନ୍ୟାଯ୍ୟ ଓ ଅର୍ଥନୀତିସମ୍ମତ । ବାପ, ପୁଅ ଝିଅ ସବୁ ଜନ୍ମ କରିଚି । ପୁଅଙ୍କୁ ପାଳିବା ତା'ର ଯେପରି ଦାୟିତ୍ୱ, ଝିଅଙ୍କୁ ପାଳିବା ମଧ୍ୟ ସେହିପରି । ସେ ତାଙ୍କ ଝିଅର ପାଳନ ଲଗି ମତେ ଟଙ୍କା ଦେଲେ ତ ବଡ଼ ଦୋଷଟାଏ ହୋଇଗଲା କ'ଣ ? ଦୋଷଟା ଏଇଠି । ତୁମେ ଯୁ' ଟଙ୍କାତକ ତାଙ୍କୁ ବାହା ହେବା ଲଗି ନେଲ, ସେ ଟଙ୍କାତକ ତୁମ ସ୍ତ୍ରୀ ବା ଶ୍ୱଶୁରଙ୍କ ଝିଅଙ୍କ ଲଗି ରଖି ଦଅନା, ତୁମେ ଚୂଡ଼ାଭୁଡ଼ା କରି ପକେଇଦିଅ । ତୁମେ ଯେବେ ତାଙ୍କର ଲାଳନ ପାଳନ ଲଗି ଟଙ୍କା ନେଲ, ତା' ହେଲେ ତାଙ୍କୁ ଘର ଭିତରେ ଗୃହକର୍ତ୍ତ୍ରୀ ଭଳି ଖଟାଇ ମାରି କାହିଁ ? ଗୋଡ଼ ଗୋଡ଼ ଧରି ତାଙ୍କ ଉପରେ ଏ ଅତ୍ୟାଚାର କରିଯାଅ କାହିଁ ? କୁ ଲୋକୀ ଶୋଷୀ କି ଦି' ପଇସା ଦେବା ଲଗି ସେ ତୁମ ହାତକୁ ଗୁହିଁ ବସିବେ କାହିଁ ? ତୁମର ଏ ଯୁକ୍ତି ତୁମର ବେଶ୍ୟାବୃତ୍ତିର ଭଡ଼ୁଆଗିରି । ତୁମେ ପଇସା ନେଇଚ ତୁମର ବେଶ୍ୟାବୃତ୍ତି ଲଗି । ଆଉ ଭଲେଇ ହୋଇ ବଡ଼ ବଡ଼ କଥାମାନ କହୁଚ ଖାଲି ବୋକା ସମାଜକୁ ଭୁଲାଇବା ପାଇଁ । ତୁମେ ପଇସା ନେଇଚ ଏଇ ସମାଜର ଗୋଟାଏ ଅନ୍ୟାୟ ବିଧି ଉପରେ ନିର୍ଭର କରି । ସମାଜ ଦୃଷ୍ଟିରେ ବଢ଼ିଲା ଅଭିଆଡ଼ି ଝିଅ ଗୋଟାଏ ବଡ଼ ରକମ ପାପ । ସେ ତୁମର ଗଳଗ୍ରହ । ତାକୁ ବିଦାୟ କରିବା ଦରକାର । ବିଚରା କନ୍ୟାପିତାର ଏଥିଲଗି ସମାଜ ଆଗରେ ହାଡ଼ ଗୋଡ଼ ବନ୍ଧା । ତୁମେ ତାହାରି ସୁବିଧା ନେଇ ତା'ଠାରୁ କଡ଼ାଗଣ୍ଡା ପର୍ଯ୍ୟନ୍ତ ଅସୁଲ କରିଚ । ତୁମେ ବେଶ୍ୟାବୃତ୍ତି କରିନ ? ବେଶ୍ୟାର ବରଂ ଦୟାମାୟା ଥାଏ । ତୁମର ତା' ବି ନାହିଁ । ତମେ କହିପାର, ଯାହାକୁ ସମସ୍ତେ ଭଲ କହୁଛନ୍ତି, ତାକୁ ମନ୍ଦ କହିବା କାହିଁ ? ପବିତ୍ର ବିବାହବନ୍ଧନରେ ବେଶ୍ୟାବୃତ୍ତି ଆସିଲା କାହୁଁ ? ମିଛ କହିବା ସର୍ବସାଧାରଣ—ତା'ହେଲେ କ'ଣ ମିଛ କହିବା ସତ ? କଳିଗୋଳ, ଯୁଦ୍ଧ ବିଗ୍ରହ ସର୍ବସାଧାରଣ—

ତା'ହେଲେ କ'ଣ ସେଇଆ କଣବାଟା ହିଁ ସତ ? ଦେଖୁଚ ସର୍ବସାଧାରଣ, ଅତଏବ ସତ, ଏପରି କହିବା ଦ୍ୱାରା ତୁମେ କୁଅଁଡ଼େ ଗତି କରୁଚ ? ସେ କଥା ପଚିବ ନାହିଁ, ଭାଇ । ସମାଜ ତା'ର ଜୀବନରକ୍ଷା ଲାଗି ଗୋଟାଏ ନିୟମ ବାନ୍ଧିଚ । କେହି ତା' ବେ ଧରେ ଗଲେ, ସମାଜର ଶକ୍ତି ଥିଲେ ତାକୁ ଦଣ୍ଡ ଦେବ, ନଥିଲେ ସେ ଲୋକ ମୁକ୍ତ । ଏଥିରେ ସତ୍ୟାସତ୍ୟର କଥା ନାହିଁ । ଏଥିରେ ଅଛି ମାତ୍ର ଜୋର୍ ଯାହାର ମୁଲକ ତାହାର ଜୀତ । ପୁଞ୍ଜିବାଦୀଙ୍କର ଗଢ଼ା ଏ ସମାଜ, ପୁଞ୍ଜିବାଦର ରକ୍ଷଣାବେକ୍ଷଣ ଲାଗି ଗଢ଼ା ସ୍ୱା'ର ସବୁ ଆଇନ କାନୁନ । ସେ ଝୁର୍‌ଝୁର ହୋଇ ଝଡ଼ି ପଡ଼ୁଚ । ବଡ଼ ପୁରୁଣା, ବଡ଼ ଖତରା ! ସେ ଝଡ଼ି ହିଁ ପଡ଼ିବ । ତା' ଜାଗାରେ ଗୋଟାଏ ନୂଆ ସମାଜ ଗଢ଼ା ହେବ ନିଶ୍ଚୟ । ସେ ସମାଜରେ ଏ ବେଶ୍ୟାବୃତ୍ତି ରହିବନି ବୋଲି ଆଶା । ମୋର ଯୌବନ କ୍ଷୁଧା ଶାନ୍ତ କରିବା ଲାଗି ମୋର ଗୋଟାଏ ସ୍ତ୍ରୀ ଦରକାର । ସୁ ସ୍ତ୍ରୀ ମୋର ସେ କ୍ଷୁଧା ଶାନ୍ତ କରିବାକୁ ରାଜି ହେଲ, ତା' ସାଙ୍ଗରେ ମୁଁ ରହିଲି, ସେଇଥିପାଇଁ । ଆମର ଏ ସହବାସ ଭିତରେ ପ୍ରେମ, ପବିତ୍ରତା, ସ୍ୱର୍ଗୀୟତା ଇତ୍ୟାଦି କିଛି ନାହିଁ । ସେ କେବଳ ଖାଇବା ପିଇବା ଭଳି ଗୋଟାଏ ସାଧାରଣ ଦୈନନ୍ଦିନ କାମ । ମୁଁ ଏ କଥା ବୁଝେଁ । ଯୁ ସ୍ତ୍ରୀ ସହିତ ରହିବ ସେ ମଧ୍ୟ । ବାପ୍ୱା କନ୍ୟା ପିତାର ଶେଷ ରକ୍ତ ବିନ୍ଦୁଟିକ ଶୋଷି ନଖାଇବାଯାଏ ତୁମର ଶାନ୍ତି ନଥାଏ । ଅଥଚ ତୁମେ ବୋଲାଅ ସମ୍ଭ୍ରାନ୍ତ, କୁଳୀନ, ସମାଜପତି । ତୁମେ ଯେବେ ସମ୍ଭ୍ରାନ୍ତ, କୁଳୀନ, ସମାଜପତି ହୋଇଥାଅ, ତା' ହେଲେ ବେଶ୍ୟା ସ୍ୱର୍ଗର ଦେବୀ ।

ତୁମେ ତା'ହେଲେ ଏଥର ସ୍ୱୀକାର କରିବ ବୋଧହୁଏ ଯେ, ତୁମେ ବେଶ୍ୟାବୃତ୍ତି କର, ଆଉ ଶ ଯେ ଲେଖିଥିଲେ ବିବାହ କାନୁନ ବେଶ୍ୟାବୃତ୍ତି, ସେ ଏଇ ଅର୍ଥରେ ଓ ଏ ଅର୍ଥରେ ତାଙ୍କର କଥାଟି ଠିକ୍ । ସତ; କିନ୍ତୁ ଅପ୍ରିୟ । ତେବେ ଗୋଟାଏ କଥା ତୁମେ ମତେ ପଗ୍ଯରିପାର । ଯେତେପ୍ରକାର ବିବାହ ଯେତେ ଦେଶରେ ଅଛି, ସବୁଥିରେ ସ୍ୱାର୍ଥର ପୂର୍ଣ୍ଣ ଅବତାର ରହିଚ, ସବୁଥିରେ ମୁଁ କିଛି ପାଇବା ଆଶାରେ ମୋର ଦହି ଅନ୍ୟକୁ ଦିଏଁ । ଏଇଆ ଯେବେ ସର୍ବସାଧାରଣ କଥା, ତା'ହେଲେ ସେଇଟା ନ୍ୟାୟ ହବା ଉଚିତ ଓ ତା ବାହାରେ ଯାହା, ସେ ସବୁ ଅନ୍ୟାୟ ହବା ଉଚିତ । ଏଇ ବିବାହର ସ୍ତ୍ରୀ ଓ ... ରୂପ ସତ୍ ଓ ପବିତ୍ର । ସ୍ୱା ବାହାରେ ଯାହା ସେ ବେଶ୍ୟାବୃତ୍ତି । ମୁଁ ଏ କଥାଟା ମାନିବାକୁ ମୋଟେ ରାଜି ନୁହେ । ସର୍ବସାଧାରଣ ହେଲେହେଁ ସତ୍ୟ—ଏ ଗୋଟାଏ ବଡ଼ ବିପଦଜନକ କଥା । ତା'ହେଲେ ତୁମକୁ ମାନିବାକୁ ହବ ଯେ ଗୋଟାଏ ହାତ, ଗୋଡ଼, ନାକ, କାନ, ରକ୍ତ, ମାଂସ ଥାଇ ଦିବ୍ୟସ୍ୱରୂପ ଅଛନ୍ତି, ସେ କି ପରମେଶ୍ୱର । ଅଥଚ ସବୁ ଶାସ୍ତ୍ର କହେ ଇଶ୍ୱର ଯେବେ କେହି ଥାନ୍ତି, ତା'ହେଲେ ସେ ନିରାକାର ଓ ନିର୍ବିକାର । ତା'ହେଲେ ସାକାରବାଦ ସତ ନା ନିରାକାର ? ଯେତେ-ବେଳେ ମୁଁ ତାକୁ ନ ବୁଝିଲି, କି ସେ ମତେ ନ ବୁଝିଲା ସେତେବେଳେ ଛଡ଼ାଛଡ଼ି

ହୋଇଗଲୁଁ, ନିଜ ପନ୍ଥା ଦେଖିନେଲୁଁ । ସେ ଗୋଟାଏ କଥା । ଏଥିରେ ଛଳନା ନାହିଁ, କପଟ ନାହିଁ । ସାଦା ସିଧା କଥା ଗୋଟାଏ ।

ମୁଁ କହୁନି ଯେ ପ୍ରେମ ନାହିଁ । ପ୍ରେମ ଅଛି । ମୋର ହୃଦୟରେ ସଚ୍ଚା ପ୍ରେମ ଥିଲେ, ମୋର ସଚ୍ଚା ପ୍ରେମିକା ମତେ ମିଳିବ ହିଁ ମିଳିବ । ତୁମେ ପଚାରିବାର, ସଚ୍ଚା ପ୍ରେମ କମିତି ଚିହ୍ନିବ । ସ୍ୱାର୍ଥବଳି ଉପରେ ପ୍ରେମର ଦେହଳି ଗଢ଼ା । ଯୁଠି କୌଣସି ସ୍ତ୍ରୀର ସୁଖ ଲାଗି ମୁଁ ମୋର ସମସ୍ତ ସ୍ୱାର୍ଥ ବଳି ଦେଇପାରେଁ ଓ ସେ ସ୍ତ୍ରୀ ମଧ୍ୟ ମୋର ସୁଖ ଲାଗି ତାର ସବୁ ସ୍ୱାର୍ଥ ବଳି ଦେଇପାରେ, ସେହିଠାରେ ହିଁ ସଚ୍ଚା ପ୍ରେମ । ଆଉ ସଚ୍ଚାପ୍ରେମ ଯୁଠି, ବୈକୁଣ୍ଠଧାମ ସେହିଠାରେ । କିନ୍ତୁ ଭାଇ ଭୁଲିଯିବନି, ମିଛ ଯୁକ୍ତିତର୍କରେ । ଶୁଣ, ତୁମ ଲାଗି ତ ମୋର ବଳ ବୟସ ସବୁ ଦେଲି, ମୁଁ ତୁମ ଲାଗି କଣ ତ୍ୟାଗ କଲି ବା । କିନ୍ତୁ ଏ ଯୁ ବଳ ବୟସ ଦବା, ଏଥିରେ ତ୍ୟାଗ ରହିଲା କୁଠି ? ତୁମେ ତୁମର ଇନ୍ଦ୍ରିୟ ସୁଖ ଲାଗି ଏ ସବୁ ମୋ ପାଖରେ ବରବାଦ କଲ । ଅବଶ୍ୟ ତୁମର ସୁଖ ହେଲା, ମୋର ବି । ମୋ ପାଖରେ ନ ହେଲେ ଅନ୍ୟ କାହା ପାଖରେ ତୁମେ ତୁମର ଏଇ ସୁଖ ଲାଗି ଏହିପରି ବରବାଦ ହୋଇଥାନ୍ତ । କିଛି ପାଇବାକୁ ହେଲେ କିଛି ଦବାକୁ ହବ । ସେଥିରେ ତ୍ୟାଗ ବା ସ୍ୱାର୍ଥବଳି ରହିଲା କୁଠି ? ତୁମେ ଭଲ ପାଉଟିଏ ପାଇ ବା ତୁମର ଅସମ୍ଭାଳ ଇନ୍ଦ୍ରିୟ ତାଡ଼ନାରେ କାହା ସାଙ୍ଗରେ ଘରଦ୍ୱାର ଛାଡ଼ି ପଳାଇଯିବାକୁ ତିଆର ହେଲ, ଗଲ ବା. ସେଥିରେ ତୁମର ବଳି ବା ତ୍ୟାଗ ରହିଲା କୁଠି ? ନିଃସ୍ୱାର୍ଥ ତ୍ୟାଗ ଓ ସ୍ୱାର୍ଥ ତ୍ୟାଗ ଭିତରେ ସ୍ୱର୍ଗ ଓ ନରକର ପ୍ରଭେଦ । ନିଃସ୍ୱାର୍ଥ ତ୍ୟାଗରେ ପ୍ରେମ । ସେହି ପ୍ରେମ ହିଁ ଭକ୍ତି ଓ ଈଶ୍ୱରାଧନା । ବିଲ୍ୱମଙ୍ଗଳଙ୍କର ଏହି ପ୍ରେମ ବେଶ୍ୟା ପ୍ରତି ଥିଲା ବୋଲି, ସେ ଏତେ ଜଲଦି ଏତେ ବଡ଼ ଭକ୍ତ ବନିଯାଇପାରିଥିଲେ । ବୋକା, ବୋକା ! ଭଲ ମୋର କିଛି ଲାଭ ନାହିଁ, ଅଥଚ ଅନ୍ୟ ଲାଗି ମୁଁ ସବୁ ଛାଡ଼ିଦେବି କାହିଁ ଓ କିପରି ? ଏମିତି ଲୋକ ଭଲା ସଂସାରରେ ଅଛନ୍ତି ? ଅଛନ୍ତି ଭାଇ, ଅଛନ୍ତି । ଅଜବ ଦୁନିଆ ଏ, ଏଥିରେ କାହିଁ ଅଭାବ । ଚୋଟେ ଅଧେ ଲୋକ ଅଛନ୍ତି, ଯେ କି ଗୋଟାଏ ଅନ୍ୟ ଲୋକ ଲାଗି ନିଜର ସବୁ ଫୋପାଡ଼ି ଦେବେ, ଟିକିଏ ହୋଇ ନିଜର କଥା ଭାବିବେ ନି, କି କହିବେ ନି । ତୁମେ କହିବ—ମିଛ କଥା, କାହିଁ, ଗୋଟାଏ ଅଧେ ଉଦାହରଣ ଦେ ତ ? ଉଦାହରଣ ଦେବି ? ଦଉଚି । ଏଇ ଯେପରି ତୁମର ଶ୍ରୀମତୀ ବା ମୋର—ମାନେ—ଏଇ, ଅର୍ଥାତ୍, ମୋର ଇସ୍ତ୍ରୀ ।

ଅଚ୍ଛା, ଏ କଥାଟା ସାଫ୍ ହୋଇଗଲା ନା ? ତୁମର ବା ମୋର ତ ଆଉ ଏ ବିଷୟରେ କିଛି ଭାବିବାର ରହିଲାନି । ଏଥରକ ଯାହା ରହିଲା, ସେ ଆଉମାନଙ୍କ କଥା, ନା ? ସେତ ସିମିତିଆ, ତାଙ୍କ ଲାଗି ପୁଣି ଭାବନା କଣ ? ତେବେ ଏଥିରେ ଗୋଟାଏ ଗୋଳମାଳ ରହିଯାଏ । ଏଇ ଯୁ ନିଃସ୍ୱାର୍ଥ ତ୍ୟାଗ ଉପରେ ଗଢ଼ା ସଚ୍ଚାପ୍ରେମ, ଏଇଟା ଚିହ୍ନିବା ବଡ଼ କଷ୍ଟକର, ନୁହେ ? ଧର, ପ୍ରମିଳା ଓ ପ୍ରଫୁଲ୍ଲ ଦୁଇଟି ଯୁବତୀ ଯୁବକ ।

ସେମାନେ ପରସ୍ପରକୁ ଭଲ ପାଇଲେ, ମାନେ ଭାବିଲେ ଯେ ସେମାନେ ପରସ୍ପରକୁ ଭଲ ପାଇଲେ । ପ୍ରମିଳା ପୂର୍ଣ୍ଣଯୌବନା । ତାଙ୍କର ଗୋଟାଏ ଯୌବନ-ସାଥି ଲୋଡ଼ା । ପ୍ରଫୁଲ୍ଲ ଜଣେ ଯୌବନ-ବୁଭୁକ୍ଷୁ ସବଳ ଯୁବକ । ଦୁହେଁ ଏକାଠି ହେଲେ । ଦୁହେଁ ଦୁହିଁଙ୍କୁ ଚାହିଁଲେ । ମିଳନ ହେବାରେ ବାଧା ଅନେକ । ଶେଷରେ ପ୍ରମିଳା ପ୍ରଫୁଲ୍ଲଙ୍କ ସାଙ୍ଗରେ ଘରଦ୍ୱାର ଛାଡ଼ି ରାତି ଅଧରେ ପଳାଇଗଲେ । ଏଠି ତୁମେ କଣ କହିବ ? ସଚ୍ଚା ପ୍ରେମ, ନା, କଞ୍ଚା ପ୍ରେମ ? ନିଃସ୍ୱାର୍ଥ ତ୍ୟାଗ, ନା ସ୍ୱାର୍ଥତ୍ୟାଗ ? ଏ ଦୁହେଁ ଯେବେ ଭିନ୍ନ ଜାତି ହୋଇଥାନ୍ତି ଓ ସାମାଜିକ ପ୍ରଥା ଅନୁସାରେ ଏମାନଙ୍କର ବିବାହ ଯେବେ ସମ୍ଭବପର ନ ହୁଏ, ତା ହେଲେ ଅବସ୍ଥା କଣ ହେବ ? ପ୍ରମିଳା ହେବେ ରକ୍ଷିତା । ତାଙ୍କର ସନ୍ତାନ ସନ୍ତତି ପ୍ରଫୁଲ୍ଲଙ୍କର ସମ୍ପତ୍ତିର ମାଲିକ ହୋଇପାରିବେନି । ଫଳ ଏଇ ହେଲା ଯେ, ପ୍ରମିଳାଙ୍କ ପ୍ରେମଭୋଗର ଜୀବାଣୁ ପୁରୁଷ ପୁରୁଷ ଧରି ଚାଲିଲା ଗଡ଼ି । ନାହିଁ ଯେବେ ଏମାନେ ଭିନ୍ନ ଧର୍ମ ନେଇ ବିବାହ କରନ୍ତି, ତା ହେଲେ ପ୍ରଫୁଲ୍ଲ ପୈତୃକ ସମ୍ପତ୍ତିରୁ ଭାଗ ପାଇବେନି । ହେବେ କାଙ୍ଗାଳ । ଏଇ କାଙ୍ଗାଳ ଜୀବନ ଭିତରେ ଯୌବନ ଓ ଭୋଗର ପ୍ରଥମ ଦାହ କମିଗଲେ ପ୍ରେମ କେତେବେଳଯାଏ ରହିପାରେ ? ଗପ ଉପନ୍ୟାସର କଳ୍ପନା ଯାହାହେଉ ପଛକେ, ପ୍ରକୃତ ଜୀବନରେ ଆମେ ଯାହା ଦେଖିଛୁଁ, ସେଥିରୁ ଏଇଆ ଆମେ ବୁଝୁଁ ଯେ, ପ୍ରଥମ ୩/୪ ବର୍ଷ ପରେ ଏ ପ୍ରକାର ତ୍ୟାଗର ଫଳ ହୁଏ ଜୀଅନ୍ତା ନରକ ଭୋଗ । କାହିଁକି ? କାରଣ ସେ ତ୍ୟାଗ ନିଃସ୍ୱାର୍ଥ ନ ଥିଲା । ଯୌବନର ନିଶାରେ ଯେଉଁ ରଙ୍ଗିନ୍ ସ୍ୱପ୍ନ ଦେଖାଯାଏ, ତାହା ଯୌବନ ସମସ୍ତିକ ପାଇଁ ମଧ୍ୟ ରହିପାରେନି । ବଡ଼ ଜଲଦି ସେ ନିଶା ଛାଡ଼ିଯାଏ, ସେ ସ୍ୱପ୍ନ ଭାଙ୍ଗିଯାଏ । ମୁଁ ପ୍ରଥମ ମାଦକତାରେ ପ୍ରେୟସୀକୁ ସ୍ୱର୍ଗଦେବୀଙ୍କର ଉଚ୍ଚ ଆସନରେ ଥାପନା କରି ପୂଜା କରିବାକୁ ଆରମ୍ଭ କରେ, ବାସ୍ତବ ଦାମ୍ପତ୍ୟ ଜୀବନର ଝାଡ଼ିମାଡ଼ରେ ସେ ମାଦକତା ଯାଏ ଉଡ଼ି, ସେ କଳ୍ପନା ଯାଏ ପୋଡ଼ି ।" ମୋର ସ୍ୱର୍ଗର ଦେବୀ ଯେ ବିଷ-ରକ୍ତ ଓ ପଶୁମାଂସର ଗୋଟିଏ ମନୁଷ୍ୟ ପ୍ରତିମା ଏତିକି ବୁଝିବାକୁ ମତେ ଡେରି ଲାଗେନି । ତହୁଁ ବାହାର ହୋଇଯାଏ । ଆକାଶ-ଫୁଲ ବିଳୁଆତି ପାଲଟିଯାଏ । ଏଇ ଯେ ମୋହଭଞ୍ଜନ, ଏହାର ଦାହ ବଡ଼ ବେଶୀ ଲାଗେ ପ୍ରାଣରେ । ଯେତିକି ପ୍ରେମ ଓ ବିଶ୍ୱାସ ଥିଲା, ଆସିଯାଏ ତାର ଦୁଇଗୁଣ ଅଶ୍ରଦ୍ଧା ଓ ଅବିଶ୍ୱାସ । ବେଳେ ବେଳେ ପୂର୍ବସ୍ମୃତିକୁ ଜବତି ଧରି ପ୍ରେମ ଓ ବିଶ୍ୱାସର ଗୋଟାଏ ମାୟା କୁହୁକ ସର୍ଜନା କରି ପଡ଼ି ରହିବାକୁ ହୁଏ । ଆଉ ବେଳେ ବେଳେ ଅସହ୍ୟ ଏ ହୃଦୟ ଯନ୍ତ୍ରଣାରେ ସବୁ ଭାଙ୍ଗି ଚୁନାଚୁନା ହୋଇଯାଏ । ସେତେ-ବେଳେ ମୋର ଯେ କୁଳତ୍ୟାଗ ବା ସମ୍ପତ୍ତି ତ୍ୟାଗ, ସେ ଗୋଟାଏ ହିମାଳୟ ଆକାର ଧରି ଠିଆ ହୋଇଯାଏ ମୋ ଆଖି ଆଗରେ, ତାର ଆଢ଼ୁଆଳରେ ଆଉ ସବୁକଥା ଘୋଡ଼ାଇ ହୋଇଯାଏ । ଏଇ ଯେ ମାଦକତା, ଯୌବନ ଜ୍ୱରର ଏଇ ଯେ ଉଚ୍ଛୃଙ୍ଖଳତା, ଏଇଟା କେବଳ ନିକୃଷ୍ଟ ସ୍ୱାର୍ଥ—ମୋର କାମୋଦ୍ଦୀପକତାର ତୃପ୍ତି, ମୋର

ପ୍ରେମ-ପିପାସାର ପୂର୍ତ୍ତି, ନିଃସ୍ୱାର୍ଥ ପ୍ରେମ କଦାପି ଏତେବଡ଼ ତ୍ୟାଗ କରାଇ ଦେବନି । ପ୍ରକୃତ ପ୍ରେମ ଥିଲେ ପ୍ରମିଳା ଭାବିବ, ମୋଲାଗି ପ୍ରଫୁଲ୍ଲର ଜୀବନ ନଷ୍ଟ ହୋଇଯିବ, ସେ କେତେ ସୁଖରେ ଅଛି, କେତେ ଦୁଃଖ ଭୋଗିବ । ପ୍ରଫୁଲ୍ଲ ମଧ୍ୟ ଭାବିବ, ମୋର ଏଇ ପ୍ରେମ-ପିପାସା ଲାଗି ପ୍ରମିଳାର କେତେ ନିନ୍ଦା, କେତେ ଅପଯଶ ହେବ । ପ୍ରକୃତ-ପ୍ରେମ ବନ୍ଦ ଦୁଆର ଖୋଲିଦେଇ ନଗ୍ନ ଭବିଷ୍ୟତର ଗୁପ୍ତ ବର୍ତ୍ତିକା ପ୍ରେମିକର ଆଖିରେ ପ୍ରକାଶ କରିଦିଏ । ପ୍ରେମିକ ନିଜ ହୃଦୟର ଭଗ୍ନଆଶାକୁ ବଳିଦେଇ ପ୍ରେମିକାକୁ ଏ ସମ୍ମୋହରୁ ରକ୍ଷା କରେ । ତାର ଜୀବନ ନଷ୍ଟ ହୁଏ, ଜାଣିଶୁଣି ସେ ତାକୁ ନଷ୍ଟ କରିଦିଏ, ପ୍ରେମିକାର ଜୀବନକୁ ନିରଙ୍କୁଶ କରିବା ପାଇଁ । ସେଇ ହେଉଚି ନିଃସ୍ୱାର୍ଥ ପ୍ରେମ । ଏଥିରେ ଭୋଗଲାଳସା, ଅଭିଳାଷ ଓ ହୃଦୟର ଆନନ୍ଦକୁ କର୍ତ୍ତବ୍ୟ ଓ ବିବେକ ପାଖରେ ବଳି ଦିଆହୁଏ । ଯୁଠି ଏ ବଳି ନଦେଇ ପ୍ରେମର ମିଳନ ହୋଇପାରେ, ସେଠି ମିଳନ ନିଶ୍ଚୟ ହେବ, କର୍ତ୍ତବ୍ୟର ହାନି ନକରି, ପ୍ରେମିକାର ଜୀବନକୁ ହୀନ ନକରି । ଆମ ପୁରାଣରେ କେତେଗୁଡ଼ିଏ ପ୍ରକୃତ-ପ୍ରେମର ମିଳନଚିତ୍ର କରାଯାଇଛି । ସୁଭଦ୍ରା ଓ ଅର୍ଜୁନ, କୃଷ୍ଣ ଓ ରୁକ୍ମିଣୀର ଏଠି ଯେ ମିଳନ ହୋଇଥିଲା, ସେ ଯୌବନ-ଖେଳର ତୃପ୍ତି ଅଭାବରୁ ନୁହେ, ନିଜର କୌଣସିରକମ ସ୍ୱାର୍ଥ ଲାଗି ନୁହେ, କେବଳ ମାତ୍ର ପ୍ରେମଲାଗି । ସୁଭଦ୍ରାଙ୍କର ବିବାହ ଠିକ୍ କରିଚନ୍ତି ଭାଇ, ଦୁର୍ଯୋଧନଙ୍କ ପୁତ୍ର ମହାଭାରତର ଯୁବରାଜଙ୍କ ସଙ୍ଗେ—ବୀର, ସୁପୁରୁଷ, ପ୍ରତିଭାବାନ ନବ ଯୁବକଙ୍କ ସହିତ । ସୁଭଦ୍ରା ଜାଣନ୍ତି, ଅର୍ଜୁନ ମଧ୍ୟମ ପାଣ୍ଡବ—ଇନ୍ଦ୍ରପ୍ରସ୍ଥ ରାଜ୍ୟରେ ତାଙ୍କର କୌଣସି ଅଧିକାର ନାହିଁ । ସେ ଯୁଧିଷ୍ଠିରଙ୍କର ଅନ୍ନଭୋଜୀ ଭାଇମାତ୍ର । ତାପରେ ଅର୍ଜୁନଙ୍କର ଦୁଇ ଦୁଇଥର ବିବାହ ହୋଇସାରିଚି । ଦୁଇ ସ୍ତ୍ରୀ ଜୀବିତା । କିନ୍ତୁ ସେସବୁ ସେ ଖାତିର୍ କରିନାହାନ୍ତି । ରାଜାର ରାଣୀ, ଅଥବା ପ୍ରେମିକର ଏକପତ୍ନୀ ହେବାର ଆଶାକୁ ସେ ପ୍ରେମଠାରୁ ହୀନତର ମଣିଚନ୍ତି । ସବୁ ବାଧା-ବିଘ୍ନ, ଅଗଣନ୍ତି ସୈନ୍ୟସାମନ୍ତର ଚଢ଼ାଉ, ସବୁ ପଛକୁ ପକାଇ ସେ ପ୍ରେମିକର ସାଙ୍ଗରେ ସଉତୁଣୀ ଘରକୁ ଯାଇଚନ୍ତି ଚାଲି ।

ତେବେ ଏପରି ମିଳନ ଲକ୍ଷକେ ଗୋଟାଏ । ବାକି ସବୁ ମୋହର ଚିରଗୁଣୀ ଆଲୁଅ । ଟୋକା ଟୋକୀ ସ୍ୱା ବୁଝି ପାରନ୍ତିନି । କାରଣ ବୁଝିବା ଭଳିଆ ଜ୍ଞାନ, ଧୈର୍ଯ୍ୟ ଓ ଅଭିଜ୍ଞତା ସେମାନଙ୍କର ନଥାଏ, ଥାଇ ନପାରେ । ଅତଏବ ଏପରି ବିବାହ ଲାଗି ସେମାନଙ୍କର ଅନ୍ୟର ଜ୍ଞାନ, ଧୈର୍ଯ୍ୟ ଓ ଅଭିଜ୍ଞତା ଉପରେ ନିର୍ଭର କରିବା ଉଚିତ । ଅନ୍ୟପକ୍ଷରେ ତୁମେ ଯେବେ ପଇସା, ପ୍ରତିପତ୍ତି ବା ରୂପ ପାଇଁ ନିଜକୁ ବିକି ଦେଇ ବେଶ୍ୟାବୃତ୍ତି କରିବାକୁ ଚାହଁ, ତାହେଲେ ମଧ୍ୟ ତୁମେ ଠିକ୍ ଦରଟା ପାଇବନି, ନିଜେ ନିଜ ଗୋଡ଼ରେ ଠିଆ ହେବାକୁ ଚାହିଁଲେ, ବେଶ୍ୟାବୃତ୍ତି ଲାଗି ଭଡ଼ୁଆ ଚାହଁ, ହଡ଼ା-ବେପାର ଲାଗି ହଡ଼ାବେପାରୀ ଚାହଁ । ଗାଈ ବା ବଳଦ କେତୋଟା ଦାନ୍ତେଇଚି, ତାର ଖିଦ କମିତି, ତାର ଲାଙ୍ଗୁଡ଼ କମିତି—ଏସବୁ ହିସାବ ସେ ଏ ବ୍ୟବସାୟ କରିଚନ୍ତି ।

କରିବା ଦେଖିଛନ୍ତି ବା ଶିଖିଛନ୍ତି, ସେଇମାନେ ଏକା ଭଲକରି କରିପାରନ୍ତି । ତୁମେ ପାରିବନି । କଲେ ନୋକସାନରେ ପଡ଼ିଯିବା ଖୁବ୍ ସମ୍ଭବ । ସେଇଥିପାଇଁ ମୋର ତ ମନେହୁଏ, ଏ ବେଶ୍ୟାବୃତ୍ତି ବା ହୁଡ଼ାବେପାର ଯେବେ କରିବା ନିତାନ୍ତ ଦରକାର, ତାହେଲେ ତୁମ ଘରର ହୁଡ଼ାବେପାରୀମାନେ ତୁମର ବାପା ମା'ଙ୍କ ଉପରେ ଏ ସବୁ ଛାଡ଼ିଦିଅ । ସେମାନେ ଠିକ୍ ଚହ୍ଣି ଜାଣି, ଭଲ ଦରଦାମ କରି ତୁମପାଇଁ ଠିକ୍ କରି-ଦେବେ, ଯୁଦ୍ଧରେ ତୁମର ଲଭ୍ୟ ବଢ଼ା ନୋକସାନ ନାହିଁ । ଅବଶ୍ୟ ତୁମେ ଖବର ଅନ୍ତର ନେଉଥିବ । ତୁମ ମନ କଣ— କାଳୀଗାଇ କି ଧୋବଳୀ, ପେଣ୍ଟୀ କି ଧେଡ଼େଙ୍ଗୀ, ଦାମ ଶହେ, କି ପଚିଶ, ସବୁ ବତାଇଦଉଥିବ; କିନ୍ତୁ ଅସଲ ଦର ଦସ୍ତୁର ଓ ବନ୍ଧୁବନ୍ଥଟା ଏଇ ହୁଡ଼ାବେପାରୀଙ୍କ ଉପରେ ହୋଇଯିବା ଭଲ । ନାଇଁ ଯେବେ ତୁମେ ସତ ପ୍ରେମ କରୁଥିବ ଓ ସତପ୍ରେମ ପାଉଥିବ, ତାହେଲେ ତୁମ ପ୍ରେମର ସଚ୍ଚାଇ ଓ ଅସଚ୍ଚାଇ ବାରିବାର ଭାରଟା ମଧ୍ୟ ତୁମ ବାପ ମାଙ୍କ ଉପରେ ଦେଇଦେବା ତୁମର ଉଚିତ; କାରଣ ତୁମେ ଯିନା ପ୍ରେମର ନିଶାରେ ଓ ଯୌବନର ରଙ୍ଗିନ ଦୃଷ୍ଟିରେ ଭୋଳ ହୋଇଯାଇଚ; ସେ ତ ନୁହନ୍ତି । ଭଲ କି ମନ୍ଦ, ସଚ୍ଚା କି ଅସଚ୍ଚା, ସେ ଭଲ ଭାବରେ ବିଚାର କରି ନେବେ । ଅବଶ୍ୟ ତୁମ ବାପା ମା ଯେବେ ବିଚାର କରିବା ଭଲ ଲୋକ ହୋଇଥାନ୍ତି । ନାଇଁ ସେ ଯେବେ ଖାଲି ହୁଡ଼ାବେପାରୀ ହିଁ ପାଲଟନ୍ତି, ତାହେଲେ, ଘୋଡ଼େ କମଳ ପଡ଼େ ଉହୋ ! ପ୍ରଥମେ ନିଶାର ପ୍ରଥମ ଝୁଙ୍କଟା କଟିଯାଉ; ତାପରେ ତୁମେ ନିଜେ ତ ଠିକ୍ ବିଚାର କରିନବ— ନା କଣ କହୁଚ ?

